# ରୋହିତର ଡାଏରୀ

## ପ୍ରଥମ ପର୍ବ

(ପ୍ରଥମାର୍ଦ୍ଧ)

ଚିତ୍ତରଞ୍ଜନ ଦାସ

ବିଦ୍ୟାପୁରୀ

ପ୍ରଥମ ପ୍ରକାଶ ଡିସେମ୍ବର ୧୯୮୪

ପ୍ରକାଶକ

ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ

ଗୋସ୍ୱାମୀ ପ୍ରେସ୍
ଆଲାମଚନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୩୫.୦୦
ସାଦା ବନ୍ଧେଇ—ଟ ୩୨.୦୦

# ମୁଖବନ୍ଧ

+ + + ଦିନ ପରେ ଦିନ ଆପଣାର ଡାଏରୀ ଲେଖି ଜମା କରିବାକୁ ରବୀନ୍ଦ୍ରନାଥ କୌଣସି ଏକ ଚିଠିରେ ବଣିକର କୃପଣତା ବୋଲି କହିଚନ୍ତି । କବୀନ୍ଦ୍ରଙ୍କର କଥା ହେଲେ ମଧ୍ୟ ମୁଁ ଏହାକୁ ମାନି ନେବାକୁ ରାଜି ନୁହେଁ, କାରଣ ମୋ' ଜୀବନରେ ଏଯାଏ ଏପରି ଘଟି ନାହିଁ । ମୁଁ ପିଲାଟି ଦିନରୁ ଡାଏରୀ ଲେଖୁଚି, ଆପଣାଦ୍ୱାରା ଉଦ୍‌ବୁଦ୍ଧ ହୋଇ ଡାଏରୀ ଲେଖୁଚି । ଆଜିକୁ ପ୍ରାୟ ପଚିଶିବର୍ଷ ତଳେ ଜୀବନପ୍ରବେଶର କଅଁଳ ଚପଳ ପର୍ବରେ ଯେଉଁ କାରଣଗୁଡ଼ିକର ଉଦ୍‌ବୋଧନରେ ମୁଁ ଏପରି ଲେଖିବାକୁ ଆରମ୍ଭ କରିଥିଲି, ସେହି କାରଣଗୁଡ଼ିକୁ ମୁଁ ପଛରେ ଛାଡ଼ି ଆସିଲିଣି । ହୁଏତ ଅନ୍ୟ କାରଣଚୟର ଉଦ୍‌ବୋଧନରେ ମୁଁ ଏବେ ଡାଏରୀ ଲେଖୁଚି । ତଥାପି ଆପଣା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ହିଁ ଲେଖୁଚି । ପଚିଶି ବା କୋଡ଼ିଏ ବର୍ଷ ତଳେ ଯେମିତି, ବର୍ତ୍ତମାନ ବି ସେମିତି । କୃପଣ ହେବାର କୌଣସି ଚକ୍ରାନ୍ତରେ ପଡ଼ି ମୁଁ ଡାଏରୀ ଲେଖୁନାହିଁ । ତାରିଖ ପରେ ତାରିଖ ପୂରଣ କରିବାକୁ ମୁଁ ଯନ୍ତ୍ରପରି ଡାଏରୀ ଲେଖୁ ନାହିଁ । ଏହି ଜଗତରେ ମୋ' ଆପଣା ଦୃଷ୍ଟିର ପୀଠଉପରେ ଜୀବନର ଏକ ଅକୃପଣ ପରିଚୟ ଲାଭ କରିବାରେ ମୋର ଡାଏରୀ ଲେଖିବା ମୋତେ ସାହାଯ୍ୟ କରୁଚି ବୋଲି ମୁଁ ଡାଏରୀ ଲେଖୁଚି ।

ସୁଇସ୍ ଲେଖକ ଆମିଏଲ୍ (Henri Frederic Amiel, 1821-1881) ଆପଣାର ଜୀବନକାଳରେ କୁଆଡ଼େ କେବଳ ଡାଏରୀ ବ୍ୟତୀତ ଆଉ ପ୍ରାୟ କିଛିହେଲେ ଲେଖି ନ ଥିଲେ । ଅନ୍ୟ ଅନେକ କିଛି ଲେଖିବା ଲାଗି ସେ ଅବଶ୍ୟ ଭାରି ମନ କରିଥିଲେ, କିନ୍ତୁ ଦୁର୍ଭାଗ୍ୟରୁ ହେଉ କି ସୌଭାଗ୍ୟରୁ ହେଉ, ପ୍ରକୃତ କ୍ଷେତ୍ରରେ ଆପଣା ବିତରଣଧର୍ମୀ ସୃଷ୍ଟିଶୀଳ ମାନସର ଆତ୍ମପ୍ରକାଶ ଲାଗି ସେ ଡାଏରୀକୁ ହିଁ ସର୍ବପ୍ରଧାନ ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ଜୀବନର କଞ୍ଚା ବୟସରେ ଡାଏରୀ ଲେଖିବା ଆରମ୍ଭ କରିଥିଲେ, ସେଇ ଡାଏରୀ ଲେଖି ସେ ବୁଢ଼ା ହେଲେ । ଶାନ୍ତିନିକେତନରେ ଥିଲାବେଳେ ମୁଁ ତାଙ୍କର ବିରାଟ ଡାଏରୀ ଗ୍ରନ୍ଥ ଦୁଇଖଣ୍ଡକୁ ଇଂରାଜୀ ଅନୁବାଦରେ ପଢ଼ିବାର ସୁଯୋଗ ପାଇଥିଲି । ପରେ ମୂଳ ଫରାସୀ ଗ୍ରନ୍ଥଟିରୁ ମଧ୍ୟ କିଛି କିଛି ପଢ଼ିଚି । ଅନ୍ୟ ଯୁଗ, ଅନ୍ୟ ଦେଶ ଓ ଅନ୍ୟ ପବନର ହୋଇଥିଲେ ମଧ୍ୟ ମୋର ତରୁଣ ମନ ସେତେବେଳେ

ଆମିଏଲ୍‌ଙ୍କ ଡାଏରୀ ମଧ୍ୟରେ ଜଣେ ସମାନଧର୍ମୀ ତରୁଣର ଆବିଷ୍କାର କରି ଧନ୍ୟ ହୋଇଥିଲା, ତୀର୍ଥର ବେଢ଼ାଭିତରେ ଜଣେ ଭକ୍ତ ଆଉ ଜଣେ ଭକ୍ତର ସାକ୍ଷାତ କରି ଧନ୍ୟ ହେଲାପରି । ଆପଣା ସ୍ୱଭାବର ଭୂମି ଉପରେ ଆମିଏଲ୍ ମନୁଷ୍ୟସ୍ୱଭାବର କଳନା କରିବାକୁ ଚେଷ୍ଟା କରୁଥିଲେ ଓ ସର୍ବସାମାନ୍ୟ ଜୀବନମୂଲ୍ୟଗୁଡ଼ିକର ଜଣେ ଠୁଳ ପ୍ରତିନିଧି ହିସାବରେ ଆପଣାକୁ ଅବଲୋକନ କରିବାକୁ ଚେଷ୍ଟା କରୁଥିଲେ । ମୋର ନିଜ ଡାଏରୀ ଗୁଡ଼ିକରେ ଅଧିକ ଆନ୍ତରିକତା ଭରିଦେବାକୁ, ଅର୍ଥାତ୍ ଅଧିକ ଅନୁରାଗ ସହିତ ଆପଣା ଆଡ଼କୁ ଗ୍ଲହିଁପାରିବାକୁ ମୁଁ ଶ୍ରୀଯୁକ୍ତ ଆମିଏଲ୍‌ଙ୍କ ଗ୍ରନ୍ଥରୁ ଅନେକ ବଳ ପାଇଆସିଚି ।

ସାହିତ୍ୟ କହିଲେ କେତେ ଲୋକ କେତେ କଥା ବୁଝନ୍ତି । ସାହିତ୍ୟକୁ କିଏ ଖାଲି କାବ୍ୟ ବୋଲି ବୁଝେ, କିଏ ଶୈଳୀ ଓ ଆଉ କିଏ ଶ୍ଳେଷ ବୋଲି ବୁଝେ । କିଏ କହେ ବାସ୍ତବ ଜୀବନର ଫଟୋ ଉଠାଇ ତାହାକୁ ସାତଗୁଣ ବଡ଼ କରି ଦେଖାଇଦେଲେ ହିଁ ସାହିତ୍ୟ ହୁଏ । ଅନ୍ୟର ଗୁଣ ଗାଇବାକୁ କିଏ ସାହିତ୍ୟ ବୋଲି କହେ । ଆପଣାକୁ ଅବଗୁଣ୍ଠିତ କରି ରଖିବାକୁ ଅଥଚ ଉପଭୋକ୍ତାମାନଙ୍କର ସଭାରେ ବର୍ଦ୍ଧିଆରୁ ବର୍ଦ୍ଧିଆ ଭେକ ପିନ୍ଧି ବସିବାକୁ ହିଁ ଆଉ କିଏ ସାହିତ୍ୟରେ ସାର୍ଥକତା ବୋଲି ବିଶ୍ୱାସ କରେ । ହୁଏତ ଏହି ସଂଜ୍ଞାଗୁଡ଼ିକ ସବୁ ସତ; ତଥାପି ମୁଁ ଅନୁଭବ କରେ ଯେ ସାହିତ୍ୟ ହେଉଚି ମୂଳତଃ ମର୍ମବାଣୀ, ମୂଳତଃ ଅନ୍ତର୍ବାଣୀ । ଜଣେ ମଣିଷ ହିସାବରେ ଆଉ ପଚ୍ଚଶଜଣ ମଣିଷଙ୍କ ଆଗରେ ସମସ୍ତେ ଆପଣାର ମର୍ମବାଣୀ ବା ଅନ୍ତର୍ବାଣୀକୁ କହିପାରନ୍ତି ନାହିଁ । ତାହାର କେତେବିଧ କେତେ କାରଣ ରହିଚି । କିନ୍ତୁ କେବଳ ମର୍ମବାଣୀ ହିଁ ମର୍ମକୁ ସ୍ପର୍ଶ କରିପାରେ । ମର୍ମ ମର୍ମକୁ ଓ ଅନ୍ତର ଅନ୍ତରକୁ ସ୍ପର୍ଶ କରିପାରିଲେ ଯାଇ ଯଥାର୍ଥ ସାକ୍ଷାତ୍‌କାର ସମ୍ଭବ ହୁଏ, ସାହିତ୍ୟ ସାର୍ଥକ ହୁଏ । ହୁଏତ ଏହିପରି ଏକ କାରଣ ଦ୍ୱାରା ଅନୁପ୍ରେରିତ ହୋଇ ରୋମାଁ ରୋଲାଁ ଆପଣାର ଏକ ଗ୍ରନ୍ଥକୁ 'ଅନ୍ତର୍ଯାତ୍ରା' (Le voyage interieur, Paris, 1942) ବୋଲି ଅଭିହିତ କରିଚନ୍ତି ।

ଅନ୍ତର୍ଯାତ୍ରା ଅର୍ଥାତ୍ ଅନ୍ତର୍ଗତ ଯାତ୍ରା, ଅର୍ଥାତ୍ ସ୍ୱଗତଯାତ୍ରା । ସ୍ୱଗତରେ ଗ୍ଲଲିବା କହିଲେ ଆମ ଏଯୁଗର ସାହିତ୍ୟରେ କେତେକ ଆପଣା ଭିତରକୁ ଖସି ପଳାଇଯିବା ବୋଲି ବିଚାରନ୍ତି । ଆପଣାର ଖୋସାବିଭିତରେ ଏମାନେ ଆମେ

ବାନ୍ଧିହୋଇ ରହନ୍ତି, ଏବଂ ବାହାରେ ଆପଣାକୁ Outsider କହି ନାଗରା ପିଟନ୍ତି । ଜର୍ମାନ୍ ସାହିତ୍ୟରେ ଏକ ଦୁର୍ଭାଗ୍ୟହତ ଯୁଗରେ କେତେଲୋକ ଏହାକୁ Inner Immigration ବୋଲି କହୁଥିଲେ । ଗୋଟାଏ ଦେଶରୁ ଆଉଗୋଟାଏ ଦେଶକୁ ଯିବାକୁ ହେଲେ ସଚରାଚର ପାସ୍‌ପୋର୍ଟ ଓ ଭିସା ଦରକାର ହୁଏ । Outsider ବୋଲାଇବାର ପ୍ରଲୋଭନରେ ପଡ଼ି ଯେଉଁମାନେ ଖସି ପଳାଇ ଯାଆନ୍ତି, ସେମାନେ କେବେହେଲେ କୌଣସି ପାସ୍‌ପୋର୍ଟ ଓ ଭିସା ଲାଗି ଅପେକ୍ଷା ରଖନ୍ତି ନାହିଁ । ଅହଙ୍କାର ଲାଗି କୌଣସି ଅନୁମତିପତ୍ରର ଆବଶ୍ୟକତା କେବେ ନ ଥାଏ ।

ମୁଁ Outsider ନୁହେଁ । ଭାରତର ମାଟିରେ ନିଜର ଚେର ରହିଥିଲେ Outsider ବନିବା ଆଦୌ ସହଜ ନୁହେଁ । କାରଣ ଏଠି ସ୍ୱଗତ ହେଉଛି ବିଶ୍ୱଗତ ଓ ବିଶ୍ୱଗତ ହେଉଛି ସ୍ୱଗତ । "ଯିଏ ମୋ' ଆତ୍ମା ଭିତରେ, ସିଏ ଏହି ଅନ୍ତରୀକ୍ଷରେ,—ଏହି ବିଶ୍ୱରେ ।"—ଆମ ଉପନିଷଦର କବିମାନେ ଏକଥା କହିଚନ୍ତି । ଯିଏ ବାହାରେ, ସେଇ ଭିତରେ । କବି କବୀରଦାସଙ୍କ ଭାଷାରେ : 'ବାହର ଭୀତର ସକଲ ନିରନ୍ତର ଚିତଅଚିତ ଦୋଉ ପୀଠା ଲୋ !' ଆପଣାକୁ Outsider ବୋଲାଇ ଆମର ଏଠି ମଧ୍ୟ କେତେଜଣ ସାହିତ୍ୟ ଲେଖନ୍ତି, କବିତ୍ୱ କରନ୍ତି । ଭାରତୀୟ ମାଟିରେ ଆପଣାର ଚେରଗୁଡ଼ାକୁ ଭେଦାଇ ରଖିବାର ସ୍ୱାଭାବିକ ଭାଗ୍ୟ ସେମାନେ ହୁଏତ ପାଇ ନାହାନ୍ତି । ଭାରତୀୟ ଜୀବନଦୃଷ୍ଟିର ଜଳବାୟୁରୁ ସେମାନେ ହୁଏତ ବଞ୍ଚିତ ହୋଇଚନ୍ତି ବା ଆପଣାକୁ ବଞ୍ଚିତ କରି ରଖିଚନ୍ତି । ମୁଁ ଭାବେ, ଆପଣାର ଅବଚେତନକୁ ଚେତନରେ ରୂପାନ୍ତରିତ କରିପାରିବା ହେଉଛି ଯଥାର୍ଥ ସକଳ ସ୍ୱଗତଯାତ୍ରାର ମୂଳ ଧର୍ମ । ଏହାହିଁ ସ୍ୱାସ୍ଥ୍ୟ, ଏହାହିଁ କଲ୍ୟାଣ । ଆମେ ସାଧାରଣତଃ ଅବଚେତନ ଓ ଚେତନକୁ ପରସ୍ପରର ବିରୋଧୀ ପରି ଗ୍ରହଣ କରିଥାଉ । ଅବଚେତନକୁ ଘୃଣିଚୁପି ଆମେ ତଥାକଥିତ ଚେତନ ଜୀବନ ବଞ୍ଚୁ, ପୁଣି ଚେତନ ଜୀବନରୁ ଅପସରିଯାଇ ଅବଚେତନ ସହିତ ଦୁଇଦଣ୍ଡ ରମଣ କରିଆସୁ, ଦୁଇଦଣ୍ଡ ଶାନ୍ତି ପାଇଆସୁ । ସଉତୁଣୀକୁ ହିଂସା କରୁଥିବା ବୋହୂ ନିରୋଳା କଣଘର ଭିତରକୁ ଯାଇ ଆପଣାର ଗହଣାପେଟେରାଟାକୁ ଖୋଲି ଦେଖିବାରେ ଯେମିତି ଖୁସୀ ଓ ଶାନ୍ତି ପାଏ, ଠିକ୍ ସେମିତି । ଏହି ବିରୋଧ ହେଉଛି ଅସ୍ୱାସ୍ଥ୍ୟର ମୂଳ, ବିନାଶର ମୂଳ । କାରଣ ଏହାଦ୍ୱାରା ଆମଗି ମୁଖାଗୁଡ଼ାକ ଖାଲି ଆମରି ଜୀବନକୁ ହି

ତାଡ଼ିବାରେ ଲାଗିଥାନ୍ତି । ଗାନ୍ଧୀ କୋଉଠି ଥରେ କହିଥିଲେ : ଆପଣାର ଜୀବନକୁ ଆମେ ଠିକ୍ ଖଣ୍ଡେ ଖୋଲାବହି ପରି ଖୋଲିକରି ରଖିବା, ଯେପରିକି ଅନ୍ୟମାନେ ବି ତାହାକୁ ଠିକ୍ ବହି ପଢ଼ିଲାପରି ପଢ଼ିପାରିବେ । ମୁଁ କହିବି : ଆପଣାର ଜୀବନକୁ ଅନ୍ତତଃ ଆପେ ତ ପଢ଼ିପାରିବା ଉଚିତ ! କିନ୍ତୁ ଆପଣାର ଜୀବନଟିକୁ ଆପଣା ଆଗରେ ଖୋଲିଧରି ପଢ଼ିବାର ଆଗ୍ରହ ହେବ କାହାର ? ଅଢ଼େଇହଜାର ବର୍ଷ ପୂର୍ବେ ଏଥେନ୍ସର ଦାଣ୍ଡରେ ସକ୍ରେଟିସ୍ କହି ବୁଲୁଥିଲେ : The unexamined life is not worth living,—ଅପରୀକ୍ଷିତ ଜୀବନ ଜୀବନ ନୁହେଁ । ପରୀକ୍ଷା କରିବାର ଅର୍ଥ ନମ୍ବର ଦେଇ ଫେଲ୍ ବା ପାସ୍ କରିବାକୁ ବୁଝାଇବ ନାହିଁ । ଆଦର ଓ ବିଶ୍ୱାସର ସହିତ ଆପଣାପାଖରେ ବସିବା, ଆପଣାକୁ ପରିପୂର୍ଣ୍ଣ ଭାବରେ ଗ୍ରହଣ କରିବା ଅର୍ଥାତ୍ ଆପଣାକୁ ପରୀକ୍ଷା କରିବା । ଏଥିପାଇଁ ସାହସ ଦରକାର । ଆପଣାର ସମ୍ମୁଖୀନ ହେବାଲାଗି, ଆପଣାକୁ ଶ୍ରଦ୍ଧା ଦେଇ ବୁଝିବାଲାଗି ହୁଏତ ସବୁଠାରୁ ଅଧିକ ସାହସ ଦରକାର ।

ଆପଣାର ଜୀବନରେ ଚାଳିଶି ପାର ହୋଇଗଲେ ମଣିଷ କୁଆଡ଼େ ବୋକା ହୋଇଯାଏ ବୋଲି ବ୍ୟଙ୍ଗ କରି ଜର୍ଜ ବର୍ଣ୍ଣାର୍ଡ ଶ' ଥରେ କହିଥିଲେ । ମୁଁ ଚାଳିଶି ପାରହୋଇ ଗଲିଣି । ଆପଣା ଭିତରର ବୟସ ଅର୍ଥାତ୍ ଭୟାଳୁ ମନଟା ଆପଣାଭିତରର ପିଲାକୁ ସବୁବେଳେ ଶାସନ କରି ଦବାଇ ରଖିବାକୁ ଚାହେ । ଆପଣା ଭିତରର ପିଲାଟାକୁ ପଦାକୁ ବାହାର କରିବାଲାଗି ତାକୁ ହୁଏତ ଭାରି ଲାଜ ଲାଗେ । ସେଥିଲାଗି ପିଲାବେଳେ ଲେଖିଥିବା ଡାଏରୀକୁ ପ୍ରକାଶ କରିବାକୁ ଗଲାବେଳେ କଲମର ଛାଟ ମାରି ବୟସମନର ଛାଞ୍ଚ ଅନୁସାରେ ସେଗୁଡ଼ାକୁ ଟିକିଏ ଚହଟାଇ ଦେବାକୁ ଇଚ୍ଛା ହେବା ଭାରି ସ୍ୱାଭାବିକ । ପ୍ରାୟ କୋଡ଼ିଏ ବର୍ଷ ତଳର ଅନ୍ତର୍ଯାତ୍ରାର କଥାଗୁଡ଼ାକୁ ଦ୍ୱିତୀୟଥର ପାଇଁ ଲେଖି ଛାପାଖାନାକୁ ପଠାଇଲାବେଳେ ସେପରି କରିବାରୁ ମୁଁ ଆପଣାକୁ ସର୍ବଥା କ୍ଷାନ୍ତ କରି ରଖିଛି । ଏପରିକି ସେତେବେଳେ ବ୍ୟବହାର କରିଥିବା ଇଂରାଜୀ ଶବ୍ଦଗୁଡ଼ିକୁ ବି ଓଡ଼ିଆରେ ରୂପାନ୍ତରିତ କରିବାର ଚେଷ୍ଟା ମୁଁ କରି ନାହିଁ । ତେଣୁ ଏଥିରେ ପୁନରାବୃତ୍ତି ଅନେକ ରହିଚି, ତଥାପି ଶୈଳୀ ମାଠିବାର ଲୋଭରେ ପଡ଼ି ମୁଁ ସେସବୁରେ କୌଣସି ପରିବର୍ତ୍ତନ କରି ନାହିଁ । ଏହି ଡାଏରୀ ଲେଖିଲାବେଳେ ମୁଁ ଦ୍ୱିତୀୟଥର ପାଇଁ ମଧ୍ୟ ପଢ଼ି ନ ଥିଲି । କେବଳ ଲେଖି ଯାଇଥିଲି ।

ଲେଖିଲାବେଳେ ଏସବୁ କେବେ ଛାପାଖାନାକୁ ଯିବବୋଲି ମୁଁ କଳ୍ପନା ହିଁ କରି ନ ଥିଲି । ତେଣୁ Style ବା ଶୈଳୀ ଦୃଷ୍ଟିରୁ ବିଚାର କଲେ ଏଥିରେ ଅନେକ ଅଭାବ ରହିଚି । ଅନାଭରଣ ହୋଇ କେବଳ ଆପେ ଆପଣା ଆଗରେ ଠିଆ ହେବାକୁ ଚେଷ୍ଟା କରିବା,—ଏହାକୁ ହିଁ ମୁଁ ମୋ' ଡାଏରୀର ଶୈଳୀଲାଗି ଏକମାତ୍ର ପରିମିତି ରୂପେ ଗ୍ରହଣ କରିଚି ।

ଏହି ଡାଏରୀ ଆତ୍ମଜୀବନୀ ନୁହେଁ, ଏହା କେବଳ ଦିନଦିନର ବିଚାର ଓ ଭାବନା ନୁହେଁ । ଏଗୁଡ଼ିକ ହେଉଚି ଅନୁଭୂତି, ଅନ୍ତର୍ଯାତ୍ରାର ଅନୁଭୂତି । ତେଣୁ ଏହାର ଭାଷା ବୁଦ୍ଧିର ଭାଷା ନୁହେଁ, ଏହା ଅନୁଭୂତିର ଭାଷା । ଆପଣାର ନିଗୂଢ଼ତମ ବିକାଶବେଦନାଗୁଡ଼ିକୁ ଶବ୍ଦ ଦେଇ ପ୍ରକାଶ କରିବାଲାଗି ଏ ଯୁଗରେ ଭାଷାର ଶବ୍ଦଭଣ୍ଡାର ଆଦୌ ପର୍ଯ୍ୟାପ୍ତ ନୁହେଁ । କାରଣ ଅନ୍ତରଙ୍ଗତମ ଆତ୍ମସମୀକ୍ଷା ଓ ଅନ୍ତରଙ୍ଗତମ ଆତ୍ମ-ଅବଲୋକନ ଲାଗି role-playingର ଏହି ପୋଷାକୀ ଯୁଗରେ ଆମକୁ ପର୍ଯ୍ୟାପ୍ତ ଅବସର ହିଁ ମିଳୁ ନାହିଁ । ସମସ୍ତେ କହୁଚନ୍ତି ଯୁଗ ଅନୁସାରେ ସାଜିବାକୁ, ବରାଦ ଅନୁସାରେ ଭେକ ବଦଳାଇବାକୁ । ସେଥିପାଇଁ ନୂଆ ଫେଶନ, ନୂଆ ଭାଷା ଓ ନୂଆ ଟେକ୍‌ନିକ୍ ବାହାରିବାରେ ଲାଗିଚି । କିନ୍ତୁ ଆପଣାର ଅନ୍ତରଙ୍ଗତମ କଥା କହିବାଲାଗି ଆମ ଭାଷା କ୍ରମେ ବଡ଼ ଦରିଦ୍ର ହୋଇପଡ଼ୁଚି । ଆପଣାର ଅନ୍ତରଙ୍ଗତମ କଥାକୁ ନେଇ ଅନ୍ୟଆଗରେ କହିବାଲାଗି ଆମକୁ ସମ୍ଭବତଃ କ୍ରମେ ଲାଜ ବି ମାଡ଼ିଲାଣି । ଏବେ Science ଓ Experience ଉପରେ ଜୋର ନ ଦିଆଯାଇ Facts ଉପରେ ଜୋର ଦିଆଯାଉଚି । Facts ଦ୍ୱାରା ପ୍ରମାଣିତ ଆପାତ ସତ୍ୟର ବୋଝରେ ଅନ୍ତରର ଓ ଅନ୍ତର୍ଯାତ୍ରାର ସତ୍ୟଗୁଡ଼ାକ କୋଉ ତଳେ ଯାଇ ଚାପା ପଡ଼ିଯାଉଚି ।

ଇଂରାଜୀ ସାହିତ୍ୟର ରୋମାଣ୍ଟିକ୍ ଯୁଗରେ କବି କୀଟ୍‌ସ୍ ସଂସାର ଓ ସନ୍ତାପ କହିଲେ ଆର୍ତ୍ତ ମଣିଷଙ୍କର ବିଳାପକୁ ହିଁ ବୁଝୁଥିଲେ : 'Here, where men sit and hear each other groan !' ଆପଣାର ଚାରିଆଡ଼କୁ ଚାହିଁ ସେ କ୍ଳାନ୍ତି, ଜ୍ୱର ଓ ବିରାଗ (Weariness, fever and the fret) ବ୍ୟତୀତ ସତେଯେପରି ଆଉ କିଛିହେଲେ ଦେଖିପାରୁ ନ ଥିଲେ । ମୋର ଏହି ଡାଏରୀ ଭିତରେ କେତେକେତେ ଯନ୍ତ୍ରଣା ଓ କାନ୍ଦଣାର କାହାଣୀ ଗୁରାଇତୁରାଇ ହୋଇ ରହିଲାପରି ରହିଚି । କିନ୍ତୁ ସେଗୁଡ଼ାକୁ ଅନ୍ୟକୁ ଶୁଣାଇ ମୁଁ ସମସ୍ତଙ୍କ ଆଗରେ

ବସି ବାହୁନିବାକୁ ଚାହୁଁନାହିଁ କି ସଂସାରରେ କୌଣସିପ୍ରକାର ଶାନ୍ତି ପ୍ରଚାର କରିବାକୁ ଚାହୁଁନାହିଁ । ଶାନ୍ତି, ଜ୍ୱର ଓ ବିରାଗର ସଂକ୍ରମଣ ଲାଗି ଯେଉଁପରି ଜୀବାଣୁ ଦରକାର, ମୋ' ଜୀବନର ପ୍ରୟୋଗଶାଳାରେ ମୁଁ ଏପର୍ଯ୍ୟନ୍ତ ସେଗୁଡ଼ିକର କୌଣସି culture କରିନାହିଁ । ମୋର ଦୃଷ୍ଟି ରୋହିତର ଦୃଷ୍ଟି । 'ରୋହିତ' ଶବ୍ଦଟି ସୂର୍ଯ୍ୟର ସମବାଚୀ । 'ଐତରେୟ ବ୍ରାହ୍ମଣ'ରେ ରୋହିତର ଉପାଖ୍ୟାନ ଅଛି । ଦେବତା ପାଖରେ କରିଥିବା ଏକ ଶପଥ ଅନୁସାରେ ରୋହିତର ବାପା ରୋହିତକୁ ବଳି ଦେବାକୁ ବାଧ୍ୟ ହେଉଥିଲେ । କିନ୍ତୁ ଅମାନିଆ ରୋହିତ ଘର ଛାଡ଼ି ପଳାଇଲା । ସ୍ୱୟଂ ଇନ୍ଦ୍ର ବ୍ରାହ୍ମଣର ବେଶ ଧରି ତାକୁ 'ଚରୈବେତି' ମନ୍ତ୍ରଦ୍ୱାରା ବର୍ଷ ବର୍ଷ ଧରି କେବଳ ଚାଲିବାକୁ ହିଁ ଉଦ୍‌ବୁଦ୍ଧ କରି ରଖିଥିଲେ ଓ ତାକୁ ଘରକୁ ଫେରିଯିବାରୁ ନିବର୍ତ୍ତାଇ ରଖିଥିଲେ । 'ପ୍ରତିଦିନ ବିଚରଣ କରି ମଧ୍ୟ ଏହି ସୂର୍ଯ୍ୟ ଯେପରି ପରିଶ୍ରାନ୍ତ ହୋଇପଡ଼ୁ ନାହିଁ, ତୁ ମଧ୍ୟ ସେମିତି ଅପରିଶ୍ରାନ୍ତ ଭାବରେ ଚାଲିବାରେ ଲାଗିଥା'—ଏହି ଉଦ୍‌ବୋଧନମନ୍ତ୍ର ରୋହିତକୁ ସତତ ଆଗେଇନେଇ ଯାଉଥିଲା । ଏହି ଚରୈବେତି ମନ୍ତ୍ର ଭାରତରେ ଲେଖାହୋଇଛି । କିନ୍ତୁ ଯଥାର୍ଥ ସାହିତ୍ୟ ପରି ଏହା ହେଉଛି ସବୁ ଯୁଗରେ ସବୁ ମଣିଷର ମନ୍ତ୍ର । ଆପଣା ଦରଭୂମିର ସୀମାଗୁଡ଼ାକ ଭିତରେ ରହି ବଳି ପଡ଼ିବାକୁ ଯିଏ ଅସ୍ୱୀକାର କରିବ, ତାକୁ ଚରୈବେତିର ମନ୍ତ୍ରଦୀକ୍ଷା ଗ୍ରହଣ କରିବାକୁ ହେବ, ତାକୁ ରୋହିତ ପରି ଆପଣାର ଅନ୍ତର୍ଯାତ୍ରାରେ ବାହାରି ଯିବାକୁ ହେବ । ସେଥିଲାଗି ଇଏ ମୋ' ଡାଏରୀ ନୁହେଁ, ଇଏ ହେଉଛି ମୋତେ ନିମିତ୍ତ କରି ମୋ'ଭିତରେ ବିଚରଣ କରୁଥିବା ରୋହିତର ଡାଏରୀ । ରୋହିତର ବାଟ ଚାଲିବା ବନ୍ଦ ହେବ ନାହିଁ କି ଏହି ଡାଏରୀ ଲେଖିବା ମଧ୍ୟ ବନ୍ଦ ହେବ ନାହିଁ ।

O ye hopes ! that stir within me !
Health comes with you from above !

God is with me : God is in me !
I cannot die : for life is love !

—Samuel Taylor Coleridge.

କଟକ
ପଣାସଂକ୍ରାନ୍ତି, ୧୯୬୮

—ଚିତ୍ତରଞ୍ଜନ ଦାସ

# ରେବ୍ହଉର ଡାଏରୀ

୭ । ୧୧ । ୪୨

ଆଜି ମୋର ଜନ୍ମଦିନ । ମୋ'ର ଜୀବନପଥରେ ମୁଁ ଆଜି ଊଣେଇଶିଟି ବର୍ଷ ବିତାଇ ଆସିଲି । ଇଂରେଜୀ ଭାଷାରେ କହିଲେ I have crossed the teens of my life, ଅର୍ଥାତ୍ ମୋ'ର ବାଲ୍ୟଚପଳତାର ଦିନଗୁଡ଼ିକ ଆଜିଠାରୁ ସରିଗଲା । ତେରବର୍ଷଠାରୁ ଊଣେଇଶି ବର୍ଷ ପର୍ଯ୍ୟନ୍ତ ମନୁଷ୍ୟର ଚିନ୍ତାଧାରା, ମନର ଗତି ଓ ଭାବର ପ୍ରକୃତି ସବୁବେଳେ ତା'ରି ନିଜ ଲଗାମ ଭିତରେ ନ ଥାଏ । ଯୌବନରେ ପଦାର୍ପଣ କରି ତାକୁ ଜଗତଯାକ ସବୁଜ ଓ ସରସ ଦେଖାଯାଏ । ସେ ଭାବେ, ଜୀବନଟା ଏହିପରି ଚିରସବୁଜ, ଜୀବନଟା ଏହିପରି ଚିରବସନ୍ତ, ଏହିପରି ଚିରସ୍ୱପ୍ନମୟ । ଏହିପରି ମନ୍ତ୍ରମୁଗ୍ଧ ଭାବରେ ଜୀବନର ସମସ୍ତ ଶକ୍ତି ବିନିଯୋଗ କରି ସେ ଜୀବନକୁ ସରସ କରିବାକୁ ପ୍ରୟାସୀ ହୁଏ । କୌଣସି ପ୍ରତିବନ୍ଧକ ବା ଗୁରୁଜନମାନଙ୍କର କୌଣସି ଉପଦେଶବାଣୀ ତାକୁ ଅଟକାଇ ପାରେନାହିଁ । କୌଣସି ଶକ୍ତି ତା' ଜୀବନର ଏହି ସ୍ୱପ୍ନମୟ ଉତ୍ସର ପ୍ରବାହକୁ ବନ୍ଧ କରିପାରେ ନାହିଁ । ସେ ସ୍ୱପ୍ନ ଦେଖେ, ସୌନ୍ଦର୍ଯ୍ୟର ପୂଜା କରେ, ମୂର୍ତ୍ତିମୟୀର ଉପାସନା କରେ । ପୃଥିବୀର ସୌନ୍ଦର୍ଯ୍ୟ-ବଜାରରେ, ଯୌବନର ଦାଣ୍ଡରେ ସେ ଆପଣାକୁ ବିକ୍ରୀ କରିଦିଏ । ସେ ସବୁ ଭୁଲିଯିବାକୁ ଇଚ୍ଛାକରେ,—ବିବେକ, ସଂଯମ, ଧୈର୍ଯ୍ୟ, ସବୁ । ଜଗତ ଓ ବନ୍ଧୁସମାଜ ତାକୁ ଗୋଟାଏ ଗୋଟାଏ ସୁଧାଭାଣ୍ଡ ପରି ପ୍ରତୀତ ହୁଅନ୍ତି । ଆପଣାର ସବୁ ଉତ୍ସାହ ଲଗାଇ ସେ ଯନ୍ତ୍ରବତ୍ ସେହି ସୁଧାଭାଣ୍ଡରୁ ସୁଧା ସଂଗ୍ରହ କରିବାକୁ ଲାଗେ । ମାତ୍ର ଊଣେଇଶି ବର୍ଷ ପୂରିଗଲା ପରେ ସେହି ସ୍ୱପ୍ନ କ୍ରମେ ଭାଙ୍ଗିଭାଙ୍ଗି ଯାଏ । ଜୀବନଟା କେବଳ ସ୍ୱପ୍ନ ବା କେବଳ ଚିରବସନ୍ତ ନୁହେଁ ବୋଲି ମଣିଷ ଅନୁଭବ କରିବାକୁ ଆରମ୍ଭ କରେ । ଜୀବନକୁ ସେ ଗୋଟାଏ ଦାୟିତ୍ୱ, ଉଦ୍ଦେଶ୍ୟସାଧନର ଏକ ଉପକରଣ ରୂପେ ଗ୍ରହଣ କରି ଶିଖେ ।

ଜୀବନ କର୍ମମୟ ବିଶେ । ଏହି ଜୀବନରେ ଦୁର୍ଗମ ପଥ ଅନେକ ଅଛି, ଜୀବନପଥର ପ୍ରତିବନ୍ଧକ ହୋଇ କେତେକେତେ ସାହାରାର ସିକତାସ୍ତୂପ ଓ କେତେକେତେ ରୂଦ୍ରମୂର୍ତ୍ତି ବିସୁଭିଅସ୍ ଠିଆହୋଇ ରହିଚି । ଜୀବନ ବସନ୍ତର ମୁକୁଳ ନୁହେଁ, ଜୀବନ ନିଦାଘ, ଜୀବନ କର୍ମମୟ, ଜୀବନ ଦାୟିତ୍ୱପୂର୍ଣ୍ଣ । ମୋର ଆଜି ଏହି ସତ୍ୟଟିର ମର୍ମ ଉପଲବ୍ଧି କରିବାର ସମୟ ଆସି ପହଞ୍ଚିଚି । ସୂର୍ଯ୍ୟମୁଖୀ ଫୁଲ ଯେପରି ସୂର୍ଯ୍ୟର ଗତିପଥକୁ ନିରୀକ୍ଷଣ କରି ସମୟ ଗଣୁଥାଏ, ସେହିପରି ମୁଁ ପ୍ରତ୍ୟେକଦିନ ସୂର୍ଯ୍ୟର ଗତିକୁ ଗଣିଗଣି ଉଣେଇଶିଟି ବର୍ଷ କଟାଇ ଆସିଲିଣି । ଦୀର୍ଘ ଛଅବର୍ଷ ହେଲା ମୁଁ ଗୋଟାଏ ସ୍ୱପ୍ନର ଆବେଶଭିତରେ ରହିଥିଲି । ଆଜି ଏହି ସ୍ୱପ୍ନ ଭାଙ୍ଗିବାକୁ ପଡ଼ିବ । ଆଜି ମୋତେ ସମଗ୍ର ଜଗତ ଉପରକୁ ଦୃଷ୍ଟିପାତ କରିବାକୁ ହେବ, ଜୀବନର ଲକ୍ଷ୍ୟଉପରେ ନିବିଡ଼ ଧ୍ୟାନ ରଖିବାକୁ ପଡ଼ିବ । ଯେଉଁ ଲକ୍ଷ୍ୟକୁ ବକ୍ଷରେ ଧରି ମୁଁ ଜୀବନର ଗଠନ କରୁଚି ସେହି ଲକ୍ଷ୍ୟ ଉପରେ ହିଁ ଧ୍ୟାନ ରଖିବାକୁ ପଡ଼ିବ । ସେହି ଲକ୍ଷ୍ୟ ଦିଗରେ ଅଗ୍ରସର ହେବାଲାଗି ଯାହା ଦରକାର, ମୋତେ ତାହା କରିବାକୁ ହେବ ।

୧୬ । ୩ । ୪୩

ଏହି ଯେ ଲିପି ମୁଁ ଏଠାରେ ଲେଖିବାକୁ ଯାଉଚି, ଯେଉଁସବୁ ଭବକୁ ଭାଷା ଦେଇ ଡାଏରୀର ଅଙ୍ଗ ପୂରଣ କରିବାର ପ୍ରୟାସ କରିବାକୁ ଯାଉଚି, ତାହା କେବଳ ଗୋଟାଏ ଦିନର ଅନୁଭୂତି ବା ଇତିହାସ ନୁହେଁ । ଏହା ହେଉଚି ଗତ ଦୀର୍ଘ ପନ୍ଦର ଦିନର ଏକ ନୂତନ ଉଚ୍ଛ୍ୱାସର ଭାବଧାରା, ପ୍ରତ୍ୟେକ ମୁହୂର୍ତ୍ତରେ ମୋ' ଅନ୍ତରର ପ୍ରତି ଶିରାରେ ଜଡ଼ି ରହିଥିଲା । ଏହା ମୋ' ଜୀବନର ଗୋଟାଏ phase; ଏପରି ଏକ phase ବା ଅଧ୍ୟାୟ, ଯାହାକି ମୋ' ଜୀବନର ଗତିକୁ ବଦଳାଇ ଦେଇଚି । ଜୀବନରେ ଥିଲି କଣ ହୋଇଚି କଣ, ଏକଥା ଯେତେବେଳେ ଚିନ୍ତା କରୁଚି, ସେତେବେଳେ ଯାଇ ମୁଁ ଏହି ଅଧ୍ୟାୟଟିର ଗୁରୁତ୍ୱ ଉପଲବ୍ଧି କରିପାରୁଚି । ଏଇ କେତୋଟି ଦିନ ମୋର ଜୀବନରେ ହିମାଳୟ ପରି ଏକ ସନ୍ଦେହର ମୀମାଂସା କରିଦେଲା, ମୋର ଆଖି ଆଗରୁ ଅନେକ କୁହେଳିକା ପୋଛିନେଇ ଦୁନିଆ ବିଷୟରେ ମୋତେ ଏକ ସ୍ୱଷ୍ଟତର ଧାରଣା ଦେଇଗଲା । ହଁ, ମଣିଷ ତା' ସମାଜଭିତରୁ ଖାଦ୍ୟ ସଂଗ୍ରହ କରେ, ଏହି ସମାଜର ବିସ୍ତୃତ ପରିସୀମା ଭିତରେ ଦିନଯାପନ

କଲ୍ଲକଲ୍ଲ ମଣିଷ ତା'ର ଦାୟିତ୍ୱ ଓ କର୍ତ୍ତବ୍ୟମାନ ଶିକ୍ଷା କରେ । ସମାଜଭିତରେ ହିଁ ସେ ନିଜର ବିକାଶ ସାଧନ କରେ । ସମାଜ ନ ଥିଲେ ମଣିଷର ବିକାଶ ହୋଇ ନ ଥାନ୍ତା, ସେ ପଶୁଠାରୁ କୌଣସି ଗୁଣରେ ଉଚ୍ଚତର ବୋଲି ବିବେଚିତ ହେଉ ନ ଥାନ୍ତା । ଜନ୍ମ ହେବାବେଳେ ମଣିଷଠାରେ ସୃଜନଶକ୍ତି ଓ ସଂଗଠନ-କ୍ଷମତାର ଅଭାବ ଥାଏ, କାରଣ ସେ ନିଜେ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନ ଥାଏ, ଏବଂ କୌଣସି ଅପୂର୍ଣ୍ଣ ବ୍ୟକ୍ତି କୌଣସି ପ୍ରକାରର ସୃଜନଶକ୍ତି ଲାଭ କରି ପାରେ ନାହିଁ । ମଣିଷର ସଂଜ୍ଞା ପାଇବାକୁ ମଣିଷକୁ ପ୍ରଥମେ ପରିପକ୍ୱ ହେବାକୁ ପଡ଼େ । ତେଣୁ ସମାଜରୁ ସାର ସଂଗ୍ରହ କରି ହିଁ ଶିଶୁ ବଢ଼ିବାରେ ଲାଗେ । ଏହି ସମାଜ ତାକୁ ଆପଣାର ଭାବ ବ୍ୟକ୍ତ କରିବାକୁ ଶିଖାଏ, ଏହି ସମାଜ ତାକୁ ଭଲ ପାଇବାକୁ, ଗୀତ ଗାଇବାକୁ ଓ ସମ୍ପର୍କ ସ୍ଥାପନ କରି ସୁଖସଂସାରର କଳ୍ପନା କରିବାକୁ ଶିଖାଏ । ଏହି ସମାଜ ମଣିଷକୁ ସବୁ ଦିଏ,—ସାମାଜିକତା, ପ୍ରେମ, ଭ୍ରାତୃଭାବ ଏବଂ ସହାନୁଭୂତି ଗୁଣ ସବୁ ଦିଏ । ଏହି ସମାଜରୁ ସାର ସଂଗ୍ରହ କରି ନିଃସହାୟ ଶିଶୁ ମଣିଷ ହୁଏ, ନିଜଗୋଡ଼ରେ ଠିଆ ହେବାର ଚେଷ୍ଟା କରେ । ଜଣେ ମଣିଷ ହିସାବରେ ମୁଁ ମଧ୍ୟ ଏହି ସମାଜରୁ ଶିକ୍ଷା କରି, ସାର ନେଇ ମୋର ଯାହାକିଛି ହାସଲ କରିଚି । ମୁଁ ଆଜିପର୍ଯ୍ୟନ୍ତ ଯେତିକି ସୃଜନଶକ୍ତି ଅର୍ଜନ କରିଚି, ତାହା କେବଳ ଏହି ସମାଜର ଅଧ୍ୟୟନ ଓ ଅନୁଭବ କରି । ଯେତେବେଳେ ଏହି ସମାଜ ତାଡ଼ନା ଦେଇଚି, ସେତେବେଳେ ମୁଁ ସହନଶୀଳତାର ଅଭ୍ୟାସ କରି ଶିଖିଚି । ସମାଜ ଯେତେ-ବେଳେ ମୋତେ କୋଳରେ ନେଇ ସ୍ଥାନ ଦେଇଚି, ମୋର ହୃଦୟ ଭିତରେ ସେତେବେଳେ ଉର୍ବର ପ୍ରେମଭାବ ଓ ଭ୍ରାତୃଭାବର ସୃଷ୍ଟି ହୋଇଚି । ଆଜିପର୍ଯ୍ୟନ୍ତ ମୁଁ ଯାହାସବୁ ହାସଲ କରିଚି, ଗୋଟିଏ ଦୃଷ୍ଟିରୁ ଦେଖିଲେ ତାହା କଦାପି ମୋ' ନିଜର ଜିନିଷ ନୁହେଁ । ଏହି ସବୁଥିରେ ସମାଜର, ପରିସ୍ଥିତିର ବା ପରିବେଷ୍ଟନୀର ସ୍ପର୍ଶ ଲାଗିଚି । କାରଣ ଜନ୍ମ ସମୟରେ ମୁଁ ମଧ୍ୟ ଅନ୍ୟ ସଭିଙ୍କ ପରି ସହାୟ-ହୀନ ଓ ଅସମର୍ଥ ଥିଲି । ତେଣୁ ମୋର ଯାହା, ତାହା କେବଳ ମୋର ନୁହେ । ଏଥିରେ ସମାଜର ଏକ ପ୍ରଧାନ ଭାଗ ରହିଚି, କାରଣ ସମାଜର ପୂର୍ଣ୍ଣ ପ୍ରଭାବ ଏଥିରେ ପଡ଼ିଚି । ସମାଜରେ ହିଁ ମଣିଷର ବିକାଶ ହୁଏ ଓ ଏହି ବିକାଶର ଏକ ନିର୍ଦ୍ଦିଷ୍ଟ ମାନକୁ ଆସିଗଲେ ମଣିଷ ଭିତରେ ଏକ ସୃଜନଶକ୍ତି ସ୍ୱତଃ ଜନ୍ମଲାଭ କରେ ।

ମାତ୍ର ମୁଁ ବର୍ତ୍ତମାନ ବନ୍ଦୀ । କାରାଗାରର ଗରିସୀମା ଭିତରେ ମୋ'ର ଜୀବନକ୍ଷେତ୍ର ସୀମାବଦ୍ଧ ହୋଇ ରହିଚି । ଆବଦ୍ଧ ପରିସୀମା ଭିତରେ ଜୀବନର ସମୁଚିତ ବିକାଶ ସମ୍ଭବ ନ ହେବା ଅତି ସ୍ୱାଭାବିକ । ମାତ୍ର ଏହି ଜେଲ୍‌ଭିତରେ ଯେ ମୋ'ର ଜୀବନରେ ଏଡ଼େବଡ଼ ଏକ ଅଧ୍ୟାୟର ବୟାନ ହୋଇଗଲା, ମୋ' ଜୀବନ ଉପରଦେଇ ଏତେବଡ଼ ଏକ ପରିବର୍ତ୍ତନର ଝାଉଆ ବହିଗଲା, ସାତଦିନ କାଳ ମୋତେ କେବଳ ସେହି ଚିନ୍ତାରେ ଅଭିନିବିଷ୍ଟ କରି ରଖିଲା, ଏହା ସମ୍ଭବ ହେଲା କିପରି ? ଆବଦ୍ଧତା ଭିତରେ ବିସ୍ତାର କିପରି ସମ୍ଭବ ହେଲା ?

ଏହାର ଉତ୍ତର ଖୋଜିବାକୁ ଯାଇ ମୁଁ ଭାବୁଚି,–ବିଜନତାରେ ହିଁ ମଣିଷ ଭାବେ । ସମାଜ ଭିତରେ ବଢ଼ି, ବିସ୍ତୃତି ଭିତରୁ ସାର ସଂଗ୍ରହ କରି ବିଜନତାରେ ହିଁ ସେ ସେହିସବୁ ନୂତନ ଭାବର ରୋମନ୍ଥନ କରେ । ଏହାରି ଦ୍ୱାରା ହିଁ ତା'ର ଭଣ୍ଡାର ବଢ଼ି ବଢ଼ି ଯାଏ । ତେଣୁ ସାମାଜିକ ସଂଚୟ-ସାମଗ୍ରୀକୁ ନିଜର ସମ୍ପଦରେ ପରିଣତ କରିବାକୁ ହେଲେ ଜନତାର ମଧ୍ୟ ଆବଶ୍ୟକତା ରହିଚି । ଜେଲ୍ ମଧ୍ୟ ସେହିପରି ଏକ ବିଜନତା । ଏଠାରେ ବାହାରୁ ଗ୍ରହଣ କରିଥିବା ଭାବର ରୋମନ୍ଥନ ହୁଏ ଏବଂ ଏହାରି ଦ୍ୱାରା ହିଁ ବିକାଶ ସମ୍ଭବ ହୁଏ । ବାହାରେ ଥିଲି, ବିସ୍ତୃତି ଭିତରେ ଗୀତ ଗାଇ, ମତ୍ତ ହୋଇ ମୁଁ ବୁଲୁଥିଲି । ଆନନ୍ଦରେ ସମୟ କଟାଉଥିଲି, କର୍ମମୟ ସମୟର ପୂର୍ଣ୍ଣ ବିନିଯୋଗ କରି ସନ୍ତୋଷ ଲାଭ କରୁଥିଲି । ଜୀବନରେ ବନ୍ଧୁ କରୁଥିଲି, ବନ୍ଧୁ ପାଖରେ ଆପଣାକୁ ସମର୍ପି ଦେଉଥିଲି । ତା'ପରେ ଏହି ପରିବର୍ତ୍ତନ । ଜୀବନ ସୀମାବଦ୍ଧ । ଏଠି ସେ ବିସ୍ତୃତ ପୃଥିବୀ ନାହିଁ, ଗୋଟାଏ ମୋଟା ଇଟାପାଚେରୀ ସେହି ବିସ୍ତୃତିକୁ ମୋର ଚକ୍ଷୁର ଅନ୍ତରାଳରେ ନେଇ ରଖିଚି । ଏଠି ବିସ୍ତୃତ ଆକାଶ ନାହିଁ, ଏହି ଜେଲ୍–ଆକାଶର ବାହାରେ ଆହୁରି କେତେ ତାରା ଯେ ରାତ୍ରିର ଅନ୍ଧାର ଭିତରୁ ଜକ୍ ଜକ୍ କରୁଥିବେ, ମୁଁ ସେକଥା କଳ୍ପନା କରି ପାରୁନାହିଁ । ଦିଗ୍‌ବଳୟ ଯେ କେଉଁଠି, ତାହା ମୋର କଳ୍ପନାତୀତ । ସେହି ଦିଗ୍‌ବଳୟକୁ ଉଦ୍‌ଭାସିତ କରି ପ୍ରତିଦିନ ସୂର୍ଯ୍ୟ ଉଠୁଥିବ । ଅସ୍ତରତ ସୂର୍ଯ୍ୟର ସେଇ ଅପୂର୍ବ କଳ୍ପନା କ୍ରମେ ମୁଁ ଭୁଲି ଭୁଲି ଯାଉଚି । ତଥାପି ବାହାରେ ମୁଁ ଯାହା ଦେଖୁଥିଲି, ଯାହା ଉପଭୋଗ କରୁଥିଲି, ସେସବୁକୁ ମୁଁ ମୋର ଭାବଗତ ଜୀବନରେ ବହନ କରି ଗ୍ଭଲିଚି । ବର୍ତ୍ତମାନ ରୋମନ୍ଥନର ସମୟ ।

୧୩ । ୪ । ୪୩

ଆଜି ଜାତୀୟ ସପ୍ତାହର ଶେଷ ଦିବସ । ଆଜିଠାରୁ ଚବିଶବର୍ଷ ପୂର୍ବେ ୧୯୧୯ ମସିହା ଏପ୍ରିଲ ୧୩ ତାରିଖ ଦିନ ଜାଲିଓ୍ୱାନ୍‌ବାଲାବାଗ୍ ଠାରେ ଜାତିର ରକ୍ତଶ୍ରାଦ୍ଧ ହୋଇଥିଲା । ସେଦିନ ସରକାରୀ ରାଉଲଟ ଆଇନ୍‌ର ପ୍ରତିବାଦ କରୁଥିବାବେଳେ ସରକାରୀ ଫଉଜ ଗୁଳି ଚଳାଇଲେ । ଯାହାଫଳରେ କି ପ୍ରାୟ ପାଞ୍ଚଶହ ମଣିଷଙ୍କୁ ଜୀବନ ଦେବାକୁ ପଡ଼ିଥିଲା । ସେହି ରକ୍ତାକ୍ତ ସ୍ମୃତିର ପ୍ରତିବିମ୍ବକୁ ଆମର ରାଜନୀତିକ ଜୀବନ ଉପରେ ପ୍ରତିବିମ୍ବିତ କରିବା ଲାଗି ଜାତୀୟ ସପ୍ତାହର ସୃଷ୍ଟି । ଏହି ପୁଣ୍ୟମୟ ଦିନଟିର ଶାନ୍ତ ଆକାଶତଳେ କ୍ଲାନ୍ତ ଜାତି ଯେତେବେଳେ ପୁନର୍ବାର ସାହସ ସଂଗ୍ରହ କରି ଜାତୀୟ ପତାକାତଳେ ଠିଆହୋଇ ମୁକ୍ତ ଚିତ୍ତରେ ବନ୍ଦେମାତରମ୍ ଗାନ କରେ, ସେତେ-ବେଳେ ତା'ର ଶିରାପ୍ରଶିରା ଦେଇ ଏକ ନୂତନ ଭାବର ପ୍ରବାହ ନିର୍ଗତ ହୁଏ ଏବଂ ସେ ନୂତନ ସଙ୍କଳ୍ପର ସହିତ ଆପଣାର ଲକ୍ଷ୍ୟ ହାସଲ କରିବାକୁ ବାହାରିପଡ଼େ । ବାରବର୍ଷର ବାଜି ରାଉତ ଯେଉଁ ପଥର ଇଙ୍ଗିତ ଦେଇଚି, କରାଚୀର ହେମୁ କାଲାଣି ଯେଉଁ ପଥରେ ଯାଉଯାଉ ଫାଶୀଖୁଣ୍ଟରେ ଚଢ଼ିଚି, କୋରାପୁଟର ଲକ୍ଷ୍ମଣ ଯେଉଁ ପଥର ପଥିକ ହୋଇଚି, ଜାତି ମଧ୍ୟ ଆଜି ସେହିପଥରେ ଯିବାକୁ ଆହ୍ୱାନ ପାଉଚି ।

ଆମ ଜେଲରେ ମଧ୍ୟ ଏହି ଜାତୀୟ ସପ୍ତାହ ଯଥାବିଧି ଅନୁଷ୍ଠିତ ହୋଇଥିଲା । ପ୍ରତିଦିନ ସକାଳେ ବନ୍ଦେମାତରମ୍ ବୋଲାଯାଉଥିଲା । ଉପରଓକି ଗୋଟିଏ ଗୋଟିଏ ବିଷୟରେ ଜଣେ ଜଣେ ବକ୍ତା ଭାଷଣ ଦେଉଥିଲେ । ଏହାଦ୍ୱାରା ମୋ' ନିଜର ମଧ୍ୟ ଅନେକ ଉପକାର ହେଲା । ପ୍ରତିଦିନର ସଭାଲାଗି ମୁଁ ପ୍ରତିଦିନ ଗୋଟିଏ ଗୋଟିଏ ଗୀତ ରଚନା କରିପାରିଚି । ତା'ପରେ ଆଜି ସଭାରେ ମୋ'ର ଭାଷଣ ବି ଦେବାର ଥିଲା । ବିଷୟ ଥିଲା ହିନ୍ଦୁ ମୁସଲମାନ ଏକତା । ବଡ଼ ସନ୍ତୋଷଜନକ ଭାବରେ ମୁଁ ବିଷୟଟିକୁ ସଭାରେ ଉପସ୍ଥାପିତ କରି ପାରିଚି ବୋଲି ପରେ ବନ୍ଧୁମାନେ କହିଲେ । ଆଜି ବକ୍ତୃତା ଦେଲାବେଳେ ମୋତେ ପ୍ରକୃତରେ କୌଣସି ଭୟ ଲାଗୁ ନ ଥିଲା । ଏପରି ବକ୍ତୃତା ଦେବାର ସୁଯୋଗ ମୁଁ ଆଗରୁ କେବେ ପାଇ ନ ଥିଲି ।

ବକ୍ତୃତା ଦେବାର ଆରମ୍ଭରେ କମ୍ୟୁନିଷ୍ଟମାନଙ୍କୁ ଉଦ୍ଦେଶ୍ୟ କରି ମୁଁ କେତେ କଥା କହିଥିଲି । ଦୀର୍ଘ ସାତଦିନ ଧରି ଯେଉଁ ବନ୍ଦେମାତରମ୍ ଗାନ ଓ

ଆଲୋଚନାସଭା ହେଲା, ଯେଉଁଠିରେ ସେମାନେ ଆଦୌ ଭାଗ ନେଲେନାହିଁ । ଏଣେ ଆମେ ଆଲୋଚନା କରୁଥିବାବେଳେ, ଜାଲିଆନଓ୍ୱାଲାବାଗ୍‌ର ସ୍ମୃତିରୁ ପ୍ରେରଣା ଗ୍ରହଣ କରୁଥିବାବେଳେ ତେଣେ ସେମାନେ କୌଣସି ଏକୁଟିଆ ଘରେ ଆପଣାର ସ୍ୱତନ୍ତ୍ର ଆଲୋଚନା ଚଳାଇଥିଲେ । ଜାଣିଶୁଣି ସେମାନେ ଆମର ଏହି ସାମୂହିକ କାର୍ଯ୍ୟକ୍ରମରେ କୌଣସି ସହଯୋଗ କରିନାହାନ୍ତି । ଦୀର୍ଘ ସାତଦିନ ହେଲା ମୁଁ ଏହିକଥା ଲକ୍ଷ୍ୟ କରି ଆସୁଥିଲି । ଏକ ବିପ୍ଳବୀ ସଂସ୍ଥାର ରାଜନୀତି ଭିତରେ ଏହି ସଂକୀର୍ଣ୍ଣତା ଦେଖି ମୋ' ମନରେ ବଡ଼ ଦୁଃଖ ହେଉଥିଲା । ଆଜି ସେହି ଦୁଃଖଟାକୁ ହିଁ ପ୍ରକାଶ କରିଆସିଲି ।

କମ୍ୟୁନିଷ୍ଟ ଦଳର ନୀତି କଂଗ୍ରେସର ନୀତିଠାରୁ ଅବଶ୍ୟ ପୃଥକ୍ । କଂଗ୍ରେସର ଜାତୀୟ ଆନ୍ଦୋଳନରେ କମ୍ୟୁନିଷ୍ଟଙ୍କର ସମର୍ଥନ ନାହିଁ । ମାତ୍ର ତା' ବୋଲି ବନ୍ଦେମାତରମ୍ ଗାଇବାବେଳେ କଂଗ୍ରେସବାଲାଙ୍କ ସହିତ ଯୋଗଦେବା ବା ଜାତୀୟ ସପ୍ତାହର କାର୍ଯ୍ୟକ୍ରମରେ ଭାଗ ନ ନେବାର ପଛରେ ଏମାନଙ୍କର କି ଉଦ୍ଦେଶ୍ୟ ରହିଚି ? ରାଜନୀତିଟା କଣ ଏଡ଼େ ସଂକୀର୍ଣ୍ଣ ? ରାଜନୀତିର ପରିସୀମା ଭିତରେ ପ୍ରଶସ୍ତ ଓ ଉଦାର ମନୋଭାବ ଲାଗି କଣ ଲେଶମାତ୍ର ସ୍ଥାନ ନାହିଁ ? ମୁଁ ଭାବୁଚି ଯେ ଏପରି ବିଗ୍ରହ କରୁଥିବା ମଣିଷଙ୍କର ରାଜନୀତିକ ପରିପକ୍ୱତା ହିଁ ଆସିନାହିଁ । ସେମାନଙ୍କ ଭିତରେ ମାନବିକ ବିବେକବୁଦ୍ଧିର ବିକାଶ ହୋଇନାହିଁ । ମନେପଡ଼ୁଚି, ଗାନ୍ଧୀ ଓ ଭଗତ୍ ସିଂଙ୍କ ମଧ୍ୟରେ ବି ମତଭେଦ ରହିଥିଲା । ଭଗତ୍ ସିଂ ସନ୍ତ୍ରାସବାଦୀ ଥିଲେ । ମାତ୍ର ତାଙ୍କୁ ଯେତେବେଳେ ଫାଶୀ ହୁକୁମ ହେଲା, ସେତେବେଳେ ଗାନ୍ଧୀହିଁ ତାଙ୍କ ସାହସ ଓ ବୀରତ୍ୱର ସବୁଠାରୁ ବେଶୀ ପ୍ରଶଂସା କରିଥିଲେ । ତାଙ୍କର ଜୀବନ ବଞ୍ଚାଇବା ଲାଗି ଗାନ୍ଧୀ ସବୁଠାରୁ ଅଧିକ ଉଦ୍ୟମ କରିଥିଲେ । ଯେତେବେଳେ କରାଚିଠାରେ ତାଙ୍କୁ କଳାପତାକା ପ୍ରଦର୍ଶନ କରାଯାଇଥିଲା, ସେତେବେଳେ କଳାପତାକାର ହାରକୁ ଆପଣା ବେକରେ ଲମ୍ବାଇଦେଇ ସେ କହିଥିଲେ, 'ମୁଁ ପ୍ରକୃତରେ କଳାପତାକା ପାଇବାର ଯୋଗ୍ୟ, କାରଣ ମୁଁ ଜାତିର ବୀର ଯୋଦ୍ଧା ଭଗତ୍ ସିଂଙ୍କୁ ବଞ୍ଚାଇ ପାରିଲି ନାହିଁ ।'

୧୪ । ୪ । ୪୩

ବକ୍ତୃତା ସରିଲା, ସମସ୍ତେ କହିଲେ ଭଲ ହେଲା; ତଥାପି କେତେକ ଆକ୍ଷେପ ମଧ୍ୟ ଶୁଣିବାକୁ ମିଳିଲା । ମୋର ବକ୍ତୃତାରେ ମୁଁ ବୁଝାଇବାକୁ

ଚେଷ୍ଟା କରିଥିଲି ଯେ ଭାରତର ହିନ୍ଦୁ-ମୁସଲମାନ ସମସ୍ୟା ଆଦୌ ଏକ ବଡ଼ ସମସ୍ୟା ନୁହେଁ । ମାତ୍ର ବ୍ରିଟିଶ୍ ସରକାର ଓ ଯେଉଁମାନେ କ୍ଷମତା ପାଇବାକୁ ବ୍ୟାକୁଳ, ସେହିମାନେ ହିଁ ଦେଶଆଗରେ ଏହି ସମସ୍ୟାକୁ ବଡ଼ କରି ଥୋଉଚନ୍ତି । ଫଳତଃ ସମସ୍ୟାଟି ଦିନୁଁଦିନ ଅଧିକ ଜଟିଳ ହେବାରେ ଲାଗିଚି । ହିନ୍ଦୁ ଓ ମୁସଲମାନ ସାମ୍ପ୍ରଦାୟିକ ଭେଦଭାବ ପୋଷଣ କରି କ୍ଷମତା ଲାଗି ଝଗଡ଼ା କରୁଛନ୍ତି, ମାତ୍ର ତୃତୀୟ ପକ୍ଷ ମଝିରେ ରହି ଦୁହିଁଙ୍କର ମଜା ଦେଖୁଚନ୍ତି ଓ ସେମାନଙ୍କର ଶାସନକବଜାକୁ ଦୃଢ଼ତର କରିବାରେ ଲାଗିଚନ୍ତି । ତା' ନହୋଇଥିଲେ ଆଜି ଏହି ସମସ୍ୟା ଆଦୌ ଗୁରୁତର ହୋଇ ନ ଥାନ୍ତା । କାରଣ ଆମେ ଦେଖିବାକୁ ପାଇବା ଯେ ସହରର ସୀମା ପାର ହେଲେ ହିନ୍ଦୁ ଓ ମୁସଲମାନମାନଙ୍କୁ ପୃଥକ୍ କରି ଚିହ୍ନାଇ ଦେବାଭଳି କୌଣସି ଉପଲକ୍ଷଣ ନଥାଏ । ଅର୍ଥନୈତିକ ଶୋଷଣର ଗ୍ରପ ଦୁହିଁଙ୍କ ଉପରେ ସମାନଭାବରେ ପଡ଼େ । ଦୁହେଁ ଜମିଚଷ କରନ୍ତି, ମାତ୍ର ଏଣେ ଖାଇବାକୁ ପାଆନ୍ତି ନାହିଁ । ଅର୍ଦ୍ଧଲଗ୍ନ ଅବସ୍ଥାରେ ହାତ ପତାଇ ଦୁହେଁ ରାସ୍ତାରେ ବୁଲନ୍ତି । ଆଜି ଯେଉଁ ମୁସଲମାନ ନେତାମାନେ ମୁସଲିମ୍ ଲିଗ୍‌ର ଭାଷଣମଞ୍ଚରେ ମୁସଲମାନଙ୍କୁ କ୍ଷମତା ଦିଅ ବୋଲି ଚିତ୍କାର କରୁଚନ୍ତି, ଆପଣା ମୁସଲମାନ ପ୍ରଜାଙ୍କର ରକ୍ତ ଶୋଷଣ କଲାବେଳେ ସେମାନଙ୍କ ମନରେ କୌଣସି ଦୟା ଆସେନାହିଁ । ଅର୍ଥନୈତିକ ସମସ୍ୟା ସାମ୍ପ୍ରଦାୟିକ ସମସ୍ୟାଠାରୁ ନିଶ୍ଚୟ ବଡ଼ । ବିଶେଷତଃ ଭାରତପରି ଏକ ପରାଧୀନ ଦେଶରେ ମଣିଷ ନିଶ୍ଚୟ ଆଗ ପେଟର ଚିନ୍ତା କରିବ । ଅଭାବବେଳେ ଯିଏ ତାକୁ ମୁଠାଏ ଭାତ, ଟୋପାଏ ପାଣି, ଖଣ୍ଡେ ଛିଣ୍ଡାକନା ଓ ଖଣ୍ଡେ ଘର ଯୋଗାଇ ଦେଇପାରିଲା, ସେଇ ହେଉଚି ତାର ପ୍ରକୃତ ଭାଇ । ସେ ହିନ୍ଦୁ ହେଉ, ମୁସଲମାନ ହେଉ, ଶିଖ ହେଉ ବା ଯାହା ହେଉ, ଭାତ ଓ ଲୁଗା ହେଉଚି ଏଦେଶର ପ୍ରଥମ ସମସ୍ୟା । ଏଠି ସାମ୍ପ୍ରଦାୟିକ ସମସ୍ୟାକୁ ତାତ୍ପର୍ଯ୍ୟହୀନ ଓ ଅସାମୟିକ ବୋଲି କହିବାକୁ ହେବ । ଯେଉଁମାନେ ଆଜି ଏହି ଗୁରୁତ୍ୱହୀନ ସମସ୍ୟାକୁ ଗୁରୁତ୍ୱର ଛଦ୍ମବେଶ ପିନ୍ଧାଇ ଦେଶ ଆଗରେ ପୁଣି ଶତ୍ରୁ ଆଗରେ ଉପସ୍ଥାପିତ କରନ୍ତି, ସେମାନେ କ୍ଷମତାର ଲାଳସୀ ହୋଇ ଏପରି କରନ୍ତି । ସେମାନେ ଦେଶର ଅନେକ କ୍ଷତି କରୁଚନ୍ତି ।

୧୫ । ୪ । ୪୩

ମୁଁ କାହିଁକି ଏ ପୃଥିବୀକୁ ଆସିଚି ? ଗଛ, ଲତା, ପକ୍ଷୀ, ପଶୁ ସମସ୍ତେ ପୃଥିବୀକୁ ଆସୁଚନ୍ତି, ଏଇ ପୃଥିବୀର ସାର ନେଇ ସେମାନେ

ବଢ଼ୁଚନ୍ତି । ଏହି ମାଟିରୁ ଜନ୍ମ ହୋଇ ପରିଶେଷରେ ସମୟ ଆସିଲେ ସେମାନେ ଏଇ ମାଟିରେ ମିଶି ଯାଉଚନ୍ତି । ମୁଁ ମଧ୍ୟ ସେହି ମାଟିରୁ ଉତ୍ପନ୍ନ ହୋଇଚି । ମୋ' ଜୀବନର ଭବିଷ୍ୟତରେ ଏକ ଅଜ୍ଞାତ ସନ୍ଧ୍ୟାର ତମିସ୍ର କୋଳ ମୋତେ ଅପେକ୍ଷା କରି ରହିଚି, ଯେଉଁଦିନ ମୁଁ ଏହି ଜଗତରୁ ବିଦାୟ ହୋଇଯିବି । ସନ୍ଧ୍ୟାନଦୀର କୁଳୁକୁଳୁ କଳରବ ସହିତ ମୋର ଜୀବନର ଶେଷ ମୂର୍ଚ୍ଛନାଟି ମିଶିଯିବ । ତା'ପରେ ମୋ'ର ବୀଣାଟି ହଜିଯିବ, ମୋର ଜୀବନ ଉଡ଼ିଯିବ, ମୋର ବନ୍ଧନ ତୁଟିଯିବ । ମୋ' ଜୀବନର ଦରିଦ୍ର ଇତିହାସ ଅମୁଦ୍ରିତ ଭାବରେ ହିଁ ଲୁପ୍ତ ହୋଇଯିବ । ଖୁବ୍ ବେଶୀହେଲେ ହୁଏତ ବର୍ଷକ ପାଇଁ ମୋତେ କିଏ କେଉଁଠି ମନେ ପକାଇବେ । ବାପା ବୋଉ ଯଦି ବଞ୍ଚିଥିବେ, ତେବେ ସେମାନେ ନିଶ୍ଚୟ କିଛିଦିନ ପର୍ଯ୍ୟନ୍ତ ଝୁରିହେବେ । ମାତ୍ର ତା' ପରେ ସବୁ ଶୂନ୍‌ଶାନ୍ ହୋଇଯିବ । ଜୀବନପ୍ରଦୀପର ନିର୍ବାଣୋନ୍ମୁଖ ଶିଖା ଧପ୍ କରି ଲିଭିଯିବ । ତେବେ ଏଇଥିପାଇଁ କଣ ମୋର ସୃଷ୍ଟି ହୋଇଥିଲା ? ଏଇଥିପାଇଁ କଣ ମୁଁ ଏହି ଜଗତକୁ ଆସିଥିଲି ? ମୁଁ ଭାବେ, ଜନ୍ମ ହୋଇ, ଖାଲି ଖାଇପିଇ, ବଢ଼ି ଓ ଆମୋଦ କରି ଶେଷକୁ ମରିଯିବାକୁ କଣ ମୋର ଏହି ଅଭିନୟ ଚାଲିଚି ? ମଣିଷ କଣ ଖାଲି ଏଇଥିପାଇଁ ଏହି ସଂସାରକୁ ଆସିଥାଏ ? ଯେଉଁ ଶକ୍ତି ବା ଯେଉଁ ଦେବତା ଏତେ ଆୟାସ ଓ ଆଦରରେ ମଣିଷ ପିଣ୍ଡରେ ଜୀବନ୍ୟାସ ଦେଇ ତାକୁ ସଂସାରକୁ ପଠାଇଥାଏ, ସେ କଣ ତା'ର ଉଦ୍ଦେଶ୍ୟ ଏହିପରି ବ୍ୟର୍ଥ ହୋଇଯାଉ ବୋଲି କଦାପି ଚାହୁଁଥିବ ? ନା, ପ୍ରତ୍ୟେକ କାରିଗର ଚାହେ ଯେ ତା'ର ହାତତିଆରି ଜିନିଷଟି କିଛି ଭଲକାମରେ ଆସୁ । ଯିଏ ମଣିଷ ତିଆରି କରେ, ମଣିଷ ଏଠି କେବଳ ଖାଇପିଇ ଅୟସ କରି ଶେଷକୁ ଅଜଣା ଅଶୁଣା ଭାବରେ ସଂସାରରୁ ବିଦାୟ ନେଇ ଯାଉ ବୋଲି ସେ କଦାପି ଚାହେ ନାହିଁ । ଯଦି ସେ ଏକଥା ଚାହୁଁଥାଏ, ତେବେ ତା'ଠାରୁ ବଳି ବୋକା ଆଉ କେହି ନାହାନ୍ତି । କେହି ଆପଣାର ପରିଶ୍ରମକୁ କଦାପି ବ୍ୟର୍ଥ ହେବାକୁ ଦିଏ ନାହିଁ । ମାତ୍ର ଯିଏ ଏତେ ଜୀବ ସୃଷ୍ଟି କରିଚି, ଯିଏ ମଣିଷକୁ ହିତାହିତ ଜ୍ଞାନ ଦେଇଚି, ସିଏ କଣ ପ୍ରକୃତରେ ଏଡ଼େ ଉଦ୍ଦେଶ୍ୟହୀନ ହୋଇଥିବ ? ଏକ ମହତ ଉଦ୍ଦେଶ୍ୟରେ ହିଁ ମଣିଷର ସୃଷ୍ଟି ହୋଇଚି । ଅର୍ଥାତ୍ ମଣିଷର ଜୀବନ କଦାପି ଉଦ୍ଦେଶ୍ୟହୀନ ନୁହେଁ । ପ୍ରତ୍ୟେକ ମଣିଷ ଭିତରେ ନାନା ଗୁଣ ନିହିତ ହୋଇ ରହିଚି । ଖାଲି ଆମୋଦପ୍ରମୋଦ ବା ଖାଲି ନିଜର ଇଚ୍ଛାଗୁଡ଼ାକୁ

ଚରିତାର୍ଥ କରିବାକୁ ଜୀବନର ମାନଦଣ୍ଡ ବୋଲି ସ୍ଥାନ ଦଲେ ସେହି ଗୁଣଗୁଡ଼ିକର ବିକାଶ ହୋଇପାରେ ନାହିଁ । ମୋ' ଜୀବନରେ କଣ ଏହାହିଁ ଘଟିବ ? ମୋ' ଭିତରେ ଯେଉଁସବୁ ଗୁଣ ନିହିତ ହୋଇ ରହିଚି, ସେଗୁଡ଼ିକ କଣ ସତେ ନ ଫୁଟି ଝରିପଡ଼ିବ ? ମୋ' ଜୀବନର କାରିଗରର ସ୍ୱପ୍ନଗୁଡ଼ାକୁ କଣ ମୁଁ ଛାରଖାର କରିଦେବି ?

୧୭ । ୪ । ୪୩

ମୃତ୍ୟୁ ଗୋଟାଏ କିପରି ଜିନିଷ ? କୌଣସି ଜୀବନ୍ତ ଶରୀର ଏହାର କଳ୍ପନା କରି ପାରିବ ନାହିଁ । କାରଣ ଯେଉଁଠି ଜୀବନ ଅଛି, ସେଠି ମୃତ୍ୟୁ ନାହିଁ । ଯେଉଁଠି ମୃତ୍ୟୁ ଅଛି, ସେଠି ଜୀବନ ନାହିଁ । ତେଣୁ ମଣିଷର ଶରୀର ଭିତରେ ଜୀବନ ଥିବାପର୍ଯ୍ୟନ୍ତ ସେ ମୃତ୍ୟୁର ରୂପ ବିଷୟରେ କୌଣସି ସ୍ପଷ୍ଟ କଳ୍ପନା କରିପାରିବ ନାହିଁ ବା କୌଣସି ମୃତ ବ୍ୟକ୍ତି ଯେ କେବେ ଜୀବନର କଳ୍ପନା କରିପାରେ, ଏହାର ପ୍ରମାଣ କେହି ଦେଇ ପାରିବ ନାହିଁ । ତଥାପି ମରଜଗତର ପ୍ରାଣୀ ହିସାବରେ, ସ୍ରୁଜନଯନ୍ତ୍ରର ଏକ ମରଣଶୀଳ ଉତ୍ପନ୍ନଦ୍ରବ୍ୟ ହିସାବରେ ମଣିଷ ସଚରାଚର ମୃତ୍ୟୁ ବିଷୟରେ ବିଗ୍ଭର କରିଥାଏ । ମଣିଷ ଏହି ସଂସାରରେ ଖାଏ ପିଏ, ଏହି ସଂସାର ପାଣି ଓ ପବନ ପିଇ ସେ ବଢ଼େ । ସଂସାର ଭିତରେ ରହି ସେ ଆନନ୍ଦ କରେ, ଉଲ୍ଲାସ କରେ । ଏହି ଆନନ୍ଦ ଓ ଉଲ୍ଲାସ ଭିତରେ ହୁଏତ ବେଳେବେଳେ ସମୟ ଆସେ, ଯେତେବେଳେ କି ମଣିଷ ଭିତରେ ଆତ୍ମନିରୀକ୍ଷଣର ଚେତନା ଆସେ, ସେତେବେଳେ ସେ ପାରସ୍ପରିକ ସମ୍ବନ୍ଧ ଓ ପରିସ୍ଥିତି ବିଷୟରେ ଚିନ୍ତା କରିବସେ । ସେ ଭାବିବାକୁ ଲାଗେ, ମୁଁ କେଉଁଠାରୁ ଆସିଚି ? ମଣିଷର ପୁନର୍ଜନ୍ମ ହୁଏ ବୋଲି ଯେ ଅନେକେ କହନ୍ତି, ତେବେ ମୁଁ କାହାର ମୃତ୍ୟୁଶଯ୍ୟାରୁ ଜନ୍ମଲାଭ କରି ଏଠାକୁ ଆସିଚି ? ମୋ'ର ପୂର୍ବଜନ୍ମର ସମ୍ବନ୍ଧସୂତ୍ରମାନ କିପରି ଥିଲା ? ମୁଁ ଦେଖୁଚି, ଏହି ଜଗତରେ କୌଣସି ଜୀବ ଚିରଦିନ ବଞ୍ଚି ରହୁନାହିଁ । ସମୟର ଅଶେଷତାର ତୁଳନାରେ ମନୁଷ୍ୟର ଜୀବନକାଳ କେଡ଼େ ସାମାନ୍ୟ, ବିଶ୍ୱବ୍ରହ୍ମାଣ୍ଡର ଅନନ୍ତତା ଆଗରେ ଜଣେ ମଣିଷର ଜୀବନପଥ କେତେ ଅଳପ ? ତେବେ ମୁଁ ବି କଣ ଦିନେ ମରିଯିବି ? ତେବେ ଆଜି ଯେ ଏଇ ଗୌରବର୍ଣ୍ଣ, ଏଇ ମୁଖଶ୍ରୀ, ଏଇ ପରିପୁଷ୍ଟ ହୃଷ୍ଟପୁଷ୍ଟ-ଦରୋଳ, ଏହି ଯୌବନ ଓ ଏହି ଶୌର୍ଯ୍ୟ ବୀର୍ଯ୍ୟ ନେଇ ମୁଁ ଦମ୍ଭରେ ଓ ଆନନ୍ଦରେ ଜୀବନଯାତ୍ରା ନିର୍ବାହ କରୁଚି, ଦିନେ

କଣ ଏସବୁ ପରାଭୂତ ହୋଇ ପଡ଼ିରହିବ ? ଜୀବନର ଏହି ଜ୍ୟୋତି କଣ ଦିନେ ଲିଭିଯିବ ? ତେବେ ଏହି କ୍ଷଣସ୍ଥାୟୀ ସୁଖ ଓ ଉଲ୍ଲାସରେ ଆଉ କି ଆନନ୍ଦ ରହିଲା, ଏହି ଅସ୍ଥାୟୀ ତୃପ୍ତିରେ ଆଉ କି ରସ ରହିଲା ? ମନୁଷ୍ୟ ମନରେ ଏହିପରି ଏକ ଅନ୍ୱେଷଣର ସମୟ ଆସେ, ଯେତେବେଳେ ତା'ର ସ୍ୱପ୍ନ ଭାଙ୍ଗିଯାଏ । ଏହିପରି ଏକ ଅନ୍ୱେଷଣର ତାଡ଼ନାରେ ବୁଦ୍ଧଦେବ ଘର ଛାଡ଼ିଥିଲେ । ପ୍ରତ୍ୟେକ ମଣିଷର ଜୀବନରେ ଏହିପରି ମୁହୂର୍ତ୍ତ ଅବଶ୍ୟ ଆସିଥାଏ ।

୧୮ । ୪ । ୪୩

କାରାଜୀବନର ଆବଦ୍ଧ ପରିସର ଭିତରେ ମନଭିତରେ ନାନାପ୍ରକାର ଚିନ୍ତା ଆସି ସ୍ଥାନ ପାଉଚି । ଏହି ପାଚେରୀ ସେପାଖର ପୃଥିବୀରେ ଥିଲାବେଳେ ମନ ମୁକ୍ତ ରହିଥିଲା, ମୁକ୍ତ ଆକାଶର ରଙ୍ଗ ସହିତ ମୁଁ ମୋ' ମନର ଭାବନାକୁ ଅବାଧରେ ମିଶାଇଦେଇ ପାରୁଥିଲି । ମୁକ୍ତ ପବନର ଛନ୍ଦ ସହିତ ମୁଁ ଆପଣା ଜୀବନର ଛନ୍ଦକୁ ସଂଯୁକ୍ତ କରି ପାରୁଥିଲି, ମୁକ୍ତ ସାଗରର ଫେନିଳ ଲହରୀ ପରି ମୋର ଭାବନା ସୀମାହୀନର ସୀମା ସ୍ପର୍ଶ କରିବାଲାଗି ଉଚ୍ଛୁଳି ଯାଇ ପାରୁଥିଲା । ଆମ ଗାଆଁ ନଦୀର ନିର୍ଜନ ବୁକୁଭିତରେ ବସି ସନ୍ଧ୍ୟାରାଗର ପରାଗକୁ ଅଙ୍ଗରେ ବୋଳିହୋଇ ସନ୍ଧ୍ୟାକାଶର ନୀରବ ମନ୍ତ୍ର ମାଧୁରୀକୁ ଉପଭୋଗ କରୁକରୁ ମୁଁ ନିଜକୁ ବଡ଼ ସହଜରେ ଉନ୍ମୁକ୍ତ କରିଦେଇ ପାରୁଥିଲି । ମୁକ୍ତ ପୃଥିବୀରେ ମୁକ୍ତ ମଣିଷର ହସ ଖେଳ ନାଚ ଦେଖି ତାହାରି ଭିତରେ ଆପଣାକୁ ଛନ୍ଦି ଦେଉଥିଲି । ଆଜି ମୁଁ ବନ୍ଦୀ । ଏହି ସୀମାବଦ୍ଧ ପରିସର ଭିତରେ ଆବଦ୍ଧ ହୋଇ ରହି ମୋର ହୃଦୟ ଆକୁଳ ହୋଇ ପଡ଼ିଚି । ହୁଏତ ସେଇଥି-ପାଇଁ ମୁଁ ମନଭିତରେ ମୁକ୍ତ ଜଗତର, ସେପାଖର ଆଲୁଅ ଓ ପବନ ବିଷୟରେ ଅଧିକ ଚିନ୍ତା କରିବାରେ ଅଭ୍ୟସ୍ତ ହୋଇପଡ଼ିଚି । ଅନ୍ଧକାର ଭିତରେ ମଣିଷ ଆଲୋକର ଚିନ୍ତା କରେ, ବିଚ୍ଛେଦସନ୍ତପ୍ତ ବିରହୀ ମିଳନର ଉଜ୍ଜ୍ୱଳ କଳ୍ପନା କରିବାରେ ଲାଗିଥାଏ, ଦୁଃଖବେଳେ ହିଁ ବନ୍ଧୁ ବନ୍ଧୁର ସାହଚର୍ଯ୍ୟକୁ ଅଧିକ ଅନୁଭବ କରିପାରେ ।

୨୦ । ୪ । ୪୩

ପିଲାଦିନେ ଖୁବ୍ ଈଶ୍ବରଭକ୍ତ ଥିଲି । ତା' ପରେ ନାସ୍ତିକ ହେଲି । ମନେଅଛି, ପିଲାଦିନେ ମୋର ଧର୍ମଭାବ ଓ ଈଶ୍ୱରଭକ୍ତି ଦେଖି ଘରେ ସମସ୍ତେ ମୋତେ ବାବାଜୀ ହୋଇଯିବାକୁ କହୁଥିଲେ । ଏପରିକି ଖୋର୍ଦ୍ଧାର ଜଣେ

ବାବାଜୀ ମୋତେ ଚେଲା କରିନେବାକୁ ନାନାପ୍ରକାର ଦଶାଭୟ ପ୍ରଭୃତି ଦେଖାଇବାରୁ ଥରେ ଘରଲୋକେ ସେଥିରେ ପ୍ରାୟ ରାଜି ମଧ୍ୟ ହୋଇ-ଯାଇଥିଲେ । ସିଏ ଗୋଟାଏ ପ୍ରକାରର ସ୍ରୋତ ଥିଲା । ଆଜି ସେହି ସ୍ରୋତ ଶୁଖିଯାଇଚି । ହୁଏତ ସେହି ସ୍ରୋତ ଅନ୍ୟ ଆଡ଼କୁ ଗତି କରିଚି । ମୋ' ଜୀବନରେ କେତେଟା ଘଟଣା ଘଟିଥିଲା, ଯାହାଦ୍ୱାରା କି ମୁଁ ନାସ୍ତିକ ହୋଇ ପଡ଼ିଥିଲି । ସବୁପ୍ରକାର ଦେବତାଙ୍କୁ ହୃଦୟର ବଡ଼ ଆସନରୁ ହଟାଇଦେଇ ନିଜର ବ୍ୟକ୍ତିତ୍ୱ ବଳରେ, ନିର୍ଭୀକ ମନରେ ଆପଣାର ଦୃଷ୍ଟିକୋଣ ଓ ଜ୍ଞାନପରିସରର ସାହାଯ୍ୟରେ ହିଁ ମୁଁ ଏହି ସଂସାରଯାତ୍ରା ନିର୍ବାହ କରିବାର ମୀମାଂସା କରିଥିଲି । ତା'ପରେ ଆଉ ଗୋଟାଏ ପର୍ଯ୍ୟାୟ ଆସିଲା । ତାହା ପୁଣି ଜେଲଜୀବନର ଏହି ନୀରବତା ଭିତରେ । କାରାଗାରର ନିସ୍ତବ୍ଧତା ମୋତେ ଅତି ସ୍ୱାଭାବିକ ଭାବରେ ଆତ୍ମଚିନ୍ତାରେ ନିମଜ୍ଜିତ କରି ରଖିଲା । ଗଛ ଉପରେ ବସିଥିବା ଚଢ଼େଇ, ସକାଳଓଳିର ପ୍ରଖର ସୂର୍ଯ୍ୟ, ସନ୍ଧ୍ୟାକାଶର ରକ୍ତିମ ପ୍ରସନ୍ନତା ଏବଂ ପାଚେରୀ ସେପାଖରେ ରହିଥିବା ବୃହତ ଜଗତର ଅସ୍ପଷ୍ଟ ଗତିଧ୍ୱନି, ସବୁ ମୋତେ କେବଳ ଚିନ୍ତାମଗ୍ନ କରି ପକାଇଲା । ତା' ପରେ ଆସିଲା ହତାଶା ଓ ନୈରାଶ୍ୟର ଏକ ପର୍ଯ୍ୟାୟ, ହୃଦୟର କ୍ରନ୍ଦନ ଓ ଆଖିଲୁହର ପର୍ଯ୍ୟାୟ । ଏହି ଗଛଗୁଡ଼ାକର ପତ୍ର ପତ୍ର ଦେଇ ସତେ ଯେମିତି ମୁଁ ସେହି କ୍ରନ୍ଦନ ଶୁଣିପାରିଲି । ଚଢ଼େଇଟା ସେଇ ଥୁଣ୍ଟା ଦେବଦାରୁ ଗଛର ଡାଳଉପରେ ବସି ମୋ' ସହିତ ସହାନୁଭୂତି ପ୍ରକାଶ କରି କରୁଣ ଭୈରବୀ ଗାଉଥିଲାପରି ଲାଗିଲା । ପାଚେରୀ ଏପାଖରେ ଗଛତଳେ ବସି ମୁଁ ମୋ' ଜୀବନର କଥା ଚିନ୍ତା କରୁଥିଲି । ପାଚେରୀ ସେପାଖରୁ କେତେ ରିକ୍ସା ଓ ସାଇକେଲର ଶବ୍ଦ ଆସି କାନରେ ବାଜୁଥିଲା । ମୁଁ ଆହୁରି କାନ୍ଦିଲି । ତା'ପରେ ଆସିଲା ଆଉ ଗୋଟାଏ ଅଧ୍ୟାୟ, ଆଉ ଗୋଟାଏ ପରିବର୍ତ୍ତନ । ଜୀବନର ସୁପ୍ତି ଭାଙ୍ଗିଗଲା, କ୍ରନ୍ଦନର ଜୁଆରରେ ଭଟା ପଡ଼ିଲା, ଝଡ଼ଝଞ୍ଜା ସମାପ୍ତ ହୋଇ ଆଲୁଅ ପଡ଼ିଲା, ସତେ ଅବା କେଡ଼େ ବଡ଼ ଏକ ସାନ୍ତ୍ୱନା ଓ ନିର୍ଭରର ସୂର୍ଯ୍ୟ ଉଠିବାକୁ ଲାଗିଲା । ମୋର ଆଖି ଝଲସିଗଲା । ଏହି କାରାଗାର ଭିତରେ ମଧ୍ୟ ଦେବତାର ଶଙ୍ଖ ବାଜିଉଠିଲା । ଚଢ଼େଇର ଗୀତରେ ଆନନ୍ଦରାଗ ଭରିଗଲା । ଅନ୍ଧାରର ଆକୁଳତା ଯାଇ ସତେ ଅବା ଆଲୋକରେ ମୋତେ କୂଳ ମିଳିଗଲା । ସେଇ-ଦିନଠାରୁ ମୋର ସ୍ୱପ୍ନ ଭାଙ୍ଗିଯାଇଚି । ଜୀବନରେ ଆଉ କୌଣସି

ଦ୍ୱିଧା ବା ତନ୍ଦ୍ରା ନ ଥିବା ପରି ମନେହେଉଛି । ସବୁ ପରିଶ୍ରାନ୍ତି ଦୂର ହୋଇଯାଇଛି ।

୨୧ । ୪ । ୪୩

ସେଦିନ ନୟନର ଲୁହ ଦେଇ ଆଲୋକର ନିର୍ଝର ପାଇଥିଲି । ସେହି ନିର୍ଝରଶୀଳତାହିଁ ଆଜି ମୋତେ ନିର୍ଭୟ ହେବାରେ ସାହାଯ୍ୟ କରୁଛି । ସେହି ଆତ୍ମସମର୍ପଣ ମୋର ମନଭିତରୁ ସକଳ ଅନ୍ଧାର ଓ ନୈରାଶ୍ୟକୁ ଦୂର କରିଦେଇଛି । ଦେବତାଙ୍କୁ ଭୟ ଓ ଭକ୍ତି କରି ମୁଁ ଆଜି ଦୁନିଆକୁ ଭଲପାଇ ଶିଖିଚି । ଦୁନିଆର ଭୟ ମୋତେ ଆଉ ବ୍ୟାକୁଳ କରି ପାରୁନାହିଁ । ଆଗରୁ ଦିନକୁ ମୁଁ ଶହେପ୍ରକାରର ଡରରେ ଜଡ଼ସଡ଼ ହୋଇ ରହିଥିଲି । ଆଜି ମୋହ ଭାଙ୍ଗିଯାଇଛି ।

୨୨ । ୪ । ୪୩

ଏକ ଲକ୍ଷ୍ୟ, ଅନେକ ପନ୍ଥା । ବିଶ୍ୱବ୍ରହ୍ମାଣ୍ଡର ଅନନ୍ତ ଶୂନ୍ୟଭିତରେ ଆଲୋକର ବିନ୍ଦୁ । ତାହାକୁ ହିଁ ଲକ୍ଷ୍ୟ କରି ସମସ୍ତଙ୍କର ଗତି । ସମସ୍ତଙ୍କର ମତ ଯେ ଏକ ହେବ, ସମସ୍ତଙ୍କର ଗତିପଥ ଯେ ସମାନ ହେବ, ସେଥିରେ କୌଣସି ଧରାବନ୍ଧା ନିୟମ ନାହିଁ । ଅବଶ୍ୟ ବିଭିନ୍ନ ପଥର ଯାତ୍ରୀଙ୍କ ମନୋଭାବ ପୃଥକ୍ ଥାଏ, ତେଣୁ ଭ୍ରମରେ ପଡ଼ି ସେମାନେ ଅନେକ ସମୟରେ ପରସ୍ପରର ପଥକୁ ଭ୍ରାନ୍ତ ବୋଲି ପ୍ରତିପାଦିତ କରନ୍ତି । ଠିକ୍ କେନ୍ଦ୍ରରେ ହେଉଚି ଦେବତାର ସିଂହାସନ, ତା'ର ଆଲୋକ ବିଭିନ୍ନ ରେଖାରେ ବିଭିନ୍ନ ଦିଗକୁ ଯାଉଚି । ଯିଏ କେବଳ ପଥକୁ ସର୍ବସ୍ୱ ବୋଲି ମନେକରି ବିଭିନ୍ନ ପଥଗ୍ରାହୀଙ୍କ ମଧ୍ୟରେ ଲୁଚିଥିବା ପ୍ରତିଦ୍ୱନ୍ଦ୍ୱିତାର ନିଶାରେ ମଗ୍ନ ହୋଇ ସହନଶୀଳତା, ଧୃତି, ଦୟା, କ୍ଷମା ପ୍ରଭୃତି ମୌଳିକ ପାଥେୟଗୁଡ଼ିକୁ ଭୁଲିଯାଏ, ସେ ପଥଭ୍ରଷ୍ଟ ହୁଏ । ପଥ ନିଶ୍ଚୟ ଅନେକ ହେବ, କିନ୍ତୁ ଲକ୍ଷ୍ୟରେ ଯାଇ ପହଞ୍ଚିବାଲାଗି ଆମପାଖରେ ମୌଳିକ ପାଥେୟ ଗୁଡ଼ିକ ଅବଶ୍ୟ ରହିଥିବା ଉଚିତ । ପଥଗ୍ରହଣ ବିଷୟରେ ମୁଁ ଏହାକୁ ସର୍ବପ୍ରଧାନ ସତ୍ୟ ବୋଲି ମାନିବି ।

ରାଜନୀତିରେ ମଧ୍ୟ ସତ୍ୟ ଅଛି, ଭ୍ରାତୃଭାବ, ସରଳତା ଓ ମୁକ୍ତ ମନର ଆବଶ୍ୟକତା ଅଛି । କାରଣ ସମାଜର ଅବସ୍ଥାକୁ ପରିମାର୍ଜିତ କରିବା ହେଉଚି ରାଜନୀତିର ଉଦ୍ଦେଶ୍ୟ । ଯଦି ହିଂସା, ଈର୍ଷା ଓ ବିଦ୍ୱେଷ ପ୍ରଭୃତି

ଅସଦ୍‌ଗୁଣ ଦ୍ୱାରା ରାଜନୀତିର କ୍ଷେତ୍ର ଦୂଷିତ ହୋଇଯାଏ, ଯଦି ଏହା ଭିତରେ ସତ୍ୟ, ନ୍ୟାୟ ବା ଭ୍ରାତୃଭାବ ଲାଗି କୌଣସି ସ୍ଥାନ ନ ରହେ, ତେବେ ସେହି ରାଜନୀତି ଦ୍ୱାରା ସମାଜର କୌଣସି ହିତସାଧନ ସମ୍ଭବ ହେବନାହିଁ ।

୨୩ । ୪ । ୪୩

ଦେବତାର ସତ୍ୟଯନ୍ଦେଶ ବହନ କରି ମଣିଷର ଜନ୍ମ ହୁଏ । ସେତେବେଳେ ତା' ଭିତରେ କୌଣସି ବିଶେଷ ଲକ୍ଷ୍ୟ ବା ବିଶେଷ inclination ନ ଥାଏ । କେବଳ ଦେବତାର ସତ୍ୟଶକ୍ତିରେ ମହୀୟାନ୍ ହୋଇ ସେ ଜନ୍ମ ହୋଇଥାଏ । ତା'ପରେ ତା' ଉପରେ ସମାଜର ପ୍ରଭାବ ପଡ଼େ । ଅସହାୟ ପଥହୀନ ଶିଶୁ ସମାଜରୁ ଶିକ୍ଷା କରି ହିଁ ଆପଣାର ପଥ ପାଏ । ସମାଜର ସଂସ୍ପର୍ଶରେ ଆସି ଶିଶୁ ମଣିଷ ହୁଏ । ସମାଜ ଭିତରେ ରହି କେହି ବୈଜ୍ଞାନିକ ହୁଏ, କେହି ସାହିତ୍ୟିକ, କେହି ଈଶ୍ୱରଭକ୍ତ ଓ ଏପରିକି ତସ୍କର ଓ ଲମ୍ପଟ ମଧ୍ୟ ହୁଏ । ତଥାପି ଏହି ସମାଜରେ ବଢ଼ି ମଧ୍ୟ ମଣିଷ ଅନେକ ସମୟରେ ଏହାକୁ ପ୍ରତ୍ୟାଖ୍ୟାନ କରିଥାଏ । ସମାଜର ସ୍ୱାର୍ଥରେ ବ୍ୟାଘାତ ଜନ୍ମାଇ ସେ ଆପଣା ଜୀବନଟିର ପଥକୁ ସୁଗମ କରିବାର ଆସ୍ପର୍ଦ୍ଧା କରେ ।

ସମାଜର ମଣିଷ ଆଜି ତା'ରି ସମାଜକୁ ଭୁଲିଯାଉଚି । ଘରଭିତରର ମଣିଷ ଘରଛାଟକୁ ଅସ୍ୱୀକାର କରୁଚି । କେଡ଼େ ଅସଙ୍ଗତ କଥା ଏଇଟା ! ଭବିଷ୍ୟତରେ ଏପରି ଏକ ଯୁଗ ଆସୁଚି, ଯେତେବେଳେ ସମୂହର କ୍ଷତି କରୁଥିବା ବ୍ୟକ୍ତିବାଦର ଲୋପ ହେବ, ଯେତେବେଳେ ନ୍ୟସ୍ତସ୍ୱାର୍ଥର ଲୋପ ହେବ । ସମାଜର ପ୍ରତ୍ୟେକ ମଣିଷ ସମାଜକୁ, ଅର୍ଥାତ୍ ତା'ର ବୃହତ୍ତର ସଂସାରକୁ ଚିହ୍ନି ପାରିବ । ସେତେବେଳେ ଜାତିଧର୍ମ-ନିର୍ବିଶେଷରେ ପ୍ରତ୍ୟେକ ମଣିଷ ଏହି ସମାଜର ହୋଇ ରହିବ । ମଣିଷ ଯାହାକିଛି ଅର୍ଜନ କରିବ—ଅର୍ଥ, ସାହିତ୍ୟ, କଳା, ସେ ଯାହା ହେଉ ପଛକେ—ସେଥିରେ ସମାଜର ବି ଭାଗ ରହିବ ।

କିନ୍ତୁ ତଥାପି ଜାଣିରଖିବା ଉଚିତ, ସମଷ୍ଟିବାଦ ଓ ବ୍ୟଷ୍ଟିବାଦ ଦୁହେଁ ହେଉଚନ୍ତି ପରସ୍ପରସମ୍ବନ୍ଧୀ ଓ ପରସ୍ପରନିର୍ଭରଶୀଳ । ଗୋଟିକୁ ଅବହେଳା କରି ଅନ୍ୟଟିର ବିକାଶ କଦାପି ସମ୍ଭବ ନୁହେଁ । ସମଷ୍ଟିକୁ ଅସ୍ୱୀକାର କରି ବ୍ୟକ୍ତିର ବିକାଶ ଯେପରି ନିରର୍ଥକ, ବ୍ୟକ୍ତିକୁ ବାଦ ଦେଇ ସେହିପରି ସମଷ୍ଟିର କଲ୍ୟାଣ

ମଧ୍ୟ ଅସମ୍ଭବ । ସମାଜକୁ ସଭ୍ୟ, ଶିକ୍ଷିତ, ସଂସ୍କୃତ ଓ ମାର୍ଜିତ କରିବାକୁ ହେଲେ, ସମାଜରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତିର ମଧ୍ୟ ସେହି ପରିମାଣରେ ସଭ୍ୟ ଶିକ୍ଷିତ,ସଂସ୍କୃତ ଓ ମାର୍ଜିତ ହେବା ଆବଶ୍ୟକ । ଗାନ୍ଧିଜୀ ବ୍ୟକ୍ତିର ଏହି ଶୁଦ୍ଧ ବିକାଶ ଉପରେ ଅନେକ ଗୁରୁତ୍ୱ ଦିଅନ୍ତି । ସାମ୍ୟବାଦ ରୁଷିଆର ଲେନିନ୍ ମଧ୍ୟ କହିଛନ୍ତି ଯେ ବାରଜଣ ଚରିତ୍ରବାନ୍ ବ୍ୟକ୍ତି ଶହେଜଣ ବୋକା ଲୋକଙ୍କର ହୃଦୟକୁ ନିଶ୍ଚୟ ଜୟ କରିପାରିବେ ।

୨୪ । ୪ । ୪୩

Party—ପୃଥିବୀରେ ଜନସମୂହର ମୁକ୍ତି ଆଣିବାକୁ ହେଲେ ଏକ ପାର୍ଟିର ଆବଶ୍ୟକତା ସବୁବେଳେ ରହିଚି । ଭାରତକୁ ଯଥାର୍ଥରେ ସ୍ୱାଧୀନ କରିବାକୁ ହେଲେ ଗୋଟାଏ ଶୃଙ୍ଖଳାବଦ୍ଧ ପାର୍ଟି ନିଶ୍ଚୟ ଦରକାର । ପାର୍ଟି ଆଉ କିଛି ନୁହେଁ, ଏହା ସେବକର ବା କର୍ମୀର ସେବା, ଦେଶପ୍ରେମ ଓ ନିଷ୍ଠାର ପୁଞ୍ଜୀଭୂତ ଭାବର ଏକ କର୍ମପ୍ରେରିତ କ୍ଷେତ୍ର ମାତ୍ର । ବିଶେଷତଃ ଭାରତବର୍ଷ ପରି ଏକ ଦେଶରେ, ଯେଉଁଠି ଯାବତୀୟ ବିଷୟ ପ୍ରଧାନତଃ ବିଶୃଙ୍ଖଳ ଭାବରେ ହିଁ ଗତି କରିଥାଏ, ସେଦେଶରେ ଏକ ଦୃଢ଼ସଂଗଠିତ ପାର୍ଟିର ଆବଶ୍ୟକତା ବିଶେଷଭାବରେ ରହିଚି । ସମ୍ମିଳିତ ଚେଷ୍ଟା ନ ଥିଲେ କୌଣସି ଉଚ୍ଚ ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ଭାରତବର୍ଷରେ ତିନିତିନିଟା ଆନ୍ଦୋଳନ ହୋଇ ସାରିଲାଣି । ମାତ୍ର ପ୍ରତ୍ୟେକଟି ଆନ୍ଦୋଳନରେ ଯେଉଁ ଗଲତି ରହିଛି, ତାହା ହେଉଛି ଏଇ ସଂଗଠନର ଗଲତି । ଭାରତର ହୃଦୟ ଏକ ଦାର୍ଶନିକ ଉପାଦାନରେ ଗଢ଼ା, ଭାରତର ଶିକ୍ଷିତ ଓ ଅଶିକ୍ଷିତ କଥା କହିଲା ବେଳେ ସଙ୍ଗେ ସଙ୍ଗେ ଦର୍ଶନଭିତରେ ଆସି ପଶିଯାଆନ୍ତି । ଛୋଟ ଶିଶୁ ମଧ୍ୟ ଏଠାରେ ଦର୍ଶନବିତ୍ ପରି କଥା କହେ । ଭାରତର ଅଧିବାସୀ ସ୍ୱଭାବତଃ ବଡ଼ ଭାବପ୍ରବଣ । ଗତ ତିନୋଟି ଆନ୍ଦୋଳନରେ ଭାରତବାସୀ ଯାହା କରିଛି, ତାହାର ମୂଳରେ ଏହି ଭାବପ୍ରବଣତା ହିଁ ସବୁଠାରୁ ଅଧିକ ମାତ୍ରାରେ ରହିଛି । ମାତ୍ର ଏକ ସମ୍ମିଳିତ ସଂଘବଦ୍ଧ ଶକ୍ତି ହିସାବରେ, ସମ୍ପୂର୍ଣ୍ଣ ଏକ ରାଜନୈତିକ ଦୃଷ୍ଟିକୋଣ ରଖି ଭାରତର ଜନତା କେବେ ସଂଗ୍ରାମ କରି ଶିଖି ନାହିଁ । ସେ ତ୍ରିରଙ୍ଗପତାକା ଦେଖି ଭୁଲି ଯାଇଛି, ମହାତ୍ମାଗାନ୍ଧୀଙ୍କର ଦେବତୁଲ୍ୟ ବ୍ୟକ୍ତିତ୍ୱ ଆଗରେ ତାର ସେବା ଓ ସମର୍ଥନ ଆପେ ଆପେ ନଇଁପଡ଼ିଛି । ଅହିଂସା ଭିତରେ ନିହିତ ଥିବା କୋମଳ ପ୍ରେମଭାବ ତାକୁ ପଦାକୁ ବାହାର କରି ଆଣିଛି । ମାତ୍ର ଦେଶର

ବର୍ତ୍ତମାନ ପରିବେଷ୍ଟନୀ କି ପ୍ରକାରର, ଭବିଷ୍ୟତରେ ଭାରତର ଲକ୍ଷ୍ୟ କ'ଣ, ଆନ୍ଦୋଳନକୁ ସମ୍ପୂର୍ଣ୍ଣ ସଫଳ କରିବାର କୌଶଳ ବା କଣ, ଏସବୁ ବିଷୟରେ ତାର ସମ୍ପୂର୍ଣ୍ଣ ଧାରଣା ନାହିଁ । ହୁଏତ ସେଇଥିଲାଗି ଆମଭିତରେ ଶେଷପର୍ଯ୍ୟନ୍ତ ଲଢ଼ିବାର ଧୈର୍ଯ୍ୟ ମଧ୍ୟ ନାହିଁ । ଭାବପ୍ରବଣତା ବା ବ୍ୟକ୍ତିତ୍ୱର ଆକର୍ଷଣ ତାକୁ ଯେତିକି ଦୂର ଆଗେଇ ନେଇଛି, ସେ ସେତିକି ଦୂର ଆଗେଇ ଯାଇଛି । ସେଇଠି ପହଞ୍ଚି ସେ ଅଟକି ଯାଇଛି । ପରବର୍ତ୍ତୀ ପନ୍ଥା ବିଷୟରେ ଭାବିବାଲାଗି ତାର କୌଣସି ଉତ୍ସାହ ହୋଇ ନାହିଁ । ଏହି ଅନଭିଜ୍ଞତା ଯୋଗୁଁ ସେ ବଡ଼ ନିରାଶ ହୋଇ ପଛକୁ ଫେରିଆସି କହୁଛି, ନା, କିଛି ହେଲା ନାହିଁ ।

ପ୍ରଥମ ବିପ୍ଳବର ବିଫଳତାରୁ ଦ୍ୱିତୀୟ ବିପ୍ଳବଲାଗି ଅଭିଜ୍ଞତା ସଂଗ୍ରହ କରିପାରିବା ଉଚିତ । ତେଣୁ ବିପ୍ଳବରେ ନୈରାଶ୍ୟର ସ୍ଥାନ ନାହିଁ । ଭାରତୀୟର ମୁଣ୍ଡରେ ଏହି ସତକଥାଟା ଏପର୍ଯ୍ୟନ୍ତ ପଶିପାରି ନାହିଁ । ପ୍ରତ୍ୟେକ ଭାରତୀୟକୁ ଏହି ଅଭିଜ୍ଞତା ଆଣିଦେବାକୁ ଗୋଟିଏ ଦୃଢ଼ପ୍ରତିଷ୍ଠିତ ପାର୍ଟିର ଆବଶ୍ୟକତା ରହିଚି ।

୧୬ । ୫ । ୪୩

ବନ୍ଧୁତା କଣ ? ବନ୍ଧୁତା ନ ଥିଲେ କଣ ମଣିଷ ଚଳି ପାରୁ ନ ଥାନ୍ତା ? ମଣିଷ ବନ୍ଧୁ କାହିଁକି କରେ ? ବାସ୍ତବବାଦୀମାନେ କହିବେ ଯେ ଏହି ସଂସାର ବିଶ୍ୱାସଘାତକମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ରହିଚି । ଏଠି କୁଆଡ଼େ ଶତକଡ଼ା ନବେଜଣ ମଣିଷ କେବଳ ସୁଖର ସାଥୀ । ତଥାପି ଭ୍ରାନ୍ତ ମଣିଷର ହୃଦୟ ଏହି ବିଶ୍ୱାସଘାତକଙ୍କ ଦଳଭିତରୁ ହିଁ ସାଥୀ ଖୋଜି ବାହାରେ । କାହିଁକି ? ରବିନ୍‌ସନ୍ କ୍ରୁସୋ ଏକ ନିର୍ଜନ ଦ୍ୱୀପରେ ଆପଣାର ଜୀବନଯାତ୍ରା ନିର୍ବାହ କରୁଥିଲା । ହଠାତ୍ ଦିନେ ଫ୍ରାଇଡ଼େ ସହିତ ତାର ଦେଖାହେଲା । ତାର ଜୀବନର ରଙ୍ଗ ହିଁ ବଦଳି-ଗଲା । ଜୀବନର ସ୍ପନ୍ଦନହୀନ ଧାରାରେ ଚମକ ଆଣି, ଜୀବନରେ ନୂତନତାର ସନ୍ଧାନ ଆଣିଦେବାକୁ ବନ୍ଧୁତାର ଆବଶ୍ୟକତା ରହିଛି ।

ଇଂରାଜୀରେ ଗୋଟିଏ କଥା ଅଛି Every dog has his day. ପ୍ରତ୍ୟେକ ପ୍ରାଣୀର ଜୀବନରେ ଦିନେ ନା ଦିନେ ଏକ ସୁଯୋଗ ଆସି ପହଞ୍ଚେ । ମାତ୍ର ସମସ୍ତେ ଏହି ସୁଯୋଗକୁ ଗ୍ରହଣ କରନ୍ତି ନାହିଁ । ସଂସାରେ ଯୋଗ ଆସି ହୁଏତ ଦୁଆରପାଖରେ ଅପେକ୍ଷା କରୁଥାନ୍ତି, ତଥାପି ଦୁଆର ଖୋଲିବାକୁ ଆମର ମନ ହୁଏ ନାହିଁ ।

୨ । ୭ । ୪୩

ଆଜି ଉତ୍କଳମଣି ପୁଣ୍ୟାତ୍ମା ଗୋପବନ୍ଧୁଙ୍କର ସାମ୍ବତ୍ସରିକ ଶ୍ରାଦ୍ଧଦିବସ । ଓଡ଼ିଶାରେ ରାଜନୈତିକ ଚେତନାର ଜନ୍ମଦାତା, ଓଡ଼ିଆର ଗୌରବମଣି ପ୍ରତିଭାମୟ ମନୀଷୀ ସେହି ଗୋପବନ୍ଧୁ ଆଜିକୁ ପନ୍ଦରବର୍ଷ ହେଲା ଓଡ଼ିଶା ଛାଡ଼ି ଚାଲିଯାଇଛନ୍ତି ସତ, ମାତ୍ର ତାଙ୍କରି ହାତଗଢ଼ା ଓଡ଼ିଶା ଆଜି ମଧ୍ୟ ରହିଛି । ଓଡ଼ିଶାରେ ଆଉ ଦ୍ୱିତୀୟ ଗୋପବନ୍ଧୁ ଜନ୍ମଗ୍ରହଣ କରିନାହାନ୍ତି, ସେଥିଲାଗି ଅତୀତର ସେହି ଆଲୋକବିନ୍ଦୁଟି ଆଜି ମଧ୍ୟ ଅପ୍ରତିହତ ଦୀପ୍ତିରେ ଓଡ଼ିଶାର ସେବାକ୍ଷେତ୍ର, ଓଡ଼ିଶାର ରାଜନୀତି, ଶିକ୍ଷା ଓ ସାହିତ୍ୟ ସବୁ କ୍ଷେତ୍ରକୁ ଆଲୋକିତ କରି ରଖିଛି । ଦିନେ ଦରିଦ୍ର ଓଡ଼ିଶାପାଇଁ କାନ୍ଦି ଗୋପବନ୍ଧୁ ପଥରର ହୃଦୟକୁ ବି ତରଳାଇ ପାରୁଥିଲେ । ଏହାରିଦ୍ୱାରା ଓଡ଼ିଶାର ଦୁଃଖଦୁର୍ଦ୍ଦଶା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ଦରିଦ୍ର ଓଡ଼ିଶାର ବନ୍ଧୁ ଥିଲେ ଉତ୍କଳମଣି ଗୋପବନ୍ଧୁ । ସେବାକ୍ଷେତ୍ରରେ ସେ ଏକ ଚମତ୍କାର ପରିବର୍ତ୍ତନ ଆଣିଥିଲେ, ସାହିତ୍ୟ-କ୍ଷେତ୍ରରେ ସେ ଦେଶପ୍ରେମ ଓ ଲୋକସେବାର ଉଚ୍ଛ୍ୱାସ ଖେଳାଇ ଦେଇଥିଲେ, ରାଜନୀତିକୁ ସେ ଉନ୍ନତ ଓ ମାର୍ଜ୍ଜିତ କରିଥିଲେ । ସେ ସ୍ୱାଧୀନତାର ଆଦର୍ଶ ସୈନିକ ଥିଲେ, ଦରିଦ୍ରା ଜନନୀର ବରପୁତ୍ର ଥିଲେ ।

୧୮ । ୭ । ୪୩

ଏହି ଦୁନିଆରେ ମଣିଷ ଖାଲି କ୍ଷମା ମାଗି ଶିଖିଛି, ମାତ୍ର କ୍ଷମା ଦେଇ ଶିଖି ନାହିଁ । ତେବେ ତାକୁ କିଏ କିପରି କ୍ଷମା ଦେବ ? ମଣିଷ ବନ୍ଧୁ କରି ଶିଖିଚି, ମାତ୍ର ବନ୍ଧୁକୁ ଚିହ୍ନି ଶିଖି ନାହିଁ । ବନ୍ଧୁର ଜୀବନକୁ ନେଇ ବ୍ୟବସାୟ କରି ଶିଖିଚି, ମାତ୍ର ଜଣେ ମଣିଷ ହିସାବରେ ବନ୍ଧୁକୁ ଗ୍ରହଣ କରି ଶିଖି ନାହିଁ । ତେବେ ତା'ର ଜୀବନ ସରସ ହେବ କିପରି ? ମଣିଷ ବିଶ୍ୱାସ କରେ, ମାତ୍ର ସେହି ବିଶ୍ୱାସରେ ଗଭୀରତା ନ ଥାଏ । ତେବେ ସେ ଶାନ୍ତି ପାଇବ କିପରି ? ମଣିଷ ପ୍ରତିଜ୍ଞା କରେ, ମାତ୍ର ଲୋକନିନ୍ଦା ଓ ଲୋକଲଜ୍ଜାର ପ୍ରତିଘାତରେ ନିଜର ପ୍ରତିଜ୍ଞାଟିକୁ ଭୁଲିଯାଏ । ତେବେ ସେ ସଂସାରରେ ସଫଳ ହେବ କିପରି ? କାର୍ଯ୍ୟ କରିବାର ଓ ଆଦର୍ଶସ୍ଥାନୀୟ ହେବାର ଗୁଣ ଏହି ମଣିଷ ଭିତରେ ଅବଶ୍ୟ ରହିଚି, ମାତ୍ର ସେଥିଲାଗି ଆବଶ୍ୟକ ସାହସ ବା ଧୈର୍ଯ୍ୟ ତା' ଭିତରେ ନାହିଁ । ତେବେ ସେ ସୁଖୀ ହୋଇପାରିବ କିପରି ?

୩୧ । ୭ । ୪୩

କ୍ଷମତାର ଶେଷ ପରିଣତି ହେଉଚି ପତନ । ହାବେଳିବାଣ ସର୍ବୋଚ୍ଚ ସ୍ଥାନକୁ ଉଠିଯାଇ ପୁଣି ଜ୍ୟୋତିହୀନ ହୋଇ ତଳକୁ ଖସିପଡ଼େ । ଜାର୍ ସରକାର ଦିନେ ସେହିପରି ସିଂହାସନ ଉପରୁ ତଳକୁ ଖସି ପଡ଼ିଥିଲା, ଅନ୍ଧ-ସମ୍ରାଟ୍ ଲୁଇ ମଧ୍ୟ ଦିନେ ସେହିପରି କ୍ଷମତାଚ୍ୟୁତ ହୋଇଥିଲେ । ନାରୀସୁଲଭ ଓ ମାତୃସୁଲଭ ଦୟା ଓ ସରଳତା ଭୁଲି ଯେଉଁ ମେରି ଆଣ୍ଟୋନେଟ୍ ମଣିଷକୁ ଘୃଣା କରୁଥିଲେ, ଦରିଦ୍ରର ରକ୍ତପାତରେ ଉତ୍‌ଫୁଲ୍ଲ ହେଉଥିଲେ, ତାଙ୍କ ଗର୍ବ ବି ଚିରଦିନ ରହିଲା ନାହିଁ । ଗତ ଚବିଶି ତାରିଖ ଦିନ ମୁସୋଲିନୀ ମଧ୍ୟ ଠିକ୍ ସେହିପରି ବିଦା ହୋଇଗଲେ । ତାଙ୍କୁ ସମସ୍ତେ ମିତ୍ରପକ୍ଷର ଶତ୍ରୁ ବୋଲି କହି ନିନ୍ଦା କରୁଚନ୍ତି । ମାତ୍ର ମୁଁ କହିବି ଯେ ସେ ସଭ୍ୟତାର ଶତ୍ରୁ, ମଣିଷ ସମାଜର ବିକାଶପଥରେ ଏକ ପ୍ରବଳ ଅନ୍ତରାୟ ଭାବେ କାର୍ଯ୍ୟ କରୁଥିଲେ । ଯେତେବେଳେ ପୃଥିବୀ ପୁରାତନ ଜୀର୍ଣ୍ଣଜର୍ଜ୍ଜର କଳେବର ଛାଡ଼ି ନୂତନ ବେଶ ପିନ୍ଧିବାକୁ ଯାଉଚି, ଦୁନିଆର ନିଷ୍ପେଷିତ ମଣିଷ ଯେତେବେଳେ ସମତା ଓ ନ୍ୟାୟର ସ୍ୱପ୍ନ ଦେଖୁଚି, ସେତେବେଳେ ଏହିପରି କେତେଜଣ ଉଗ୍ର ଅମଣିଷ ଜନନାୟକ ବୋଲାଇ ପୃଥିବୀଟାକୁ ପଛକୁ ଟାଣି ଧରୁଚନ୍ତି । ବଡ଼ ଆଶ୍ଚର୍ଯ୍ୟ କଥା ଯେ ପୃଥିବୀ ଆଜିଯାଏ ତା'ର ଶତ୍ରୁମାନଙ୍କୁ ଚିହ୍ନି ପାରିଲା ନାହିଁ । ପୃଥିବୀର ଅଗ୍ରଗତି ପଥରେ ଯେ ପ୍ରତିବନ୍ଧକ ହୋଇ ଛିଡ଼ା ହେଉଚି, ସମାଜ ଅନେକ ସ୍ଥଳରେ ସେହିମାନଙ୍କୁ ନାୟକର ଟୀକା ଦେଉଚି । ମାତ୍ର ମୋର ଆଖିକୁ ଗୋଟାଏ କଥା ଭାରି ଜଳଜଳ ହୋଇ ଦେଖାଯାଉଚି । ମୁଁ ଦୃଢ଼ଭାବରେ କହିପାରେ ଯେ ଯେପର୍ଯ୍ୟନ୍ତ ସମାଜର ଶାସନ ଓ ସମ୍ପଦରାଶି କେତେକ ସ୍ୱାର୍ଥବାଦୀ ଫାସିଷ୍ଟମାନଙ୍କ ହାତମୁଠାରେ ରହିଚି, ସେପର୍ଯ୍ୟନ୍ତ ମଣିଷସମାଜର ଅଗ୍ରଗତି କଦାପି ସମ୍ଭବ ହୋଇ ପାରିବ ନାହିଁ । ଗୋଟାଏ ମୃଗତୃଷ୍ଣାର ଆକର୍ଷଣ ଦେଖାଇ ଲୋକମାନଙ୍କୁ ଧ୍ୱଂସଆଡ଼କୁ ଟାଣିନେବା ହେଉଚି ସ୍ୱାର୍ଥାନ୍ୱେଷୀମାନଙ୍କର କାର୍ଯ୍ୟ ।

୧ । ୧୦ । ୪୩

କିଛିଦିନ ତଳେ ଶ୍ରୀ ରବୀନ୍ଦ୍ରନାଥ ଠାକୁରଙ୍କର 'ଚିଠିପତ୍ର' ପୁସ୍ତିକାଟି ପଢ଼ୁଥିଲି । ସେଥିରେ ମୁଁ ଠିକ୍ ଯେପରି ଭାବୁଥିଲି, ସେହିପରି ଗୋଟିଏ କଥା

ପଢ଼ିବାକୁ ପାଇଲି । ଶାନ୍ତ ଓ ଅନୁତ୍ତେଜିତ ଭାବରେ ନିଜ ଜୀବନର ବିକାଶ କରିବାକୁ ମୁଁ ଯେଉଁ ବାଟକୁ ଉଚିତ ବୋଲି ବିଶ୍ୱାସୁଥିଲି, ରବିନ୍ଦ୍ରନାଥ ଜଣକୁ ଠିକ୍ ସେଇକଥାଟା ବୁଝାଇ ଲେଖିଚନ୍ତି । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । 'ପୃଥିବୀରେ ପରରକାମ ନେଇ ପରକୁ ଭର୍ତ୍ସନା କରିବା ଅପେକ୍ଷା ନିଜର କାମ ନିଜେ କରିଯିବା ଭଲ ।'—ଏହାଦ୍ୱାରା ପ୍ରକୃତରେ ଶାନ୍ତି ମିଳେ, ଅନେକ ଉତ୍ତେଜନାରୁ ବି ରକ୍ଷା ମିଳେ ।

ଆଜି ସନ୍ଧ୍ୟାବେଳେ ବୁଲୁବୁଲୁ ଗୋଟାଏ କଥା ମନେପଡ଼ିଲା । ସଂସାରରେ ଅନେକ ଲୋକ ଆପଣାକୁ ସମସ୍ତଙ୍କର ବାହ୍ୟ ସ୍ନେହର ଭାଜନ କରାଇବା ପାଇଁ ଚେଷ୍ଟା କରିବାରେ ଲାଗିଥାନ୍ତି । ସେମାନେ ସେଥିଲାଗି ଭଦ୍ରତାର କେତେ styleମାନ ଶିଖନ୍ତି, କେତେ ଦେଖାଇ ହୁଅନ୍ତି । ପାଠୁଆ ସମାଜରେ ଏଇ ରୀତିଟା ବେଶୀ ଚାଲେ । ଭିତରେ କ୍ରୋଧର ନିଆଁ ଜଳୁଥାଏ, ତଥାପି ବାହାରେ ହସ, ଖେଳ ଓ ସ୍ନେହର ଛଳନା ଏବଂ ଭଲପାଇବାର ନାନା ଦେଖାଣିଆ ସଙ୍କେତର ଆଦାନପ୍ରଦାନ ଚାଲିଥାଏ । ମାତ୍ର ମଣିଷ ସହିତ ବନ୍ଧୁ ବାନ୍ଧିବା କଣ ଏତେ ସହଜରେ ହାସଲ ହୋଇପାରିବ ? ବନ୍ଧୁତାର ଡୋରରେ ବାନ୍ଧିହୋଇ ପରସ୍ପରର ବିକାଶ ଦିଗରେ ପରସ୍ପରକୁ ସାହାଯ୍ୟ କରିବା ଆମର ତଥାକଥିତ ଭଦ୍ରସମାଜରେ ନାହିଁ । ସମସ୍ତେ ଭାବୁଚନ୍ତି ଏକାନ୍ତ ବ୍ୟକ୍ତିଗତ ଭାବରେ ନିଜର ହିଁ ଉନ୍ନତି କରିବେ । ଏସବୁ କେତେଦିନ ଚାଲିବ କେଜାଣି ! କେବଳ ସମାଜର ଆର୍ଥିକ ପରିସ୍ଥିତି ଓ ରାଜନୀତିକ ପରାଧୀନତା କଣ ଆମକୁ ଏପରି ସଂକୀର୍ଣ୍ଣ କରି ପକାଇଚି ? ଖାଲି ରାଜନୀତିକ ପରାଧୀନତା ଚାଲିଗଲେ କଣ ଆମର ଏହି ମାନସିକ ସଂକୀର୍ଣ୍ଣତା ଓ ଏହି ସଭ୍ୟତାର ଛଳନା ଦୂର ହୋଇଯିବ ? ଏସବୁ ପ୍ରଶ୍ନ ହୁଏତ ଅଧିକ ଅଭିଜ୍ଞତା ଅର୍ଜନ କରିବା ସଙ୍ଗେ ସଙ୍ଗେ ପରିଷ୍କାର ହୋଇ ଯାଉଥିବ । ମାତ୍ର ବର୍ତ୍ତମାନ ମୁଁ କାହିଁକି ଭାବୁଚି ଯେ ଦେଶର ପିଲାକୁ ପିଲାଟିଦିନରୁ ସେପରି ଉଚ୍ଚମନୋଭାବାପନ୍ନ ଶିକ୍ଷା ଦିଆ ନ ଗଲେ ଏହି ସଂକୀର୍ଣ୍ଣତା କଦାପି ଯିବ ନାହିଁ ।

ଆଜି ମୋ' ଉଦ୍ଧତ ପ୍ରକୃତିର ଆଘାତ ପାଇଲି । ଦୁଇଜଣ ସାଥୀ ବନ୍ଦୀ ବସି ଖାଉଥିବାବେଳେ ମୁଁ ଚଟି ମାଡ଼ି ସେଇବାଟେ ଚାଲିଆସିଲି । ସେମାନଙ୍କ ଭିତରୁ ଜଣେ ଭାଇ ମୋତେ ପଛରେ ଏକଥା କହିଲେ । ମନରେ

ଲାଗି ଦୁଃଖ ହେଲା । ମଣିଷର ମନରେ କଷ୍ଟ ଦେଇ ମୁଁ କେବେହେଲେ ଭଗବାନଙ୍କର ଆଶୀର୍ବାଦ ପାଇପାରିବି ନାହିଁ ।

୪ । ୧୦ । ୪୩

ଧର୍ମ ଆଉ ସାମ୍ୟବାଦ, ଅନେକଙ୍କର ମତରେ ଦୁଇଟା ଅଲଗା ଅଲଗା ଜିନିଷ । ସାମ୍ୟବାଦ ଧର୍ମର ଲୋପ ଚାହେ, କାରଣ ଧର୍ମ ତିଷ୍ଠି ରହିଥିବା ପର୍ଯ୍ୟନ୍ତ ସାମ୍ୟବାଦ ପ୍ରତିଷ୍ଠିତ ହୋଇ ପାରିବ ନାହିଁ । ଧର୍ମ କଣ ? ମଣିଷକୁ ଯେ ଧରିରଖିଚି, ତାହା ହିଁ ଧର୍ମ । ମଣିଷକୁ ପଶୁଠାରୁ ଉଚ୍ଚତର କରିରଖିଚି ଧର୍ମ । ସଦାଚାର ନ ଥିଲେ ଆଜି ମଣିଷ ପୃଥିବୀର ଶ୍ରେଷ୍ଠ ସୃଷ୍ଟି ବୋଲି ପରିଗଣିତ ହୋଇ ପାରନ୍ତା ନାହିଁ । ମାତ୍ର ଆଜିପର୍ଯ୍ୟନ୍ତ ଧର୍ମ କରିଆସିଚି କଣ ? ହୁଏତ ଦିନେ ମଣିଷ ଧର୍ମର ସାର ବୁଝିଥିଲା, ଧର୍ମକୁ ନିଜ ଜୀବନର ଆଧାରରୂପେ ମାନି ନେଇଥିଲା, ଜୀବନଭୂମିର ଗଭୀରତମ ସୀମାକୁ ଅନୁଭବ କରି ପାରୁଥିଲା । କିନ୍ତୁ ତା'ପରେ ଆଉଏକ ପର୍ଯ୍ୟାୟ ଆସିଲା; ଯେତେବେଳେ ଧର୍ମ ଗୋଟାଏ ଜାତି ହାତରେ ବ୍ୟବସାୟର ଏକ ପନ୍ଥା ହୋଇ ରହିଲା । ଆମ ଭାରତରେ ବ୍ରାହ୍ମଣ ଜାତି ନିଜକୁ ଭଗବାନଙ୍କର ପ୍ରତିନିଧି ବୋଲାଇ ଆପଣାର ଉପାର୍ଜନ ପଥଟିକୁ ସୁଗମ କରିବାକୁ ଲାଗିଲେ । ଫଳରେ ଯଥାର୍ଥ ଧର୍ମ, ସଦାଚାର ଓ ମନୁଷ୍ୟୋଚିତ ଜୀବନଯାପନ କୁଆଡ଼େ ଉଡ଼ିଗଲା, ଧର୍ମର ସାର ଭୁଲି ସାରହୀନ ପଥର ମଣିଷ କେବଳ ମୂର୍ତ୍ତିର ପୂଜା କରିବାରେ ଲାଗିଲା, ଜୀବନର ଉଦ୍ଦେଶ୍ୟ ଓ ସାଧନାକୁ ଭୁଲି ସେ ଈଶ୍ୱରଙ୍କର ଭଲିଭଲି ନାମକରଣ କଲା ଓ ଦେବତା-ମାନଙ୍କ ମଧ୍ୟରେ ବି ଶ୍ରେଣୀବିଭାଗର ସୃଷ୍ଟି କରିଦେଲା । ଗୋଟିଏ ଦେବତାକୁ ଆଉଗୋଟିଏ ଦେବତାଠାରୁ ଅଧିକ ସମ୍ମାନ ଦେଖାଇଲା । ବିଭିନ୍ନ ଦେବତା-ପନ୍ଥୀମାନଙ୍କ ଭିତରେ ବାଡ଼ିଆପିଟା ହେଲା । ପର୍ବପର୍ବାଣିର ଆଡ଼ମ୍ବରକୁ ହିଁ ଧର୍ମ ବୋଲି କୁହାଗଲା । ଯିଏ ଅଧିକରୁ ଅଧିକ ପର୍ବ, ଓଷା, ଦାନ ଓ ଦକ୍ଷିଣାମାନ କରିପାରିଲା, ସମାଜରେ ସେ ସର୍ବବଡ଼ ଧାର୍ମିକ ବୋଲାଇ ଆପଣାର ନାଗରା ପିଟିଲା । ଜାତି ଓ ଦେଶର ଭାବନା ମଧ୍ୟ କ୍ରମେ ବଡ଼ ସଂକୀର୍ଣ୍ଣ ହୋଇ ଆସିଲା । ଅର୍ଥନୈତିକ ଓ ସାମାଜିକ ଦୃଷ୍ଟିଠାରୁ ସାମ୍ପ୍ରଦାୟିକ ଦୃଷ୍ଟିଟାକୁ ମଣିଷ ଅଧିକ ମୂଲ୍ୟ ଦେଲା । ତା'ପରେ ଆସିଲା ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଯୁଗ । ଦୁନିଆର ଅର୍ଦ୍ଧସଭ୍ୟ ଜାତିମାନଙ୍କୁ ବଶ କରି ଦୁନିଆସାରା ସାମ୍ରାଜ୍ୟବାଦର

ବିପଣି ଗ୍ଭଲିଲା । ଏଥିରେ ଧର୍ମ ବି ଖୁବ୍ ସାହାଯ୍ୟ କଲା । ପୂର୍ବତନ ସାମନ୍ତସାହୀ ଯୁଗରେ ମଧ୍ୟ ଶାସକମାନଙ୍କର ଅତ୍ୟାଗ୍ଭରରେ ଧର୍ମ ଗୋଟାଏ ପ୍ରକାର ସାଧନ ହୋଇ ଯାଇଥିଲା । ଧର୍ମ ନାମରେ ଯାବତୀୟ ଅତ୍ୟାଗ୍ଭର ହେଉଥିଲା । ଧର୍ମର ଦ୍ୱାହି ଦେଇ Bloody Maryଙ୍କ ଶାସନ କାଳରେ କେତେ ପ୍ରୋଟେଷ୍ଟାଣ୍ଟ୍ ନେତାଙ୍କୁ ଜଳନ୍ତା ନିଆଁରେ ଜୀଅନ୍ତା ପୋଡ଼ି ମାରି ଦିଆଯାଇଚି, ଏହି ଧର୍ମ ନାମରେ ଇଉରୋପରେ Court of Inquisition ବସିଚି । ଆମ ଏ ଯୁଗରେ ମଧ୍ୟ ଧର୍ମନାମରେ କମ୍ ଅପକୀର୍ତ୍ତି ହେଉନାହିଁ । ସାମ୍ରାଜ୍ୟବାଦର ଇତିହାସରେ ଖ୍ରୀଷ୍ଟିଆନ୍ ମିଶନାରିମାନେ ଭାରି ବଢ଼ିଆ କାମ ଦେଖାଇଚନ୍ତି । ରାଜା ଓ କମ୍ପାନୀମାନଙ୍କର ଏଜେଣ୍ଟ ହିସାବରେ ସେମାନେ ଉପନିବେଶମାନଙ୍କରେ କାମ କରିଚନ୍ତି । ଚୀନ ଓ ଭାରତବର୍ଷର ଲୋକେ ଖ୍ରୀଷ୍ଟିଆନ୍ ପାଦ୍ରୀମାନଙ୍କର କାରସାଦିକୁ କେବେହେଲେ ଭୁଲି ପାରିବେ ନାହିଁ । ବର୍ତ୍ତମାନ ମଧ୍ୟ ଆମଦେଶର ବିଭିନ୍ନ ସ୍ଥାନରେ ମିଶନାରିମାନେ ଇଂରେଜୀ ଶାସନର ଲୋକପ୍ରିୟତାକୁ ପ୍ରଗ୍ଭର କରିବାରେ ଲାଗିଚନ୍ତି । ଲୋକମାନଙ୍କର ସ୍ୱାଧୀନଚିନ୍ତା ନଷ୍ଟ କରିବା ହେଉଚି ଏମାନଙ୍କର ଉଦ୍ଦେଶ୍ୟ । ଆମ ଓଡ଼ିଶାର କୋରାପୁଟ ଜିଲାରେ ଏମାନଙ୍କର ପ୍ରାଦୁର୍ଭାବ ଆଜି ମଧ୍ୟ ରହିଚି । ନିରୀହ ଶଉରାମାନଙ୍କୁ ଧନ, ପାଠପଢ଼ା ବା ଗ୍ଭକିରିର ଲୋଭ ଦେଖାଇ ଏମାନେ ଧର୍ମପ୍ରଗ୍ଭରରେ ଲାଗିଚନ୍ତି ଓ ଲୋକଙ୍କର ଜାତୀୟ ଚେତନାର ମୂଳରେ କୁରାଢ଼ି ବସାଉଚନ୍ତି । ମଣିଷଦ୍ୱାରା ଧର୍ମର ଏପରି ଅପବ୍ୟବହାର କାହିଁକି ହେଉଚି ? ଯେଉଁ ମଣିଷ ଦିନେ ଯୀଶୁଙ୍କୁ ହାତକଣ୍ଟା ଗୋଡ଼କଣ୍ଟା ଦେଇ କାଠଫାଶୀରେ ଝୁଲାଇ ଦେଇଥିଲା, ଯେଉଁ ମଣିଷ ସକ୍ରେଟିସ୍‌ଙ୍କ ଲାଗି ବିଷପାନର ବ୍ୟବସ୍ଥା କରିଥିଲା, ଯେଉଁ ମଣିଷ ଦିନେ ମହମ୍ମଦଙ୍କୁ ମକ୍‌କା ସହରରୁ ତଡ଼ି ଦେଇଥିଲା, ସେ ଯେ ଆଜି ଧର୍ମନାମରେ ନାନାପ୍ରକାର ଅନ୍ୟାୟ କରିଯିବ ଓ ସହିଯିବ, ଏଥିରେ ଆଶ୍ଚର୍ଯ୍ୟ ହେବାଲାଗି ଆଉ କଣ ରହିଲା ?

ଆଲୁଅ ଯାଇ ଅନ୍ଧାର ଆସୁ, ବ୍ୟକ୍ତିଗତ ସ୍ୱାର୍ଥର ପ୍ରକୋପ ଯାଇ ସାମାଜିକ ହିତ ହିଁ ବଳବତ୍ତର ରହୁ, ଏହା ସାମ୍ୟବାଦର ଲକ୍ଷ୍ୟ । ଆଜି ଗୋଟାଏ ବା କେତେଟା ଲୋକ ସମାଜର ଶାସନ କରୁଚନ୍ତି, ସେହି ସମାଜକୁ ଶାସନ କରିବାରେ ପ୍ରତ୍ୟେକ ଲୋକର ହାତ ରହୁ, ଏହା ସମାଜବାଦର ଧ୍ୟେୟ । ବର୍ତ୍ତମାନର ଅରାଜକତାକୁ ଦୂର କରି ସ୍ୱାର୍ଥବାଦ ସ୍ଥାନରେ ସହଯୋଗର ପ୍ରତିଷ୍ଠା

କରିବା ସାମ୍ୟବାଦର ମୂଳ କଥା । ସମାଜରୁ ଈର୍ଷା ଓ ଦ୍ୱେଷଭାବ ଗୁଲିଯାଉ ବୋଲି ସମସ୍ତେ ଗ୍ରହାନ୍ତି । ଏହି କଥାଟାକୁ ଯଦି ମୁଁ ଧର୍ମ ବୋଲି କହିବି, ତେବେ ମୁଁ ଭୁଲ୍ କରିବି କେଉଁଠି ? ସ୍ୱାର୍ଥ ଓ ଘୃଣା ଉପରେ ପ୍ରତିଷ୍ଠିତ କୌଣସି ରାଜନୀତିକ ମତବାଦ ପୃଥିବୀଲାଗି ଭଲଗତି ଆଣି ପାରିବ ନାହିଁ । ତେଣୁ ଯେଉଁ ମତବାଦ ସମାଜରେ ଯଥାର୍ଥ ଶାନ୍ତି ପ୍ରତିଷ୍ଠା କରିବ, ସେହି ମତବାଦ ସତ୍ୟ, ଅହିଂସା ଓ ପବିତ୍ରତା ଉପରେ ପ୍ରତିଷ୍ଠିତ ରହିବା ଉଚିତ । ମଣିଷ ଭଲ ଗୁଣ ଶିଖିବ, ସମସ୍ତଙ୍କୁ ଭଲ ପାଇ ଶିଖିବ, ଏପରି ହେଲେ ଯାଇ ପୃଥିବୀର ଭଲ ହେବ । ଅନେକେ ଏହାକୁ ସଦାଗ୍ରର କହନ୍ତି । ଯଦି ମୁଁ ଏହି ସଦାଗ୍ରରକୁ ଧର୍ମ ବୋଲି କହେ, ତେବେ ମୁଁ ଭୁଲ୍ କରିବି କେଉଁଠି ? ଧର୍ମକୁ ମଣିଷ ଅନେକଦିନୁ ଛାଡ଼ିଚି, ପ୍ରକୃତ ପଥକୁ ସେ ଦୂର ଅତୀତର ଇତିହାସ ଭିତରେ ଛାଡ଼ିଦେଇ ଆସିଚି, ସେଥିଲାଗି ଧର୍ମ ବୋଇଲେ ମଣିଷ ଆଜି ଖାଲି 'ପ୍ରଚଳିତ ଧର୍ମ' ବୋଲି ବୁଝୁଚି, ଯାହା କି ଯୁଗେଯୁଗେ ସମାଜର ଅନିଷ୍ଟ କରିଆସିଚି । ମାତ୍ର ମୁଁ ଯଦି ସଦାଗ୍ରରକୁ ଧର୍ମ ବୋଲି କହେ, ତେବେ ମୋ' ଧର୍ମଟା ଉଚିତ ଧର୍ମ ହେବ ନାହିଁ କିପରି ? ଯଦି ମଣିଷ ସଦାଗ୍ରରକୁ ଭୁଲେ, ତେବେ ସଂସାରରେ ସେ କେବେହେଲେ ଶାନ୍ତି ପାଇ ପାରିବ ନାହିଁ । ମୋ' ଭାଷାରେ ମୁଁ ତାକୁ କହିବି, ମଣିଷ ଯଦି ଧର୍ମକୁ ଭୁଲେ, ତେବେ ସେ କେବେହେଲେ ସୁଖଶାନ୍ତିରେ ଜୀବନ ଗଠନ କରି ପାରିବ ନାହିଁ ।

୫ । ୧୦ । ୪୩

ଆଗେ ମୁଁ ଗୀତ ଗାଇ ଜାଣି ନ ଥିଲି । ତଥାପି ସଂଗୀତ ପ୍ରତି ମୋର ଗୋଟାଏ ବଡ଼ ମୋହ ଥିଲା । ଯେଉଁ ସଙ୍ଗୀତଶକ୍ତି ଦ୍ୱାରା ତାନସେନ ମୟୂର ନଗ୍ରଇ ପାରୁଥିଲେ, ଯେଉଁ ସଙ୍ଗୀତଶକ୍ତି ଦ୍ୱାରା ଶୀତକାଳରେ ବସନ୍ତ ବହୁଥିଲା, ସେପରି ସଙ୍ଗୀତଦ୍ୱାରା ଆକୃଷ୍ଟ ନ ହେବ କିଏ ? ସଙ୍ଗୀତ ପଥରକୁ ବି ତରଳାଇ ପାରେ । ନିଜ ସଙ୍ଗୀତ ଦ୍ୱାରା ଗ୍ରୀକ୍ ଇତିହାସର ଅର୍‌ଫିଅସ୍ ଯମରାଜଙ୍କୁ ପ୍ରସନ୍ନ କରି ପାରିଥିଲେ, ଏହି ସଂଗୀତବଳରେ ମୀରାବାଈ ଆକବରଙ୍କୁ ମୁଗ୍ଧ କରି ପାରିଥିଲେ, ଚୈତନ୍ୟଙ୍କର ଭକ୍ତିସଂଗୀତ ଦିନେ ସମସ୍ତଙ୍କୁ ତରଳାଇ ପାରୁଥିଲା । ଯୁଦ୍ଧକ୍ଷେତ୍ରରେ ସଙ୍ଗୀତ ହିଁ ସୈନିକକୁ ପାଗଳ କରେ, ଜାତିର ସଙ୍ଗୀତ ଗାଇଲେ ଜୀବନର ମାୟା ବୁଟିଯାଏ । ଯିଏ ସଙ୍ଗୀତ

ଗାଏ, ଯିଏ ବାଦ୍ୟ ବଜାଏ, ସିଏ ସମସ୍ତଙ୍କୁ ଭୁଲାଇ ଦିଏ, ସେ ନିଜକୁ ମଧ୍ୟ ସେହିପରି ଭୁଲିଯାଏ । ଜଙ୍ଗଲଭିତରେ ଥିବା ପଲା ଦୁଆରମୁହଁରେ ଦେଢ଼ଦିନର ଉପାସିଆ ସାନ୍ତାଳବୁଢ଼ା ଖଞ୍ଜଣି ଧରି ଭଜନ ଗାଏ, ସେଇଥିରେ ସେ ଭୋକ-ଉପାସ ଓ ଶୀତକଷ୍ଟ ଭୁଲିଯାଏ । ଗାନ୍ଧିଜୀ କହିଚନ୍ତି, ସଙ୍ଗୀତ ଆମ ଜୀବନର ସୌନ୍ଦର୍ଯ୍ୟ ବଢ଼ାଏ, କାର୍ଯ୍ୟରେ ମନ ଲଗାଇବାକୁ ଉତ୍ସାହ ଦିଏ, ମନଭିତରେ ରହିଥିବା ଦୁର୍ଭାବନାଗୁଡ଼ାକୁ ଦୂର କରେ । ସଙ୍ଗୀତ ଶୁଣୁଥିଲେ କାର୍ଯ୍ୟ କରିବାର ଶକ୍ତି ସତେଅବା ଦ୍ୱିଗୁଣିତ ହୋଇଯାଏ । ସେଥିପାଇଁ ଚାଷ କଲାବେଳେ ଗାଆଁର ଚାଷୀ ଗୀତ ଗାଏ, ଦୀର୍ଘ ପଥର କ୍ଲାନ୍ତି ଦୂର କରିବାଲାଗି ଶଗଡ଼ିଆ ଗୀତ ଗାଇ ଆକାଶ ଭରିଦିଏ ।

ବିଶେଷତଃ ଯେଉଁଦିନଠାରୁ ମୁଁ କବିତା ଲେଖି ଶିଖିଲି, ଜୀବନ ଓ ପ୍ରକୃତି ସହିତ ନିକଟତର ଭାବରେ ପରିଚିତ ହେବାକୁ ମୁଁ ଯେଉଁଦିନଠାରୁ ଏକ ଆକର୍ଷଣ ଅନୁଭବ କଲି, ସେହିଦିନଠାରୁ ମୋର ଜୀବନରେ ସଙ୍ଗୀତର ଆକର୍ଷଣ ମଧ୍ୟ ବଢ଼ିଗଲା । ମୁଁ ଯେଉଁ ଗୀତ ଲେଖେ, ସେଥିରେ ଯେତେବେଳେ ସ୍ୱର ଦିଆଯାଏ ଓ ବାଦ୍ୟ ସାହାଯ୍ୟରେ ତା'ର ମୋହିନୀ ଶକ୍ତିକୁ ବି ବଢ଼ାଇ ଦିଆଯାଏ, ସେତେବେଳେ ମୋର ମନର ଆନନ୍ଦ ଉଚ୍ଛୁଳି ଉଠିଲାପରି ଲାଗେ । କବିତା ଲେଖୁ ଲେଖୁ କ୍ରମେ ମୁଁ ସଙ୍ଗୀତ ବି ଗାଇ ଶିଖିଲି । ଆଜି ହଠାତ୍ ଜଣେ ବନ୍ଧୁ ମତପ୍ରକାଶ କରି କହିଲେ ଯେ ଗୀତ ଗାଉଥିବାବେଳେ ମୁଁ ଠିକ୍ ଗୋଟିଏ ସରଳା ବାଳିକା ପରି ଦେଖାଯାଏ । ଏକଥା ଶୁଣି ହୃଦୟ ପୂରି-ଉଠିଲା ପରି ଲାଗିଲା । ଗୀତ ହେଉଚି ସ୍ୱଭାବତଃ ସରଳ, ଏହାର ସରଳତା ହିଁ ଏହାର ସରସତାର କାରଣ । ସଙ୍ଗୀତ ଶୁଣୁଥିବାବେଳେ ମଣିଷର ଚେତନା ଜୀବନଯାପନର ସଂକୀର୍ଣ୍ଣ ସୀମାଗୁଡ଼ାକୁ ଡେଇଁ ଏକ ବିସ୍ତୃତ ସରଳତାର ସାମ୍ରାଜ୍ୟ ଭିତରେ ବୁଲିବାକୁ ଆରମ୍ଭ କରେ । ସଙ୍ଗୀତ ଓ ସେହିପରି ଅନ୍ୟ ଯାବତୀୟ ଲଳିତକଳା ଭିତରେ ସରଳତା ଭରିରହିଚି । ଯଦି ଗୀତ ଗାଉଥିବାବେଳେ ମୁଁ ନିଜର ସରଳଭାବନାକୁ ମୋ' ମୁହଁଉପରେ ପ୍ରକଟ କରାଇପାରିଲି, ତେବେ ମୋର ନିଜକୁ ଭାଗ୍ୟବାନ୍ ମନେକରିବା ଉଚିତ ।

୧୨ । ୧୦ । ୪୩

କବି ସବୁବେଳେ ପ୍ରକୃତି ସହିତ ଅଙ୍ଗାଅଙ୍ଗି ଭାବରେ ଜଡ଼ିତ ହୋଇ ରହିଥାଏ । ଏଇ ନଦୀ, ପର୍ବତ ଓ ଝରଣା ହେଉଚନ୍ତି ତା'ର ବିଶ୍ୱଭବନର

ସମ୍ପଦ ଓ ତା'ର କବିତା ହେଉଚି ଏହିସବୁ ଗନ୍ତାଘରର ଗ୍ୱବିକାଠି । ଯେତେବେଳେ କବି କବିତା ରଚନା କରିବସେ, ସେତେବେଳେ ତା'ର ବିଶ୍ୱଭବନର ଅସରନ୍ତି ଶୋଭାଭଣ୍ଡାର ଖୋଲିଯାଏ, ଆପଣାକୁ ପାସୋରିଦେଇ କବି ସେଇ ଶୋଭାଭଣ୍ଡାରରୁ ପ୍ରାଣଭରା ପୀୟୂଷ ପାନ କରିବାରେ ଲାଗେ । ମୟୂରର ନାଚ, ପିଲାର ସରସ ଓଠ ଦିଓଟିର ହସ କବିପ୍ରାଣରେ ଯେତେ ଆନନ୍ଦ ଦିଏ, ଭୌତିକ ଧନସାମଗ୍ରୀ ସେତେ ଆନନ୍ଦ ଦେଇପାରେ ନାହିଁ । ଧନୀର ଧନ-ସାମଗ୍ରୀ ସରିଯାଇପାରେ, ମାତ୍ର କବିର ସମ୍ପଦ କେବେହେଲେ ସରେ ନାହିଁ । ଏହି ବିଶ୍ୱଭବନ ହେଉଚି ଶୋଭାର ଏକ ଅସରନ୍ତି ଭଣ୍ଡାର, ଯିଏ ଥରେ ଏହି ଗନ୍ତାଘରର ଧନ ଉପଭୋଗ କରିବାର ସୁଯୋଗ ପାଇଚି, ସେ ସବୁଦିନ ପାଇଁ ଏହାର ଅଧିକାରୀ ହୋଇ ରହିଚି । ଯେତେଦିନ ଯାଏ ଝରଣା ଗୀତ ଗାଉଥିବ, ରାତ୍ରିଆକାଶରେ ଚନ୍ଦ୍ରତାରା ଫୁଟି ଉଠୁଥିବେ, ଶିଶୁ ହସୁଥିବ, ସେତେଦିନଯାଏ କବିର ଆନନ୍ଦସ୍ରୋତ ଅବାରିତ ଗତିରେ ବହି ଗ୍ୱଲିଥିବ । ଧନ ନ ଥିଲେ ମଧ୍ୟ କବି ଏହି ସଂସାରରେ ଧନୀ ହୋଇ ରହିଥିବ । କବି ହେଉଚି ଏହି ସଂସାରରେ ପ୍ରକୃତ ସୁଖୀ, କାରଣ ଏହି ପ୍ରକୃତି, ମାଟି ଓ ଏହି ଆକାଶକୁ ଭଲପାଇ କବି ଆନନ୍ଦ ଉପଭୋଗ କରେ । ଆକାଶର ପ୍ରଶସ୍ତ ଓ ପ୍ରଶାନ୍ତ କ୍ଷେତ୍ରରେ ଯିଏ ଭଲ-ପାଇବାର ସ୍ମୃତିଚିତ୍ରମାନ ରଚନା କରିଯାଏ, ଝରଣାର ସଂଗୀତଝଙ୍କାର ଶୁଣି ଯିଏ ନିଜର ପାର୍ଥିବ ବନ୍ଧନଗୁଡ଼ାକୁ ଭୁଲିଯାଏ, ଜଗତରେ ସେଇ ହେଉଚି ମହାନ ପ୍ରେମିକ । କବି ତା'ର କବିତାର ସାଧନଦ୍ୱାରା ଅସମ୍ଭବକୁ ସମ୍ଭବ କରିପାରେ । କବି ଜଗତକୁ ଯେଉଁ ଆଦର୍ଶ ଦେଇଯାଏ, ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ଜଗତ କବିର ସୃଷ୍ଟିଆଡ଼କୁ ମନ୍ତ୍ରମୁଗ୍ଧ ଭାବରେ ଅନାଇ ରହେ । କବି ହିଁ ଏହି ଦୁନିଆକୁ ଗଢ଼ିଚି । ଯିଏ ଏହି ଜଗତକୁ ସୃଷ୍ଟି କରିଚି, ସିଏ ନିଶ୍ଚୟ ଜଣେ କବି ହୋଇଥିବ ।

୧୪ । ୧୦ । ୪୩

ମଣିଷ ଯଦି ଶୁଦ୍ଧଭାବରେ ଭଲପାଇ ଶିଖନ୍ତା ! ମଣିଷ ଯଦି ଶୁଦ୍ଧ ଭାବରେ କ୍ଷମା ଦେଇ ଶିଖନ୍ତା ! ତେବେ ମଣିଷର ଜୀବନଟା ହୁଏତ ଏତେ ଶୁଷ୍କ ହୋଇ ନଥାନ୍ତା । ମାତ୍ର ଭଲପାଇବା ଆଗରୁ ସମସ୍ତେ ଘୃଣା କରି ଶିଖିଚନ୍ତି, ପାଖକୁ ଟାଣିଆଣିବା ଆଗରୁ ସମସ୍ତେ ସନ୍ଦେହ କରି ଶିଖିଚନ୍ତି,

ଆପଣାର କର୍ତ୍ତବ୍ୟ କରିବା ଆଗରୁ ସମସ୍ତେ ଅନ୍ୟର ଟୀକା ହିଁ କରି ଶିଖିଚନ୍ତି । ମଣିଷର ସହିବା ଗୁଣ ଦିନକୁଦିନ ଗ୍ଲଳିଯାଉଚି । ଟିକିଏ କଥାରେ ମଣିଷ ଭାବୁଚି, ଯେପରି ତାର ସମ୍ମାନ ନଷ୍ଟ ହୋଇଗଲା ଓ ସେହି ସମ୍ମାନଟାକୁ ଅକ୍ଷୁଣ୍ଣ ରଖିବା ପାଇଁ ତାକୁ କିଛି ନା କିଛି କରିବାକୁ ହିଁ ପଡ଼ିବ ।

୧୫ । ୧୦ । ୪୩

ଭଗବାନ ଶବ୍ଦଟା କୁଆଡ଼େ ହୃଦୟ ଭିତରେ କେବଳ ଦୁର୍ବଳତା ହିଁ ସୃଷ୍ଟି କରେ । ଅନେକ ଲୋକ କହନ୍ତି ଯେ ଭଗବାନଙ୍କୁ ବିଶ୍ୱାସ କରି ମଣିଷ ଭୀରୁ ହୋଇପଡ଼େ, ତାର ଆତ୍ମନିର୍ଭରଶୀଳତା ଓ ଶୁଦ୍ଧ ଚେତନା ସବୁ ଗ୍ଲଳିଯାଏ । ମାତ୍ର ମୁଁ ଭାବେ, ଏସବୁ ଏକଦମ୍ ଓଲଟା କଥା । ମୁଁ ତ ନିଜେ ଅନୁଭବ କରିଚି, ମୋ'ଠାରୁ ମହତ୍ତର ଓ ବୃହତ୍ତର ଗୋଟାଏ ଅସ୍ତିତ୍ୱରେ ବିଶ୍ୱାସ କରିବା ଦିନଠାରୁ ମୋର ଆତ୍ମବଳ ବଢ଼ିଚି, ମୋ'ଭିତରେ ବିପଦର ସମ୍ମୁଖୀନ ହେବାଲାଗି ଅଧିକ ସାହସ ଆସିଚି, ମୁଁ ନାନା ସଂକୀର୍ଣ୍ଣତାର ଆବରଣକୁ ପାର ହୋଇ ପାରିଚି । ଆଗେ ମୁଁ ପ୍ରକୃତରେ ଭୀରୁ ଥିଲି । ସଂକୀର୍ଣ୍ଣତା, ବାହ୍ୟାଡ଼ମ୍ବର ଓ ଆପଣାକୁ ବଡ଼ ଓ ଅଧିକ କରି ଦେଖାଇହେବାର ଦୁର୍ଗୁଣ ଭିତରେ ବାନ୍ଧିହୋଇ ରହିଥିଲି । ଆଜି ସେସବୁର ଆକର୍ଷଣ ଅନେକ ପରିମାଣରେ କମିଯାଇଚି । ଏ ଜୀବନରେ ସାର କେଉଁଠି, ସାର୍ଥକତା କେଉଁଠି, ମୁଁ ତାହା ଅନ୍ତ ବହୁତେ ଅନୁଭବ କରି ଶିଖିଚି । ଆଉ ମୋର ମରଣର ଡର ନାହିଁ । ଆଗେ ମୁଁ ମରଣକୁ ଭାରି ଡରୁଥିଲି । ଅବଶ୍ୟ ସଂସାରରେ ଏପରି ଅନେକ ଲୋକ ଅଛନ୍ତି, ଈଶ୍ୱର ବା କୌଣସି ଶକ୍ତିମାନ ସତ୍ତାଉପରେ ବିଶ୍ୱାସ ନ କରି ମଧ୍ୟ ଯେଉଁମାନେ ସାହସୀ ହୋଇ ପାରିଚନ୍ତି । ମାତ୍ର ମୁଁ ନିଜ ଅଙ୍ଗେ ନିଭାଇଥିବା କଥାଗୁଡ଼ାକ ହିଁ କହୁଚି । ମୁଁ ଭାବୁଚି ଯେ ମଣିଷର ଜୀବନପରି ଜୀବନ ଗଢ଼ିବାକୁ ହେଲେ ମୋର ଗୋଟାଏ lever ଦରକାର । ବିନା leverରେ ଯିଏ ନିଜର ଜୀବନକୁ ଗଢ଼ିପାରୁଚି, ସେ ମୋର ଅବଶ୍ୟ ଭକ୍ତିଭାଜନ । ମାତ୍ର ମୁଁ ପାରୁ ନାହିଁ । ତେଣୁ ମୋ' ଜୀବନରେ ମୁଁ ଏହି leverକୁ ନିଶ୍ଚୟ ଧରିରଖିବି ।

୨୧ । ୧୦ । ୪୩

ସାହିତ୍ୟ ଆଉ ସାଧୁତା,—ରୋମାଁ ରୋଲାଁଙ୍କ ଜୀବନରେ ଏହି ସମନ୍ୱୟର ଅତି ସ୍ୱଷ୍ଟ ପ୍ରମାଣ ମିଳିଥିଲା । ସାହିତ୍ୟ ଧନୀର ବିଳାସକ୍ଷେତ୍ର

ନୁହେଁ, ଆଳସ୍ୟପରାୟଣର ଭ୍ରମଣକ୍ଷେତ୍ର ନୁହେଁ, ଏହା ସଭ୍ୟତା ଓ ସଂସ୍କୃତିର ନିର୍ମାଣ କରିବାଲାଗି ଏକ ବଳିଷ୍ଠ ସାଧନ । ଲୋକସମାଜକୁ ଉନ୍ନତ ଓ ମାର୍ଜିତ କରିବାଲାଗି ଯେଉଁ ସାହିତ୍ୟ ଲୋଡ଼ା, ସେହି ସାହିତ୍ୟ ହେଉଚି ସର୍ବୋପଯୁକ୍ତ ସାହିତ୍ୟ । ଲୋକସମାଜର ମନରେ ନୂତନ ଓ ଶୁଭତର ସମ୍ଭାବନାଗୁଡ଼ିକର ଉଦ୍ଦୀପନା ଦେବା, ନୂତନ ଯୁଗର ଆଭାସ ଦେବା ଓ ତାହାରି ନିର୍ମାଣ ସକାଶେ ଲୋକମନରେ ଆବଶ୍ୟକ ବିଶ୍ୱାସ ଆଣିଦେବା ହେଉଚି ପ୍ରକୃତ ସାହିତ୍ୟର କର୍ତ୍ତବ୍ୟ । ଏହି ଧ୍ୟେୟର ସାଧନ କରିବା ରୋମାଁ ରୋଲାଁଙ୍କ ଜୀବନରେ ସର୍ବପ୍ରଧାନ ବ୍ରତ ଥିଲା । ମଣିଷକୁ ନୂତନ ଶିକ୍ଷାଦେବାକୁ ଓ ଆପଣାର ମହାନ୍ ପରିଚୟ ବିଷୟରେ ତାକୁ ସଚେତ କରାଇଦେବାକୁ ଏ ଯୁଗରେ ଯେଉଁ ମହାତ୍ମାମାନେ ଜନ୍ମଗ୍ରହଣ କରି ଯାଇଚନ୍ତି, ରୋଲାଁ ସେହିମାନଙ୍କର ପ୍ରେରଣାମୟ ଜୀବନୀକୁ ସାହିତ୍ୟିକ ରୂପ ଦେଇ ଯାଇଚନ୍ତି । ସେ ଜଣେ ଆଦର୍ଶବାଦୀ, ପ୍ରକୃତି ଭିତରେ ସେ ଅମର କଳା ଓ ସଂଗୀତମୟତାର ଉପଲବ୍ଧି କରି ଯାଇଚନ୍ତି । ସେ ଏହି ପୃଥିବୀକୁ ଭଲପାଇବାକୁ ଶିଖାଇଚନ୍ତି । ପୃଥିବୀର ଯେଉଁ ଶତ୍ରୁମାନେ ଆଜି ସହସ୍ରଜନର ସ୍ୱାର୍ଥକୁ ବଳିଦେଇ ଆପଣା ସ୍ୱାର୍ଥସୌଧଟିକୁ ଗଢ଼ିବାର ଅପଚେଷ୍ଟା କରୁଚନ୍ତି, ରୋଲାଁ ସାହିତ୍ୟ ଜରିଆରେ ସେମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଚନ୍ତି । ରୋଲାଁ ଏ ଯୁଗର ମଣିଷ ନୁହନ୍ତି, କାରଣ ସେ ଏକ ଅନାଗତ ସୁନ୍ଦର ଯୁଗର କଳ୍ପନା କରି ଯାଇଚନ୍ତି । ଏ ଯୁଗରେ ତ ମଣିଷ ଆପଣାର ସିଦ୍ଧି ଲାଗି ସମ୍ମାନ ଓ ସତ୍ୟକୁ ବି ବଳି ଦେଉଚି ! ମାତ୍ର ରୋମାଁ ରୋଲାଁ ଏପରି ଏକ ଯୁଗର କଳ୍ପନା କରିଚନ୍ତି, ଯେଉଁ ଯୁଗରେ ମଣିଷ ମଣିଷକୁ ଭଲ ପାଇବ, ପୃଥିବୀର ସ୍ୱାର୍ଥ ସହିତ ନିଜର ସ୍ୱାର୍ଥକୁ ମିଶାଇଦେଇ ଶିଖିବ, ସେଦିନ ଦୁନିଆର ପଥ ଉପରୁ ସବୁପ୍ରକାର ଦୂଷିତବାଦ ବିଦା ହୋଇଯିବ ।

ଏହି ହିଂସାର ଯୁଗରେ ସାହିତ୍ୟସେବା ଦ୍ୱାରା ରୋଲାଁ ମଣିଷଲାଗି ଏକ ଶକ୍ତିଶାଳୀ ଦୃଷ୍ଟାନ୍ତ ଦେଖାଇ ଯାଇଚନ୍ତି । ଫ୍ରାନ୍ସର ସ୍ୱାଧୀନତା ବା ଇଉରୋପର ସ୍ୱାଧୀନତା ଭିତରେ ତାଙ୍କର ସାହିତ୍ୟକ୍ଷେତ୍ର ଆଦୌ ସୀମାବଦ୍ଧ ନ ଥିଲା । ସେ ସାରା ପୃଥିବୀର ସ୍ୱାଧୀନତା ଲୋଡ଼ୁଥିଲେ, ସେ ସମଗ୍ର ମାନବ-ସମାଜ ଲାଗି ଭ୍ରାତୃତ୍ୱର କଳ୍ପନା କରୁଥିଲେ ।

୨୩ । ୧୦ । ୪୩

ଦୁଃଖରେ ମୁଁ ମ୍ରିୟମାଣ ହୋଇଯାଏ କାହିଁକି ? ତାର କାରଣ ସୁଖବେଳେ ମୁ ସୁଖରେ ହି ଭାସିଯାଏ । ସୁଖବେଳେ ମୁଁ ଅତିରିକ୍ତ ଉତ୍‌ଫୁଲ୍ଲ ହୋଇପଡ଼େ, ଏପରିକି ସୁଖର କଥାଟାକୁ ନାନାପ୍ରକାରେ ଅତିରଞ୍ଜିତ କରି ମୁଁ ଏଣେତେଣେ କହିବୁଲେ । ସେଥିଲାଗି ଦୁଃଖ ଆସିବାମାତ୍ରକେ ମୁଁ ବଡ଼ କାତର ହୋଇପଡ଼େ ।

୨୪ । ୧୦ । ୪୩

ମୁଁ କ'ଣ ? କାହିଁକି ଏହି ଦୁନିଆକୁ ଆସିଚି ? ଭାରତବର୍ଷରେ ତ ପ୍ରତିଦିନ ଏତେ ଶିଶୁ ରାସ୍ତାକଡ଼ରେ ମରୁଚନ୍ତି । ମୁଁ କାହିଁକି ଶିଶୁ ଅବସ୍ଥାରେ ମରି ନ ଯାଇ ଆଜିପର୍ଯ୍ୟନ୍ତ ଏହି ଦୁନିଆରେ ବଞ୍ଚି ରହିଚି ? ଏହି ଦୁନିଆଠାରୁ ମୁଁ କି ଋଣ କରିଚି ଓ ଯେତେବେଳେ ଏଠାରୁ ବିଦାୟ ନେଇଯିବି, ସେତେ-ବେଳେ ମୋ'ପଛରେ ମୁଁ କ'ଣ ଛାଡ଼ିଦେଇ ଯିବି ? ମୋ'ଭିତରେ ଅନେକ ଆଶା ଅଛି, ଅନେକ ଅଭିଳାଷ ଅଛି, ମାତ୍ର ନିଦ୍ରାରେ କେହି ରାଜଭବନ ଗଢ଼ିବାର ଆଶା କିପରି କରିପାରିବ ? ମୋର ଆଶାର ଯୋଗ୍ୟ ହେବାକୁ ହେଲେ ମୋତେ ତଦନୁରୂପ ପ୍ରୟାସ କରିବାକୁ ପଡ଼ିବ ।

୨୫ । ୧୦ । ୪୩

ଦୁନିଆଠାରୁ ଶିଖିବି ଓ ଦୁନିଆକୁ ଶିଖାଇବି । ଏହି ସଂସାରରୁ ସାର ନେଇ ମୋର ସଂସାରକୁ ମୁଁ ନୂତନ ରୂପ ଦେବି । ସେଥିଲାଗି ମୋତେ ପ୍ରସ୍ତୁତ ହେବାକୁ ପଡ଼ିବ । ଏହା ହେଉଚି ମୋ' ଜୀବନର ଲକ୍ଷ୍ୟ ।

୨୯ । ୧୦ । ୪୩

କଲିକତାରେ ମଶାମାଛି ପରି ମଣିଷ ମରୁଚନ୍ତି, ଭାରତରେ ଭାତପାଇଁ ମଣିଷ ମଣିଷର ମାୟା ଭୁଲିଗଲାଣି । ଘରସଂସାର ଛାଡ଼ି ମଣିଷ କାଙ୍ଗାଳ ହୋଇ ରାସ୍ତାରେ ବୁଲୁଚି, ତଥାପି ମୁଁ ଦୁର୍ଭାଗ୍ୟ, ମୁଁ କିଛି କରିପାରୁ ନାହିଁ । ମୁଁ ସେ ଦଶ୍ୟକୁ କଳ୍ପନା ବି କରିପାରୁ ନାହିଁ । ଦେଶଟାଯାକ ପ୍ରାୟ ଶ୍ମଶାନ ପାଲଟିବାରେ ଲାଗିଚି, ତଥାପି ଏ ଦେଶରେ ବିଦ୍ରୋହ ହେଉ ନାହିଁ, ତଥାପି

ଏ ଜାତି ଶୋଇ ରହିଚି । ବର୍ତ୍ତମାନ ବାହାରେ ଯେଉଁ ତଥାକଥିତ ନେତାଏ ଅଛନ୍ତି, ସେମାନେ ଖାଲି କାକୁତିମିନତି କରିବା ଛଡ଼ା ଅନ୍ୟ କୌଣସି ବାଟ ପାଉ ନାହାନ୍ତି । ଗୋଟାକୁଗୋଟା ନିବେଦନପତ୍ର ଛପାଇ ସେମାନେ ଆପଣାର କର୍ତ୍ତବ୍ୟ ଶେଷ କରି ଦେଉଚନ୍ତି । ମାତ୍ର ଖାଲି ନିବେଦନ ଦ୍ୱାରା କଣ ଦେଶର ପେଟ ପୂରିଯିବ ? ସେମାନେ ବେଶ୍ ଚମତ୍କାର ବକ୍ତୃତା ଦେଇପାରୁଚନ୍ତି, କିନ୍ତୁ ଜୀବନ-ମରଣର ପ୍ରଶ୍ନ ଉଠିଥିଲାବେଳେ ସେଗୁଡ଼ାକ କୋଉ କାମକୁ ପାଇବ ?

୩୦ । ୧୦ । ୪୩

ଏହି ଦୁନିଆ ଭିତରେ ସମସ୍ତଙ୍କ ମେଳରେ ମୁଁ ବଢୁଚି, ତଥାପି ମୋର ଗୋଟାଏ ନିର୍ଦ୍ଦିଷ୍ଟ ପଥ ଅଛି । ପ୍ରତ୍ୟେକ ମଣିଷର ସେହିପରି ନିଜନିଜର ନିର୍ଦ୍ଦିଷ୍ଟ ପଥ ରହିବା ଆବଶ୍ୟକ । ଆପଣା ଜୀବନର ଉଦ୍ଦେଶ୍ୟ ଅନୁସାରେ ହିଁ ପ୍ରତ୍ୟେକ ମଣିଷକୁ ଆପଣା ଆପଣାର ନିର୍ଦ୍ଦିଷ୍ଟ ପଥ ଠିକ୍ କରିନେବାକୁ ହୁଏ । ସଂସାରର ଖାଲଢିପ ଭିତରେ ଯେଉଁ ଅଗଣିତ ପଥର ସମ୍ଭାବନା ରହିଚି, ତାହାରି ଭିତରୁ ହିଁ ଆମେ ପ୍ରତ୍ୟେକ ଆପଣାର ପଥ ବାଛିନେବା । ସମଗ୍ର ଜଗତ ଲାଗି କୌଣସି ପ୍ରତିବନ୍ଧକ ନ ଆଣି ଆପଣା ନିର୍ଦ୍ଦିଷ୍ଟ ପଥର ଅନୁଧାବନ କରିବା ହେଉଚି ମଣିଷର ବାହାଦୁରୀ । ଯେଉଁ ମଣିଷ ଏପରି କରେ, ତା'ର ଜୀବନ ସାର୍ଥକ ହୁଏ । କିନ୍ତୁ ଅନେକ ସମୟରେ ଅନେକେ ଏପରି କରି ପାରନ୍ତି ନାହିଁ । ଅନେକ ସମୟରେ ଆପଣା ସହିତ ଜଗତର ସମନ୍ୱୟ ହୋଇପାରେ-ନାହିଁ । ଆପଣା ନିର୍ଦ୍ଦିଷ୍ଟ ଲକ୍ଷ୍ୟର ଉପାସନା କରୁ କରୁ ବେଳେ ବେଳେ ବ୍ୟକ୍ତି ସମଷ୍ଟିର ଅଡୁଆ ଭିତରେ ଛନ୍ଦି ହୋଇଯାଏ, ପୁଣି ସମୂହ ସହିତ ପାଦ ମିଳାଇ ଚାଲିବାକୁ ଇଚ୍ଛାକରି ବ୍ୟକ୍ତି ଆପଣାର ସ୍ୱତନ୍ତ୍ର ଗତିପଥକୁ ହିଁ ଭୁଲିଯାଏ । ମୋ' ଜୀବନରେ ଏକ ଉଦ୍ଦେଶ୍ୟ ରହିଚି, ତଥାପି ମୁଁ ଏହି ପୃଥିବୀରେ ହିଁ ଜଣେ ମଣିଷ, ପ୍ରତ୍ୟକ ମଣିଷର ଏହି ଜ୍ଞାନ ରହିବା ଉଚିତ ।

୧ । ୧୧ । ୪୩

ପ୍ରାଚୀନ ବୈଜ୍ଞାନିକ Archemedes ଥରେ କହିଥିଲେ "Give me a a lever, and I shall move the whole world" ମୁଁ ଭାବୁଚି, ଧର୍ମ-ବିଶ୍ୱାସ ବା ପ୍ରାର୍ଥନା ହିଁ ମୋ' ଜୀବନରେ ଏହି lever ଭଳି କାମ କରିବ ।

୪ । ୧୧ । ୪୩

ସ୍ନେହ ଆଉ ପ୍ରେମରେ ଭରା ଭାରତଭୂମିର ଦଶା ଆଜି କଣ ହୋଇଚି ? ମାଆବାପ ସ୍ନେହ ଭୁଲି ରୁଟିଖଣ୍ଡକ ପାଇଁ ନିଜର ଛୋଟ ଶିଶୁଟିକୁ ବିକ୍ରୀ କରି ଦେଉଚନ୍ତି । ପରିବାରକୁ ପୋଷି ନ ପାରି ବାପ, ସ୍ତ୍ରୀ ପିଲାଙ୍କୁ ରାସ୍ତା ମଝିରେ ବସାଇଦେଇ ଭାତ ଆଣିବାର ବାହାନାରେ ଏକା ଏକା ପଳାଉଚି । ତଥାପି ମଣିଷର ନିଦ ଭାଙ୍ଗୁ ନାହିଁ । ଏହି ସଂହାର ପର୍ବରେ ମଧ୍ୟ ତା'ର ଆଖି ପଥର ହୋଇ ରହିଚି । ଯେଉଁ ସ୍ନେହଟିକକ ମଣିଷକୁ ଦୁନିଆରେ ମଣିଷ ବୋଲି ପରିଚିତ କରାଏ, ଆଜି ସେହି ସ୍ନେହଟିକକ ମଧ୍ୟ ନଷ୍ଟ ହୋଇଯାଉଚି ।

୧୫ । ୧୧ । ୪୩

ମଣିଷ ଚାହିଁ ରହିଚି, ତା'ର ଆଖି ଆଗରେ କେତେ ରଙ୍ଗରେ କେତେ ରୂପର ସ୍ୱପ୍ନ ଭାସି ଭାସି ଚାଲିଯାଉଚି । କେତେ ଆଶା, କେତେ ନିରାଶା, କେତେ ସଫଳତା ଆଉ ବିଫଳତା, ପ୍ରତ୍ୟେକ ମଣିଷର ଜୀବନ ହେଉଚି ଏହିଗୁଡ଼ିକର ସମଷ୍ଟି । ମଣିଷ ଅନବରତ ଯୁଝୁଚି, ଅନବରତ ଚାଲିଚି, ତା'ର ପାଦ କେତେବେଳେ ହେଲେ ସ୍ଥିର ନାହିଁ । ତା'ର ଲକ୍ଷ୍ୟ ଅନେକ ଦୂରରେ । ବର୍ତ୍ତମାନ ମୁହୂର୍ତ୍ତଟା ଯେତେ ସୁଆଦିଆ ହେଲେ ମଧ୍ୟ ସେ ଆହୁରି ଆଶା କରି ଆଗକୁ ଧାଉଁଚି । ଏହି ପୃଥିବୀ ହେଉଚି ଧାଇଁବାର ପଡ଼ିଆ । ଏହି ପଡିଆ ମଝିରେ ଦୂର ଅସ୍ପଷ୍ଟ ଲକ୍ଷ୍ୟର ଧୂସର ଓ କାଳ୍ପନିକ ଲକ୍ଷ୍ୟ ଉପରେ ବିବର୍ଣ୍ଣ ଚକ୍ଷୁର କ୍ଷୀଣ ଦୃଷ୍ଟି ପକାଉ ପକାଉ ହୁଏତ କିଏ ଅଟକି ମଧ୍ୟ ଯାଉଚି । ବାଳକର କୋମଳ ମନରେ ବାର୍ଦ୍ଧକ୍ୟ ଆସି ପଶିଯାଉଚି, ତଥାପି ପୃଥିବୀ ରହିଚି, ଆଉ ମଣିଷ ଧାଇଁବାରେ ଲାଗିଚି ।

ମଣିଷ ଯେତେଯାଏ କଳ୍ପନା କରି ଶିଖିଚି, ସେତେଯାଏ ସାଧନା କରି ପାରି ନାହିଁ । ସେଇଥିଲାଗି ସିଏ ଏହି ପ୍ରାଣଭରା ସଂସାର ଭିତରେ ତଥାପି ବାଟବଣା ହୋଇଯାଉଚି । ନାନା କ୍ଷଣିକତା ଭିତରେ ସେ ଅଟକି ଯାଉଚି ।

୧୭ । ୧୧ । ୪୩

ମୁଁ ଖୋଜୁଚି, ତଥାପି ଯେପରି ପାଉ ନାହିଁ । ପ୍ରତିମୁହୂର୍ତ୍ତରେ ଅନତିଦୂରରେ ମୋ' ଆଖି ଆଗରେ ଆଲୋକର ଆଭାସ ଭାସି ଭାସି ଯାଉଚି , ତଥାପି

ପରମୁହୂର୍ତ୍ତରେ ହିଁ ଯେପରି ତାହା ହଜି ହଜି ଯାଉଚି । ବିଶ୍ୱାସ କରି ମୁଁ ପାଖକୁ ଦଉଡ଼ିଚି, ତଥାପି ମୋତେ ଅବିଶ୍ୱାସ କଲାପରି ଯେପରି ସେ ଛାଡ଼ି ଛାଡ଼ି ପଳାଉଚି । ମୋର ପ୍ରାଣ ପିପାସିତ ହୋଇ ରହିଚି, ତଥାପି ନଇଟାଯାକ ଯେପରି ଶୁଖିଲା ପଡ଼ିରହିଚି, ସାଗର ଗୋଟାକରେ ଯେପରି ଲହରୀ ହିଁ ନାହିଁ ।

୨୮ । ୧୧ । ୪୩

ମୁଁ' ମଣିଷ, ମୋର ରାସ୍ତା ଆଦୌ ସିଧା ନୁହେଁ । ନାନାପ୍ରକାରର ବାଧାବିଘ୍ନ, ଖାଲଢିପ ଓ ଉତ୍‌ଥାନ ପତନ ଦେଇ ମୋତେ ବାଟ ଗ୍ଲିବାକୁ ହେବ । ବାଟରେ ମୁଁ ନିଶ୍ଚୟ ଭୁଲ କରିବି । ଜୀବନରେ ଯିଏ କେବେହେଲେ ଭୁଲ କରେନା, ସେ ମଣିଷ ନୁହେଁ । ମାତ୍ର ଭୁଲ୍ କରି ମଧ୍ୟ ସେହି ଭୁଲକୁ ଠିକ୍ କରି-ନେବାର ଶକ୍ତି ଯାହାର ଥାଏ , ସେହି ହେଉଚି ପ୍ରକୃତ ମଣିଷ । ମୁଁ ସଂକଳ୍ପ କରୁଚି, ଚେଷ୍ଟା କରୁଚି, ବିଫଳ ହେଉଚି; ତା'ପରେ ପୁଣି ଚେଷ୍ଟା କରୁଚି । ଅନୁତାପ କରୁଚି, ପ୍ରାର୍ଥନା କରୁଚି ମୋର ଶକ୍ତି ପାଇଁ, ମୋର ଆତ୍ମବଳ ପାଇଁ । ମୁଁ ଅନେକଥର ବିଫଳ ହୋଇଚି, ଆହୁରି ଅନେକଥର ବିଫଳ ହେବି, ତଥାପି ହତାଶ ବା ଆକୁଳ ହୋଇ ପଡ଼ିବି ନାହିଁ । ମୋର କାର୍ଯ୍ୟ ମୁଁ କରିଯାଉଥିବି । ମୁଁ ମୋର କର୍ତ୍ତବ୍ୟ କରିବି, କାହାକୁ ହସିବି ନାହିଁ, କାହାର ଉପହାସକୁ ବି ଅପେକ୍ଷା କରି ରହିବି ନାହିଁ । ପୃଥିବୀର ଭୀରୁ ମନ ମୋତେ କୌଣସି ଭୟ ଦେଖାଇ ପାରିବ ନାହିଁ ।

୩ । ୧୨ । ୪୩

ଅସ୍ତରବିର ନିସ୍ତେଜ କିରଣରେଖା ପରି ପୃଥିବୀର ଇତିହାସରେ ୧୯୪୩ ମଧ୍ୟ କ୍ରମେ ନିସ୍ତେଜ ହୋଇ ଆସିଲା । କେତେ ଯୁଦ୍ଧ, କେତେ ଦୁର୍ଭିକ୍ଷ ଓ କେତେ ଅସହାୟତା ଏହି ବର୍ଷର ପଟଟିରେ ଆଙ୍କିହୋଇ ରହିଲା । ମଣିଷ ସଭ୍ୟ, ତଥାପି ସେ ଯୁଦ୍ଧ କରୁଚି, ନିଶ୍ଚିନ୍ତ ହୋଇ ମଣିଷ ମାରି ଯାଉଚି । ବିଜ୍ଞାନବଳରେ ମଣିଷ ଏହି ପୃଥିବୀକୁ ସମ୍ପଦପୂର୍ଣ୍ଣ କରିଚି, ତଥାପି ଏଇଠି ଲକ୍ଷ ଲକ୍ଷ ମଣିଷ ଆଜି ଖାଦ୍ୟା-ଭାବରୁ ଛଟପଟ ହୋଇ ମରିଯାଉଚନ୍ତି । ଜଗତର କେତେକେତେ ବର୍ଷ ଅଗାଧ ଇତିହାସର ସମୁଦ୍ରରେ ଏହିପରି ଲୀନ ହୋଇଯାଉଚି । ତଥାପି ମଣିଷ ତା'ର ସଂସାରକୁ ବାସୋପଯୋଗୀ କରି ପାରୁ ନାହିଁ । ଦୁଃଖ ଦାରିଦ୍ର୍ୟ ଓ ହତ୍ୟାରୋଗ ବିରୁଦ୍ଧରେ ମଣିଷ ଅସ୍ତ୍ର ଉତ୍ତୋଳନ କରିପାରୁ ନାହିଁ । ମଣିଷର ମୁଠା ଆଜି ବି ଟାଣ ହୋଇ ନାହିଁ, ସିଏ ସେଇଥିଲାଗି ଡରୁଚି । ସେ ଆଗକୁ ପାହୁଣ୍ଡ ପକାଇବାକୁ

ଡକୁଟି । ସେପାଖରେ ଯେ ଆଲୋକ ଅଛି, ସେକୂଳରେ ଯେ ଗୋଟାଏ ନୂତନ ଯୁଗ ଅପେକ୍ଷା କରି ରହିଚି, ସେ କଥାରେ ତାର ବିଶ୍ୱାସ ହେଉ ନାହିଁ ।

୪ । ୧୨ । ୪୩

ଆସିଥିଲି ବାସପରି ପବନରେ ମିଶି ମିଶି, ଯିବି କୌଣସି ଏକ ନିର୍ଦ୍ଦିଷ୍ଟ ଫୁଲର ସୁଗନ୍ଧ ହୋଇ । ବାହାର ଦୁନିଆ ଓ ଏଇ ଛୋଟ ଦୁନିଆର ଜୀବନଭିତରେ ମୋ' ପାଇଁ କେବଳ ଏତିକି ପାର୍ଥକ୍ୟ ରହିଲା । ଯେତେବେଳେ ଫୁଲ ଫୁଟି ନ ଥାଏ, ସେତେବେଳେ ସୂର୍ଯ୍ୟର କିରଣ ସହିତ ମିଶି ମିଶି ବାସର ମାଦକ ଉଡ଼ି ଉଡ଼ି ଆସେ ଫୁଲର ଉପବନକୁ । କିପରି ବାସ କେଉଁ ଫୁଲଭିତରକୁ ଯିବ, ସେତେବେଳେ କେହି ଏକଥା ଜାଣି ନ ଥାନ୍ତି । ମାତ୍ର ଯେତେବେଳେ ଫୁଲ ଫୁଟେ, ସେତେବେଳେ ସେହି ସୁଗନ୍ଧ ବିଭିନ୍ନ ଗନ୍ଧ ଓ ବିଭିନ୍ନ ମାଦକ ହିସାବରେ ନିଜର ପରିଚୟ ଦିଏ । ଫୁଲେଫୁଲେ ସେ ବିଭିନ୍ନ ପ୍ରକାରର ଗନ୍ଧ ଗ୍ରହଣ କରେ । ଦେଶବ୍ୟାପୀ ଗୋଟାଏ ଉତ୍ସାହଭରା ଆନ୍ଦୋଳନରେ ମୁଁ ଏହା ଭିତରକୁ ଭାସି ଆସିଥିଲି ସହସ୍ର ସହସ୍ର ଲୋକଙ୍କ ଭିତରେ, ଏଠାରୁ ଯିବି ଗୋଟିଏ ନିର୍ଦ୍ଦିଷ୍ଟ ବାର୍ତ୍ତା ନେଇ, ଏକ ନିର୍ଦ୍ଦିଷ୍ଟ ସ୍ୱପ୍ନ ନେଇ ଓ ଏକ ନିର୍ଦ୍ଦିଷ୍ଟ ଗାନ ଗାଇ । ଅନ୍ଧକାର ଫଟାଇ ବହି ଆସୁଥିବା ଝରଣା ପଥଉପରର ମାଟିଗୋଡ଼ି ଓ ଫୁଲପତରକୁ ଗୋଟାଇ ଆଣିଲାପରି ଏହି ବିରାଟ ଆନ୍ଦୋଳନ ମୋତେ ମଧ୍ୟ ଗୋଟାଇ ଆଣିଥିଲା । ସେହି ଝରଣା ସମତଳ କ୍ଷେତ୍ରକୁ ଆସିଲା, ତା'ର ଉର୍ବରା ଶକ୍ତିଦ୍ୱାରା ଫୁଲ ଫୁଟିଲା, ଗଛ ହସିଲା, ଫଳ ମଧ୍ୟ ବଢ଼ିଲା । ସେଇପରି ବରଷପରେ ମୁଁ ମଧ୍ୟ ଏଠାରୁ ଯିବି । ମୁଁ ଯାହା କରିବି ତାହା ମୋରି ଜୀବନର ହିଁ ପ୍ରଚ୍ଛଦ ହୋଇ ରହିବ ।

୧୫ । ୧୨ । ୪୩

ଜୀବନର ସୌଧ ତୋଳିବାକୁ ହେଲେ ଜୀବନର ମୂଳଦୁଆ ଶକ୍ତ ହେବା ଦରକାର, ଜୀବନର ପ୍ରାର୍ଥନା ଯଥାର୍ଥରେ ପ୍ରେରଣାମୟୀ ହେବାକୁ ହେଲେ ଜୀବନର ତପସ୍ୟା ମଧ୍ୟ ଯଥାର୍ଥରେ ଆକୁଳ ହୋଇପାରିବା ଦରକାର । ଜୀବନର ସ୍ୱପ୍ନଗୁଡ଼ାକୁ ସଫଳ କରିବାକୁ ହେଲେ ଜୀବନ ସଂକଳ୍ପମୟ ଓ ସାଧନାମୟ ହେବା ଦରକାର । ମାତ୍ର ଅନେକ ସମୟରେ ମଣିଷ ସଂକଳ୍ପ ହିଁ କରେ, ସାଧନା କରି-ପାରେ ନାହିଁ । ତେଣୁ ଜୀବନର ନିର୍ମାଣ କେବଳ ସ୍ୱପ୍ନରେ ହିଁ ପଡ଼ିରହେ ।

୨୯ । ୧୨ । ୪୩

ଏ ଜୀବନର ଶେଷ କେଉଁଠି ? ଜୀବନ ଯେଉଁଦିନ ଶେଷ ହେବ, ସେଦିନ କଣ ମୁଁ ଆଗରୁ ଜାଣିପାରିବି? ଅବଶ୍ୟ ସେଥିପାଇଁ ମୋର କୌଣସି ବ୍ୟାକୁଳତା ନାହିଁ । ଏହିପରି କାମ କରୁ କରୁ, ପ୍ରାର୍ଥନା କରୁକରୁ ଯଦି ହୁଏତ ଦିନେ ମୋ ଶରୀରରୁ ପ୍ରାଣ ଉଡ଼ିଯାଏ, ତେବେ ମୋର ଆନନ୍ଦ ସେଇଥିରେ । ଜୀବନର ଶେଷ ଅଛି, ତଥାପି ମଣିଷ ସେଇଟାକୁ ଜାଣି ନ ଥାଏ ବୋଲି ତାକୁ ଜୀବନଟା ସୀମାହୀନ ପ୍ରତୀତ ହୁଏ । ସେଇଥିପାଇଁ ସେ ତାର କାମରେ ଲାଗିଥାଏ। ସୁଦୂର ଭବିଷ୍ୟତର କଳ୍ପନା କରି ବଡ଼ ବଡ଼ ପରିକଳ୍ପନାରୁ ସେ ସାହସ ସଂଗ୍ରହ କରେ । ଶେଷଟାକୁ ଜାଣିଥିଲେ ମଣିଷର ଜୀବନରେ ଆଉ କୌଣସି ମାଧୁରୀ ନ ଥାନ୍ତା । ମୁଁ ମଧ୍ୟ ମୋ'ର ଶେଷ ଜାଣିବାକୁ ଚାହେ ନାହିଁ । ମୋ'ର କର୍ତ୍ତବ୍ୟ, ସେବା ଓ ପ୍ରାର୍ଥନା ଆଗରେ ଜୀବନର ସୀମା ଅନ୍ୱେଷଣର କୌଣସି ମୂଲ୍ୟ ନାହିଁ । ଜୀବନରେ ମୁଁ କିପରି ହସିହସି ମରିପାରିବି, ସେଇ ମୋର ଲକ୍ଷ୍ୟ, ସେଥି-ପାଇଁ ଅଶେଷ ସାହସ ଦରକାର, ଅଶେଷ ପ୍ରାର୍ଥନା ଦରକାର ।

୫ । ୩ । ୪୪

ଜେଲରୁ ଛୁଟି ପାଇ ଆସିବା ପ୍ରାୟ ଦେଢ଼ମାସ ହୋଇଗଲାଣି । ଦକ୍ଷିଣ ଓଡ଼ିଶା ବୁଲିଯିବାର ବାଟରେ ଆଜି ମୁଁ ବିଜୟନଗରମ୍‌ରେ ରହିଛି । ଏଠିକାର ଭାଷା ମୋର ଏକାବେଳକେ ଅଜଣା । ସେଥିପାଇଁ ଅନେକଥର ଅପ୍ରସ୍ତୁତ ହେବାକୁ ପଡ଼ିଲା । ଭାରତରେ ଗୋଟାଏ ରାଷ୍ଟ୍ରଭାଷାର ଯେ କେତେ-ବେଶୀ ଆବଶ୍ୟକତା ରହିଚି ଆଜି ତା'ର ପ୍ରତ୍ୟକ୍ଷ ପ୍ରମାଣ ପାଇଛି । ଏଠି ଲୋକମାନେ ଖୁବ୍ ଭଦ୍ର, ଅତିଥିର ଚର୍ଚ୍ଚା କରି ଜାଣନ୍ତି । ଦେଶର ଜଣେ ଭାଇ ହିସାବରେ ଅନ୍ୟ ପ୍ରଦେଶର ବାସିନ୍ଦା ହେଲେ ମଧ୍ୟ ତଥାପି ସେମାନଙ୍କର ଯଥେଷ୍ଟ ସ୍ନେହ ଅଛି । ଏହି ସହରଟା ସବୁବେଳେ ଶବ୍ଦପୂର୍ଣ୍ଣ । ଏଠାରେ କୁହାଯାଉଥିବା ବିଶେଷ ଭଙ୍ଗୀ ହେତୁ ହେଉ ବା ଆଉ ଯେଉଁ କାରଣରୁ ହେଉ, ମୋତେ ଲାଗିଲା ଯେପରି ଏଠିକା ଲୋକମାନେ ଶାନ୍ତ ରହିବାକୁ ଚାହାନ୍ତି ନାହିଁ ।

୬ । ୩ । ୪୪

କାଲି ରାତିରେ ବିଷମକଟକରେ ପହଞ୍ଚିଲି । ଚାରିଆଡ଼େ ପର୍ବତ ଘେରି ରହିଚି, ଆଉ ପର୍ବତର ପାଳିତାକନ୍ୟାପରି ଗାଆଁଟି ସୂର୍ଯ୍ୟକିରଣ ଓ

ବିମଳ ଚନ୍ଦ୍ରାଲୋକରେ ହସି ହସି ବଢ଼ୁଚି । ଏହିପରି ଗୋଟାଏ ସ୍ଥାନରେ ଜୀବନଟା କଟିଯାଆନ୍ତା କି ! ମାତ୍ର ବିଶ୍ରାମ କାହିଁ ? ଏ ଦେଶର ପର୍ବତ, ଆକାଶ ଓ ଜୀବନ ସବୁ ଯେ ପରାଧୀନତାର ବୃହତ୍ତର ବୃତ୍ତରେ ଆବଦ୍ଧ ହୋଇ ରହିଚି ! ପ୍ରଥମେ ଏହି ବୃହତ୍ ପାଚେରୀର ବାଧା ଭାଙ୍ଗିବାକୁ ପଡ଼ିବ । ତା'ପରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ଶାନ୍ତିରେ କେଉଁଠି ବସିଯାଇ ପାରିଲେ ହୁଏତ ସେଇଟା ପ୍ରାକୃତିକ ହେବ ଏବଂ ସେଥିରେ ସାର୍ଥକତା ମିଳିବ ।

ପ୍ରାୟ ପନ୍ଦର ଷୋଳମାସ ପରେ ଆଜି ଦାଢ଼ିଗୁଡ଼ାକ ଖିଅର ହୋଇ ପଡ଼ିଲି । ତା'ପରେ ନିଜର ମୁହଁଟାକୁ ଦେଖି ହଠାତ୍ ଚିହ୍ନି ପାରିଲି ନାହିଁ । ମନେହେଲା, ଏଇଟା ଯେପରି ପ୍ରକୃତ 'ମୁଁ' ନୁହେଁ ।

୭ । ୩ । ୪୪

ଭାରତର ଜାତୀୟ ଜୀବନରେ ଏଡ଼େବଡ଼ ଆନ୍ଦୋଳନଟାଏ ହୋଇଗଲା, ମାତ୍ର ଏଠାରେ ତାହାର କୌଣସି ଛାପ ପଡ଼ି ନାହିଁ । କି ଦୁଃଖର କଥା ! ଏ ଦେଶରେ ତଥାପି ପଙ୍ଗପାଳ ସ୍ୱଭାବର ଲୋକ ଅନେକ ଅଛନ୍ତି, ଯେଉଁମାନେ 'କାହିଁ, କଣ ହେଲା ?' ବୋଲି କହୁଚନ୍ତି । ଏତେ ଶୀଘ୍ର ଓ ଏଡ଼େ ସହଜରେ କେବେ କୌଣସି ଜାତିକୁ ସ୍ୱାଧୀନତା ଆସି ନାହିଁ । ସେଥିପାଇଁ ପ୍ରାଣକୁ ପାଣି-ଛଡ଼ାଇ ବାହାରି ପଡ଼ିବା ଦରକାର । ଦେଶର ଯୁବକ ହିମାଳୟ ପରି ବଜ୍ର ହେବା ଦରକାର, ସମୁଦ୍ରପରି ଗର୍ଜି ଉଠିବା ଦରକାର । ଏଠିକା ଲୋକଙ୍କ ଭିତରେ ଶିକ୍ଷାପ୍ରତି ଆଗ୍ରହ ନାହିଁ, ସ୍କୁଲ ମଧ୍ୟ ନିହାତି କମ୍ । ଟଙ୍କା ପଇସା ଖରଚ କରି, ଭଲ ଖାଇ ଭଲ ପିନ୍ଧି ମଉଜ ମଜଲିସ କରିବାକୁ ଏମାନେ ଜୀବନର ଏକମାତ୍ର ଉଦ୍ଦେଶ୍ୟ ବୋଲି ଜାଣନ୍ତି । ଏମାନେ ଆଉ କେବେ ଆଲୋକ ପାଇବେ ? ଏ ଦେଶ କେବେ ସ୍ୱାଧୀନ ହେବ ? ଭାରତବର୍ଷ ଆପଣାକୁ ଚିହ୍ନିବ, ପୃଥିବୀ ଆଗରେ ଆପଣାର ମହାନ୍ ପରିଚୟ ଦେଇ-ପାରିବ ?

୧୨ । ୩ । ୪୪

କାଲି ଏଠାରୁ ସ୍ତରି ପାଞ୍ଚ ମାଇଲ୍ ଦୂରରେ ଥିବା ଗଦଗଦିଆ ଜଳ-ପ୍ରପାତ ଦେଖିବାକୁ ଯାଇଥିଲି । ସେଇ ପ୍ରପାତ କୂଳରେ ରନ୍ଧାବଢ଼ା, ଖିଆପିଆ

ହେଲା । କି ସୁନ୍ଦର ଦୃଶ୍ୟ; ପ୍ରକୃତିର କି ସୁନ୍ଦର ଆତ୍ମପ୍ରକାଶ । ଯିଏ ଏହିଠାରେ ସାରା ଜୀବନଟା କଟାଇଦେବ, ପୃଥିବୀର ସ୍ୱାର୍ଥଲାଳସା ତାକୁ ଆଦୌ ଦୂଷିତ କରିପାରିବ ନାହିଁ । ଅପବିତ୍ର ପୃଥିବୀରେ ଏକା ସେଇ ପବିତ୍ର ଶିଶୁ ହୋଇ ରହିପାରିବ । ସେଠାରେ ସେହି କେତେ ସମୟପାଇଁ ମୁଁ ପ୍ରକୃତି ସହିତ ଯେପରି ସମ୍ପୂର୍ଣ୍ଣଭାବେ ମିଶିଯାଇଥିଲି । ବାପା , ବୋଉ, ଭାଇ, ସମସ୍ତଙ୍କୁ ଭୁଲି ମୁଁ ଯେପରି କେଉଁ ଅପରୂପ ସାମ୍ରାଜ୍ୟ ଭିତରେ ଖେଳି ବୁଲୁଥିଲି । ବର୍ତ୍ତମାନ ଘରେ ବସି ମୁଁ ସେକଥା ବର୍ଣ୍ଣନା କରିପାରିବି ନାହିଁ ।

ସେଠାରେ ଗାଧୋଇବା ସମୟରେ ଅତି ଆନନ୍ଦରେ ପ୍ରପାତର ଜଳପତନ ପାଖରେ ବସୁ ବସୁ ମୁଁ ତଳକୁ ଖସି ପଡ଼ିଥାନ୍ତି । ଖସି ପଡ଼ିଥିଲେ ଅବଶ୍ୟ କଣ ହୋଇଥାନ୍ତା, ସେକଥା ମୁଁ କଳ୍ପନା କରିପାରୁ ନାହିଁ । ହୁଏତ ଏହି ସଂସାରରୁ ବିଦାୟ ନେଇ ଯିବାକୁ ପଡ଼ିଥାନ୍ତା । ମାତ୍ର ହଠାତ୍ ପାଣିଧାର ଠାରୁ ଗୁଖଣ୍ଡେ ଦୂରରେ ଅଟକିଗଲି । ବଞ୍ଚିଗଲି । ଭାବିଲି, ଏପରି ଆକସ୍ମିକ ଦୁର୍ଘଟଣା ବା ଛୋଟ ଘଟଣାରେ ମରିବାଲାଗି ମୁଁ ଜଗତକୁ ଆସି ନାହିଁ । ଜୀବନକୁ ଆହୁରି ଅଧିକ ମୂଲ୍ୟବାନ୍ କରି ଗଢ଼ିବାକୁ ହେବ, ଯେପରି କି ବୃହତ୍ତର କ୍ଷେତ୍ରରେ ହସିହସି ମରିବାକୁ ହୃଦୟରେ ସାହସ ଆସିବ ।

ଆସିଲାବେଳେ ମନେହେଲା, ଏଇଠି ଖଣ୍ଡେ କୁଡ଼ିଆ କରି ସବୁଦିନ ପାଇଁ ରହିଯାଆନ୍ତି; ଜୀବନଟା ବଡ଼ ନିଶ୍ଚିନ୍ତରେ କଟିଯାଆନ୍ତା । ମାତ୍ର ପର ମୁହୂର୍ତ୍ତରେ ଭାବଲି, ନା, ସେହି ସମୟ ବର୍ତ୍ତମାନ କାହିଁ ? ଦେଶକୁ ବାନ୍ଧି ରଖିଥିବା ଦାସତ୍ୱକୁ ଦୂର କରିବା ମୋର ପ୍ରଥମ କର୍ତ୍ତବ୍ୟ । ବର୍ତ୍ତମାନ ବଣ-ଜଙ୍ଗଲରେ ମୁନିଋଷି ହୋଇ ବସିରହିବାର ବେଳ ନୁହେଁ । ପ୍ରଥମେ ବିପ୍ଳବ, ପ୍ରଥମେ ସଂହାର, ପ୍ରଥମେ ଭାଙ୍ଗିଦେବାର ରୁଦ୍ରପ୍ରଳୟ । ତା'ପରେ ଶାନ୍ତି, ତା'ପରେ ଅବସର, ତା'ପରେ ସୌନ୍ଦର୍ଯ୍ୟ ଗ୍ରଖିବା ଓ ତା'ପରେ ସୌଧ ରଚନା ।

୨ । ୪ । ୪୪

ସାତମାଇଲ ଦୂରରେ ଥିବା ସୁରସା ଖଣି ଦେଖି ଯାଇଥିଲୁ । ବଡ଼ ଖରାରେ ପ୍ରାୟ ଦେଢ଼ହଜାର ଫୁଟ ପର୍ବତ ଚଢ଼ିବାକୁ ହେଲା । ପାଖରେ ଥିବା ଗୋଟିଏ ଝରଣାକୂଳରେ ରୋଷେଇ କରି ଖାଇଲୁ । ଏଠିକାର କନ୍ଧଜାତି ଅଦ୍ଭୁତ । ସେମାନେ ଯେପରି ସ୍ୱଭାବତଃ ଦାସ । ଉଚ୍ଚପଦସ୍ଥ ଲୋକମାନେ ସେମାନଙ୍କୁ ମଣିଷ ବୋଲି ଭାବନ୍ତି ନାହିଁ । ସେମାନଙ୍କର ପୋଷାକ ଓ ଭାବଭଙ୍ଗୀରୁ ମଧ୍ୟ ମଣିଷପଣିଆର ଆଭାସ ମିଳେ ନାହିଁ । ଉଚ୍ଚପଦସ୍ଥ ଲୋକମାନେ ସେମାନଙ୍କୁ ଯେତେବେଳେ ଇଚ୍ଛା ସେତେବେଳେ ନିଜର କାମରେ ପଠାଇ ଦିଅନ୍ତି, ନିରୀ

କନ୍ଧ ବିନା ଆପତ୍ତି ଓ ଅଭିଯୋଗରେ ସେହି ଆଦେଶ ପାଳନ କରିବାକୁ ପ୍ରସ୍ତୁତ ବି ହୋଇଯାଏ । ଏମାନେ କେବେ ମଣିଷ ହେବେ, କେବେ ଆଲୋକ ପାଇବେ ? ସାଇବିରିଆର ଅସଭ୍ୟ ଓ ଅବହେଳିତ ମଣିଷ ମଧ୍ୟ ମଣିଷ ହେବାକୁ ଆରମ୍ଭ କଲାଣି । ଆମ ଦେଶରେ ସମତାମୂଳକ ଶାସନ କେବେ ପ୍ରତିଷ୍ଠିତ ହୋଇପାରିବ ?

୨୩ । ୪ । ୪୪

ଜ୍ୱର ହେତୁ ରାତିରେ ନିଦ ହେଉ ନ ଥିଲା । ରାତି ପ୍ରାୟ ତିନିଟାବେଳେ ମନଭିତରେ ହଠାତ୍ ଗୁଡ଼ାଏ ଭାବନା ଆସି ମୋତେ ଆକୁଳ କରି ପକାଇଲା ! ପ୍ରଥମେ ଭାବିଲି, ଜୀବନରେ ଯେଉଁପରି ପଥରେ ମୁଁ ଯିବି ବୋଲି ସ୍ଥିର କରିଛି, ତଦ୍ଦ୍ୱାରା ତ ମୁଁ ମୋର ବାପା, ବୋଉ, ଭାଇ, ଭଉଣୀଙ୍କୁ ଆର୍ଥିକ ଦୃଷ୍ଟିରୁ କୌଣସି ସାହାଯ୍ୟ ଦେଇପାରିବି ନାହିଁ । ସେମାନଙ୍କର କହିବା ଅନୁସାରେ ଜେଲ ଯିବା ସଙ୍ଗେସଙ୍ଗେ ମୁଁ ସେମାନଙ୍କର ସମସ୍ତ ଆଶା ଚୂର୍ଣ୍ଣ କରିଦେଇଚି । ତଥାପି କାହିଁକି ସେମାନେ ମୋତେ ଏପରି ଭଲ ପାଆନ୍ତି ? ମୋର ପାଠପଢ଼ା, ଯାହାଦ୍ୱାରା ପରିବାରର କୌଣସି ଲାଭ ହେବ ନାହିଁ, ସେଥିଲାଗି ସେମାନେ ଏଡ଼େ ବ୍ୟଗ୍ର କାହିଁକି ? ମୁଁ ତ ସେମାନଙ୍କର କିଛି କରିପାରିଲି ନାହିଁ, ତଥାପି କି ଆଶାରେ ସେମାନେ ମୋ ପାଇଁ ରୁହିଁ ବସିଚନ୍ତି ? ଅବଶ୍ୟ ମୁଁ ଭଲକରି ଜାଣେ ଯେ, ପିତୃମାତୃସ୍ନେହ ଓ ଭ୍ରାତୃସ୍ନେହ ପ୍ରତିଦାନର କୌଣସି ଆଶା ରଖେ ନାହିଁ । ତା ଏକ ସ୍ୱର୍ଗୀୟ ପଦାର୍ଥ । ତଥାପି ମୋର ମନ ବୁଝେ ନାହିଁ । ମୁଁ ଋହେଁ ଯେପରି ମୋଲାଗି କେହି କୌଣସିପ୍ରକାରେ ବ୍ୟଗ୍ର ହୋଇ ନ ପଡ଼ନ୍ତୁ, କେବଳ ସେମାନଙ୍କର ପୂର୍ଣ୍ଣ ଆଶୀର୍ବାଦ ନେଇ ମୁଁ ମୋର ଜୀବନବାଟରେ ଆଗକୁ ଯିବାରେ ଲାଗିଥାଏ ।

ଜେଲ ଭିତରେ ଥିବାବେଳେ ମୁଁ କେତେ କାମ କରୁଥିଲି, କାମ କରିବାରେ କେତେ ଆନନ୍ଦ ପାଉଥିଲି । ଗୋଟିଏ ନିର୍ଦ୍ଦିଷ୍ଟ ବାଟରେ ଆପଣାକୁ ପକାଇବା ଲାଗି ମୁଁ କେଡ଼େ ଖୁସି ହୋଇ ଲାଗି ପଡ଼ିଥିଲି । କିନ୍ତୁ ବାହାରକୁ ଆସି ମୋ'ର ସେହି ଶକ୍ତି ଗଲା କୁଆଡ଼େ ? ଏଠି ଅନେକ ସମୟରେ ପରଚର୍ଚ୍ଚା କରି ଯେପରି ମୁଁ ଭାରି ଆନନ୍ଦ ପାଉଚି । ଖାଦ୍ୟପ୍ରତି ବି ମୋର ଲାଳସା ଟିକିଏ ବଢ଼ି ଯାଇଥିଲା ପରି ଲାଗୁଚି, ଆପଣାକୁ ସଜାଇବାର ମନୋଭାବଟା ଯେପରି ବେଶ ବଢ଼ିଯାଇଚି । ଅନ୍ୟାୟ ଦେଖିଲେ ତାହାର ପ୍ରତିରୋଧ କରିବାର ଦୀପ୍ତି ଯେପରି ହଜି ହଜି ଯାଉଚି । ଜେଲରେ ମୁଁ ମାଛମାଂସ ଛାଡ଼ି ଦେଇଥିଲି, ବିଷମକଟକ ଆସି ଭାଇଙ୍କର ସ୍ନେହ ଏଡ଼ି ନ ପାରି ପୁଣି ଖାଇଲି । ଏଠୁ ଛାଡ଼ିବା ପରେ ପୁଣି ମାଛମାଂସ ବି ଛାଡ଼ିଦେବି ବୋଲି ଭାବୁଚି । ଏହି ଦୁଇମାସ ଯେପରି ମୋର

ଗୋଟିଏ ବଡ଼ ପରୀକ୍ଷା ହୋଇଗଲା । ମୁଁ ସେହି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇପାରିଛି ସତ, ମାତ୍ର କଳଙ୍କ ଲାଗି ମୋର ହାତ ପୋଡ଼ିଗଲା ପରି ଲାଗିଲା । ଏହିସବୁ ମନେପଡ଼ି ଭାରି କାନ୍ଦ ମାଡ଼ିଲା; ପ୍ରାୟ ସକାଳ ପର୍ଯ୍ୟନ୍ତ କାନ୍ଦିବାରେ ହିଁ କଟିଯାଇଥିଲା । ଏହି କାନ୍ଦିବାଟା କଣ ଗୋଟିଏ ଦୁର୍ବଳତା, ନା ଭବିଷ୍ୟତ ସକାଶେ ଏକ ସତର୍କବାଣୀ ? ମୁଁ ଏହି କଥାର କୌଣସି ମୀମାଂସା କରିପାରିଛି ନାହିଁ ।

୨୬ । ୪ । ୪୪

ଆଜି ରାତିରେ ବିଷମକଟକ ଛାଡ଼ିଲି । ଏହି ସ୍ଥାନକୁ ଆଉଥରେ ଆସି ଏତେଦିନ କଟାଇବାର ସୁଯୋଗ ହୁଏତ ଆଉ ମିଳିବ ନାହିଁ ।

ଏହା ଭିତରେ କୋରାପୁଟ ଜିଲ୍ଲାର ଅନେକଆଡ଼େ ମୁଁ ଯାଇଚି । ସବୁଆଡ଼େ ଅନୁଭବ କରିଚି, ଯେପରି ଏହି ମାଳଅଞ୍ଚଳର ମାଟିରେ କୌଣସି ଜୀବନ ନାହିଁ, କୌଣସି ପ୍ରଫୁଲ୍ଲତା ନାହିଁ । ଏଠିକାର ଲୋକମାନେ ଖାଲି ଆଜ୍ଞା ଆପଣ କହି ଶହେଥର ନମସ୍କାର କରି ନିଜର ହୀନତାଟାକୁ ଦେଖାଇବାକୁ ହିଁ ଯେପରି ଭାରି ଭଲ ପାଆନ୍ତି ! ଏଠି ଏହି କେତେଦିନର ଜୀବନରେ ଦାସତ୍ୱର ଗୋଟାଏ ନମୁନା ଦେଖିଗଲାପରି ଲାଗିଲା । ଏମାନଙ୍କ ଭିତରେ କୌଣସି ସ୍ୱାଧୀନ ଚିନ୍ତା ନାହିଁ, ସ୍ୱାଧୀନ ହେବାର ଆକାଂକ୍ଷା ନାହିଁ । ଏମାନେ ବୋଧହୁଏ କେବେହେଲେ ସ୍ୱାଧୀନତାର ସ୍ୱପ୍ନ ଦେଖି ନାହାନ୍ତି । ସାମ୍ରାଜ୍ୟବାଦୀ ଶାସନ ଏଠାରେ ଖୁବ୍ ଚାଲ୍ ଖେଳିଚି; ଲୋକମାନଙ୍କୁ ଅଶିକ୍ଷିତ କରି ରଖିଚି । ସାରା ସବ୍‌ଡ଼ିଭିଜନଟାରେ ଗୋଟାଏ ବୋଲି ହାଇସ୍କୁଲ ନାହିଁ । ଏଠିକା ଲୋକଙ୍କର ଶିକ୍ଷାପ୍ରତି ଆଗ୍ରହ ମଧ୍ୟ ନାହିଁ । ସେମାନେ ଜୀବନର ଉଚିତ ମୂଲ୍ୟକୁ ବୁଝି ନାହାନ୍ତି । ଭଲ ଖାଇ ବାହାରକୁ ସଫା ପିନ୍ଧି, ସିଗାରେଟ୍ ମୁହଁରେ ରାସ୍ତାରେ ବୁଲିବାକୁ ଏମାନେ ଜୀବନର ଚରମ ମଜ୍ଜା ବୋଲି ମାନି ନେଇଚନ୍ତି । ଏଠି ସ୍କୁଲ ପିଲାମାନେ ଗୁହା, କଫି ପିଅନ୍ତି, ଧୂଆଁ ଟାଣନ୍ତି । ଏଗାର ବାରବର୍ଷରୁ ବିବାହ କରିପକାନ୍ତି । ଶିକ୍ଷକମାନେ ବି ଛାତ୍ରମାନଙ୍କ ଆଗରେ ନିଜର ହୀନତା ଦେଖାଇବାକୁ ବା ଧୂଆଁ ଟାଣିବାକୁ ସଙ୍କୋଚବୋଧ କରନ୍ତି ନାହିଁ । ଏଠି ଲୋକମାନଙ୍କ ପାଖରେ ଅନେକ ପଇସା ଅଛି, ତଥାପି ଗାଁରେ ଗୋଟିଏ ଭଲ ସ୍କୁଲ ବସାଇବାକୁ ବା ସମୂହଭାବରେ ଗାଆଁର କୌଣସି ଭଲ କରିବାକୁ କାହାରି ଉତ୍ସାହ ନାହିଁ । ଅଧିକାଂଶ ଲୋକ ଜୁଆ ଖେଳି ପଇସା ଉଡ଼ାନ୍ତି । ରାତିରେ ପେଟ୍ରୋମାକ୍ସ ଲଗାହୋଇ ସରକାରୀ କର୍ମଚାରୀଙ୍କ ଘରେ ଜୁଆଖେଳ ହୁଏ । ପୋଲିସ୍‌ମାନେ ମଧ୍ୟ ସେଠାରେ ଭାଗ୍ୟ-ପରୀକ୍ଷା କରିବାକୁ ଯାଆନ୍ତି । ତଥାପି ଏଦେଶର ସରକାର ପୃଥିବୀ ଆଗରେ ସଫେଇ ଦିଏ ଯେ ତା'ର ପୋଲିସ୍ ବିଭାଗ ଏଦେଶରେ ଶାନ୍ତିରକ୍ଷା କରେ,

ଲୋକଙ୍କର ନୈତିକ ବଳ ବଢ଼ାଏ । ଏଠି ସବୁ ଉଚ୍ଚପଦସ୍ଥ କର୍ମଚାରୀ ହେଉଚନ୍ତି ଉତ୍ତର ଓଡ଼ିଶାର ଲୋକ । ଏଠାକୁ ଆସି ସେମାନେ ଇନ୍ଦ୍ରପରି ପୂଜା ପାଆନ୍ତି । କୌଣସି ଏକ ସାମ୍ରାଜ୍ୟର ଅଧିକାରୀ ପରି ଲୋକଙ୍କ ଉପରେ ଶାସ୍ତିବିଧାନ କରିବା ବା ଜବରଦସ୍ତି ନିଜର ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିବାର ଅଧିକାର ସେମାନଙ୍କର ଅଛି । ଅଶିକ୍ଷିତ ମାଙ୍କଡ଼ମଣିଷଙ୍କ ଆଖିରେ ଏମାନେ ଗୋଟିଏ ଗୋଟିଏ ଅତିମାନବ । ତେଣୁ ଲୋକେ ମଧ୍ୟ କୌଣସି ଆପତ୍ତି ନ କରି ଏମାନଙ୍କର ସଦାନୁଗତ ଭୃତ୍ୟ ହୋଇ ରହିବାକୁ ଆଦୌ କୁଣ୍ଠିତ ନୁହନ୍ତି । ଦୁଃଖ ହୁଏ ଯେ, ଦେଶର ଗୋଟିଏ ଭାଇ ଅନ୍ୟ ଶତଶତ ଭାଇଙ୍କ ଠାରୁ ଏହି ଅମାନୁଷିକ ସେବା ଆଦାୟ କରିବାକୁ କୌଣସି ଲଜ୍ଜା ବୋଧକରେ ନାହିଁ । ଯୁଦ୍ଧପାଣ୍ଠି ପାଇଁ ବାର ବାର ଲୋକଙ୍କଠାରୁ ଟଙ୍କା ଆଦାୟ କରାହୁଏ । ସେହି ଟଙ୍କା ଆଦାୟ କରିବାରେ ଅଧିକାର ଓ କର୍ତ୍ତୃତ୍ୱ ଯେପରି ଭାବରେ ମିଶ୍ରିତ ହୋଇ ରହିଥାଏ, ସେଥିରୁ ମନେହୁଏ ଯୁଦ୍ଧଲାଗି ଆପଣାର ସର୍ବସ୍ୱ ଦେଇଦେବାକୁ ଯେପରି ଏଠାରେ ବାଧ୍ୟତାମୂଳକ କରାଯାଇଛି । ଶଙ୍କା ଓ ସେହିପରି ଆଉକେତେକ ସମ୍ଭାଷଣ ଶୁଣିବା ପରେ ଏଠି ମୂକ ମଣିଷମାନେ ଆପଣାର ସର୍ବସ୍ୱ ଦେଇ ହାକିମଙ୍କୁ ସନ୍ତୁଷ୍ଟ କରନ୍ତି । ତଥାପି ସରକାର ଅଲାଜୁକ ଭାବରେ ଘୋଷଣା କରନ୍ତି ଯେ ଭାରତୀୟମାନେ ସ୍ୱତଃପ୍ରବୃତ୍ତ ହୋଇ ଏହି ମୁକ୍ତିଯୁଦ୍ଧରେ ସାହାଯ୍ୟ କରୁଚନ୍ତି । ମାତ୍ର କେତେ କେତେ ଅଶିକ୍ଷିତ ଲୋକଙ୍କୁ କେତେପ୍ରକାର ଧମକ ଦେଖାହୋଇ କିପରି ବଳପୂର୍ବକ ଗୋଟିଏ ମନ୍ଦ ଅଭିଯାନରେ ସାହାଯ୍ୟ କରିବାକୁ ଯେ ବାଧ୍ୟ କରାଯାଉଚି, ଏକଥା କେତେଜଣ ଆମେରି ସାହେବ ଏଠାକୁ ଆସି ଦେଖୁଚନ୍ତି ।

ଏଠାରେ ଶିକ୍ଷା ନାହିଁ । ଲୋକମାନେ ଏକତାବଦ୍ଧ ହୋଇ କିଛି କରି ଶିଖି ନାହାନ୍ତି । ପରସ୍ପରକୁ ପ୍ରଧାନତଃ ସମାଲୋଚନା କରି, ଅନ୍ୟକୁ ପରୋକ୍ଷରେ ତିରସ୍କାର କରି ଏମାନେ ସମୟ ସାର୍ଥକ କରୁଚନ୍ତି । ପଇସା ଥିଲେ ମଧ୍ୟ ଏଠିକାର କନ୍ଧ ଜଙ୍ଗଲଙ୍କୁ ଲୁଗା ପିନ୍ଧି ଶିଖି ନାହିଁ, ଦେହରେ ଖଣ୍ଡେ କମିଜ ପିନ୍ଧିଲେ ବାଘ ନେଇଯିବ ବୋଲି ଏକ ଭ୍ରମ ଭୟ ଏହି ବିଂଶ ଶତାବ୍ଦୀରେ ମଧ୍ୟ ତା' ଭିତରେ ବଦ୍ଧମୂଳ ହୋଇ ରହିଛି । ଏସବୁ କାହାର ଦୋଷ ? ଏହି ନୀରବ ଦୁଃଖୀ ଦେଶର, ମୂକ ମଣିଷର ନିୟତ ଅଭିଶାପ କାହା ଉପରେ ପଡ଼ୁଥିବ, ଦୁନିଆର ଦରବାରରେ ଏସବୁ କ୍ଷମାହୀନ କୁକୀର୍ତ୍ତିର କୈଫିୟତ୍ କାହାକୁ ଦେବାକୁ ପଡ଼ିବ ?

ଆଉ ଗୋଟାଏ କଥା । ମୋ' ଦେଶର ଯେତେ ଭାଇ ପେଟ ପୋଷିବା ଲାଗି ସରକାର ପାଖରେ ବଡ଼ ଚାକର ସାଜିଚନ୍ତି, ଦେଶର ଶତ ଶତ ଗରିବ ଭାଇଙ୍କଠାରୁ ସେମାନେ କାହିଁକି ନୃଶଂସ ଅସୁର ପରି ଗୋଟାଏ

ପାପଯୁଦ୍ଧ ପାଇଁ ଟଙ୍କା ଆଦାୟ କରୁଛନ୍ତି ? କର୍ମବନ୍ଧନ ସେମାନଙ୍କୁ ସେପରି କରିବା ସକାଶେ କଦାପି ବାଧ୍ୟ କରୁ ନାହିଁ । ଯୁଦ୍ଧ ପାଇଁ ଟଙ୍କା ଆଦାୟ ନ କଲେ ସେମାନଙ୍କର ଚାକିରି କଦାପି ଚାଲିଯିବ ନାହିଁ । ତେଣେ ସରକାର ନାଗରା ପିଟି ବୁଲୁଚି ଯେ ଏହି ଯୁଦ୍ଧ ଏକ ଧର୍ମଯୁଦ୍ଧ ଓ ଅତି ସ୍ୱତଃପ୍ରବୃତ୍ତ ଭାବରେ ସମସ୍ତେ ଏଥିରେ ସାହାଯ୍ୟ କରୁଛନ୍ତି । ମାତ୍ର ଦେଶର ପ୍ରତ୍ୟେକ କ୍ଷେତ୍ରରେ ଦେଖାଯାଉଚି, ଏହି ସାହାଯ୍ୟ ଯେପରି କେବଳ ବାଧ୍ୟତାମୂଳକ । ଆମେ ପରାଧୀନ ବୋଲି ତାଙ୍କର ହକ ପାଉଣା ହିସାବରେ ସେମାନେ ଯୁଦ୍ଧଚାନ୍ଦା ଆଦାୟ କରୁଛନ୍ତି । ଅଞ୍ଚ ଦୁନିଆ ଆଗରେ ଏହି ସରକାର ନିଜର ସାଧୁତା ପ୍ରମାଣ କରି ବୁଲୁଚି । ମାତ୍ର ଆମ ଦେଶର ଉଚ୍ଚପଦସ୍ଥ କର୍ମଚାରୀମାନେ ମନପ୍ରାଣ ଦେଇ ଏହି କାର୍ଯ୍ୟରେ ଲିପ୍ତହୋଇ ପଡ଼ୁ ନ ଥିଲେ ଦୁନିଆ ଜାଣନ୍ତା ଯେ ଏହି ସରକାର ସାଧୁ ନୁହେଁ । ଅବଶ୍ୟ ଆଗକୁ ବଳିପଡ଼ି ସରକାରଙ୍କର ଅଧିକା କାମ କଲେ, ଭାଟ ପରି ସରକାରଙ୍କର ପ୍ରଶସ୍ତି ଗାଇଲେ, ରାୟସାହେବ ଓ ରାୟବାହାଦୁର ପ୍ରଭୃତି ଲଜ୍ଜାଜନକ ଖିତାବ ପାଇବାର ସମ୍ଭବନା ବି ରହିଚି । ଦେଶର ପରାଧୀନତାଟାକୁ ଦୃଢ଼ କରିବାରେ ଏମାନେ ବେଶ ସାହାଯ୍ୟ-କରୁଚନ୍ତି । ଦେଶଟାଯାକ ଅନ୍ଧାର କରି ରଖିବାକୁ ଏମାନେ ବି କମ୍ ଲାଗିପଡ଼ି ନାହାନ୍ତି । ମାତ୍ର ଯେତେବେଳେ ଦେଶ ସ୍ୱାଧୀନ ହେବ, ସେତେବେଳେ ନୂଆଘରେ ପଶିବାକୁ ଏମାନେ କେତେ ଅସୁବିଧା ଭୋଗ ନ କରିବେ ?

୧୧ । ୭ । ୪୪

ବାଙ୍ଗାଲୋର ଷ୍ଟେସନରେ ଓହ୍ଲାଇ ସକାଳ ପ୍ରାୟ ଦଶଟାବେଳେ ଆନନ୍ଦ ଆଶ୍ରମରେ ଆସି ପହଞ୍ଚିଲି । ଭାରତର ବିଭିନ୍ନ ସ୍ଥାନରୁ ଏଠାକୁ ପ୍ରାୟ ଆଠଜଣ ବନ୍ଧୁ ଆସିଚନ୍ତି । ଏଠାରେ ଆମେ ସମସ୍ତେ ଗୋଟିଏ ପ୍ରକାରର ତାଲିମ୍ ପାଇବୁ । ପ୍ରତ୍ୟେକ ମଣିଷର ଜୀବନରେ ଗୋଟାଏ ଗୋଟାଏ ମୁହୂର୍ତ୍ତ ବା ସୁଯୋଗ ଏପରି ଆସେ, ଯେତେବେଳେ କି ସେହି ସୁଯୋଗର ପରିପୂର୍ଣ୍ଣ ସଦ୍‌ବ୍ୟବହାର କରିପାରିଲେ ସେ ଆପଣା ଜୀବନରେ ଅନେକ ଦ୍ୱାର ଖୋଲିଦେଇ ପାରିବାର ସୌଭାଗ୍ୟ ଲାଭ କରେ । ଆପଣା ଭିତରେ ସେ ଅନେକ ସମ୍ଭାବନାର ପରିଚୟ ପାଏ । ମୁଁ ଭାବୁଚି, ମୋ ଜୀବନରେ ବର୍ତ୍ତମାନ ସେହିପରି ଏକ ସଯୋଗ ବା ମୁହୂର୍ତ୍ତ ଆସି ପହଞ୍ଚିଚି ।

୧୨ । ୭ । ୪୪

ଆଶ୍ରମରେ ମୋର ଦ୍ୱିତୀୟ ଦିନ । ସକାଳେ ମୋତେ ଚକିରେ ମାଣ୍ଡିଆ ଚୂରିବାର କାମ ଦିଆଯାଇଥିଲା । ତା'ପରେ ଆମେ ସମସ୍ତେ ମିଶି ନୂଆ ରୋଷେଇଘର ତିଆରି ହେବାଲାଗି ଆସିଥିବା ଇଟାକୁ ଆଉ ଗୋଟିଏ ଜାଗାରେ

ସଜାଇକରି ରଖିଲୁ । ଆଜି ପ୍ରଥମକରି ତାକୁଡ଼ିରେ ସୂତା କାଟିବାକୁ ଶିଖିଲି । ପ୍ରଥମେ ଭାରି ଅଡ଼ୁଆ ଲାଗୁଥିଲା, ମାତ୍ର କ୍ରମେ ଅଭ୍ୟସ୍ତ ହୋଇଗଲି । ଏହି ଜାଗା ଓ ଏହିପରି ମୋ'ଲାଗି ସମ୍ପୂର୍ଣ୍ଣ ନୂତନ । ତେଣୁ ମୁଁ ପ୍ରଥମେ ଭଲକରି ଜୀବନ-ପରିବେଶଟିକୁ ଅଧ୍ୟୟନ କରିବାର ଚେଷ୍ଟା କରିବି, ତା'ପରେ ଯାଇ ଏଠିକା ବିଷୟରେ ମୋ'ର ମତାମତ ଦେବି । ତେଣୁ ଏହି ଆଶ୍ରମର ସମସ୍ତ କାର୍ଯ୍ୟକ୍ରମରେ ମୁଁ ନିଜକୁ ସମର୍ପିତ କରିଦେବି । କାମ କରୁ କରୁ ଏସବୁ ସହିତ ମୋ'ର ଜୀବନନିର୍ମାଣର କିପରି କି ସମ୍ପର୍କ ରହିଚି, ସେକଥା ମଧ୍ୟ ବୁଝିବାକୁ ଆରମ୍ଭ କରିବି । ତେଣୁ ଆଜି ମୁଁ କୌଣସିଥିରେ କୌଣସି ମତ ପ୍ରକାଶ କରି ନାହିଁ, କେବଳ ଚୁପ୍ ହୋଇ ଆପଣାର ସବୁ କାମ କରିଯାଇଚି । ଅନ୍ତତଃ କେତେଦିନଯାଏ ମୋତେ ଏତିକିରେ ହିଁ ସନ୍ତୁଷ୍ଟ ରହିବାକୁ ପଡ଼ିବ ।

୧୩ । ୭ । ୪୪

କାଲି ରାତିରେ ଶୋଇବାକୁ ଗଲାବେଳେ ଭାବିଥିଲି ଯେ ପାହାନ୍ତାରୁ ଉଠିବି ଓ କିଛି ପଢ଼ିପାରିବି, କିନ୍ତୁ ତାହା ହୋଇପାରିଲା ନାହିଁ । କିନ୍ତୁ ଯେ କୌଣସି ପ୍ରକାରେ ପଢ଼ିବାଲାଗି ସମୟ ବାହାର କରିବାକୁ ହେବ । ଆଜି ନିତ୍ୟକର୍ମ ପରେ କିଆରୀକୁ ଘାସ ବାଛି ଯାଇଥିଲି । ସେଠି ବେଳେବେଳେ ଭାରି କ୍ଳାନ୍ତ ଓ ବିରକ୍ତ ଲାଗୁଥାଏ । ଗାଆଁର ଚଷୀ ଘଣ୍ଟା ଘଣ୍ଟା ଧରି କେଡ଼େ ଧୈର୍ଯ୍ୟ ସହକାରେ ସନ୍ଧ୍ୟା ବୁଡ଼ିବା ପର୍ଯ୍ୟନ୍ତ କିପରି କାଦୁଅ କିଆରୀରେ ପଡ଼ି-ରହିଥାଏ, ସେହିକଥା ଭାବି ଆଶ୍ଚର୍ଯ୍ୟ ହେଉଥାଏ । ଆଜି ଖରାବେଳେ ଆଉ ଶୋଇ ନାହିଁ ।

୧୪ । ୭ । ୪୪

ଆଜି ଦିନଟାଯାକ ସବୁ ଭୁଲ ହେଲା, ସବୁ ଅବାଗିଆ ହୋଇଗଲା । ସକାଳେ ବିଲକୁ ଘାସ ବାଛି ଗଲି । ସନ୍ତୋଷଜନକ ଭାବରେ କାମ କଲି, କିନ୍ତୁ ତେଣୁ ଫେରିଲାବେଳକୁ ହାତ ପାପୁଲି ଉପରେ ତିନୋଟି ଫୋଟକା ନେଇ ଆସିଲି । ଭାବିଲି ଆଉ କେତେଟା ଦିନ ଏହି କାମରେ ଅଭ୍ୟସ୍ତ ହୋଇଗଲେ ଆଉ ଫୋଟକା ହେବ ନାହିଁ । ଉପରଓଳି ମୋତେ ଚକିରେ ଚୂନା ଚୂରିବାକୁ ପଡ଼ିଥିଲା । ଯେଉଁ ଦାନାରୁ ଚୂନା ଚୂରିଲି ତାହାକୁ ମୁଁ ଆଗରୁ କେବେହେଲେ ଦେଖି ନ ଥିଲି । କାରଣ ତାହା କେବଳ ଦକ୍ଷିଣ ଭାରତରେ ହୁଏ, ଆମ ଓଡ଼ିଶାଆଡ଼େ ହୁଏ ନାହିଁ । ଚୂନା ଭାରି ଖଦଡ଼ିଆ ରହିଗଲା । ରାତିରେ ସେଇଥିରୁ ଜାଉ ହେଲା । ଖାଇଲାବେଳେ ସମସ୍ତେ ବଡ଼ କଳପଣା ହେଲେ । ମୁଁ ଆପଣାକୁ ଭାରି ଅପରାଧୀ ପରି ମନେକରୁଥାଏ ।

୧୫ । ୭ । ୪୪

ପ୍ରାର୍ଥନା ନୀରବ ପ୍ରାର୍ଥନା ହେବା ଉଚିତ । ପ୍ରାର୍ଥନା ଜିଭ ଅଗରୁ ନ ବାହାରି ହୃଦୟରୁ ବାହାରିବା ଉଚିତ । ତଥାପି ତାଳମାନ ରଖି ମଧୁର କଣ୍ଠରେ ପ୍ରାର୍ଥନା ସଙ୍ଗୀତ ଗାଇଲେ ତାହାର ମଧ୍ୟ ଏକ ସ୍ୱକୀୟ ମାଧୁର୍ଯ୍ୟ ରହିଚି । ସଙ୍ଗୀତର ସ୍ୱର୍ଗୀୟ ମାଧୁରୀ ଆମକୁ ଆମର ଅନ୍ତର୍ବିବେକ ଓ ଅନ୍ତର୍ଯାମୀର ନିକଟତର ହେବାକୁ ଅନେକ ସାହାଯ୍ୟ କରିଥାଏ । ମାତ୍ର ଆଜି ପ୍ରାର୍ଥନାରେ ଦୁଇଟିର କୋଣସି ଗୁଣଟି ନ ଥିଲା । ଆମେ ନୀରବ ପ୍ରାର୍ଥନା କରି ନ ଥିଲୁ, ପୁଣି ପ୍ରାର୍ଥନା ସଙ୍ଗୀତରେ ବି କୌଣସି ମିଷ୍ଟତା ନ ଥିଲା । ତେଣୁ ପ୍ରର୍ଥନା ସଭାରେ ବସିଥିଲାବେଳେ ମୋତେ ଭାରି ଅଳସ ଲାଗିଲା ।

୧୬ । ୭ । ୪୪

ଆଜି ରବିବାର, କାମ ବନ୍ଦ । ସକାଳେ ସମବେତ ପ୍ରାର୍ଥନା ହେଲା । ତା'ପରେ ମୁଁ ପୋଖରୀକୁ ଯାଇ ମନଇଚ୍ଛା ପହଁରି ଆସିଲି । ଖାଇସାରି ଆମେ ସମସ୍ତେ ସହର ବୁଲି ଯାଇଥିଲୁ ।

ରାତିରେ ସମସ୍ତେ ମିଶି ସଭା କଲେ ଏବଂ ଆଶ୍ରମର ଖିଆପିଆ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ବିଷୟରେ ଚର୍ଚ୍ଚାମାନ ହେଲା । ମୋତେ ଏସବୁ ଚର୍ଚ୍ଚା କେବେହେଲେ ଭଲ ଲାଗେ ନାହିଁ । ପରିଷ୍କାର ଓ ସ୍ୱାସ୍ଥ୍ୟକର ଯାହାକିଛି ମିଳିଲେ ବି ସାଧାରଣତଃ ତାକୁ ଖାଇବାରେ ମୋର କୌଣସି ଆପତ୍ତି ନ ଥାଏ । ସମସ୍ତେ ବସି ସପ୍ତାହକ ଲାଗି ଝିକିନିଖି ରୁଟିନ୍‌ଟାଏ ତିଆରି କଲେ । ରୁଟିନ୍‌କୁ ଭଲ ପାଇବା ମୋ' ଧାତୁରେ ନାହିଁ । ଆମେ ସମସ୍ତେ ଏଠାକୁ ସ୍ୱେଚ୍ଛାସେବକ ହୋଇ ଆସିଚୁ । ଖାଇବା ପରଷିବା ଓ ବାସନ ଧୋଇବା ପ୍ରଭୃତି କାମ କଣ ଆମେ ଆପଣା ଭିତରେ ବ୍ୟବସ୍ଥା କରି କରିନିଅନ୍ତୁ ନାହିଁ ଯେ ସେଥିପାଇଁ କାଗଜ କଲମ ଧରି ଗୋଟାଏ ରୁଟିନ୍ ତିଆରି ହେବ ! ବିଶେଷତଃ ଯେତେବେଳେ ପରିଷିବା କଥା ପଡ଼ିଲା, ସେତେବେଳେ ମୁଁ ପ୍ରସ୍ତାବ କଲି ଯେ ଆମସହିତ ରହିଥିବା ଭଉଣୀଜଣକ ଆମକୁ ଖାଇବା ପରଷିବେ ଓ ଏପରି ହୋଇପାରିଲେ ଆମକୁ ନିଜ ଘରେ ରହିଥିବା ପରି ଲାଗିବ । ଭାଇ ପରଷୁଥିବ ଭଉଣୀ ପରଶୁଥିବ, ଏଥିରେ କୋଉ ଭଉଣୀକୁ ଭଲ ଲାଗିବ କେଜାଣି ? ଆମ ଭାରତୀୟ ଚଳଣି ଅନୁସାରେ ଏଇଟା ଭଲ ବି ଦିଶିବ ନାହିଁ । ଏଠି ନାରୀକୁ ରୋଷେଇଘର ଭିତରେ ଦାସୀ କରି ରଖିବାର କୌଣସି ପ୍ରଶ୍ନ ଉଠୁ ନାହିଁ । ଦେଶର ବିଭିନ୍ନ ସ୍ଥାନରୁ ଆସିଥିବା ଭାଇମାନଙ୍କୁ ଖାଇବା ପରଷିବାରେ ଭଉଣୀକୁ କେଡ଼େ ଖୁସୀ ନଲାଗନ୍ତା ? ମାତ୍ର ମୋ'ର କଥାଟିକୁ କେହି ପସନ୍ଦ

କଲେ ନାହିଁ । ଭଉଣୀ ଜଣକ ବି ସେଇମାନଙ୍କ ପକ୍ଷରେ ମତ ଦେଲେ । ତେଣୁ ମୁଁ ଚୁପ୍ ରହିଲି ।

୧୮ । ୭ । ୪୪

ମୋ'ର କୌଣସି ଧର୍ମଭେକ ନାହିଁ । ଆପଣାର ଉତ୍ତରୋତ୍ତର ବିକାଶ କରାଇବା ଓ ଏହିପରି ଭାବରେ ବିକଶିତ ହେବା ସଙ୍ଗେସଙ୍ଗେ ସମସ୍ତଙ୍କର କାର୍ଯ୍ୟରେ ଲାଗିପାରିବା ହେଉଚି ମୋର ଧର୍ମ । ମୋର କର୍ତ୍ତବ୍ୟଜ୍ଞାନ ଓ ମୋର ବିବେକ ବ୍ୟତୀତ ଅନ୍ୟ ଭଗବାନ ମୁଁ ଜାଣେ ନାହିଁ । ଦୁଇ ପଥ ଭିତରେ ମୁଁ ଯେତେବେଳେ କୌଣସି ମୀମାଂସା କରି ନ ପାରେ, ସେତେବେଳେ ମୁଁ ଆପଣ ବିବେକର ହିଁ ସାହାଯ୍ୟ ନେଇଥାଏ । ପରଲୋକ ବିଷୟରେ ମୋର ମୁଣ୍ଡ କେବେହେଲେ ବଥାଏ ନାହିଁ । ପରଲୋକର ଅବୋଧ୍ୟ ଶାନ୍ତି ଭୋଗ କରିବାର ଲାଳସାରେ ମୁଁ ଇହଲୋକରେ ମୋ' କର୍ତ୍ତବ୍ୟରେ ଅବହେଳା କରିପାରିବି ନାହିଁ, ବା ସଂସାରକୁ ତ୍ୟାଗ କରିବି ନାହିଁ । ସେପାଖରେ ଶାନ୍ତି ବାଣ୍ଟୁଥିବା ଭଗବାନ ଯଦି କୋଉଠି ରହିଥିବେ, ତେବେ ସେ କଦାପି ମୋତେ ବଞ୍ଚିତ କରାଇ ରଖିବେ ନାହିଁ । କାରଣ ମୁଁ ଏପାଖରେ ମୋର କର୍ତ୍ତବ୍ୟମାନ ଅବଶ୍ୟ କରିଯାଉଥିବି ।

୨ । ୮ । ୪୪

କାଲି ସନ୍ଧ୍ୟାବେଳେ ବାଙ୍ଗାଲୋର ପୋଲିସ୍ ଆସି ମୋତେ ଗିରଫ କରିନେଲେ । ଓଡ଼ିଶା ପୋଲିସ୍‌ଠାରୁ ଗୋଟାଏ ଟେଲିଗ୍ରାମ ଆସିଥିଲା ମୋତେ ଗିରଫ କରିବାକୁ । ସଞ୍ଜ ବୁଡ଼ିଲା ବେଳକୁ ମୁଁ ବାଙ୍ଗାଲୋର କେନ୍ଦ୍ର ଜେଲ୍‌ରେ ଭର୍ତ୍ତି ହେଲି ।

୯ । ୮ । ୪୪

ଏହି କେତୋଟି କଥା ଆଜି ଅତି ସ୍ପଷ୍ଟଭାବରେ ମୋର ବିଶ୍ବରକୁ ଆସିଥିଲା ।

(୧) ଗୁଣର ପ୍ରଶଂସା କରିଦେଲେ ଯଥେଷ୍ଟ ହେବ ନାହିଁ, ମୁଁ ଯାହାର ପ୍ରଶଂସା କରୁଚି, ତାହାରି ଅନୁରୂପ କିଛି ସୃଷ୍ଟି କରିବାକୁ ପଡ଼ିବ ।

(୨) ଆପଣା ମନର ତୁଙ୍ଗ କଳ୍ପନା ଅନୁସାରେ ମଣିଷ କେତେ କଣ ସୃଷ୍ଟି କରି ଥୋଇ ଦେବେ ବୋଲି ବିଶ୍ବରିଥାଏ । ମାତ୍ର ତା'ର ହୃଦୟଭିତରେ କୋଉଠି କି ସଂକୀର୍ଣ୍ଣତା ବା କ୍ଷୁଦ୍ରତା ଘରକରି ରହିଥାଏ କେଜାଣି, ତାହାରି

ଫଳରେ ତା'ର ଯାବତୀୟ ସୃଷ୍ଟିରେ କେତେ କେତେ ଦୋଷ ଆସି ପଶିଯାଏ । ବିଜ୍ଞାନ, କଳା ଓ ଧର୍ମର ଶୁଦ୍ଧ ଭାବନାଗୁଡ଼ିକୁ ପ୍ରାୟ ଏହିପରି ଦଶା ଭୋଗିବାକୁ ପଡ଼ିଚି ।

(୩) ସୁନ୍ଦରତା ଉପଭୋଗ କରୁଥିବା ମଣିଷର ମନ ଓ ମତଲବ ଅନୁସାରେ ସୁନ୍ଦର ପଦାର୍ଥର ମାନ ବି ବଦଳିଗଲା ପରି ଲାଗେ । କୌଣସି ଧନୀ ମଣିଷର ସଜ୍ଜିତ ପ୍ରକୋଷ୍ଠରେ ଚକଚକ ଫୁଲଦାନିରେ କୃତ୍ରିମ ଆଡ଼ମ୍ବର ସହିତ ସଜାହୋଇ ରହିଥିବା ଗୋଲାପଫୁଲଗୁଡ଼ାକ ସତେ ଅବା ଆତ୍ମଗର୍ବରେ ଜଳିଯାଉଥିବା ପରି ଦିଶନ୍ତି । ମନେହୁଏ ସତେ ଅବା ସେମାନେ ସଂସାରକୁ ଉପହାସ ହିଁ କରୁଛନ୍ତି । କିନ୍ତୁ ବିଗିଚ୍ଛର ଗୋଲାପଗଛରେ ପତ୍ରଗୁଚ୍ଛ ଭିତରେ ରହିଥିବା ଫୁଲଗୁଡ଼ାକ ଯେପରି ଆପଣା କମନୀୟତାର ମହିମାରେ ଆନତ ହୋଇ ରହିଥାନ୍ତି ।

(୪) ବେଳେ ବେଳେ ମୁଁ ଆପଣା ଭିତରୁ ବାହାରି ବାହାରକୁ ଚାଲିଯିବି ଓ ସେଇଠି ଥାଇ ଆପଣାଆଡ଼କୁ ଅନାଇବି । ଆପଣାକୁ ଓଜନ କରିବି ଓ ଆପଣାର ବିଚ୍ଛର କରିବି । ନହେଲେ ମୋ' ଭିତରେ ରହିଥିବା ଭଲ ଓ ମନ୍ଦ, ଶୁଭ ଓ ଅଶୁଭ ବିଷୟରେ ମୁଁ ପକ୍ଷପାତ ବିଚ୍ଛର କରିବସିବାର ଭୟ ସବୁବେଳେ ରହିଥିବ ।

(୫) ଦୁଇ ବନ୍ଧୁ ପରସ୍ପର ସହିତ ମିଳିବେ, ପରସ୍ପରଠାରୁ ଅଲଗା ବି ହେବେ । ଶୁଭ ଓ ସୁନ୍ଦରର ସୃଷ୍ଟି କରିବାଲାଗି ସେମାନେ ଏକାଠି ହେବେ । ଭିନ୍ନ ଭିନ୍ନ ମତ ପୋଷଣ କରୁଥିବା ସମୟରେ ସେମାନେ ଅଲଗା ହୋଇ ଠିଆହେବେ ଓ ପରସ୍ପର ଆଗରେ ଆପଣାର ମତ ବା ଦୃଷ୍ଟିକୋଣକୁ ଉପସ୍ଥାପିତ କରିବେ । ତେବେଯାଇ ସେମାନେ ଆପଣା ଆପଣା ଜୀବନରେ ଅଧିକରୁ ଅଧିକ ଉଚ୍ଚ ମିଳନ ଭୂମିର ଆଭାସ ଓ ଆହ୍ୱାନ ପାଇପାରିବେ ଓ ବନ୍ଧୁତାକୁ ଅଧିକରୁ ଅଧିକ ସମୃଦ୍ଧ କରିପାରିବେ ।

(୬) ଅନ୍ୟକୁ ଓ ଓଜନ କରିବାପୂର୍ବରୁ ଆପଣାକୁ ଓଜନ କରିବା ଉଚିତ । ଯଦି ମୁଁ ଆପଣକୁ ନିର୍ଭୁଲ ଭାବରେ ଓଜନ କରିପାରୁଥିବି ଏବଂ ପ୍ରତ୍ୟେକ ଦିନର ନିଷ୍ଠାପର ପ୍ରୟାସଦ୍ୱାରା ଏହି ଓଜନକୁ ଅଳପ ଅଳପ କରି ବଢ଼ାଇବାର ମନ ରଖିଥିବି, ତେବେ ତାହା ହିଁ ଯଥେଷ୍ଟ ହେବ । ତାହାରିଦ୍ୱାରା ହିଁ ମୁଁ ଅନ୍ୟପ୍ରତି ମଧ୍ୟ ଆପଣାର କର୍ତ୍ତବ୍ୟ କରିପାରିବି ।

(୭) ସେନାପତି ଆପଣାର ସେନାସହିତ ରହିଥିବ, ତଥାପି ସେନାର କଥାରେ ରହିଥିବ । ଅତୀତ ଅଭିଜ୍ଞତାରୁ ସେ ବର୍ତ୍ତମାନର କାର୍ଯ୍ୟମାନର କାର୍ଯ୍ୟକ୍ରମ

ଓ ଭବିଷ୍ୟତର କଳ୍ପନାଲାଗି ଖାଦ୍ୟ ଆହରଣ କରି ପାରୁଥିବ । ସିପାହୀର ମଧ୍ୟ କହିବାର ଅର୍ଥାତ୍ ସ୍ୱମତ ପ୍ରକାଶ କରିବାର ସ୍ୱାଧୀନତା ରହିବ । ମାତ୍ର ସେ ଅଟଳଭାବରେ ଆପଣା କର୍ତ୍ତବ୍ୟ ଲାଗି ସମର୍ପିତ ମଧ୍ୟ ରହିଥିବ । ସେନାପତି ଲାଗି ତା'ମନରେ ଶ୍ରଦ୍ଧା ଥିବ, ବିଶ୍ୱାସ ରହିଥିବ ।

(୮) ଭାଙ୍ଗି ପକାଇବା ପୂର୍ବରୁ ନୂତନ ସୃଜନ ସକାଶେ ମୋ'ଭିତରେ ଏକ ଯୋଜନା ରହିଥିବା ଉଚିତ । ଯଦି ଅଧିକ ଭଲ କରି କିଛି ଗଢ଼ିବାଲାଗି ମୋ'ଭିତରେ କୌଣସି ଯୋଜନା ନ ଥାଏ, ତେବେ ଯାହା ଅଛି ଓ ଯେପରି ଅଛି, ତାକୁ ଭାଙ୍ଗିବାରେ ମୋର କୌଣସି ଅଧିକାର ନାହିଁ ।

(୯) ଆମେ ଅନୁକରଣ କରିବା ନାହିଁ, ବିକଶିତ ହେବା । ଆମ ନିଜ ଭିତରେ ହିଁ ଏହି ବିକାଶର ଭୂମିଟିଏ ରହିଥିବା ଦରକାର । ମାଗି ଆଣିଥିବା ଭୂମି ଉପରେ ନକଲ କରି କିଛି ଥାପିଦେଲେ ତାହାକୁ ସୃଷ୍ଟି କରିବା କୁହାଯାଇ ପାରିବ ନାହିଁ । ତଥାପି ଅନ୍ୟସହିତ ସମ୍ବନ୍ଧ ରଖିବାକୁ ହେବ, ଅନ୍ୟଠାରୁ ଶିଖିବାକୁ ହେବ ଓ ଅନ୍ୟର ଗୁଣକୁ ଆହରଣ କରିବାକୁ ହେବ ।

(୧୦) ମଣିଷକୁ ମୁଁ ସନ୍ଦେହ କରିବି କାହିଁକି ? ସେମାନଙ୍କ ଭିତରେ ରହିଥିବା ଭଲ ଉପରେ ମୋର ବିଶ୍ୱାସ କାହିଁକି ନ ରହିବ ? ଅବିବେକୀ ହୋଇ ମୁଁ ଅବିଶ୍ୱାସ କରିବସିଲେ ଅନ୍ୟମାନେ ବି ମୋ'ଠାରେ ରହିଥିବା ଭଲ ଉପରେ କାହିଁକି ବିଶ୍ୱାସ କରିବେ ? ଆପଣାର କର୍ତ୍ତବ୍ୟ କରି ନ ପାରିଲେ କେଉଁ ମୁହଁରେ ମୁଁ ମୋର ଅଧିକାର ଦାବୀ କରିବାକୁ ଯିବି ?

୨୯ । ୯ । ୪୪

ହୃଦୟ ଭିତରେ ଅନେକ ଭାବର ମନ୍ଥନ ଚାଲିଛି, ବାହାରକୁ ବାହାରିବାଲାଗି ଅସ୍ଥିର ହୋଇପଡ଼ୁଚି; କିନ୍ତୁ ମୁଁ ସେଗୁଡ଼ିକୁ ଭାଷା ଦେଇପାରୁ ନାହିଁ । ମନ ଭିତରେ ସହସ୍ର ଭାବନା ଆଲୋଡ଼ନ ଚାଲିଚି; କିନ୍ତୁ ମୁଁ ସେସବୁକୁ ପ୍ରକଟ କରିପାରୁ ନାହିଁ । ମୁଁ ଅନୁଭବ କରୁଚି, ତଥାପି ପ୍ରକାଶ କରିପାରୁ ନାହିଁ । ହୃଦୟର ଭାବସମ୍ପଦକୁ ପ୍ରକାଶ କରି ଶିଖିବା ବି ଦରକାର । କି ଲାଜ ମୋତେ ଏପରି ଅଟକାଇ ରଖୁଚି ?

ପ୍ରତ୍ୟେକ ମଣିଷ ଭିତରେ ଯେ ଗୋଟାଏ ଶକ୍ତିମାନ୍ ଲୁକ୍କାୟିତ ହୋଇ ରହିଚି, ଏକଥା ମୁଁ କାହାକୁ କିପରି ଭାବରେ ବୁଝାଇ କହିବି ? ସେହି ଶକ୍ତିମାନ୍ ପର୍ବତ ଟଳାଇ ପାରିବ, ଅଲୌକିକ ସାଧନ କରିପାରିବ । ମାତ୍ର

ଉଚିତ ମାର୍ଗରେ ତାହାର ବିକାଶ ହୋଇପାରିବା ଦରକାର । ସଫଳତାର ଚାବିକାଠି ପ୍ରତ୍ୟେକର ଭିତରେ ହିଁ ଗୁପ୍ତ ହୋଇ ରହିଚି । ଆପଣା ଭିତରେ ହିଁ ବିଦ୍ୟୁତ୍‌ର ସ୍ପର୍ଶ ବାଜିବା ଦରକାର । ଶକ୍ତି ଭିତରେ ରହିଚି, ବାହାରର ଏହି ଅଭିନୟ, ସଭା ବା ବକ୍ତୃତା ଭିତରେ ନାହିଁ । ଦେଶର ନେତାମାନଙ୍କ ପାଖରେ ମୁଁ ଖାଲି ଗୋଟିଏ ପ୍ରାର୍ଥନା କରିବି : ସେମାନେ ଲୋକମାନଙ୍କ ଆଗରେ ଖାଲି ଏହି ସତ୍ୟଟିର ପ୍ରଚାର କରନ୍ତୁ । ଆପଣା ଭିତରେ ହିଁ ନେତାର ଅନ୍ୱେଷଣ କରିବାକୁ ହେବ । ଆପଣା ଭିତରେ ହିଁ ଆପଣାର ନେତାକୁ ଜାଗ୍ରତ କରିବାକୁ ହେବ । ଆପଣା ଘରେ ହିଁ ଦୀପଟିକୁ ଜାଳିଦେବାକୁ ହେବ । ଭିତରେ ସାହସ ଓ ବିଶ୍ୱାସର ରୋପଣ ହୋଇପାରିଲେ ହିଁ ମଣିଷ ଯାହାକିଛି କରିପାରିବ । ନେତାର ବିକ୍ରୁତି ବା ନେତାରେ ମତାମତ କୌଣସି କାମକୁ ପାଇବ ନାହିଁ । ଆପଣାର କର୍ମତତ୍‌ପରତା ହିଁ ସବୁ କରିପାରିବ ।

୩୦ । ୯ । ୪୪

ବିରାଟ ଜନତା ଆଗରେ ବକ୍ତୃତା ଦେଇଲାବେଳେ ମୁହଁରେ ବାଟୁଳି ବାଜୁ ନ ଥିବ, ଓ ସେହି ବକ୍ତୃତାମାନ ସତେ ଅବା ଅତି ମୂଲ୍ୟବାନ୍ କେଉଁ ଶବ୍ଦସମ୍ଭାର ପରି ସଂବାଦପତ୍ରର ପ୍ରଧାନ ସ୍ତମ୍ଭମାନଙ୍କରେ ବାହାରୁଥିବ,—ନେତା କହିଲେ ଆମ ଦେଶବାସୀ ସାଧାରଣତଃ ଏତିକି ଦକ୍ଷତାକୁ ବୁଝିଥାନ୍ତି । ଖାଲି କଥା କହି ଯେପରି ଆମ ନେତାମାନେ ଆମ ସମସ୍ତଙ୍କୁ ସ୍ୱର୍ଗକୁ ନେଇଯିବେ ! ଏ ଭ୍ରାନ୍ତ ଧାରଣା କେବେ ଦୂର ହେବ କେଜାଣି ? ଏ ଦେଶଲାଗି କାମ ଦରକାର, ସାହସ ଦରକାର । ସମ୍ବାଦପତ୍ର ଜରିଆରେ ବିଶ୍ରୁତ ଓ ବିଘୋଷିତ ହେବାଟାକୁ ଯଦି ନେତା ହେବା କୁହାଯାଏ, ତେବେ ସେଥିଲାଗି ଆମର କୌଣସି ଲାଳସା ହିଁ ରହିବା ଉଚିତ ନୁହେଁ ।

୨ । ୧୦ । ୪୪

ଆମେ ମହାତ୍ମାକୁ ଠାକୁର ବନାଇ ଦେବା ନାହିଁ, ମାତ୍ର ତା'ର ଅସାଧାରଣ ଗୁଣ ଓ ପ୍ରତିଭାକୁ ଆମେ ମସ୍ତକର ଭୂଷଣ କରି ରଖିବା । ଯାହାର ପ୍ରତିଭା ବଡ଼, ସେହି ମଣିଷ ମଧ୍ୟ ବଡ଼ । ଗାନ୍ଧୀଙ୍କ ଜନ୍ମତିଥିରେ ମୋର ଆଜି ଏତିକି କଥା ମନେପଡ଼ୁଚି ।

୧୬ । ୧୦ । ୪୪

ପ୍ରତ୍ୟେକ ମାସର ଷୋଳ ତାରିଖଟି ମୋ'ଲାଗି ନବନବ ପ୍ରେରଣା ନେଇ ଆସେ । ବନ୍ଧୁ ପାଖରେ ନାହିଁ, ତଥାପି ସେ ସତେ ମୋର ପାଖରେ ହିଁ

ରହିଚି । ଏହି ଦିନଟି ଆପଣାର ଉଦ୍‌ବୋଧନ ଦ୍ୱାରା ମୋ' ଭିତରର ମଣିଷକୁ ଜାଗ୍ରତ କରିଆସିଚି, ତାକୁ ପବପବ କରି ଗର୍ଜି ଆସିଚି । ମୋ' ମାସର ଷୋଳ ତାରିଖ କୋଉଦିନୁ ଗଲାଣି, ମାତ୍ର ପ୍ରତ୍ୟେକ ମାସର ଷୋଳ ତାରିଖ ମୋତେ ନୂତନ ହେବାର ପ୍ରେରଣା ଯୋଗାଇଦେଇ ଯାଉଚି ।

୧୭ । ୧୦ । ୪୪

କେଡ଼େ ନିର୍ବୋଧ ହୋଇ ମଣିଷ କ୍ଷମତାକୁ ଭଲପାଇ ଶିଖିଲା ? ଏପରି କରି ସେ ନିଜକୁ କେଡ଼େ ଛୋଟ କରି ନ ଦେଲା ? ପ୍ରକୃତିର ବନ ଓ ପ୍ରାନ୍ତରକୁ ସେ ଭଲ ପାଇପାରିଲା ନାହିଁ । ଫୁଲକୁ ଭଲପାଇପାରିଲା ନାହିଁ । ହାଡ଼, ଚମ ଓ ମାଂସର ଛାଞ୍ଚରେ ଗଢ଼ାହୋଇଥିବା ମଣିଷ ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ଅଗ୍ନିକଣାଟିକୁ ସେ ଭଲ ପାଇ ପାରିଲା ନାହିଁ ! କ୍ଷମତାକୁ ସାଧ୍ୟ ରୂପେ ଗ୍ରହଣ କଲାଦିନୁ ଆମର ବିଜ୍ଞାନ, ଆମର କଳା ଓ ଆମର ଧର୍ମ ମଧ୍ୟ କେଡ଼େ ଭୟଙ୍କର ଓ ବିଭତ୍ସ ହୋଇ ନ ପଡ଼ିଲା ।

ରୋମେଲ୍ ମଲେ । ତାଙ୍କର ମସ୍ତିଷ୍କ ଭିତରେ ଏପରି ଶକ୍ତି ରହିଥିଲା, ଏକ ସୁନ୍ଦର ପୃଥିବୀର ନିର୍ମାଣ କରିବାରେ ଯାହାର ଅନେକ ସଦୁପଯୋଗ ହୋଇ ପାରିଥାନ୍ତା ମାତ୍ର ଏକ ଭୁଲ ଦର୍ଶନର ଗୋଲାମୀ ଖଟି ତାଙ୍କର ମସ୍ତିଷ୍କର ଶକ୍ତି ସରିଲା । ଗୋଟାଏ ଭୁଲ ଆଦର୍ଶବାଦ ଲାଗି ଏହା ଆପଣାକୁ ନାରଖାର କରିଦେଲା । ସଂସାର ଓ ମଣିଷସମାଜକୁ ନାରଖାର କରିବାରେ ହିଁ ଏହା ବ୍ୟବହୃତ ହେଲା । ଏହା ଫଳରେ ଆମେ ରୋମେଲ୍‌ଙ୍କ ଭିତରେ କେବଳ ଗୋଟାଏ ଧ୍ୱଂସକାରୀ ରକ୍ଷସର ହିଁ ପରିଚୟ ପାଇଲୁ । ତାଙ୍କ ଭିତରର ମଣିଷ ଯେପରି କୋଉତଳେ ପୋତି ହୋଇ ରହିଥିଲା । ମଣିଷ ଭିତରେ ରହିଥିବା 'ମଣିଷ'କୁ କାମରେ ଲଗାଇବାର ଯୁଗ ଆଉ କେବେ ଆସିବ ?

୨୨ । ୧୦ । ୪୪

ମହାତ୍ମା କଣସବୁ ଶିଖାଇବାକୁ ଚାହାନ୍ତି, ସେଥିପ୍ରତି କୌଣସି ଧ୍ୟାନ ନଦେଇ ମହାତ୍ମାର ପୂଜା କରିବା ଅର୍ଥ ମହାତ୍ମାର ଅପମାନ କରିବା । କୌଣସି ମହାତ୍ମା ସଂସାରଠାରୁ କଦାପି ଏପରି ଆଶା କରି ନାହାନ୍ତି । ଆପଣାର ମତବାଦକୁ ଲେଉଟାଇବା ପରିବର୍ତ୍ତେ ସକ୍ରେଟସ୍ ବିଷପାନ କରିଥିଲେ, ଆପଣାର ସତ୍ୟରକ୍ଷା ଲାଗି ଯୀଶୁ ଫାଶୀରେ ଝୁଲିଲେ, କେବଳ ନିର୍ବୋଧ ମଣିଷ ହିଁ ଏହିସବୁ ଘଟଣାର ମର୍ମ ବୁଝିବାକୁ ଅସମର୍ଥ ହେବ । ଆମେ ହୁଏତ ଅଳସୁଆ ହୋଇ ବସି ରହିବାକୁ ମନକରୁଚୁ; ତେଣୁ ଆମେ ମହାତ୍ମାର ଅସଲ ଅବଦାନ-ଗୁଡ଼ିକୁ ଗ୍ରହଣ କରିବା ପୂର୍ବରୁ ତାକୁ ପୂଜା କରିବାକୁ ଆରମ୍ଭ କରିଦେଉଚୁ ।

୧୨ । ୧୧ । ୪୪

ମରଣ,—ସେ ତ ଅନିବାର୍ଯ୍ୟ । ଦିନେ ନା ଦିନେ ଏହି ପ୍ରିୟ ଜଗତଠାରୁ ବିଦାୟ ନେଇ ଯିବାକୁ ପଡ଼ିବ । ମାତ୍ର ସେଥିଲାଗି ପୁଣି ଭାବନା କଣ ?

ଆଜି ଦେଶର ମଣିଷ ଅତି ହୀନମାନ ଭାବରେ ମୂଷା ପରି ମରିବାରେ ଲାଗିଚି । ପ୍ରତ୍ୟେକ ମୁହୂର୍ତ୍ତରେ ଏହି ଦେଶର ମଣିଷଭିତରେ ରହିଥିବା ଆତ୍ମା ଅପମାନିତ ହେଉଚି । ସୁକୁମାର ବାଳକ ବା ଶକ୍ତିମାନ ଯୁବକ ଯେ ମରଣ ଗ୍ରହେନା, ଏଦେଶର ଦୁର୍ଭିକ୍ଷ, ବନ୍ୟା, ବତାସ ତାକୁ ମରଣ ଭିତରକୁ ଟାଣି ନେଇଯାଉଚି । ଏହି ଜୀବନକୁ ଚିହ୍ନିବା ଆଗରୁ, ଏହି ସଂସାରକୁ ଭଲ ପାଇବା ଆଗରୁ ସେ ଗ୍ଲଲିଯାଉଚି । ତା'ର ଦୀପଟି ନିଭିଯାଉଛି । ସେଥିଲାଗି ଏହିପରି ମୃତ୍ୟୁରେ କୌଣସି ପବିତ୍ରତା ନାହିଁ, କୌଣସି ସ୍ୱାଦ ନାହିଁ, କୌଣସି ସୌନ୍ଦର୍ଯ୍ୟ ନାହିଁ । ଏହି ମୃତ୍ୟୁ କେବଳ ଏକ ଅପମାନ; କେବଳ ଜଣକର ଅପମାନ ନୁହେଁ, ଏହା ସମଗ୍ର ମଣିଷଜାତିର ଏକ ଅମାର୍ଜନୀୟ ଅବମାନନା । ଦାରୁଣ ଯୁଗ ଓ ବିକୃତ ସମାଜବ୍ୟବସ୍ଥାର ଏକ ଉପହାସ । ଏହି ସଂସାରରେ ଆତ୍ମହତ୍ୟାର ତ ପ୍ରଶ୍ନ ହିଁ ଉଠୁ ନାହିଁ । ଯେପର୍ଯ୍ୟନ୍ତ ଜଗତରେ କର୍ମ ଓ ସେବାର କ୍ଷେତ୍ର ରହିଚି, ଯେପର୍ଯ୍ୟନ୍ତ ଏଠି ଭୋକ, ଅଭାବ ଓ ଅନାଟନର ଆହ୍ୱାନ ଲାଗିରହିଚି, ସେପର୍ଯ୍ୟନ୍ତ ବଞ୍ଚି ରହିବା ଓ ଏହି ଜଗତର କାର୍ଯ୍ୟରେ ଲାଗିବା ହେଉଚି ଆମର ପ୍ରଧାନ ଧର୍ମ ।

ଆଉ ମୁଁ—ଜୀବନର କେତେକେତେ ପ୍ରତିବନ୍ଧକ ଆଗରେ ଆନ୍ଦୋଳିତ ଓ କମ୍ପିତ ମୋର ତରୀଟି—ମୁଁ ବା କିପରି ଏପରି ଏକ ମରଣକୁ ଅଭିନନ୍ଦନ କରିବି ? ପତନବହୁଳ କ୍ଷୁଦ୍ର ପ୍ରଚେଷ୍ଟା ଦ୍ୱାରା ମୁଁ ଜୀବନର ଗୂଢ଼ ସନ୍ଦେଶକୁ ଶୁଣିପାରିବାଲାଗି ଆଗଭର ହୋଇ ବାହାରିଚି । ଏପରି ମରଣ ମୋର କଦାପି କାମ୍ୟ ନୁହେଁ । ମୁଁ ପ୍ରାର୍ଥନା କରୁଚି, ମରଣ ମଧ୍ୟ ମୋ' ହାତରେ ଜୀବନର ଏକ ସାଧନ ହୋଇ ରହୁ । ଜୀବନର କାର୍ଯ୍ୟକ୍ରମ ଭିତରେ, ଜୀବନର ସେବା, ପ୍ରେମ ଓ ପ୍ରାର୍ଥନା ଭିତରେ ମରଣ ଆସି ପହଞ୍ଚିଗଲେ ସେହି ମରଣରେ ସୌନ୍ଦର୍ଯ୍ୟ ରହିଚି ।

ଅନ୍ଧାର ଆଉ ଆବର୍ଜନା ଭିତରେ ମଣିଷ ଯେଉଁ ଦୁନିଆରେ ଜନ୍ମୁଚି ଆଉ ମରୁଚି, ସେଠାରେ ଜୀବନ ମରଣର ନିହିତ ସୌନ୍ଦର୍ଯ୍ୟ ସାର୍ଥକ ଭାବରେ ଉପଲବ୍ଧି ହୋଇପାରିବ କୁଆଡୁ ? ଏହି ଦୁନିଆରେ ଅନେକ କାର୍ଯ୍ୟ ଆଜି ବି ଅସମ୍ପୂର୍ଣ୍ଣ ହୋଇପଡ଼ିଚି । ଏହାର ଆହ୍ୱାନ ମୋ' କାନରେ ବି ଆସି ବାଜୁଚି । ତେଣୁ ଏଠି ମୁଁ ନିଜଲାଗି କୌଣସି ଅକସ୍ମାତ୍ ମରଣ କଦାପି କାମନା କରେ ନାହିଁ ।

୧୪ । ୧୧ । ୪୪

ଏହି ଅସନ୍ତୋଷ ଆଉ ଅନୁତାପଭରା ଜୀବନରେ ଶାନ୍ତି କାହିଁ ? କେତେ ପ୍ରତିଜ୍ଞା, କେତେ ସଙ୍କଳ୍ପ କରୁଛି, ମାତ୍ର ତଥାପି ଯେପରି ବାଟରୁ ବାହାରି ଯାଉଚି । ଯେତେବେଳେ ପଥସ୍ଖଳନ ଘଟୁଚି, ସେତେବେଳେ ଯେପରି ମୋ'ର ବିବେକ ନିଜ ବିରୁଦ୍ଧରେ ହିଁ ବିଦ୍ରୋହ କରି ଉଠୁଚି । ମାତ୍ର ସେଥିରେ ବି କି ଶାନ୍ତି ମିଳୁଛି ? ଯେତେବେଳଯାଏ ମୁଁ ଆପଣାର ରାସ୍ତା ପାଇ ନାହିଁ, ସେପର୍ଯ୍ୟନ୍ତ ମୁଁ ଶାନ୍ତି ପାଇବି କୁଆଡୁ ? ମୁଁ ପ୍ରାର୍ଥନା କରୁଚି, ମାତ୍ର ତାହା ଯେପରି ପ୍ରାଣର ପ୍ରାର୍ଥନା ନୁହେଁ; ମୁଁ ଶପଥ କରୁଚି, ମାତ୍ର ସେହି ଶପଥ ଯେପରି ସମ୍ପୂର୍ଣ୍ଣ ଚିତ୍ତର ଶପଥ ନୁହେଁ । ମନୁଷ୍ୟୋଚିତ ମହାନ୍ ପ୍ରବୃତ୍ତିଗୁଡ଼ିକୁ ଆପଣାର ଇହ ଜୀବନରେ ପ୍ରତିଫଳିତ କରିବାଲାଗି ମଣିଷ ନିରନ୍ତର ଚେଷ୍ଟା କରିଆସିଚି । ସେଗୁଡ଼ିକର ମହାନତାକୁ ସେ ପୂଜା କରିଆସିଚି । ମାତ୍ର ସେହି ପୂଜା ଅନେକ ସମୟରେ କେବଳ ବାହ୍ୟ ପୂଜାରେ ପର୍ଯ୍ୟବସିତ ରହିଚି । କୌଣସି ମହାପୁରୁଷର ଜୀବନରେ ମହାନ୍ ସତ୍ତାର ପରିଚୟ ପାଇ ସେ ଅତି ବିନମ୍ର ଚିତ୍ତରେ ତାହାରି ଉଦ୍ଦେଶ୍ୟରେ ନମସ୍କାର ଜଣାଇଚି ସତ, ମାତ୍ର ଆପଣା ଜୀବନରେ ସେ ସେହି ସତ୍ତାର ପ୍ରତିଫଳନ କରିପାରି ନାହିଁ । ସେହି ଆଦର୍ଶକୁ ସେ ନିଜର କରିପାରି ନାହିଁ ।

ମାତ୍ର ମୁଁ ତ ଏହି ନମସ୍କାରରେ କଦାପି ତୃପ୍ତ ହୋଇପାରିବି ନାହିଁ; ଏ ତ ପୂଜା ନୁହେଁ, ପୂଜାର ଛଳନା । କେବଳ ପଳାୟନବାଦୀର ପୂଜା । ଯାହାକୁ ମୁଁ ମହତ ଓ ମୂଲ୍ୟବାନ୍ ବୋଲି ଚିହ୍ନିବି, ତାହାରି ଚରଣତଳେ ମୁଁ ମୋର ମାଟି କାଦୁଅର ନରମ ଜୀବନଟିକୁ ସମର୍ପଣ କରିଦେବି ।

୧୫ । ୧୧ । ୪୪

ସାଧନ ଭିତରେ ସାଧ୍ୟକୁ ବଳିଦେଇ ଦୁନିଆ ଆଜି ବଡ଼ ମ୍ରିୟମାଣ ହୋଇପଡ଼ିଚି । ଅଧିକାରର ମୋହରେ ଅନ୍ଧ ହୋଇ ଦୁନିଆ ଅପଣାର କର୍ତ୍ତବ୍ୟ ଭୁଲିଯାଇଚି । ଜ୍ୟୋତିହୀନରେ ଜ୍ୟୋତିର ଭ୍ରମ କରି ସେ ଏକ ତ୍ରିଶଙ୍କୁ ସ୍ୱର୍ଗ ଗଢ଼ିବାଲାଗି ପାଗଳ ହୋଇ ବାହାରିଚି । ଆଜି ଦୁନିଆର ଦରବାରରେ ନ୍ୟାୟ, ଧର୍ମ ଓ ସମତା ସବୁ ହାଣ ଖାଉଚି, ଏହିଗୁଡ଼ିକର ଦୁହାଇ ଦିଆଯାଇ ମନୁଷ୍ୟତାର ଅପଳାପ କରାଯାଉଚି । ଯାହା ହାତରେ ଶାସନର ସତ୍ତା ରହିଚି, ଯାହା ହାତରେ ଖବରକାଗଜ ଓ ପ୍ରଗ୍ରରଯନ୍ତ୍ରମାନ ରହିଚି, ସେହି କପଟନେତା ଆପଣାର ସୁବିଧା ଓ ଅବସର ଅନୁସାରେ ଜଗତକୁ ସତ୍ୟ, ସମତା ଓ ନ୍ୟାୟର ସ୍ୱପ୍ନ ଦେଖାଉଚି, ପୁଣି ସୁବିଧା ପାଇଲେ ଆପଣା ସ୍ୱାର୍ଥସିଦ୍ଧି ପାଇଁ ଦୁନିଆଯାକର ମଣିଷଙ୍କ ଆଗରେ ସେ ସତ୍ୟ, ସମତା ଓ ନ୍ୟାୟ ଉପରେ ଦାରୁଣ ପ୍ରହାର

ମଧ୍ୟ କରୁଚି । ଏହି ଶଠତାର ବିଗ୍ଭର କରିବାର ଦରବାର ସଂସାରରେ କୋଉଠି ରହିଚି ? ସତ୍ୟ ଓ ନ୍ୟାୟର ନୀତିନିର୍ମାତା ସ୍ୱୟଂ ସତ୍ୟ ଓ ନ୍ୟାୟର ଅପମାନ କରୁଚି, ମାତ୍ର ଏଥିର ପ୍ରତିବାଦ କିଏ କରୁଚି ?

୧୭ । ୧୧ । ୪୪

ଭାରତର ବୁଦ୍ଧି ଓ ସୃଜନଶକ୍ତିକୁ ଆଜି କେଡ଼େ ନୃଶଂସ ଭାବରେ ନଷ୍ଟ କରା ନଯାଉଚି ? ପ୍ରତିବର୍ଷ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରୁ ଅନାବଶ୍ୟକ ଶାସ୍ତ୍ରବାକ୍ୟମାନ କଣ୍ଠସ୍ଥ କରି ପରୀକ୍ଷାଖାତାରେ ସେଗୁଡ଼ିକୁ ଚମତ୍କାର ଭାବରେ ଉଦ୍‌ଗାର କରି ଆସୁଥିବା ଛାତ୍ରମାନଙ୍କୁ ଉତ୍ସାହିତ କରି ବୃତ୍ତିମାନ ଦିଆଯାଉଚି । ଏହି ସ୍ୱୀକୃତି ଓ ସଫଳତାର ଫଳକରେ ଛାତ୍ର ପାଗଳ ହୋଇଯାଉଚି । ଆପଣାକୁ ଏକ ଗ୍ରନ୍ଥକୀଟ କରି ପ୍ରଥମ ଶ୍ରେଣୀରେ ପାସ୍ କଲେ ଓ କୌଣସି ବଡ଼ ସରକାରୀ ଚାକିରି ପାଇଗଲେ ସିଏ ଆପଣାକୁ ସଂସାରରେ ଭାରି ଭାଗ୍ୟବାନ ବୋଲି ଭାବୁଚି । ଜୀବନର ସ୍ଥାୟୀ ମୂଲ୍ୟଗୁଡ଼ିକୁ ବୁଝିବାକୁ, ସତ୍ୟର ଅନୁଧାବନ କରିବାକୁ ତା'ଭିତରେ କୌଣସି ପ୍ରବୃତ୍ତି ଉଧେଇପାରୁ ନାହିଁ । ଗୋଟିଏ ବିକୃତ ଜୀବନଧାରଣ-ପ୍ରଣାଳୀକୁ ଅଭ୍ୟାସଗତ କରି ସେ ମୁଗ୍ଧ ହୋଇଯାଉଚି । ମାତ୍ର ତା'ର ଅନ୍ତର୍ଶକ୍ତି, ସୃଜନପ୍ରବୃତ୍ତି ଓ ମୂଲ୍ୟବୋଧଶକ୍ତି ବାହ୍ୟ ସଫଳତାରୂପୀ ଫଇକର ସୁନାଶିକୁଳି ଦ୍ୱାରା ଅକର୍ମଣ୍ୟ ଓ ଅସମର୍ଥ ହୋଇ ରହୁଚି ।

ଯେତେବେଳେ ଦେଶ ତା'ର ଅଧିବାସୀମାନଙ୍କଠାରୁ ଶକ୍ତି ହିଁ ଆବଶ୍ୟକ କରୁଛି, ସେତେବେଳେ ଦେଶର ସବୁଠାରୁ ବଡ଼ ଶକ୍ତି—ଛାତ୍ରଶକ୍ତି ଓ ଯୁବଶକ୍ତିର ଏହିପରି ଭାବରେ ଦୁଷ୍ପ୍ରୟୋଗ କରାଯାଉଚି । ଏହି ସ୍କୁଲ, କଲେଜ, ଏଇ ଚାକିରିର ମୋହ, ସବୁ ଯେପରି ମୋର ଜାତିକୁ ଇନ୍ଦ୍ରଜାଲରେ ପକାଇ ରଖିବାର ମତଲବରେ ହିଁ ସୃଷ୍ଟି କରାଯାଇଚି । ଏହାର ପ୍ରତ୍ୟେକ ଇଟା ଓ ପ୍ରତ୍ୟେକ କଣ୍ଡା ଯେପରି ଏଦେଶର ଅଧଃପତିତ ମାନବଶ୍ରେଣୀକୁ ଉପହାସ କରୁଚି, ସେଠାରେ ଶିକ୍ଷା ଦିଆଯାଉଥିବା ପ୍ରତ୍ୟେକ ଶବ୍ଦ ଯେପରି ଜାତିର ବକ୍ଷଉପରେ ଦାରୁଣ ପ୍ରହାର କରୁଚି । ଗୋଟାଏ ମହାଜାତିକୁ ଆତ୍ମବିସ୍ମୃତ ଓ ଅପଦାର୍ଥ କରି ରଖିବାଲାଗି କେଡ଼େ କୌଶଳପୂର୍ଣ୍ଣ ଏକ ଶିକ୍ଷାପ୍ରଣାଳୀ ରଚନା କରା ନ ଯାଇଛି ? ସାପକୁ ମନ୍ତ୍ରବଶ କରି ରଖିଲାପରି ଗୋଟିଏ ଜାତିର ବ୍ୟକ୍ତିତ୍ୱ ଓ ମହତ୍ ପ୍ରବୃତ୍ତି-ଗୁଡ଼ିକୁ କିପରି ବଶ କରି ରଖା ନ ଯାଇଚି ? ଯେତେବେଳେ ମଣିଷର ଇତିହାସ ଗଢ଼ାଯିବ, ପ୍ରତ୍ୟେକ ମଣିଷକୁ ତା' ଜୀବନର ମୂଲ୍ୟ ବୁଝିବାର ଶକ୍ତି ଦେଇ, ପରିପୂର୍ଣ୍ଣ ବିକାଶର ମାର୍ଗ ଦେଖାଇ ଯେତେବେଳେ ନୂତନ ଯୁଗ ଆସିବ, ସେତେବେଳେ ଯାଇ ଆମ ଏ ଅନ୍ଧାର ଯୁଗର ସଚ୍ଚା ଇତିହାସ ଲେଖାଯିବ ।

୨୨ । ୧୧ । ୪୪

ପୁଣି ଅନେକ ପରିବର୍ତ୍ତନ । ମୋ’ ଜୀବନକୁ କେହି ଯେପରି ଗୋଟାଏ ଖେଳନା ପରି ପାଇଚି ! ଦେଶଟାଯାକକୁ ଆଜି ଯେତେବେଳେ ଦୁନିଆଦାଣ୍ଡରେ ଖେଳନାପରି ନଗ୍ନପାଉଚି, ଆତ୍ମବିକାଶ ତଥା ଜାତୀୟ ବିକାଶଲାଗି ଯେତେବେଳେ ଏଦେଶରେ ସବୁ ଦୁଆର ବନ୍ଦ ହୋଇ ରହିଚି, ସେତେବେଳେ ଆଉ କାହା ହାତରେ ଖେଳନା ସଦୃଶ ନାଚିବାକୁ ଆପଣାର ଭାଗ୍ୟ ବୋଲି ଧରିନେବାକୁ ହେବ ଓ ସେହି ଅନୁସାରେ ଆପଣାକୁ ଅଭ୍ୟସ୍ତ କରିନେବାକୁ ପଡ଼ିବ ।

ଅଠର ତାରିଖ ଦିନ ଉପରଓଳି ପ୍ରାୟ ସାଢ଼େ ତିନିଟାବେଳେ ସୂଚନା ମିଳିଲା ଯେ ମୋ’ ସମ୍ବନ୍ଧରେ ଜେଲ ଅଫିସକୁ ଗୋଟିଏ କିଛି ଆଦେଶ ଆସିଚି । ମନ ଚଞ୍ଚଳ ହୋଇ ଉଠିଲା, ମାତ୍ର ଆପଣାର ମନକୁ ଚହଲାଇ ନଦେବାକୁ ମୁଁ ଯଥାସାଧ୍ୟ ଚେଷ୍ଟା କରିଥିଲି ପାଞ୍ଚଟା ବେଳକୁ ମୋତେ ମୋର ଜିନିଷପତ୍ର ବାନ୍ଧି ଅଫିସକୁ ଯିବାକୁ କୁହାଗଲା । ସେଠାରେ ଜଣେ ପୋଲିସ୍ ଅଫିସର୍‌ଙ୍କଠାରୁ ମୁଁ ଏକ ହୁକୁମନାମା ପାଇଲି । ସେଥିରେ ମୋତେ ମହୀଶୂର ରାଜ୍ୟର ସୀମା ଛାଡ଼ିଯିବାକୁ ଏବଂ ଆଉକେବେ ଏହି ରାଜ୍ୟଭିତରକୁ ନଆସିବା ଲାଗି ଆଦେଶ ହୋଇଥିଲା ।

ଜେଲଭିତରୁ ବିଦାୟ ହୋଇ ଆସିବାଟା ଗୋଟାଏ ସମ୍ପୂର୍ଣ୍ଣ ପୃଥକ୍ ଦୁନିଆର କଥା । ଏପାଖରେ ବସି ତାହାର ଯଥାର୍ଥ ଚିତ୍ରଣ କରାଯାଇ ପାରିବ ନାହିଁ । ସେତେବେଳେ କଣ୍ଠରେ ସଙ୍ଗୀତ ଭରିଉଠେ, ଆଖି ସ୍ନେହରେ ଭରିଉଠେ, ହୃଦୟଭିତରଟା କଥାରେ ଭରିଉଠେ; ମାତ୍ର ସେସବୁକୁ ପ୍ରକାଶ କରିବାର ଶକ୍ତି ପାଖରେ ନ ଥାଏ । ଖାଲି ଦୃଷ୍ଟିର ଭାବମୟ ଆଦାନପ୍ରଦାନ ଓ ନମସ୍କାର-ବିନିମୟ ବ୍ୟତୀତ ଆଉକିଛି କରିବାର ଜୁ’ ନ ଥାଏ । ସେଦିନ ମୋ’ ଜୀବନରେ ମଧ୍ୟ ସେହିପରି ଏକ ଭାବବିହ୍ୱଳତା ଘଟିଥିଲା ।

ଯେଉଁ ବାଙ୍ଗାଲୋର ସହରରେ ଜୀବନର ଏତେଗୁଡ଼ାଏ ଘଟଣା ଘଟିଗଲା ତାକୁ ଟିକିଏ ଭଲକରି ଦେଖିବାର ସୁଯୋଗ ବି ପାଇଲି ନାହିଁ । ଜେଲଫାଟକ ପାଖରୁ ହିଁ ପୋଲିସ୍ ଅଫିସର ଝଟକାରେ ବସାଇ ମୋତେ ଷ୍ଟେଶନକୁ ନେଇଗଲେ ଏବଂ ରାତି ନଅଟାରେ ଗାଡ଼ି ଚଢ଼ି ତହିଁଆରଦିନ ସକାଳେ ଆମେ ମାନ୍ଦ୍ରାଜରେ ଆସି ପହଞ୍ଚିଲୁ । ଷ୍ଟେଶନରେ ପହଞ୍ଚି ମୋତେ ପୋଲିସ୍ ପାଖରେ ଚିହ୍ନଟ କରି ଦିଆଗଲା ଏବଂ ମୋତେ ଖଲାସ କରି ଦିଆଗଲା । ସରକାର ପଇସାରେ ସିନା ବାଙ୍ଗାଲୋରରୁ ମାନ୍ଦ୍ରଜ ପର୍ଯ୍ୟନ୍ତ ଆସିଲି, ମାତ୍ର ସେଠାରୁ ଘରତକ କିପରି ଆସିବି, ମୁଁ ତାହା ହିଁ ଚିନ୍ତା କରିବାକୁ ଲାଗିଲି । ଯାହାହେଉ ମାନ୍ଦ୍ରାଜ ସହରରେ ଜଣେ ଭଦ୍ରଲୋକଙ୍କ ଠାରୁ ବାଟଖର୍ଚ୍ଚ

ମିଳିଗଲା । ଭାବୁଥିଲି ଯେ ଗାଡ଼ିରେ ପ୍ରବଳ ଭିଡ଼ ହେଉଥିବା ହେତୁ ଟିକେଟ କରିବା ଓ ଗାଡ଼ିରେ ଚଢ଼ିବା ମୋ' ପକ୍ଷରେ ବଡ଼ କଷ୍ଟକର ହେବ । ମାତ୍ର ଷ୍ଟେସନରେ ପହଞ୍ଚି ଦେଖିଲି ମୋତେ ସାହାଯ୍ୟ କରିବାଲାଗି ପୋଲିସ୍ ଯେପରି ପ୍ରସ୍ତୁତ ହୋଇ ରହିଚି ! ଜଣେ ପୋଲିସ୍ କର୍ମଚାରୀ ମୋ'ଠାରୁ ପଇସା ନେଇ ମୋ'ପାଇଁ ଟିକେଟ କିଣିଆଣିଲେ ଓ ମୋତେ ଗାଡ଼ିରେ ନେଇ ବସାଇଦେଲେ । ପୋଲିସ୍ ବିଭାଗର ସନ୍ଦେହର ପାତ୍ର ହୋଇଥିବାରୁ ହିଁ ମୋତେ ଏହି ସୁଯୋଗଟି ମିଳିଲା ବୋଲି ଗୋଟାଏ ଶୁଖିଲା ଧନ୍ୟବାଦ ଦେବାକୁ ହେଲା ଆମ ଦେଶର ଶାସନ-ସଂଗଠନକୁ । ମୁଁ ଭଲକରି ଜାଣେ ଯେ ଏହି ଅଯାଚିତ ସାହାଯ୍ୟ ପଛରେ ଅସହାୟକୁ ସାହାଯ୍ୟ କରିବାର ଭାବ ଯେତେ ନ ଥିଲା, ନିସ୍ପୃହ ଭାବରେ ଯନ୍ତ୍ରବତ୍ ଆପଣାର କାମଟା କରିଦେବାର; ସନ୍ଦେହର ପାତ୍ରକୁ ଦୂରକୁ ପଠାଇଦେଇ ନିଶ୍ଚିନ୍ତ ରହିବାର ଭାବ ତାଠାରୁ ଯଥେଷ୍ଟ ଅଧିକ ଥିଲା । ଯାହାହେଉ, ଜୀବନରେ ଏପରି ସୁବିଧା ମିଳିବାର ଭାଗ୍ୟ ମୋ'-ପକ୍ଷରେ ଏହି ପ୍ରଥମ ଜୁଟିଲା ।

ଷ୍ଟେସନରେ ନାନାବିଧ ଦୃଶ୍ୟ ଦେଖିବାକୁ ମିଳିଲା । ସାଧାରଣ ଯାତ୍ରୀଗାଡ଼ିରେ ମିଲିଟାରି ଲୋକଙ୍କର ଯିବାକୁ ଆଦେଶ ନ ଥିବା ସତ୍ତ୍ୱେ ଅନେକ ମିଲିଟାରି ଡବା ଭିତରେ ପଶିଥିଲେ । ଦୁଇ ତିନିଜଣ ବଡ଼ ମିଲିଟାରି ଅଫିସର ଡବା ଭିତରେ ପଶି ସେମାନଙ୍କୁ ଉତାରି ଦେଉଥାନ୍ତି । ଅଫିସର୍‌ମାନଙ୍କ ଦୃଷ୍ଟିରୁ ଖସିଯିବା ପାଇଁ ମିଲିଟାରିମାନେ ଲୁଚିକରି ବସିଥାନ୍ତି. ସାଧାରଣ ଯାତ୍ରୀମାନଙ୍କ ଉହାଡ଼ରେ ରହି ଅଫିସରମାନଙ୍କର ଗତିବିଧିକୁ ଲକ୍ଷ୍ୟ କରୁଥାନ୍ତି । କେହି କେହି ଆପଣାର ସାମରିକ ପୋଷାକ ଓହ୍ଲାଇଦେଇ ସାଧାରଣ ପୋଷାକ ପିନ୍ଧି ନିଜକୁ ସାଧାରଣ ଯାତ୍ରୀଙ୍କ ସହିତ ମିଶାଇଦେବାର ଚେଷ୍ଟା କରୁଥାନ୍ତି । ନିଜର ଜିନିଷପତ୍ର ଗାଡ଼ି ଭିତରେ ରଖିଦେଇ କେହି କେହି ପ୍ଲାଟ୍‌ଫର୍ମରେ ବୁଲୁଥାନ୍ତି । ଏହିପରି ଅନେକ ଉଦ୍ୟମ ଚାଲିଥାଏ । ଜଣେ ମିଲିଟାରି କର୍ମଚାରୀ ଆପଣାର ପୁଡ଼ାବୁଜୁଳା ଧରି ଆମ ଡବା ଭିତରେ ପ୍ରବେଶ କଲେ । ଡବାରେ ଆଉ ସ୍ଥାନ ନଥିଲା । ଜିନିଷ ରଖିବାର ପଟାଉପରେ ଜଣେ ଯାତ୍ରୀ ଶୋଇପଡ଼ିଥିଲା, ସେ ତାକୁ ଉଠିବାକୁ କହିଲେ । ଯାତ୍ରୀଜଣକ ଉଠିବାଲାଗି ଆଳସ୍ୟ ପ୍ରକାଶ କରିବାରୁ ମିଲିଟାରୀ କର୍ମଚାରୀ ଚୁପ୍‌ଚାପ୍ ଉଠି ଠିଆହେଲେ, ସେହି ଯାତ୍ରୀର ଦେହ ଉପରେ ଜିନିଷ ଲଦିଦେବେ ବୋଲି ଧମକ ଦେଲେ ଓ ଲଦିବାର ପ୍ରାଥମିକ ଚେଷ୍ଟା ମଧ୍ୟ କଲେ । ମାତ୍ର ଡବାର ଯାତ୍ରୀମାନଙ୍କ ତରଫରୁ ଭାରି ପ୍ରତିବାଦ ହେବାରୁ ସେ ସେଥିରୁ ନିବୃତ୍ତ ହେଲେ ଓ ଭଦ୍ର ଭାବରେ କଥାବାର୍ତ୍ତା କଲେ । ଅଳ୍ପସମୟ ପରେ ତିନିଜଣ ବଡ଼ ମିଲିଟାରି ଅଫିସର ଆସି ଉକ୍ତ ବାବୁଙ୍କୁ ଗାଡ଼ିରୁ ଉତାରିଦେଇ ଗଲେ । ସେତେବେଳେ ମଧ୍ୟ ଆଉ ଦୁଇ ତିନିଜଣ ମିଲିଟାରି ଲୋକ ଆମ ଡବାରେ ଲୁଚି କରି ବସିଥାନ୍ତି ।

ପ୍ରାୟ ପନ୍ଦର ମିନିଟ ପରେ ପୁଣି ଦୁଇଜଣ ଯୁଦ୍ଧବିଭାଗୀୟ ଅଫିସର ଆସି ଡବା ଭିତରେ ସବୁ ଟିକିନିଖି କରି ଦେଖିଲେ ଓ ସବୁ ମିଲିଟାରି ଲୋକଙ୍କୁ ଗାଡ଼ିରୁ ଉତାରିଦେଲେ । ଜଣେ ସାଧାରଣ ପୋଷାକ ପିନ୍ଧି ଛଦ୍ମବେଶରେ ବସିଥିଲା ବୋଲି ତା' ନାମରେ ରିପୋର୍ଟ କରିବାର ଭୟ ଦେଖାଇଲେ । ସେ ବିଚରା କାକୁତି ମିନତି କରି ବହୁତ କିଛି କହିବାରେ ଲାଗିଥାଏ । ପ୍ଲାଟ୍‌ଫର୍ମ ଉପରେ ଏହିପରି ଦୃଶ୍ୟ ଅଭିନୀତ ହୋଇ ଚାଲିଥିବା ସମୟରେ ଜଣେ ଫେରି-ବାଲାର ଡାକ ଆସି ମୋ' କାନରେ ବାଜିଲା । 'ଜିଡ଼ିପପୁ', 'ଜିଡ଼ିପପୁ' କହି ସେ ଆପଣା ଧନ୍ଦା କରି ଚାଲିଯାଉଥାଏ । ଯେପରି ତା'ର ଅନ୍ୟ କୌଣସି କଥାକୁ ଭ୍ରୂକ୍ଷେପ ବି ନ ଥାଏ । ଆପଣା ଜିନିଷତକ ବିକି ସେ କିପରି ଚାରିପଇସା ସମ୍ଭାଳିବ, ସେ ସେଇଥିଲାଗି ବ୍ୟଗ୍ର ଥାଏ ।

ଏହିସବୁ ସାନସାନ ଘଟଣାକୁ ଟିକିଏ ଗଭୀର ଅନ୍ତର୍ଦୃଷ୍ଟି ସହିତ ଦେଖିଲେ ତଥାକଥିତ ବଡ଼ ବଡ଼ ସିଦ୍ଧାନ୍ତର ପ୍ରକୃତ ରୂପ ଓ ମୂଲ୍ୟ ସହଜବୋଧ୍ୟ ହୋଇଯାଏ । ଅଫିସରମାନେ ଆସି ଡବାରୁ ମିଲିଟାରି ଲୋକଙ୍କୁ ବାହାର କରିଦେଲେ, ମାତ୍ର ସେହି କାମରେ କର୍ତ୍ତବ୍ୟବୋଧ ବା ଶୃଙ୍ଖଳାରକ୍ଷାର ଆହ୍ୱାନ ଯେତେ ନଥିଲା, ବଡ଼ ଅଫିସର ଭାବରେ ଆପଣାର ହାକିମୀ ଦେଖାଇବାର ଭାବ ତା'ଠାରୁ ଅନେକ ବେଶୀ ଥିଲା । ଯେଉଁମାନେ ସୁନାପୁଅ ପରି ବିନା ବିବାଦରେ ଗାଡ଼ିରୁ ଓହ୍ଲାଇଗଲେ, ସେମାନେ ମଧ୍ୟ ନିଜ କର୍ତ୍ତବ୍ୟଦୃଷ୍ଟିରୁ କଦାପି ତାହା କରି ନ ଥିଲେ, ସେମାନେ ଆପଣାର ଭୁଲ ବୁଝି ନ ଥିଲେ ବା କୌଣସି ପ୍ରକାର ଦୁଃଖ ପ୍ରକାଶ କରି ନ ଥିଲେ । କେବଳ ଉପର ହାକିମଙ୍କର ଭୟ-ପ୍ରଦର୍ଶନ, ଉପର ହାକିମ ଓ ନିଜେ ପିନ୍ଧିଥିବା ସ୍ଥାନସୂଚକ ସଙ୍କେତ (Badge)ର ପାର୍ଥକ୍ୟ ପାଇଁ ସେମାନେ ବିନା ଆପତ୍ତିରେ ଉତୁରିଗଲେ । ଜଣେ ସାଧାରଣ କର୍ମଚାରୀ ଆସି ଯଦି ସେମାନଙ୍କୁ ଓହ୍ଲାଇଯିବା ପାଇଁ ଅନୁରୋଧ କରିଥାନ୍ତା, ତେବେ ସେମାନେ ଯେ କେତେଦୂର ତା'ର ଆଦେଶକୁ ପାଳନ କରିଥାନ୍ତେ, ସେକଥା କହିବା ବଡ଼ କଷ୍ଟକର ।

× × ×

ବିଜୟବାଡ଼ା ଗୋଟାଏ ବଡ଼ ଜଙ୍କସନ୍ । ଭିକାରୀମାନଙ୍କର ମଧ୍ୟ ଗୋଟାଏ ବଡ଼ କେନ୍ଦ୍ରସ୍ଥଳ । ଏହି ଷ୍ଟେସନରେ ସାତଆଠ ବରଷର ଗୋଟିଏ ମୁସଲମାନ ଭିକାରୀପିଲା ଆମ ଡବା ଭିତରକୁ ଉଠିଲା । ପିନ୍ଧିଚି ଖଣ୍ଡେ ଚିରା କମିଜ, କମିଜତଳେ ଖଣ୍ଡେ ମଇଳା କଉପୁନୀ । ଦୟାକରି କିଏ ତା'ର ମୁଣ୍ଡର ବାଳକୁ ସମ୍ପୂର୍ଣ୍ଣ ଖିଅର କରିଦେଇଚି । ନହେଲେ ତେଲର ଆବଶ୍ୟକତା ପଡୁଥାନ୍ତା । ହାତରେ ସେ ଗୋଟାଏ ଟିଣ ଡବା ଧରିଥାଏ । ବାରତେର ବର୍ଷର ଗୋଟିଏ ଭିକାରୀ-ବାଳିକା ତାକୁ ଡବା ଭିତରକୁ ଆଣି ଛାଡ଼ିଦେଇଗଲା । ମୋତେ ବଡ଼

ଆଶ୍ଚର୍ଯ୍ୟ ଲାଗୁଥାଏ । ମୋତେ ରେଲଗାଡ଼ିରେ କେଉଁଠାକୁ ଏକୁଟିଆ ଯିବାକୁ ପଡ଼ିଲେ ବୋଉ ଏପର୍ଯ୍ୟନ୍ତ ନାନା ଆଶଙ୍କା ପ୍ରକାଶ କରେ, ମାତ୍ର ଦଶବାର ବରଷର ଗୋଟିଏ ବାଳିକା ସାତଆଠ ବରଷର ଏହି ପିଲାଟିକୁ କିପରି ଯେ ରେଲଭିତରେ ଏକାକୀ ଛାଡ଼ିଦେଇଗଲା, ମୁଁ ହଠାତ୍ ତାର ମର୍ମ ବୁଝିପାରିଲି ନାହିଁ । ଯେଉଁଠି ଖାଇବା ସକାଶେ ଭିକ ମାଗିବାକୁ ପଡ଼େ, ଭିକ ମାଗିବାପାଇଁ ଯେଉଁଠି ରାସ୍ତାକୁ ହିଁ ଘର କରିବାକୁ ପଡ଼େ, ସେଇଟା ସମ୍ଭବତଃ ଗୋଟାଏ ସ୍ୱତନ୍ତ୍ର ସଂସାର । ସେହି ସଂସାରର ସ୍ନେହ, ମମତା ଓ ପ୍ରେମ ବୋଧହୁଏ ଭିନ୍ନ ଧରଣର । ଶିକ୍ଷିତ ଓ ଧନୀ ଶ୍ରେଣୀର ସଂସାରରେ ପ୍ରେମ ଏକ ବିଳାସର ବ୍ୟାପାର । ଏଠି ପ୍ରେମଲାଗି ସାଇକେଲ୍ ଚଢ଼ି ପାର୍କକୁ ଯିବାକୁପଡ଼େ, ବଡ଼ଦିନ ଭେଟି ପଠାଇବାକୁ ହୁଏ, ସିନେମା ସର୍କସ୍ ଦେଖାଇବାକୁ ହୁଏ, ପଡ଼ୋଶୀ ଘରର ଅପରିଚିତା ବାଳିକାପାଖକୁ ପ୍ରେମରେ ମାଠିମୁଠି ଚିଠି ପଠାଇବାକୁ ହୁଏ;—ମାତ୍ର ଗରିବ ଭିକାରୀର ପ୍ରେମ ହେଉଚି ଏକ ଦ୍ୱିତୀୟ ପ୍ରକାରର । ଯେତେବେଳେ ଅଭାବର ଉହଟ ଗ୍ରପ ଆସି ପିଠିଉପରେ ପଡ଼େ, ଯେତେବେଳେ ଭାତପାଇଁ ମୁଣ୍ଡ ପାଗଳ ହୋଇଯାଏ, ସେତେବେଳେ ବାପ ଛୁଆପିଲାଙ୍କୁ ରାସ୍ତା-ଉପରେ ବସାଇଦେଇ ଲୁଚି ଲୁଚି ପଳାଏ, କୋଡ଼ର ସୁକୁମାର ପିଲାକୁ ମାଆ ହୁଏତ ମୁଠାଏ ଗୁଡ଼ଲପାଇଁ ବିକିଦିଏ, ସ୍ତ୍ରୀକୁ ଛାଡ଼ି ସ୍ୱାମୀ ପଳାଏ । ଟଙ୍କା ପଇସା ଓ ଖାଇପିଇ ଶରୀରକୁ ମୋଟା କରିବା ଆଜି ମୂଲ୍ୟର ମାନଦଣ୍ଡ ହୋଇଚି । କେହି ହୁଏତ ତା'ର ଆଧିକ୍ୟରେ ପାଗଳ ଓ ଆତ୍ମବିସ୍ମୃତ ହୋଇ ବିକୃତ ପ୍ରେମର ପୂଜା କରେ, ପୁଣି ଆଉକେହି ପଶୁପରି ଖାଇବା ଓ ମଳତ୍ୟାଗ କରିବା ଛଡ଼ା ଜୀବନରେ ଆଉ କୌଣସି ବିଷୟର ଠାଣ କରିପାରେ ନାହିଁ । ଜଣେ ଅନ୍ଧ ହୋଇ, ମୁଗ୍ଧ ହୋଇ, ବାହ୍ୟ ସୌନ୍ଦର୍ଯ୍ୟରୀତି ପଛରେ ଧାଇଁ ଅନ୍ତଃସ୍ଥ ସୌନ୍ଦର୍ଯ୍ୟକୁ ନାରଖାର କରିଦିଏ, ଆଉ ଜଣେ ମାଦଳ ପରି କାମ କରେ, ଖାଏ, ପୁଣି କାମ କରେ ଓ ଏହିପରି ଶେଷରେ ଦିନେ ମରିଯାଏ ।

ମହମ୍ମଦ ଅଲି ଜିନା ଥରେ କହିଥିଲେ, 'ଯେକୌଣସି ମୁସଲମାନଙ୍କୁ ମୁଁ ଗାନ୍ଧୀଙ୍କ ଠାରୁ ଉଚ୍ଚ ବୋଲି ମନେକରେ ।' ମୁସଲମାନ ଶବ୍ଦଟି ପୂର୍ବରୁ ସେ ଅବଶ୍ୟ **'adulterated', 'immoral'** ପ୍ରଭୃତି କେତେଗୁଡ଼ିଏ ବିଶେଷଣ ବି ଲଗାଇଥିଲେ । ଏହି ମୁସଲମାନ ପିଲାଟିକୁ ମୁଁ ସେହି ଦୃଷ୍ଟିରୁ ପରୀକ୍ଷା କରି ଦେଖିଲି । ତା'ଭିତରେ ମହମ୍ମଦଙ୍କର ଆଲୋକ ନ ଥିଲା, ମୁସଲମାନ ବୋଲାଇ-ବାର ସମସ୍ତ ବିଶେଷତ୍ୱ ତାହାଭିତରେ ଲୁପ୍ତ ହୋଇଯାଇଥିଲା । ମହମ୍ମଦ ବା ଆଉ କୌଣସି ମୁସଲମାନ ଧର୍ମଗୁରୁ ବୋଧହୁଏ ଟିଣଡବା ଧରି ଭିକମାଗି ବୁଲୁଥିବା, ଚିରାକନା ପିନ୍ଧିଥିବା କୌଣସି ମୁସଲମାନ ବା ଏପରିକି କୌଣସି କାଫେରର କଳ୍ପନା ମଧ୍ୟ କରି ନଥିଲେ । ଏହି ପିଲାଟିକୁ କୌଣସି ନିର୍ଦ୍ଦିଷ୍ଟ ଧର୍ମର ଅନ୍ତର୍ଭୁକ୍ତ କରିବା ଆଗରୁ ତାକୁ ମଣିଷ ବି କୁହାଯାଇ ପାରିବ କି ନାହିଁ,

ସେଥିରେ ମଧ୍ୟ ମୋର ସନ୍ଦେହ ହେଲା । ତା'ର ବାପ ମାଆ କେହି ନାହାନ୍ତି; ସମାଜ କ'ଣ, ସେ କେଉଁ ସମାଜର ଅନ୍ତର୍ଭୁକ୍ତ ଓ ସେହି ସମାଜ ସହିତ ତା'ର କିପରି ସମ୍ପର୍କ, ଏସବୁ କଥା ସେ କିଛି ଜାଣେ ନାହିଁ । ସେ କେବଳ ଭିକମାଗି ଖାଏ, ଗାଡ଼ି ଭିତରେ ବା କୌଣସି ରାସ୍ତାକଡ଼ରେ ଶୋଇପଡ଼େ । ଭବିଷ୍ୟତ ପାଇଁ ସେ କୌଣସି କଳ୍ପନା କରେ ନାହିଁ, କେବଳ ଜୀବଧାରୀ ଏକ ପ୍ରାଣୀ ପରି ସେ ଜୀବନଧାରଣ କରି ରହେ । ମଣିଷକୁ ଛାଡ଼ିଦେଲେ ଦୁନିଆରେ ଅନ୍ୟ ଯେକୌଣସି ପ୍ରାଣୀର ତଥାପି ଏକ ନିଜସ୍ୱ ସୌନ୍ଦର୍ଯ୍ୟ ଅଛି, ସନ୍ତାନପ୍ରେମ ଅଛି, ଜୀବନର ମୂଲ୍ୟ ବି ରହିଚି । ମାତ୍ର ଏହି ପିଲାଟି ଭିତରେ ସେସବୁର ଗନ୍ଧ ହିଁ ନାହିଁ । ମୁଖର ସୌନ୍ଦର୍ଯ୍ୟ ନାହିଁ, ଆଜି ଭିତରେ କାଲିର କୌଣସି ଯୋଜନା ହିଁ ନାହିଁ । ସେ କେବଳ ଗୋଟାଏ ଜୀବନଧାରଣ କରିଥିବା ଜୀର୍ଣ୍ଣକାରୀ ଯନ୍ତ୍ରପରି ହୋଇ ରହିଚି ।

ପ୍ରାୟ ଅଧଘଣ୍ଟାକ ପରେ ଦେଖିଲି, ସେହି ପିଲାଟିକୁ ଆଉ ଜଣେ ଯାତ୍ରୀ ବଡ଼ ଘୃଣ୍ୟଭାବରେ ଗାଳି ଦେବାରେ ଲାଗିଚି । ଶେଷରେ ସେ ତା' ଉପରେ କିଞ୍ଚିତ୍ ଶାରୀରିକ ବଳପ୍ରୟୋଗ ମଧ୍ୟ କଲା । ପିଲାଟା ବଡ଼ ବିକଳରେ ଭେଁ ଭେଁ ହୋଇ କାନ୍ଦି ଉଠିଲା । ମାତ୍ର ତାକୁ ସାହାଯ୍ୟ ଦେବାକୁ ସେଠି ତା'ର କିଏ ଅଛି ? ଡବାରେ ବସିଥିବା ଯାତ୍ରୀମାନେ କର୍ତ୍ତବ୍ୟ ଦୃଷ୍ଟିରୁ ଥରେ ସେ ଆଡ଼କୁ ଅନାଇଲେ ଓ ପରମୁହୂର୍ତ୍ତରେ ସେ ବିଷୟରେ ଅନ୍ୟମନସ୍କ ହୋଇପଡ଼ିଲେ । ଏହି ଅନ୍ୟାୟରେ କେହି ଦୁଃଖପ୍ରକାଶ କରୁଥିବା ପରି ବି ମନେହେଲା ନାହିଁ । ସମସ୍ତେ ହୁଏତ ଆପଣା ଜୀବନର ଚିନ୍ତା ନେଇ ବ୍ୟସ୍ତ ରହିଥିଲେ । ଆଜି ସମସ୍ତେ ଉଦାସ, ସମସ୍ତେ ଅସନ୍ତୁଷ୍ଟ, ସମସ୍ତେ ଆଜି ସୌନ୍ଦର୍ଯ୍ୟବିହୀନ ଜଡ଼ର ସେବାରେ ଛନ୍ଦିହୋଇ ଆତ୍ମବିଶ୍ୱାସ ହରାଇ ବସିଛନ୍ତି । ତେଣୁ ଏହି ଛୋଟ ପିଲାଟିକୁ ବିଶ୍ୱାସ ଓ ନିର୍ଭର ଦେଇପାରିବାର ଶକ୍ତି ସେମାନଙ୍କଠାରେ କାହୁଁ ଆସିବ ? ବିକାଶର ଏତେ ଯୁଗ ବିତିଗଲା, ତଥାପି ମଣିଷ ମଣିଷକୁ ଚିହ୍ନିପାରିଲା ନାହିଁ । ମଣିଷର ଜୀବନକୁ ପବିତ୍ର ବୋଲି ଜାଣିଲା ନାହିଁ । ସେହି ପିଲାଟି ଭିତରେ ମଣିଷପଣିଆ ଦଳିତ ଓ ପିଷ୍ଟ ହୋଇ ଯାଉଥିବାର ଯେଉଁ ଆର୍ତ୍ତନାଦ ଶୁଭୁଥିଲା, ତାକୁ ଶୁଣିବାର ହୃଦୟ କାହାରି ହେଲେ ନ ଥିଲା । ସେହି ପିଲାଟି ଭିତରେ ଜୀବନ ଥିଲା, ମାତ୍ର ତା'ର ମ୍ଲେଚ୍ଛ ଜୀବନଧାରଣର ଅସୁନ୍ଦରତା ତଳେ ଗୋଟାଏ ଆତ୍ମା ମଧ୍ୟ ମୃତ ପରି ପଡ଼ିରହିଥିଲା । ତା'ର କଥା କହିବାର ଶକ୍ତି ଥିଲା, ତଥାପି ତା'ର ଅନ୍ତର ଭିତରେ ଯେପରି ଶତସହସ୍ର ଅଭିଯୋଗ ଆତ୍ମପ୍ରକାଶ କରିବାର ବାଟ ପାଉ-ନ ଥିଲା । ସେହି ପିଲାଟି ଭିତରେ ମଧ୍ୟ ଅସନ୍ତୋଷ ଓ ଆପତ୍ତି ରହିଥିଲା, ମାତ୍ର ସେସବୁ ଶୁଣିବା ପାଇଁ ଯେପରି ଆମର ଏହି ଦୁନିଆର କୌଣସି ଦରବାର ପ୍ରସ୍ତୁତ ହିଁ ନ ଥିଲା । ସମାଜ ନାମକ ଗୋଟିଏ ଅନ୍ଧାର ଯେପରି ସେହି ପିଲାଟି ଭିତରେ ରହିଥିବା ମଣିଷର ଶକ୍ତିକୁ ଜବରଦସ୍ତି କିଳିକରି ରଖିଥିଲା । ଯେଉଁଦିନ

ମଣିଷ ସେହି ମହାନ୍ ଶକ୍ତିକୁ ଚିହ୍ନିବ, ଦଳିତ ମଣିଷର ଆତ୍ମାଭିତରେ ଚିତ୍କାର କରୁଥିବା ଶକ୍ତିକୁ ସେ ଯେଉଁଦିନ ନିଜର ନମସ୍କାର ଜଣାଇବ, ଯେଉଁଦିନ ସେ ସବୁରି ହୃଦୟତଳେ ବନ୍ଦୀ ହୋଇ ରହିଥିବା ଶୌର୍ଯ୍ୟ ଓ ସାମର୍ଥ୍ୟକୁ ମୁକ୍ତି ଦେଇ ଜାଣିବ, ସେଦିନ ଯାଇ ନୂତନ ଯୁଗ ଆସିବ । ଆଉ ସବୁ କେବଳ ଛଳନା, ଆଉ ସବୁ କେବଳ ପାଶବଦ୍ଧ ଓ ମୁଗ୍ଧ ମାନବଗୋଷ୍ଠୀର ଦୁର୍ବଳତା ମାତ୍ର ।

ମୋ'ପାଖରେ ବସିଥିବା ଦୁଇଜଣ ମିଲିଟାରି କର୍ମଚାରୀଙ୍କ ସହିତ ମଝିରେ ମଝିରେ ମୋର ନାନା ଆଳାପ ମଧ୍ୟ ହେଉଥାଏ । ସେମାନେ ମୋ'ଠାରୁ ଜାଣିବାକୁ ପାଇଲେ ଯେ ମୁଁ ସଦ୍ୟ ଜେଲରୁ ଖଲାସ ହୋଇ ଆସିଚି । ତା'ପରେ ସେମାନେ କ'ଣ ଭାବିଲେ କେଜାଣି, ସେମାନଙ୍କର ମୁଖ ହଠାତ୍ ଆଲୋକିତ ହୋଇଉଠିଲା । ଅତି ପ୍ରସନ୍ନ ହୋଇଉଠିଲା । ଜଣେ ଆଉ ଜଣକ କାନରେ କ'ଣ ସବୁ କହିବାକୁ ଲାଗିଲେ । ଶୁଣି ଆରଜଣକ କହିଲେ ଯେ ସବ୍ ମତ୍ କହନା ଭାଇ ! ମୁଁ କ'ଣ କ'ଣ ବୋଲି ପଚାରିଲି । ପ୍ରଥମ ଜଣକ କହିଲେ 'ମୁଁ ତାକୁ କହିଲି : କହ, ମହାତ୍ମା ଗାନ୍ଧୀକି ଜୟ । ସେ କହୁଚି, ସେସବୁ କଥା କହନା ।' ସଙ୍ଗେ ସଙ୍ଗେ ଦ୍ୱିତୀୟ ବ୍ୟକ୍ତିଙ୍କ ଠାରୁ ସଫେଇ ଶୁଣିବାକୁ ମିଳିଲା । ସେ କହିଲେ ଭାଇ, ଆମ ଭିତରଟା କ'ଣ ସେକଥା କହୁନାହିଁ ! ମାତ୍ର ବାହାରେ ପ୍ରକାଶ କରି କହିଲେ ଏଣେ ଦାନାଗଣ୍ଡାକ ଯେ ଚାଲିଯିବ !

୨୪ । ୧୧ । ୪୪

ମାନ୍ଦ୍ରାଜରେ ଥିଲାବେଳେ ଥରେ ଗୋଟାଏ କଥା ଦେଖିବାକୁ ପାଇଥିଲି । ଗତ ୧୯ ତାରିଖ ଦିନ ହରିଲାଲ ଭାଇଙ୍କ କୋଠା ଉପରେ ଠିଆହୋଇ ରାସ୍ତାରେ ଲୋକମାନଙ୍କର ଯାତାୟାତ ଦେଖୁଚି, ହଠାତ୍ ଗୋଟାଏ ଦୃଶ୍ୟ ଆଖିରେ ପଡ଼ିଯାଇଥିଲା । ତିନିଜଣ ସାହେବ ମିଲିଟାରି ଅଫିସର ଗୋଟାଏ କୁଲିପିଲା ସହିତ ଘରକୁ ଫେରୁଥିଲେ । ପିଲାଟିର ହାତରେ ନୂଆ ଜୋତାର ବାକ୍ସ, ବିସ୍କୁଟ୍ ଡ଼ିବା ଓ ଆହୁରି କେତେ ଭଳି ଭଳି ଜିନିଷ ରହିଥିଲା । ଜଣେ ସାହେବଙ୍କ ଦାମିକା ଟୋପିକୁ ମୁଣ୍ଡରେ ଲଗାଇ ସେ ମହାଆନନ୍ଦରେ ଚାଲୁଥିଲା । ତା'ପକ୍ଷରେ ତାହା ସ୍ୱର୍ଗସୁଖ ବୋଲି କହିବାକୁ ହେବ । ଚିରା ଲୁଗା ଓ ଫଟା ମଇଳା ଗେଞ୍ଜି ଉପରେ ସେ ଟୋପି ପିନ୍ଧିବାର ଦୃଶ୍ୟଟା ବଡ଼ ଖାପଛଡ଼ା ଦେଖାଯାଉଥିଲା । ଗରିବ ପିଲାଟାକୁ କେତେଟା କ୍ଷଣପାଇଁ ଟିକିଏ ଆନନ୍ଦ ଦେଉଥିବା ହେତୁ ସାହେବ ଅବଶ୍ୟ ଧନ୍ୟବାଦର ପାତ୍ର ହେବେ, ମାତ୍ର ଏହାକୁ ବଦାନ୍ୟତା ନା ଆଉ କିଛି ବୋଲି କୁହାଯିବ । ହଠାତ୍ ଦେଖିଲି, ଏମାନଙ୍କ ପଛରେ ସାତ ଆଠବର୍ଷର ବାଳିକାଟିଏ ଦଉଡ଼ିଚି;—ମୁଖରେ ବ୍ୟାକୁଳତାର ପ୍ରକାଶ, ଶରୀର ଉପରେ ଦୁର୍ଭିକ୍ଷର ଛବି । ଦେହରେ ଲୁଗା ଅଛି, ତଥାପି ତାକୁ ଅଛି ବୋଲି କହିହେବ ନାହିଁ । ଛାତି ପାଖରେ ଦୁଇହାତକୁ ଘେରାଇ ଦେଇ ସେ

ଗୋଟାଏ ମଣିଷପିଲା ଧରିଚି । ବୟସ ଏକ କି ଦୁଇ । ଚମର ଭୀଷଣ ଆବରଣ ଉପରେ ତା'ର ଆଖି, ନାକ, ମୁହଁ, ସବୁ ବଡ଼ ଅବର୍ଜିଆ ଭାବରେ ମିଶିଯାଉଚି । ମୁଣ୍ଡରେ ଗୁଡ଼ାଏ ଘାଆ । ବାଳିକାଟି ଏହି ପିଲାଟିକୁ ଧରି, ତାକୁ ବାବୁମାନଙ୍କୁ ଦେଖାଇ କିଛି ପାଇବା ଆଶାରେ ଧାଇଁଚି । ପଇସା ଅର୍ଜନ କରିବାର ପନ୍ଥା ଅନେକ ଅଛି, ଇଏ ମଧ୍ୟ ତା'ଭିତରୁ ଗୋଟାଏ । ନିଜର ଅସମର୍ଥତା, ନିଜର ରୁଗ୍‌ଣ ଶରୀର ଓ ନିଜର ବିକୃତ ମୁଖ ଦେଖାଇ ପଇସା ମାଗିବାଟା ଗୋଟାଏ ଅଦ୍‌ଭୁତ ବ୍ୟବସାୟ । ବିଶେଷତ୍ୱ ହେଉଚି ଯେ ଏଥିରେ ଦାନକଲା ଲୋକ ଓ ଦାନନେଲା ଲୋକ ଭିତରେ ବାଘ ଛେଳିର ସମ୍ପର୍କ ରହିଚି । ତେବେ ଏହାକୁ ମୁଁ ଦାନ ବୋଲି କହିବି କାହିଁକି ? ଆପଣାର ମ୍ଲେଚ୍ଛତା ପ୍ରଦର୍ଶନ କରି ପେଟ ପୋଷିବାକୁ କ'ଣ ମଣିଷ ଏହି ସଂସାରକୁ ଆସିଚି ?

୨୫ । ୧୧ । ୪୪

ବିଜୟନଗରମ୍‌ଠାରେ ଓହ୍ଲାଇ ସହର ଭିତରକୁ ଗଲି । ସେଦିନ ରାତି ଥାଇ ଜୟପୁର ମଟର ଧରିଲି । ବାଟରେ କୋରାପୁଟଠାରେ ପୋଲିସ୍ ମୋର ନାମ ଧାମ ଲେଖି ନେଇଗଲେ । ପୁଣି ଜୟପୁରରେ ଓହ୍ଲାଇବା ବେଳକୁ ମଧ୍ୟ ସେହିପରି ଲେଖିନେଲେ । ଏସବୁ ଯେ କାହିଁକି ହୁଏ ମୁଁ ସେକଥା ଚେଷ୍ଟା କରି ମଧ୍ୟ ବୁଝିପାରେ ନାହିଁ । ପୋଲିସ୍‌ଠାରୁ ପଚାରି ବୁଝିଲି ଯେ କୌଣସି ନୂଆ ଲୋକ ବିଶେଷତଃ ଖଦଡ଼ ପିନ୍ଧିଥିବା ଲୋକ କୋରାପୁଟ ଜିଲ୍ଲାକୁ ଆସିଲେ ସେମାନେ ନିରାପଦତା ଦୃଷ୍ଟିରୁ ତା'ର ନାମ ଧାମ ଲେଖିନିଅନ୍ତି । କୋରାପୁଟ ଜିଲ୍ଲା—ଏଠାରେ କନ୍ଧମାନଙ୍କଠାରୁ ଖଜଣା ଆଦାୟ କଲାପରି ପ୍ରାୟ ଜବରଦସ୍ତି ଯୁଦ୍ଧଚନ୍ଦା ଆଦାୟ କରାଯାଏ । ଜାଣିଶୁଣି ଏଠାରେ ଶିକ୍ଷାର ପ୍ରସାର କରାଯାଏ ନାହିଁ । ଏଠି ସମଗ୍ର ଜିଲ୍ଲାରେ ଗୋଟିଏ ମାତ୍ର ହାଇସ୍କୁଲ ରହିଚି । ଓଡ଼ିଶାର ଏକମାତ୍ର ଦୈନିକ ସମ୍ବାଦପତ୍ର 'ସମାଜ'କୁ ଏଠାରେ ପଶିବାକୁ ଅନୁମତି ମିଳେନାହିଁ । ନାନାପ୍ରକାର ପ୍ରଲୋଭନ ଦେଖାଇ ଏଠାରେ ଅଶିକ୍ଷିତ ଆଦିବାସୀ-ମାନଙ୍କୁ ଖ୍ରୀଷ୍ଟିଆନ୍ କରାଯାଏ । ଏପରି ପରିସ୍ଥିତିରେ ଏଠାକୁ ଯେଉଁ ନୂଆଲୋକ ଆସିବ, ତା'ର ନାମ ଧାମ ଲେଖି ନ ନେଲେ କାମ ଚଳିବ କିପରି ?

୧ । ୧୨ । ୪୪

ଇସ୍ପାତନଗରୀ ଜାମସେଦ୍‌ପୁର । ସହରଟି ବେଶ୍ ସୁନ୍ଦର । ନର୍ଦ୍ଦମା, ରାସ୍ତା, ଯାନବାହନ ଓ ଖାଇବା ସାମଗ୍ରୀ ସବୁ ଯୋଗାଇଦେବାର ବ୍ୟବସ୍ଥା ଅଛି । ମାତ୍ର ଲୋକମାନଙ୍କର ମନଟାକୁ ଯେପରି କମ୍ପାନୀ କିଣି ନେଇଚି । କାରଖାନାରେ କାମକରିବା, ଖାଇବା ଓ ଭଲ ପିନ୍ଧି ସିନେମା ଥିଏଟର ଦେଖିବା ଛଡ଼ା ଜୀବନରେ ଆଉ କିଛି ଆବଶ୍ୟକତା ରହିଚି ବୋଲି ବୁଝିବାକୁ ଯେପରି ଏଠିକାର ଲୋକେ ଆଦୌ ସମର୍ଥ ନୁହନ୍ତି । ଏମାନେ ମେସିନ୍ ପରି କାମକୁ

ଯାଆନ୍ତି, ମେସିନ୍ ପରି ଖଟନ୍ତି । ତା'ପରେ ଘରକୁ ଆସି ଖାଆନ୍ତି, ଶୁଅନ୍ତି । ବଜାର କରନ୍ତି ପୁଣି କାମକୁ ଯାଆନ୍ତି । କାମ କରିବାକୁ ଗଲାବେଳେ ଓ କାମରୁ ଆସିଲାବେଳେ ଏମାନେ ଭାରି କୁତ୍ସିତ ଦେଖାଯାଆନ୍ତି । ସେଇ ଲୋକମାନେ ପୁଣି ବେଶ ବଦଳାଇ ବଜାରକୁ ବାହାରିବାବେଳେ ସେମାନଙ୍କୁ ଚିହ୍ନିବା ବଡ଼ ମୁସିଲ ହୋଇପଡ଼େ । ଯନ୍ତ୍ରଯୁଗର ଆଲୁଅରେ ଆଖି ଝଲସିଗଲେ ମଣିଷର ଭାବନା ଯେ କିପରି ତଳକୁ ଖସିଯାଏ, ଏଠି ତାହାରି ପୂର୍ଣ୍ଣ ସୂଚନା ମିଳିଗଲା । ଅଟା, ଚିନି ଓ ବିଜୁଳି ଆଲୁଅ ଦେଇ ନେଉଳକୁ ଅଫିମ ଖୁଆଇ ବୋଲ ମନେଇବା ପରି ଏଠି ମଣିଷକୁ ମଣ କରି ରଖାଯାଇଚି । ବାହାର ସଂସାରରେ କେଉଁଠି ଆଉ କୌଣସି କର୍ତ୍ତବ୍ୟ ରହିଚି ବୋଲି ଏହି ଲୋକମାନେ ଦେଖି-ପାରନ୍ତି ନାହିଁ । ଆପଣା ଆପଣା ମଧ୍ୟରେ କଳହ କରି ଏମାନେ ଅସଲ ଶତ୍ରୁକୁ ଭୁଲିଯାଆନ୍ତି । ନିଜ ନିଜ ଭିତରେ ଅପମାନସୂଚକ ବ୍ୟବହାର କରି ଏମାନେ ଅସଲ ଅପମାନକୁ ଭୁଲି ଯାଆନ୍ତି । କେଉଁ କାରଣରୁ ଏମାନେ ଗରୀବ ହୋଇ ରହିଚନ୍ତି, ଏହି କଥାଟି ବୁଝିବାଲାଗି କେହି ଚେଷ୍ଟା କରନ୍ତି ନାହିଁ, ମାତ୍ର ପ୍ରତ୍ୟେକ ଓଡ଼ିଆ ଶ୍ରମିକର ମୁଣ୍ଡଭିତରେ ଏକ ଧାରଣା ପୂରାଇ ଦିଆଯାଇଚି ଯେ ସିଂହଭୂମି ଓଡ଼ିଶାରେ ଥିଲେ ଓଡ଼ିଆଙ୍କର ଆଉ କୌଣସି ଦୁଃଖଦୁର୍ଦ୍ଦଶା ହିଁ ନ ଥାନ୍ତା । ଭଲି ଆଉ ଫୁଟବଲ୍ ଓ ନାଟକ ଅଭିନୟ ନେଇ ଏଠାରେ ବଙ୍ଗାଳୀ, ବିହାରୀ ଏବଂ ଓଡ଼ିଆଙ୍କ ଭିତରେ ବାଡ଼ିଆପିଟା ହୁଏ, ମାତ୍ର ଅସଲ ଶତ୍ରୁକୁ କେହି ଚିହ୍ନି ପାରନ୍ତି ନାହିଁ । ବଡ଼ କୌଶଳପୂର୍ଣ୍ଣ ଭାବରେ ମଣିଷର ମନଟାକୁ ବି ଗୋଲାମ କରି ରଖାଯାଇପାରେ । ଦୁଃଖ ଓ ଆବର୍ଜନା ମଧ୍ୟରେ ସନ୍ତୁଷ୍ଟ ହୋଇ ରହିବା ଲାଗି ଶିକ୍ଷା ଦିଆଯାଇପାରେ ।

୨ । ୧ । ୪୫

ଘରକୁ ଆସୁଥିଲି, ମାତ୍ର ଘରକୁ ନ ଆସିବା ପାଇଁ ଭିତରୁ ଯେପରି ଏକ ଦୁର୍ବଳ ଉଦ୍‌ବୋଧନ ପାଉଥିଲି । ଭାବୁଥିଲି, ଘରକୁ ଗଲେ ଯେପରି ମୋତେ କେହିହେଲେ ନିଜର କରିବେ ନାହିଁ, ଯେପରି ଏହି କେତେଟା ମାସ ଭିତରେ ମୁଁ ସେମାନଙ୍କର ବଡ଼ ଅପ୍ରିୟ ହୋଇ ପଡ଼ିଥିବି । ମାତ୍ର କାହିଁକି ? ଅବଶ୍ୟ ଏପରି ଭାବିବାକୁ କେତେଟା କାରଣ ବି ରହିଥିଲା । ଜୟପୁରଠାରେ ଶୁଣିଲି ଯେ ମୋତେ ଖୋଜିବାକୁ ଯାଇ ପୋଲିସ୍ ଆମ ଘର, କଟକ ବସା, ଜୟପୁର ଓ ବିଷମକଟକ ସବୁଠାରେ ତଲାସ କରି ଆସିଚନ୍ତି । ଅର୍ଥାତ୍ ମୋ ସକାଶେ ଘରେ ଗୋଟାଏ ପ୍ରକାର ଆତଙ୍କର ସୃଷ୍ଟି ହୋଇଚି । ମୁଁ ଜାଣେ, ମୋର ବାଟ ଦୁର୍ଗମ, ବିପଦସଙ୍କୁଳ । ଏହି ଦାସତ୍ୱର ଯୁଗରେ ଯିଏ ଆପଣାର ମସ୍ତକ ଉଚ୍ଚ କରି ଠିଆହେବାକୁ ମନ କରିବ, ତାକୁ ଅନେକ ପ୍ରତିରୋଧ ଓ ଘାତପ୍ରତିଘାତ ସହିବାକୁ ହିଁ ପଡ଼ିବ । ତଥାପି ମୁଁ ସିନା ଏସବୁ ପାଇଁ ପ୍ରସ୍ତୁତ ରହିବି, କିନ୍ତୁ ଘରର ଅନ୍ୟମାନଙ୍କୁ ଏହା ଭିତରେ ଟାଣିଓଟାରି ଉର୍ଗ୍ଣ କରିବି କାହିଁକି ? ମୋ ସକାଶେ

ଆଉ କିଏ କାହିଁକି କଷ୍ଟ ପାଇବ, ନାନାପ୍ରକାର ଅନିଷ୍ଟ ଦର୍ଶନର ଆଶଙ୍କା କରୁଥିବ ? ମୁଁ ଘରର ଯେତେ ନିକଟବର୍ତ୍ତୀ ହେଉଥାଏ, ଯେପରି ଏହି କଥା-ଗୁଡ଼ାକ ମୋତେ ମାଡ଼ି ମାଡ଼ି ପଡୁଥାଏ । ମୋତେ ଦେଖିବା ମାତ୍ରକେ ଘରେ ସମସ୍ତଙ୍କ ମନରେ ଯେ କି ଧାରଣା ଉପୁଜିବ, ମୁଁ ସେଇଆ ଭାବୁଥାଏ ।

୩ । ୧ । ୪୫

ଘରେ ଆସି ପହଞ୍ଚିଲି । ମନର ସବୁ ସଙ୍କୋଚ ଦୂର ହୋଇଗଲା । ଗୋଟାଏ ବଡ଼ ସତ୍ୟର ପ୍ରମାଣ ବି ପାଇଲି । ବୋଉର ଆମେ କେତୋଟି ପୁଅ, କେହି ସରକାରୀ ଚାକିରି କରିଚି, କେହି ଯୁଦ୍ଧକୁ ଯାଇଚି, କିଏ ଜେଲ୍ ବି ଯାଇଚି । କେହି ରୋଜଗାର କରୁଚି, କେହି ଫକଡ଼ ହୋଇ ବୁଲୁଚି । ମାତ୍ର ମାଆର ସ୍ନେହଦୃଷ୍ଟି ଅବାରିତ ଭାବରେ ସମସ୍ତଙ୍କ ଉପରେ ପଡ଼ିଚି । ମାଆର କୋଳ ସମସ୍ତଙ୍କ ପାଇଁ ମୁକ୍ତ ରହିଚି ।

୬ । ୧ । ୪୫

ରାତିରୁ ଖୁବ୍ ବର୍ଷା ହେଉଥିଲା । ଏଇ ଅଦିନ ମେଘର ଗର୍ଜନ ଶୁଣି ମନେହେଉଥିଲା, ଗୋଟାଏ ଝଡ଼ ବା ପରିବର୍ତ୍ତନର ଯେପରି ଇଏ ପୂର୍ବସୂଚନା । ଆଜି ସେହିପରି ଏକ ଘଟଣା ମଧ୍ୟ ଘଟିଲା । ସକାଳ ସାତଟାବେଳେ ପୋଲିସ୍ ଆମ ଗାଆଁକୁ ଆସି ମୋତେ ଗିରଫ କଲେ । କାନର ବଥଟା ଭଲ ହୋଇନଥାଏ, ବର୍ଷା ଟପଟପ ପଡ଼ୁଥାଏ, ପୋଲିସ୍‌ର ଏହି କାମଟାକୁ କେହି ପସନ୍ଦ କଲେ ନାହିଁ । ଆମ ଘରେ ମଧ୍ୟ ଗୋଟାଏ ଅସ୍ଥିରତା ଖେଳିଗଲା । ବୋଉ ଓ ଭାଉଜୋଉ ବଡ଼ ଅଧୀର ହୋଇପଡ଼ିଲେ । ଗୋଟାଏ ବିଶେଷ କଥା ଦେଖିଲି ଯେ ବାପା ଏହି ଅପ୍ରତ୍ୟାଶିତ କାଣ୍ଡଟିରେ ମୋଟେ ବିଚଳିତ ହେଲେ ନାହିଁ । ସେ ଅନ୍ତତଃ ଏତିକି ବୁଝିଥିଲେ ଯେ ମୋର କୌଣସି ଦୋଷ ନ ଥାଇ ମଧ୍ୟ ମୋତେ ଗିରଫ କରାଯାଉଚି । ଆଗରୁ ତାଙ୍କର ଗୋଟାଏ ଧାରଣା ଥିଲା ଯେ କଂଗ୍ରେସବାଲାଏ ସବୁବେଳେ ସରକାରର କ୍ଷତି କରନ୍ତି, ସେଥିପାଇଁ ସରକାର ସେମାନଙ୍କୁ ଦଣ୍ଡ ଦିଏ । ମାତ୍ର ଏଥର ସେ ପ୍ରଥମ ଦେଖିବାକୁ ପାଇଲେ ଯେ ଏ ଦେଶରେ ନିର୍ଦ୍ଦୋଷରେ ମଧ୍ୟ ଅନେକଙ୍କୁ ହଇରାଣ କରାଯାଏ । ଘରୁ ଗଲାବେଳେ ବାପାଙ୍କୁ କହି ଯାଇଥିଲି ଯେ ଆମେ କାହାରି ଅନିଷ୍ଟ ନ କଲା ପର୍ଯ୍ୟନ୍ତ ଆମର ବି କେହି ଅନିଷ୍ଟ କରିପାରିବ ନାହିଁ ।

୨୦ । ୧ । ୪୫

ଯାହା କହିଯାଇଥିଲି, ଠିକ୍ ସେଇଆ ଘଟିଲା । କଟକ ଜେଲରେ ପନ୍ଦରଦିନ ରହିବାପରେ ମୋତେ ଆଜି ଦିନ ଦୁଇଟାବେଳେ ଖଲାସ କରି ଦିଆଗଲା । ଜେଲ ଭିତରେ ଥିବା ସାଥୀମାନଙ୍କ ସହିତ ପନ୍ଦରଦିନ ରହି ଆସିଲି ।

ସେମାନଙ୍କ ସହିତ ବର୍ଷେହେଲା ଦେଖା ହୋଇ ନ ଥିଲା । ଜେଲ ହେଉଚି ରାଜବନ୍ଦୀର ସ୍ୱାଧୀନ ସଂସାର ।

୧୬ । ୨ । ୪୫

ଗତ କେତେଦିନ ହେଲା ମୁଁ ପିଲାଙ୍କୁ ପଢ଼ାଇବାପାଇଁ ସ୍କୁଲକୁ ଯାଉଚି । ପ୍ରଥମେ ଅନେକ ଆଶା କରି ସେଠାକୁ ଯାଇଥିଲି ଯେ ସେଠାରେ ମୁଁ ବିଭିନ୍ନ ବିଷୟରେ ସେମାନଙ୍କୁ ଅନେକ ଜ୍ଞାନ ଦେଇପାରିବି । ମାତ୍ର ଦେଖିଲି, ସେପରି କ୍ଷେତ୍ର ସେଠାରେ ନାହିଁ । ଛାତ୍ରସୁଲଭ ଗୋଟାଏ ଜିଦ୍, ଜିଜ୍ଞାସା ଓ ପ୍ରତିବାଦ କରିବାର ଶକ୍ତି ମଧ୍ୟ ସେମାନଙ୍କ ଭିତରେ ପ୍ରକାଶ ପାଉନାହିଁ । ଅନେକ ସମୟରେ ସେମାନଙ୍କ ଆଗରେ ମୋର ପ୍ରାଣର କଥା ଖୋଲିକରି କହିଦେବାକୁ ମନ ହୋଇଚି, ତଥାପି ମୁଁ ହଟିଯାଇଚି । ସେମାନଙ୍କ ଦୁଆରୁ ଯେପରି ମୁଁ କୌଣସି ଉତ୍ତର ହିଁ ପାଇ ନାହିଁ । ମାତ୍ର ଏଥିରେ ସେମାନଙ୍କର କି ଦୋଷ ? ଆପଣାର ବିକାଶଲାଗି ସେମାନଙ୍କୁ କି ସୁବିଧା ବା ଦିଆଯାଉଚି ? ଦେଶର ସବୁଠାରେ ଅନ୍ଧାର ଓ ଅଭାବ ଭିତରେ ରହି କେତେ କେତେ ପିଲାଙ୍କର ଆଶା ଓ ଆକାଙ୍କ୍ଷା ଯେ ଧୂଳିସାତ୍ ହେଉଚି, ସେଥିପାଇଁ ଭାବୁଚି କିଏ ? ଆଜି ଅନେକ ଲୋକ ଦେଶସେବା ପାଇଁ ବାହାରୁଚନ୍ତି, ଦେଶସେବାର ମଣ୍ଡପ ଉପରେ ଅନେକେ ଆତ୍ମପ୍ରଗ୍ୱର ମଧ୍ୟ କରୁଚନ୍ତି, ଖବରକାଗଜରେ ସେହିମାନଙ୍କର ନାମ ଓ ବିଜ୍ଞାପନର ଧୂମ୍ ଲାଗିଚି । ମାତ୍ର ଯାହାଲାଗି ରାଜନୀତିର ଜନ୍ମ ହୋଇଚି, ଆମେ ଯେଉଁମାନଙ୍କ ଲାଗି ଦେଶରେ ନୂଆ ଶାସନ ଗଢ଼ିବାକୁ ଯାଉଚୁ, ସେମାନଙ୍କର କଥା ଆମେ କେତେଦୂର ଭାବୁଚୁ ? ଅବଶ୍ୟ ଦୁଇଆଡ଼ୁ ଦୋଷ ରହିଚି । ଲୋକେ ମଧ୍ୟ ଆପଣାର ବିଗ୍ୱର ଓ ବିବେକ ଅନୁସାରେ ଚଳି ଶିଖୁ-ନାହାନ୍ତି । ଯଦି ସେମାନେ ଆପଣା ଛତ୍ ବ୍ୟକ୍ତିତ୍ୱର ପୁନରାବିଷ୍କାର କରନ୍ତେ, ସେମାନଙ୍କ ଭିତରେ ସୁପ୍ତ ରହିଥିବା ଶକ୍ତିମାନ୍ ଯଦି ନିଜକୁ ଚିହ୍ନିପାରନ୍ତା, ତେବେ କାହାର, କେଉଁ କପଟ-ରାଜନୀତିର ଶକ୍ତି ଅଛି ଯେ ସେହିମାନଙ୍କର କାନିଧରି ତଥାପି ସେମାନଙ୍କୁ ଉପେକ୍ଷା କରିଯିବାର ସାହସ କରନ୍ତା ?

ଆମ ଗାଆଁରେ ନୂଆ ହାଇସ୍କୁଲ ଆରମ୍ଭ ହୋଇଚି । ମାଇନର ପାସ୍ କରି ଅର୍ଥାଭାବରୁ ଯେଉଁ ପିଲାମାନେ ଘରେ ବସିଚନ୍ତି, ଦୁଇ ତିନିବର୍ଷ ନିରାଶ ଜୀବନ କଟାଇବା ପରେ ସେମାନେ ପୁଣି ପଢ଼ିବାକୁ ଆସିଚନ୍ତି । ତଥାପି ସେମାନେ ଅସଲ ବାଟ ପାଇନାହାନ୍ତି । ଯେଉଁଦିନ ଅସଂଖ୍ୟ ପ୍ରଶ୍ନରେ ଦରିଦ୍ର ଜଗତର ଦରବାରକୁ ଆଲୋଡ଼ିତ କରିପାରିବ, ଅସନ୍ତୁଷ୍ଟ ମନବେଦନାର କଷାଘାତରେ ସେ ଯେଉଁଦିନ ଅସ୍ଥିର ହୋଇ ଉଠିବ, ତା'ପ୍ରତି ହେଉଥିବା ଅପମାନକୁ ଅପମାନ ବୋଲି ଅନୁଭବ କରିପାରିବ, ସେଦିନ ସେ ଆଉ ଦରିଦ୍ର ହୋଇ ରହିବ ନାହିଁ, ସେଦିନ ନୂତନ ଜୀବନର ସୂତ୍ରପାତ ହେବ, ନୂତନ ଉଷାର

ଉଦୟ ହେବ । ଅସନ୍ତୋଷ ହେଉଚି ନୂତନ ଜନନର ଅଙ୍କୁର । ଏଇ ପିଲାମାନେ କେବେହେଲେ ନିଜ ଦୃଷ୍ଟିରୁ ଆମ ସଂସାରର ବିଗ୍ଭର କରି ଶିଖିନାହାନ୍ତି । ଦେଶର ଛାତ୍ର ହିସାବରେ, ସମାଜର ଭବିଷ୍ୟତ ହିସାବରେ ଏମାନେ କେବେହେଲେ ଆପଣାର ଅଧିକାର ଦାବୀ କରି ଶିଖିନାହାନ୍ତି । ମାତ୍ର ଅନ୍ୟପକ୍ଷରେ ଏମାନେ ପୋଷାକ ପରିପାଟୀ ଶିଖିପାରିଚନ୍ତି, ଛାତ୍ରଜୀବନର ସ୍ୱାଭାବିକ ଉଚ୍ଛୃଙ୍ଖଳତା-ମାନ ଶିକ୍ଷା କରିଚନ୍ତି, ଆଭିଜାତ୍ୟ ସୁଲଭମାନ, ଅଭିମାନ ଓ ଗୁମାନ ଏମାନେ ବେଶ୍ ଜାଣିଚନ୍ତି । କେଉଁସବୁ କାରଣରୁ ସେମାନେ ଦୁଇ ତିନି ବର୍ଷକାଳ ପାଠ ନ ପଢ଼ି ଘରେ ବସିରହିଲେ, ତା'ପରେ କେତେକଙ୍କର କୃପାରୁ ଏଠି ହାଇସ୍କୁଲ ଆରମ୍ଭ ହେବାରୁ ଘରେ ପଖାଳ ଖାଇ ଏଠାରେ ପଢ଼ିବାକୁ ଆସିଲେ, କେଉଁସବୁ କାରଣରୁ ଏମାନେ ପାଠ ପଢ଼ିବାର ପରିପୂର୍ଣ୍ଣ ପରିସର ପାଇ ପାରୁନାହାନ୍ତି, ଏସବୁ ପ୍ରଶ୍ନ ତ ଦିନେହେଲେ ସେମାନେ ଆପଣାକୁ ପଗ୍ଭରିନାହାନ୍ତି ! ଏହି ଅପମାନ ଓ ଦାରୁଣ ପକ୍ଷପାତ ଦେଖି ତ ସେମାନେ ଦିନେହେଲେ ଗର୍ଜି ଉଠିନାହାନ୍ତି ! ସେମାନଙ୍କର ସମାଜରେ, ମନରେ ଓ ଶରୀରରେ ଯେଉଁସବୁ ଜଡ଼ତା ଓ ନୀରବ ସହିଷ୍ଣୁତାର ବେଡ଼ି ପଡ଼ିଚି, ସେଥିରେ ସେମାନେ ଆପଣାର ବାଟ ପାଇବେ କିପରି ?

ଥରେ ଜଣେ ସରକାରୀ ଅଫିସର୍ ଯୁଦ୍ଧଫଣ୍ଡ୍‌ର ଲଟେରି ଟିକେଟ ବିକିବାକୁ ଏହି ବିଦ୍ୟାଳୟକୁ ଆସିଥିଲେ । କେଡ଼େ ଲଜ୍ଜାର କଥା ! ଯେଉଁମାନେ ଜୀବନରେ ମୁକ୍ତିର କୌଣସି ସ୍ୱାଦ ଗ୍ଭଖିନାହାନ୍ତି, ସେଇମାନଙ୍କୁ ମୁକ୍ତିଯୁଦ୍ଧର ଗ୍ଭନ୍ଦା ଦେବାଲାଗି ଫୁସୁଲାଯାଉଚି । ଶୁଖିଲା ପଥରରୁ ଜୀବନର ଅବଶେଷଟିକକ ନେବାପାଇଁ ଷଡ଼ଯନ୍ତ୍ର କରାଯାଉଚି । ସହରରେ ଯୁଦ୍ଧବିଭାଗୀୟ ଅଫିସ ଅଛି, ସହରରେ ବଡ଼ଲୋକଙ୍କ ପିଲାମାନଙ୍କ ପାଇଁ ଭଳି ଭଳି କଲେଜ ଖୋଲା ଯାଉଚି; ମାତ୍ର ମଫସଲର ଗରିବ ପିଲା ମାଇନର ପାସ୍ କରିବାପରେ କାହିଁକି ଗ୍ଭରିଟଙ୍କିଆ ମାଷ୍ଟରି ଗ୍ଭକିରି କରୁଚି, ଆଜି ଏ ପ୍ରଶ୍ନର ଉତ୍ତର କିଏ ଦେବ ? ଦେଶର ମିତ୍ର ସାଜି ଯେଉଁମାନେ ଦରିଦ୍ରଠାରୁ ଧନ ଠକିନେବେ ବୋଲି ଆସିଚନ୍ତି, ସେମାନେ କେବେଯାଇଁ ଏହି ପ୍ରଶ୍ନର ଉତ୍ତର ଦେଇପାରିବେ ?

୧୩ । ୩ । ୪୫

ଆଜି ସକାଳେ କଲିକତାରେ ଆସି ପହଞ୍ଚିଲି । ସନ୍ଧ୍ୟାବେଳେ ଆମେ କେତେଜଣ ଓଡ଼ିଆ କୁଲିମାନେ ରହୁଥିବା ଅଞ୍ଚଳକୁ ଯାଇଥିଲୁ । ମଣିଷ ଯେ ଏପରି ଶୋଚନୀୟ ଅବସ୍ଥାରେ କାମ କରି ବଞ୍ଚି ରହିପାରେ, ମୁଁ ଦେଖି ବିଶ୍ୱାସ କରିପାରିଲି ନାହିଁ । ସେଠି ଓଡ଼ିଆ ସବୁଠାରୁ କମ୍ ଦରମା ପାଏ, ଛୋଟ ଗ୍ଭକିରି କରେ ଓ ସବୁଠାରୁ ଖରାପ ଜାଗାରେ ରହେ । ସେହି ପଡ଼ାମାନଙ୍କରେ ସବୁବେଳେ ବସନ୍ତ ଓ ମେଲେରିଆ ଲାଗିରହିଥାଏ । ଯେତେବେଳେ ଘାଇ

ଭାଙ୍ଗି ବିଲଉପରେ ନଣବାଲି ଚର୍ଢ଼ି ଯାଏ, ସାହୁକାରର ଶହେଟଙ୍କା ଯେତେବେଳେ ପାଞ୍ଚଶହ ଟଙ୍କାକୁ ଧକ୍‌କା ଦିଏ, ସେତେବେଳେ ଓଡ଼ିଆ ଚାଷୀ ଭଙ୍ଗଳଉପରୁ ଭରସା ତୁଟାଇ କୁଲି ହୋଇ କଲିକତା ଆସେ । ମାତ୍ର ଏଠି ବି କ'ଣ ତା'ର ପେଟ ପୂରେ ? କେଉଁ ଦୃଷ୍ଟିରୁ ମୁଁ ସେମାନଙ୍କୁ ମଣିଷ ବୋଲି କହିପାରିବି ? କିପରି ମୁଁ କହିବି ଯେ ସେମାନେ ଏହି ଜୀବନ, ଏହି ଜଗତ ଓ ଏହି ଜଗତର ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ଉପରେ ନିର୍ଭର ରଖିଚନ୍ତି ? କିପରି ମୁଁ କହିବି ଯେ ସେମାନେ ନିଜଉପରେ ବିଶ୍ୱାସ ରଖିଚନ୍ତି, ସେମାନଙ୍କ ଭିତରେ ମଣିଷ ହୋଇ ବଞ୍ଚିରହିବାର ବାସନା ମଧ୍ୟ ରହିଚି ? ପେଟ ତ କେବେ ପୂରେ ନାହିଁ, ବଖରାଏ ଘରେ ସେମାନେ ଆଠ ଦଶ ଲେଖାଏଁ ମଡ଼ାହୋଇ ରହିଥାନ୍ତି, ବିଡ଼ି ଟାଣିବା ଓ ଗୁଡ଼ାଖୁ ଘଷିବା ବ୍ୟତୀତ ଜୀବନରେ ଆଉ ଅନ୍ୟକିଛି ଆନନ୍ଦ ଅଛି ବୋଲି ସେମାନେ କେବେ କଳ୍ପନା ବି କରନ୍ତି ନାହିଁ । ଆଠଘଣ୍ଟା କାମ ଖଟି କାଲି ଆହୁରି ଆଠଘଣ୍ଟା ଖଟିବାଲାଗି ଏମାନଙ୍କୁ ହୁଏତ ବାରଘଣ୍ଟା ଶୋଇବାକୁ ପଡ଼େ । ମଣିଷ କ'ଣ ଏଇଥିପାଇଁ ଏଡ଼େ ବେଗରେ ଧାଇଁଚି ? ଏଇଥିପାଇଁ କ'ଣ ତା'ର ସଭ୍ୟତା ଯନ୍ତ୍ରଶିଳ୍ପର ଆଶ୍ରୟ ନେଇଚି ?

ଏଠି ଗୋଟିଏ ଲୁଗାକଳରେ ଜଣେ ଓଡ଼ିଆ ଉଚ୍ଚପଦସ୍ଥ କର୍ମଚାରୀ ଅଛନ୍ତି ବୋଲି ଶୁଣିଲି । ଓଡ଼ିଆ ମଜଦୁରମାନଙ୍କର ସୁଖସୁବିଧା ଦେଖିବାପାଇଁ ସେ କୁଆଡ଼େ କମ୍ପାନୀ ତରଫରୁ ମୋଟା ଦରମାରେ ନିଯୁକ୍ତ ହୋଇ ରହିଚନ୍ତି । ଶୁଣିଲି, ସେ କୁଆଡ଼େ ଓଡ଼ିଆଙ୍କ ସାଙ୍ଗରେ ଓଡ଼ିଆରେ କଥାବାର୍ତ୍ତା କରିବାକୁ ସଙ୍କୋଚବୋଧ କରନ୍ତି । ବିଚ୍ଛିନ୍ନ ଉତ୍କଳକୁ ପୂର୍ଣ୍ଣାଙ୍ଗକରିବାକୁ ବ୍ୟାକୁଳ ହେଉଥିବା ଓଡ଼ିଆ ଭାଇଙ୍କୁ ଏହି ପ୍ରସଙ୍ଗରେ ମୋର ପଦେ କହିବାର ଅଛି । ଧୀରେ ଧୀରେ ଧନୀ ସଭ୍ୟତାର ମିଥ୍ୟା-ଅନୁକରଣ କରି ଓଡ଼ିଆଜାତି ଭିତରେ ଗୋଟାଏ ବର୍ଗ ସୃଷ୍ଟି ହେଉଥିଲା ପର୍ଯ୍ୟନ୍ତ ଉତ୍କଳ ପୂର୍ଣ୍ଣାବୟବ ହୋଇପାରିବ ନାହିଁ । ମାତ୍ର ଆମେ ଯେଉଁଦିନ ସବୁଠାରୁ ପଛରେ ପଡ଼ିଥିବା ଓଡ଼ିଆକୁ ମଧ୍ୟ ଭାଇ ପରି ଆଦରରେ ଟେକି ଧରିବାର ସାହସ ଅର୍ଜନ କରିବା, ସେଦିନ କେବଳ ଉତ୍କଳ ନୁହେଁ, ସମଗ୍ର ମାନବସମାଜ ମଧ୍ୟ ପୂର୍ଣ୍ଣାଙ୍ଗ ହୋଇପାରିବ ।

୧୬ । ୩ । ୪୫

ଆଜି ଉପରବେଳା ବେଲୁଡ଼ ମଠ ଦେଖି ଯାଇଥିଲି । ସେଠିକାର ବାୟୁମଣ୍ଡଳ ଖୁବ୍ ଶାନ୍ତ ଓ ଗମ୍ଭୀର । ଗଙ୍ଗାକୂଳର ପ୍ରଶାନ୍ତ ମନ୍ଦିରମାନ ହୃଦୟରେ ମହାନ୍ ଭାବର ଉଦୟ କରାଏ । ମନେହେଲା, ସବୁଠିଁ ଏହିପରି ଏକ ବାୟୁ-ମଣ୍ଡଳ ଭିତରେ ରହିଥିଲେ ମଣିଷ ହୁଏତ ସବୁ ଭୁଲିପାରୁଥାନ୍ତା । ଯେଉଁଠି ଖାଇବା, ପିନ୍ଧିବା ଓ ରହିବାର ଜ୍ୱାଳା ମଣିଷକୁ ଦଗ୍ଧ କରୁନାହିଁ, ଯେଉଁଠି ଫୁଲ ଅଛି, ପବନ ଓ ଜଳତରଙ୍ଗର ନୃତ୍ୟ ଯେଉଁଠି ମଣିଷର ନୟନକୁ ହରଣ

କରି ନେଉଚି, ସେଠି ମଣିଷ ଦେବତା ହୋଇପାରେ, ସେଠି ସେ ଅଭିନବ ଯୁଗରଚନାର ସ୍ୱପ୍ନ ବି ଦେଖିପାରେ ।

ଅଳସ ଦର୍ଶନକୁ ଛାଡ଼ି ସ୍ୱାମୀ ବିବେକାନନ୍ଦ ଦିନେ ଭାରତର ଏପ୍ରାନ୍ତ ଠାରୁ ସେପ୍ରାନ୍ତ ପର୍ଯ୍ୟନ୍ତ 'କାମ' 'କାମ' ବୋଲି ଚିତ୍କାର କରିଥିଲେ । ଭାରତର ମୁମୂର୍ଷୁ ପ୍ରାଣ ଭିତରେ ତା'ର ହୃତ ବ୍ୟକ୍ତିତ୍ୱର ପୁନର୍ଗଠନ କରିବେ ବୋଲି ସେ ଅସ୍ଥିର ହୋଇ ଉଠିଥିଲେ । ମାତ୍ର କାହିଁ ? ସେହି ଦୃଷ୍ଟିରୁ ଆଜି କେଉଁଠି କେତେଦୂର କାର୍ଯ୍ୟ କରାଯାଉଚି ? ଆଜି ଯେଉଁ ମଣିଷ ହତାଶ ହୋଇ କାଳୀମନ୍ଦିର ଆଗରେ ଦଉଡ଼ି ଦେଇ ମରୁଚି, ତାହାଲାଗି ତଥାକଥିତ ଧର୍ମ ପ୍ରଚାର କରୁଥିବା ଏପରି ଏକାନ୍ତ ଓ ବିଚ୍ୟୁତ ଜୀବନ ଭିତରେ କି ଆକର୍ଷଣ ରହିଚି ? ଏପରି ଧର୍ମରୁ ସେ ପ୍ରକୃତରେ କ'ଣ ଆଶା କରିପାରିବ ?

୧୯ । ୩ । ୪୫

ଆଜି କଲିକତାରୁ ଦଶମାଇଲ ଦୂରରେ ଥିବା ଶ୍ରୀଯୁକ୍ତ ସତୀଶ ଦାସଗୁପ୍ତଙ୍କର ସୋଦପୁର ଖଦୀପ୍ରତିଷ୍ଠାନ ଦେଖିବାକୁ ଯାଇଥିଲି । ଅନୁଷ୍ଠାନଟି ବେଶ୍ ବଡ଼, ଏହାର ଭିତ୍ତି ମଧ୍ୟ ସୁପ୍ରତିଷ୍ଠିତ । ପ୍ରାୟ ତିନିଶହ ଲୋକ ଏଠାରେ କାମ କରୁଚନ୍ତି, ସମସ୍ତେ ପରସ୍ପର ସହିତ ସହଯୋଗ କରୁଚନ୍ତି, କର୍ମର ପବିତ୍ର ଡୋର ଏମାନଙ୍କୁ ଏକାଠି ବାନ୍ଧିରଖିଚି । ସୁସଂବଦ୍ଧ ଭାବରେ କୌଣସି ଗାଆଁରେ ଏକ ସମଗ୍ର ରଚନାତ୍ମକ ଯୋଜନାକୁ କିପରି କାର୍ଯ୍ୟରେ ପରିଣତ କରାଯାଇପାରେ ଏଠାରେ ତାହାରି ପ୍ରୟୋଗ ହେଉଚି । ଅନୁଷ୍ଠାନଟି ବର୍ତ୍ତମାନ ସିନା ଏଡ଼େ ବଡ଼ ହୋଇଗଲାଣି, ମାତ୍ର ଏହାର ଉତ୍ପତ୍ତି ଛୋଟରୁ । ଏହାର ଉନ୍ନତି ଓ ବୃଦ୍ଧି ପଛରେ ଅନେକ ଅଧ୍ୟବସାୟ, ଧୈର୍ଯ୍ୟ ଓ କର୍ମଶ୍ରଦ୍ଧା ନିହିତ ହୋଇ ରହିଚି । ତଥାପି ଏଠାରେ ଗୋଟାଏ ଅଭାବ ବି ଲକ୍ଷ୍ୟ କରିପାରିଲି । କେତେଜଣ ଉଚ୍ଚପଦସ୍ଥ କର୍ମୀ ଓ କର୍ମଚାରୀଙ୍କୁ ଛାଡ଼ିଦେଲେ ତଳତଳିଆ ପ୍ରାୟ ସମସ୍ତେ ଏହି ଅନୁଷ୍ଠାନକୁ ଗୋଟିଏ ସାଧାରଣ ବ୍ୟବସାୟ-କ୍ଷେତ୍ର ପରି ମନେକରନ୍ତି । ସେମାନଙ୍କର ଧାରଣା ଯେ ସେମାନେ ଏଠାରେ ଚାକିରି କରିଚନ୍ତି । ରଚନାତ୍ମକ କାର୍ଯ୍ୟକ୍ରମ ପଛରେ ଯେ ଏକ ସାମାଜିକ ବିପ୍ଳବର ବିଚାର ନିହିତ ରହିଚି, ଏଠାରେ ଅନେକ ବ୍ୟକ୍ତି ସେ ବିଷୟରେ କିଛିହେଲେ ଜାଣିନାହାନ୍ତି ।

୨୧ । ୩ । ୪୫

ଆଜି ସିନେମା ଦେଖି ଯାଇଥିଲି । ବଙ୍ଗଳା ଛବିଟି ଭାରି ଭଲ ଲାଗିଲା । ସିନେମାଘରୁ ବାହାରିଲାବେଳେ ମନଟା କେବଳ ତାହାରି ଭାବନାରେ ପୂର୍ଣ୍ଣ ହୋଇ ରହିଥିଲା ।

ମାତ୍ର ରାସ୍ତାକଡ଼କୁ ଆସି ଟ୍ରାମରେ ବସିଲାମାତ୍ରକେ ମୋର ଚିନ୍ତାଧାରାରେ ତୃମୁଳ ପରିବର୍ତ୍ତନ ଆସି ପହଞ୍ଚିଲା । କେତେଦିନଯାଏ ମୁଁ କେବଳ ଚଳଚ୍ଚିତ୍ର ଦେଖି ଆନନ୍ଦ ଉପଭୋଗ କରୁଥିବି ? କେତେଦିନ ମୁଁ ଉଚ୍ଚ କଳାର ଅଳସ ପ୍ରଶଂସା ବା ଅର୍ଥହୀନ ଉପାସନା କରୁଥିବି ? କାହିଁକି, ମୁଁ ନିଜେ କ'ଣ କଳାର ସୃଷ୍ଟି କରି ପାରିବି ନାହିଁ ? ମୁଁ ନିଜେ କ'ଣ କିଛି ଲେଖିପାରିବି ନାହିଁ ? ତେବେ ସେଥିଲାଗି ମୁଁ କ'ଣ କରୁଚି ? ଅନ୍ତର ଭିତରେ ଯେଉଁସବୁ ଶକ୍ତି ଲୁଚିକରି ରହିଚି, ସେଗୁଡ଼ିକୁ ବାହାରକୁ ଆଣିବାଲାଗି ମୁଁ କ'ଣ ଯଥେଷ୍ଟ ଚେଷ୍ଟା କରୁଚି ? ଦୁନିଆକୁ ଠକିବାକୁ ଖୁବ୍ କମ୍ କାମ କରି ସଂସାରରୁ ଅଧିକ ପ୍ରଶଂସା ପାଇବାକୁ ଆଉ ମୋର ଲୋଭ ହେଉନାହିଁ ତ ?

ସେଇ ସମୟତକ ଯେପରି ମୁଁ ସବୁ ଭୁଲିଯାଇଥିଲି । ନିଜ ଭିତରେ କେବଳ ଗୋଟାଏ ଶକ୍ତିର ଅନୁଭବ ହିଁ କରୁଥିଲି । ସବୁ ମଣିଷ ଭିତରେ ଯେ ଗୋଟାଏ ମହାନ୍ ଓ ଅଦମ୍ୟ ଶକ୍ତି ରହିଚି, ମୁଁ ସେହିକଥା ହିଁ ଅନୁଭବ କରିପାରିଲି । ସେହି ରାସ୍ତା ଉପରେ ହିଁ ପ୍ରତିଜ୍ଞା କଲି ଯେ ଆଉ ସଂସାରକୁ ଠକିବି ନାହିଁ, ନିଜେ ପୂର୍ଣ୍ଣଭାବରେ ପ୍ରସ୍ତୁତ ନ ହେଲା ପର୍ଯ୍ୟନ୍ତ ଦୁନିଆରେ କାମ କରିବାର ଛଳନା କରିବି ନାହିଁ । ନିଜେ କଳାସୃଷ୍ଟି ଓ କଳାନୁଭୂତିର ପ୍ରଥମ ସୋପାନରେ ଆସି ପହଞ୍ଚି ନ ପାରିଲା ପର୍ଯ୍ୟନ୍ତ ମୁଁ କଳାର ମୂକ ଉପାସକ ହେବାକୁ ମନ ବଳାଇବି ନାହିଁ ।

୨୨ । ୩ । ୪୫

ଆଜି ରବୀନ୍ଦ୍ରନାଥଙ୍କର ଅମର ପ୍ରତିଷ୍ଠାନ ଶାନ୍ତିନିକେତନ ଦେଖି ଯାଇଥିଲି । ଆଗରୁ ସେ ବିଷୟରେ ଯାହା ପଢ଼ିଥିଲି ବା ଶୁଣିଥିଲି, ତା'ଠାରୁ ଅଧିକ ଦେଖିଲି । ସ୍ୱାଧୀନତା ହେଉଚି ବିକାଶର ପ୍ରଥମ ଆବଶ୍ୟକତା, ଏହି ସତ୍ୟ ଉପରେ ଅନୁଷ୍ଠାନଟି ସ୍ଥାପିତ ହୋଇଚି । ଏଥିଲାଗି ଅନୁଷ୍ଠାନର ଚାରିପାଖରେ କୌଣସି ପାଚେରୀ ମଧ୍ୟ ବୁଲିନାହିଁ, ବିସ୍ତୀର୍ଣ୍ଣ ବିଶ୍ୱସମାଜରେ ଇଏ ଯେପରି ଏକ ଅବିଚ୍ଛିନ୍ନ ଅଙ୍ଗ ପରି ହୋଇ ରହିଚି । ପରାଧୀନ ଭାରତରେ ଏହାକୁ ମୁକ୍ତିର ଏକ ବାସ୍ତବ ସ୍ୱପ୍ନ ବୋଲି କୁହାଯାଇପାରେ । ଏଠି ଆତ୍ମବିକାଶ ପାଇଁ ବିସ୍ତୃତ ପରିସର ରହିଚି । ଜାତି-ଧର୍ମ-ନିର୍ବିଶେଷରେ ଏଠି ସମସ୍ତଙ୍କ ଲାଗି ସ୍ଥାନ ରହିଚି । ଜ୍ଞାନର ପବିତ୍ର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଅନୈକ୍ୟ ଭିତରେ ଐକ୍ୟର ସନ୍ଧାନ କରିବା, ଅନେକ ଭିତରେ ଏକର ଉପଲବ୍ଧି କରିବା ବ୍ୟକ୍ତିର ଉନ୍ନତି ଓ ବିକାଶପଥ ଦେଇ ସମଷ୍ଟିର ଉନ୍ନତି ଓ ବିକାଶ କରିବା ହେଉଚି ଏକମାତ୍ର ସୁସ୍ଥ ପଥ ।

୨୫ । ୩ । ୪୫

ସଞ୍ଜବେଳେ କାଶୀପୁରଠାରେ ଶ୍ରମିକମାନଙ୍କର ଗୋଟିଏ ସଭା ହୋଇଥିଲା । ସେଠାରେ ଓଡ଼ିଆ ଶ୍ରମିକମାନଙ୍କ ପାଇଁ ଓଡ଼ିଆ ଭାଷାରେ ମୁଁ

କିଛି କହିଥିଲି । ବିଦେଶରେ ଏକ ସାଧାରଣ ସଭାରେ କିଛି କହିବା ବିଷୟରେ ମୋତେ ଆଜି ପ୍ରଥମ ଅନୁଭୂତି ମିଳିଲା ।

୨୬ । ୩ । ୪୫

ଆଜି ସକାଳେ କଲିକତା ଛାଡ଼ିଲି । ଏହି କେତେଦିନ ଭିତରେ ଗୋଟିଏ କଥା ବେଶ୍ ଭଲକରି ଜାଣିପାରିଲି ଯେ ସହର ଜୀବନ ମୋତେ କେବେହେଲେ ଆରେଇବ ନାହିଁ । ଗାଁରେ ଥିଲାବେଳେ ମୁଁ ଖୁସି ରହେ, ମୋର ମନ ଠିକ୍ ରହେ । ମାତ୍ର ସହରର ଅସ୍ଥିର ଗ୍ରଞ୍ଚଲ୍ୟ ଭିତରେ ମୋର ଚିନ୍ତାଧାରା ମଧ୍ୟ ଯେପରି ବଡ଼ ଅସ୍ୱାଭାବିକ ଭାବରେ ଚଞ୍ଚଳ ହୋଇପଡ଼େ ।

ସହରର ଏହି ଭିକାରୀ-ସମସ୍ୟା ମୋତେ ବେଳେବେଳେ କିଂକର୍ତ୍ତବ୍ୟ-ବିମୂଢ଼ କରିଦିଏ । ଯେତେବେଳେ କୌଣସି ଭିକାରୀ ଗୋଟିଏ ପଇସା ପାଇଁ ମୋ'ଆଡ଼କୁ ହାତ ପତାଏ, ସେତେବେଳେ ମୋର ମନ ନାନାପ୍ରକାରେ ଚଞ୍ଚଳ ହୋଇଉଠେ । ଏପରି ପରିସ୍ଥିତିରେ ମୁଁ ମୋର କର୍ତ୍ତବ୍ୟ ମଧ୍ୟ ସ୍ଥିର କରିପାରେ ନାହିଁ । ଗୋଟାଏ ଗୋଟାଏ ପଇସା ଦେଇ ମୁଁ କେତେ ଭିକାରୀଙ୍କୁ ପୋଷି ପାରିବି ? ପରାଧୀନ ଭାରତବର୍ଷରେ କାହାକୁ ବା ସବୁ ସୁବିଧା ମିଳୁଚି ? ଅଭାବମୋଚନ କରିବାକୁ ଗଲେ ତ ସବୁ କ୍ଷେତ୍ରରେ ଅଭାବଗ୍ରସ୍ତ ମଣିଷ ଜୁଟିବେ । ଭାରତବର୍ଷ କେବେ ସ୍ୱାଧୀନ ହେବ ?

୨୦ । ୪ । ୪୫

ହେ ଭଗବାନ୍, ତୁମେ କ'ଣ ପ୍ରକୃତରେ କେଉଁଠି ଅଛ ? ତେବେ ଏ ଛଳନା କାହିଁକି, ତେବେ ଏ କୁହେଳି କାହିଁକି ? ତୁମେ ଯଦି ପ୍ରକୃତରେ ଏଇ ଜଗତ ଓ ମଣିଷକୁ ସମୁତ୍‌ଥିତ କରିବାକୁ ଗ୍ରହ, ତେବେ ଆଜି ଗର୍ଜନ କରିଉଠ, ପାଷାଣ ଶରୀରର ମୃତ ପିଣ୍ଡକୁ ଛାଡ଼ି ଆଜି ଜୀବନ୍ତ ଓ ରୁଦ୍ରରୂପରେ ଜାଗିଉଠ । ପ୍ରକୃତ ଧର୍ମ କ'ଣ, ମଣିଷ ଓ ତା'ର ଜୀବନପ୍ରତି ତୁମର ସନ୍ଦେଶ ବା କ'ଣ; ତୁମେ ବଜ୍ରନାଦରେ ଜଗତ କାନରେ ସେହି କଥାର ଘୋଷଣା କରି ଦେଇଯାଅ । ତୁମର ଜଗତରେ ଏଠି ଯେଉଁଠି ଅନ୍ୟାୟ ଓ ଅତ୍ୟାଗ୍ଚର ଅଛି, ଯେଉଁଠି ମଣିଷ ନିଜର ଜୀବନକୁ ଅବହେଳା କରି ତୁମର ଅନ୍ଧପୂଜାରେ ଜୀବନଟାକୁ ନଷ୍ଟ ଓ ବ୍ୟର୍ଥ କରୁଚି, ତୁମେ ସେଇଠି ବଜ୍ରବାହୁ ହୋଇ ସବୁ ଅନ୍ୟାୟ ଓ ଅତ୍ୟାଗ୍ଚରର ନିପାତ କର, ତୁମେ ସେଇଠି ତୁମର ମହନୀୟ ସତ୍ୟଜ୍ୟୋତି ପ୍ରତିଫଳିତ କରାଇ ଜଗତକୁ ଆଲୋକିତ କର । ଅନ୍ଧାର ତୁଟିଯାଉ, କୁହେଳି କଟିଯାଉ, ଏହି ମଣିଷ ତା'ର ଜଗତକୁ ଚିହ୍ନୁ, ଏହି ମଣିଷ ତା'ର ଜୀବନକୁ ଚିହ୍ନୁ । କପଟ ଧର୍ମର ଜଟିଳ ଘନଜାଲକୁ ସେ ଉପଯୁକ୍ତ ସାହସରେ ଚିରି ଛିଡ଼ାଇଦେଉ । ଯାହା କର୍ତ୍ତବ୍ୟ ସେ ତାହା ହିଁ କରୁ । ଯେଉଁ ଧର୍ମ ସହିତ ଜୀବନ ଓ କର୍ମର କୌଣସି ସମ୍ବନ୍ଧ ନାହିଁ, ସେହି ଧର୍ମକୁ ସେ ସଦର୍ପ ପଦାଘାତ କରିଆସୁ । ନିଜ ଭିତରର ଦେବତାକୁ ହିଁ

ସେ ଭକ୍ତିକରି ଶିଖୁ, କୋଟି କୋଟି ମଣିଷ ଭିତରେ ରହିଥିବା ଜୀବନ୍ତ ଦେବତାର ମନ୍ଦିରରେ ସେ ପୂଜା କରି ଶିଖୁ । ତା'ର ଏହି ଫୁଲଫଳ ଓ ହସରେ ଭରା ପୃଥିବୀକୁ ସେ ସ୍ୱର୍ଗ କରି ଗଢ଼ୁ ।

ଭଗବାନ୍, ଜାଗ, ଉଠ । ଦୁନିଆକୁ ଆଉ ଠକ ନାହିଁ । ଅନ୍ଧଭକ୍ତିର କପଟ ଆଲୋକରେ, ଅନ୍ଧସ୍ତୁତିର ମିଛ ଉଦ୍‌ବୋଧନରେ ତୁମେ ମଣିଷର ଆଖିକୁ ଏପରି ବନ୍ଦକରି ଦିଅ ନାହିଁ । ମଣିଷର ଜୀବନକୁ ନଷ୍ଟ, ବ୍ୟର୍ଥ ଓ ଛାରଖାର କରି ଦିଅ ନାହିଁ । ମଣିଷ ଅନେକ ଭୁଲିଚି, ନିଜେ ଭୁଲି ଦୁନିଆକୁ ଭୁଲ ବୁଝିଚି, ମହାତ୍ମାକୁ ଭୁଲ ବୁଝିଚି, ଧର୍ମ ଓ ତୁମକୁ ମଧ୍ୟ ଭୁଲ ବୁଝିଚି । ତାକୁ ଆଉ ଅଧିକ ଭୁଲ କରିବାକୁ ଦିଅ ନାହିଁ । ଏହି ଭୁଲଭ୍ରାନ୍ତିର ଗୋଲକଧନ୍ଦା ଭିତରେ ଭୁଲି ରହିଲେ ମଣିଷ ଏଠି ବଡ଼ ହେବ କିପରି, ଦୀପ୍ତ ହେବ କିପରି, ପ୍ରଶସ୍ତ ହେବ କିପରି ? ଜାଗ, ତୁମ କର୍ତ୍ତବ୍ୟଶିକ୍ଷାର କଷାଘାତରେ ମଣିଷର ଜଡ଼ତା ଭାଙ୍ଗିଯାଉ । ଜାଗ, ତୁମ ବିପଦଶିକ୍ଷାର ଅଶନିପାତରେ ମଣିଷର ମୋହ ତୁଟିଯାଉ । ମଣିଷ ଶୋଇଚି, ମଣିଷ ମରିବାକୁ ଯାଉଚି । ସେ ଉଠିବ, ସେ ଜାଗିବ, ନିଜଭିତରର ଆଲୋକକୁ ଚିହ୍ନିବ, ବିପଦର ଅଗ୍ନିପରୀକ୍ଷାକୁ ଡେଇଁ ସେ ପବିତ୍ର ହେବ, ସେ ଶୁଦ୍ଧ ହେବ । ଜାଗ, ତୁମରି ଜାଗିବା ସଙ୍ଗେ ସଙ୍ଗେ ସମସ୍ତ ଜଗତରେ ଜାଗରଣର ଉତ୍ସବ ଖେଳିଯାଉ । ମଣିଷ ଏଠି ଶୋଇ ରହିବାକୁ ଆସିନାହିଁ । ତାହାରି ଅନ୍ତର ଭିତରେ ହିଁ ଜାଗରଣର ସଙ୍ଗୀତ ଗୁପ୍ତ ହୋଇ ରହିଚି । ମଣିଷ ନିଜେ ଭୁଲି ଜଗତକୁ ଭୁଲାଇବା ଲାଗି ଏଠାକୁ ଆସି ନାହିଁ । ନିଜେ ଶିଖି ଜଗତକୁ ଶିଖାଇବା ପାଇଁ ତା'ର ଜନ୍ମ । ଯଦି ସାପପରି ମନ୍ତ୍ରମୁଗ୍ଧ ହୋଇ ଅନ୍ୟହାତରେ ଖେଳନା ହୋଇ ରହିବାକୁ ସେ ଜଗତକୁ ଆସିଥାଏ, ତେବେ ତୁମେ ତାକୁ ସାପର ଜନ୍ମ ଦେଲ ନାହିଁ କାହିଁକି ? ତୁମେ ତାକୁ ମଣିଷ କଲ କାହିଁକି ? ତା'ଭିତରେ ମଣିଷର ଆଶା ଦେଲ କାହିଁକି ? ତା'ଭିତରେ ଅନାଗତ ନୂତନର କଳ୍ପନା ଭରିଦେଲ କାହିଁକି ? ତା'ର ଅନ୍ତରଭିତରେ ଶତ ଆଗ୍ନେୟଗିରିର ଭୈରବ ପ୍ରବାହକୁ ତୁମେ ଲୁକ୍‌କାୟିତ କରି ରଖିଲ କାହିଁକି ?

ତୁମେ କ'ଣ ପ୍ରକୃତରେ ମଣିଷକୁ ଜଡ଼ କରି ରଖିବାକୁ ଚାହଁ ? ତୁମେ କ'ଣ ଚାହଁ ମଣିଷ ଏହିପରି ମରିଯାଉ, ଆଶାହୀନ ଓ ଆକାଙ୍‌କ୍ଷାହୀନ ହୋଇ ଏହିପରି ହୀନ ଓ ହେୟଭାବରେ ଝାଉଁଳିପଡ଼ୁ ? ସିଏ ତ ପ୍ରତି ମୁହୂର୍ତ୍ତରେ ମରୁଚି । ଗରିବ ମଣିଷ ପ୍ରତିଦିନ ପଳ ପଳ ହୋଇ ମରୁଚି, ସମ୍ପତ୍ତିର ମୋହନ ମନ୍ତ୍ରରେ ମୁଗ୍‌ଧ ହୋଇ ଧନୀର ହୃଦୟ ଓ ମନ ମଧ୍ୟ ମରିଯାଉଚି । ଶତ ଶତ ନିରୀହ ଲୋକଙ୍କ ଉପରେ ଅତ୍ୟାଚାରର ଅଭିଯାନ ଚଳାଇ ଅତ୍ୟାଚାରୀ ନିଜର ଗାଡ଼ ନିଜେ ଖୋଳୁଚି । ତେବେ ଜୀବନ ଆଉ କେଉଁଠି ଅଛି ? ଶିକ୍ଷାନାମରେ ଏ ଯୁଗର ଲକ୍ଷ ଲକ୍ଷ ଛାତ୍ରଙ୍କର ମନ, ହୃଦୟ ଓ ନୂତନ ହେବାର ଅଭିଳାଷକୁ

ମାରି ଦିଆଯାଉଚି । ସୌନ୍ଦର୍ଯ୍ୟର ପ୍ରଶ୍ନର ନାମରେ ମଣିଷକୁ ହତଶିରୀ କରି ଦିଆଯାଉଚି । ଧର୍ମର ପ୍ରସାର ନାମରେ ମଣିଷକୁ ଅନ୍ଧ, ଶିଥିଳ ଓ ଧର୍ମଭ୍ରଷ୍ଟ କରାଯାଉଚି । ତେବେ ଜୀବନ କାହିଁ ? ମଣିଷ ଆଜ କେଉଁଠି ବଞ୍ଚିଚି ? ନା– ନା–, ଇଏ ଜୀବନ ନୁହେଁ । ଏହି ଜଗତକୁ ଜଗତପରି ଗଢ଼ିବାକୁ ହେଲେ ତୁମକୁ ଆଜି ହୁଙ୍କାର ଶବ୍ଦରେ ସବୁ ଭାଙ୍ଗି ପକାଇବାକୁ ହେବ । ମଣିଷ ମଣିଷ ହେବ, ମଣିଷ ପୁନର୍ଜନ୍ମ ପାଇବ, ଯୁଗର ପ୍ରବର୍ତ୍ତନ ହେବ, ସମାଜର ନୂତନ କଳେବର ହେବ । ସେଇଥିପାଇଁ ମୁଁ ଆଜି ତୁମକୁ ଏଡ଼େ ବିକଳ ହୋଇ ଡାକୁଚି, ହେ ଦେବତା, ଯେଉଁ ଜଗତର ଜନ୍ମଦାତା ହିସାବରେ ତୁମେ ସବୁବେଳେ ଗୌରବ ଓ ଶ୍ରେୟ ତୁମେ ନେଇଆସିଚ, ସେହି ଜଗତକୁ ସୁନ୍ଦର କରି ଓ ମଣିଷକୁ ମହନୀୟ କରି ଗଢ଼ିବାରେ ତୁମର ଗର୍ବ ଓ ଗୌରବର ପରିଚୟ ମିଳିବ ନାହିଁ କି ?

ହେ ନିଦ୍ରିତ, ହେ ଜଡ଼, ହେ କୁମ୍ଭକର୍ଣ୍ଣ, ଆଜି ସୁପ୍ତିର ସମାଧି ଛାଡ଼ି ଜାଗ, ଆଖି ମେଲ, ତୁମ ହସ୍ତର ସଞ୍ଚାଳନରେ ଜଗତରେ ଗ୍ରଞ୍ଚଲ୍ୟ ଖେଳିଯାଉ । ପଥର ଦେହର କାରାଗାର ଛାଡ଼ି ଆଜି ପ୍ରଶସ୍ତ ହୁଅ, ଏଇ ମଣିଷର ଜୀବନରେ ପରିବ୍ୟାପ୍ତ ହୁଅ । ତୁମେ ଯଦି ସତରେ ଦେବତା ହୋଇଥାଅ, ତେବେ ନିଜେ ମଉନ ଓ ମୂକ ରହି ସମସ୍ତ ସୃଷ୍ଟିକୁ ମଉନ ଓ ମୂକ କରିବାର କୌଣସି ଅଧିକାର ତୁମର ନାହିଁ । ଏବଂ ଜଗତକୁ ଭୁଲାଇ ମୁଗ୍ଧ କରି ନିଜେ ମଉନ ମୂକ ପଥରମୂର୍ତ୍ତି ହୋଇ ପୂଜା ପାଇବାର ପ୍ରହସନ ଯଦି ତୁମେ କର, ଯଦି ସେଇଥିରେ ତୁମେ ଆନନ୍ଦ ପାଅ, ତେବେ ଦେବତା ବୋଲାଇବାର କୌଣସି ଅଧିକାର ତୁମର ରହିବ ନାହିଁ । ନା–ଆଜି ଏହି ଅନଧିକାର ଚର୍ଚ୍ଚା ଆଦୌ ଶୋଭା ପାଉ ନାହିଁ । ପୃଥିବୀ ଦିନେ ନା ଦିନେ ଜାଗିଉଠିବ, ତୁମେ ତାକୁ ସବୁଦିନ ଲାଗି ଜବରଦସ୍ତି ଶୁଆଇ ରଖିପାରିବ ନାହିଁ । ପୃଥିବୀ ଅବଶ୍ୟ ଆଗକୁ ଯିବ, ତୁମେ କଦାପି ତାକୁ ସବୁଦିନ ଲାଗି ପଛକୁ ଟାଣି ରଖିପାରିବ ନାହିଁ । ପୃଥିବୀର ମଣିଷ ନିଶ୍ଚୟ ଆପଣାର ଜୀବନକୁ ଚିହ୍ନିବ, ତୁମେ ପାଷାଣ ମୂର୍ତ୍ତି ଓ ପାଷାଣ ମନ୍ଦିରର ଧମକ ଦେଖାଇ ତାକୁ କଦାପି ଭଳାଇ ପାରିବ ନାହିଁ । ମଣିଷ ଜାଗିବ, ତା'ର ନିଦ ଭାଙ୍ଗିବ, ଏବଂ ତା' ସହିତ ତୁମକୁ ମଧ୍ୟ ଜାଗିବାକୁ ହେବ, ତୁମର ନିଦ ବି ଦିନେ ଭାଙ୍ଗିବ । ମଣିଷ କର୍ମରତ ହେବ, ଏବଂ ତା' ସହିତ ତୁମକୁ ମଧ୍ୟ କର୍ମର ଅବତାର ଧାରଣ କରିବାକୁ ହେବ । ମଣିଷ ଆଜି ଆପଣା ଜୀବନକୁ ଚିହ୍ନିବ, ତା' ସହିତ ତୁମେ ମଧ୍ୟ ତା'ର ଜୀବନପଥ ଉପରେ ତୁମ ନୂପୁରର ଛନ୍ଦ ଶୁଣାଇବ । ମଣିଷ ଆଜି ଆପଣାର ସାଧନାପଥରେ ବାହାରିବ, ତା' ସହିତ ତୁମେ ମଧ୍ୟ ସାଧନାର ମନ୍ତ୍ର ଉଚ୍ଚାରଣ କରିବ । ଆଜି ମଣିଷ ବଞ୍ଚିରହିବ, ତା' ସହିତ ତୁମକୁ ମଧ୍ୟ ଦାନା ଓ କପଡ଼ାର ଅବତାର ଗ୍ରହଣ କରିବାକୁ ହେବ । ଗଛତଳର ଦରିଦ୍ର ଭିକାରୀ ଆଜି

ଆପଣାଲାଗି ଆଶ୍ରୟ ଦାବୀ କରିବ, ତା' ସହିତ ତୁମକୁ ମଧ୍ୟ ଆଶ୍ରୟରୂପେ ଦଣ୍ଡାୟମାନ ହେବାକୁ ପଡ଼ିବ । ଦରିଦ୍ର ମଣିଷ ଆଜି ଅତି ଆକୁଳ ହୋଇ ତୁମକୁ ଖୋଜିବ, ତା' ସହିତ ତୁମକୁ ମଧ୍ୟ ଦରିଦ୍ରନାରାୟଣର ବେଶ ପିନ୍ଧିବାକୁ ପଡ଼ିବ । ଖାଲି ଧନୀର ନୁହେଁ, ତୁମେ ଦରିଦ୍ର ଓ ଦଳିତର ବି ଭଗବାନ ହୋଇ ରହିବ ।

ଭଗବାନ, ତୁମେ ଆଜି ଏପରି କ୍ଷୁଦ୍ର ହୋଇପଡ଼ିଲ କାହିଁକି ? ମନ୍ଦିର ଭିତରେ, ଚନ୍ଦନ ଓ କୁଙ୍କୁମର କଟୁଗନ୍ଧ ଭିତରେ, ପୁଷ୍ପପତ୍ରର କୃତ୍ରିମ କଣ୍ଠହାର ଭିତରେ, ଧନୀ ଓ ଲୁବ୍ଧ ଉପାସକର ସ୍ତବକବାକ୍ୟ ଭିତରେ ତୁମେ ଏପରି ଲୁଚିଗଲ କାହିଁକି ? କାହିଁକି ତୁମେ ଏପରି ଭୀତ ହୋଇପଡ଼ିଲ ? ଯେତେବେଳେ ଦରିଦ୍ର, ଅସ୍ପୃଶ୍ୟ ଓ ଦଳିତ ମଣିଷ ଆକୁଳ ହୋଇ ତୁମକୁ ଡାକିଲା, ସେତେ-ବେଳେ ତା'ଆଗରେ ମଧ୍ୟ ଭଗବାନ୍ ରୂପରେ ଠିଆ ହେବାକୁ ତୁମେ ଭୟ ପାଇଲ କିପରି ? ସେଇଥିପାଇଁ ଧନୀଘରର ସ୍ୱର୍ଣ୍ଣତୋରଣ ପଛରେ ଆତ୍ମଗୋପନ କରିବାର ଭୀରୁତା ତୁମଭିତରେ ପ୍ରବେଶ କଲା କି ? ଯେତେବେଳେ ଦୁଃଖ-ଦୁର୍ବିପାକରେ ଅସ୍ଥିର ହୋଇ ଜଗତ ତୁମକୁ 'ଭଗବାନ, ଭଗବାନ' ବୋଲି ଡାକିଲା, ତୁମେ ସେହି ଡାକ ନ ଶୁଣିବା ଲାଗି ବଡ଼ ସୁବିଧାବାଦି ପରି ଧନୀର କବାଟକଣରେ, ଶାସ୍ତ୍ରପୁରାଣର ଜୀର୍ଣ୍ଣ ପୃଷ୍ଠାଭିତରେ ଯାଇ ଆଶ୍ରୟ ନେଲ କି ? ଯଦି ତାହା ହିଁ ହୋଇଥାଏ, ତେବେ ତୁମଠାବେ ଆଉ ଭଗବାନ୍ ନାମର ବଡ଼ପଣ ବା ରହିବ କିପରି ? ତେବେ ତୁମେ ଭଗବାନ ନୁହଁ, ତୁମେ ଛଳନାର ଏକ ବିକଟ ପ୍ରତିମୂର୍ତ୍ତି, ସୁପ୍ତ ଓ ମୁଗ୍ଧ ମଣିଷକୁ କେବଳ ସାବଧାନ କରି-ଦେବାକୁ ହିଁ ତୁମର ଏହି ଉଦାହରଣ ରହିଛି । ଯଦି ତୁମେ ପ୍ରକୃତରେ ଜଗତରେ ପୂଜା ପାଇବାର ବାସନା ରଖିଥାଅ, ତେବେ ଆସ, ଆବଦ୍ଧ ଓ ଦୂଷିତ ଜଳପାତ୍ର ଛାଡ଼ି ସଂସାରର ସୁବିସ୍ତୃତ ଜୀବନସମୁଦ୍ରରେ ପ୍ରବେଶ କର, ମନ୍ଦିରର ସଂକୀର୍ଣ୍ଣ ଗମ୍ଭୀରା ଛାଡ଼ି ଜୀବନ ଓ ଜଗତର ପ୍ରଶସ୍ତ କ୍ଷେତ୍ରରେ ଅବତୀର୍ଣ୍ଣ ହୁଅ । ପାଷାଣର କ୍ଷୁଦ୍ର ପ୍ରତିମୂର୍ତ୍ତି ଛାଡ଼ି ମଣିଷର ବିରାଟ ବକ୍ଷଉପରେ ତୁମେ ଭୂଷଣ ହୋଇ ଶୋଭାପାଅ । ଦୀପ ଓ ଧୂପର ନୈବେଦ୍ୟ ଛାଡ଼ି ମଣିଷଜୀବନର ଜୀବନ୍ତ ଆଲୋକରେ ପରିବର୍ଦ୍ଧିତ ଓ ବିଶ୍ୱବିଶ୍ରୁତ ହୋଇଉଠ । ମୃତ ଓ ବିଳାସ-ପୂଜିତ ସନ୍ଥ ଓ ମହନ୍ତମାନଙ୍କର ନଗଣ୍ୟ ଜୀବନ ତ୍ୟାଗ କରି ସାଧାରଣ ମଣିଷର ଜୀବନକୁ ଉପରକୁ ଉଠାଇବାରେ ସହଯୋଗୀ ହୁଅ ଓ ସେଇଠାରେ ହିଁ ତୁମେ ଆପଣାକୁ ବିକଶିତ କର । ଯେଉଁଠି ଅନ୍ୟାୟ ଅଛି, ଯେଉଁଠି ଅନାଚାର ଅଛି, ତୁମକୁ ସାକ୍ଷୀ କରି ଯେଉଁଠି ବ୍ୟଭିଚାର ଚାଲିଚି, ସେଇଠି ଯାଇ ବିଦ୍ରୋହ କରିବାଲାଗି ତୁମେ ଏଇ ମଣିଷପିଣ୍ଡରେ ବଳ ଦିଅ, ସାହସ ଦିଅ । ଯେଉଁଠି ଦୁଃଖୀ ଆଉ ବଞ୍ଚିତ ଓ ଅବହେଳିତ ପ୍ରାଣର ଚିତ୍କାର ଶୁଭୁଚି, ତୁମେ ସେଇଠାକୁ ଯାଇ ସେହି ଅବହେଳିତକୁ ଆପଣାହାତରେ ସାଉଁଟି ଆଣ, ତାକୁ ଶ୍ରଦ୍ଧା କରି ଶିଖ, ତା'ର ମଳିନ ଓ ଦାରିଦ୍ର୍ୟଧୂସରିତ ଦେହକୁ ଆଲିଙ୍ଗନ ଦ୍ୱାରା ପରିଷ୍କୃତ

କରିଦିଅ । ଏହି ସଂସାରରେ ଏପରି ଲକ୍ଷ ଲକ୍ଷ ମଣିଷ ଅଛନ୍ତି, ଯେଉଁମାନଙ୍କର କି ନିଜର ବୋଲି କହିବାକୁ କିଛି ନାହିଁ । ତେବେ ତୁମେ ଯାହାର ସବୁ ଅଛି, ତାହାରି ଏକଗୁଟିଆ ସମ୍ପତ୍ତି ହୋଇ ରହିବ କାହିଁକି ? ଏହି ସଂସାରରେ ଶତ ଶତ ଲୋକ ଏପରି ଅଛନ୍ତି, ଯେଉଁମାନେ ଦିନକୁ ଦୁଇଥର ଖାଇବାକୁ ବି ପାଆନ୍ତି ନାହିଁ । ତେବେ ତୁମେ ଯାହାର କୁକୁର ଗ୍ୱରିଥର ଖାଇ ମଧ୍ୟ ବଞ୍ଚୁଚି, ତା'ରି ଘରେ ଯାଇ ପୂଜା ପାଇବାକୁ ପସନ୍ଦ କରୁଚ ବା କିପରି ? ସମ୍ମାନ ପାଇବାକୁ କଣ ତୁମେ ଏଡ଼େ ବ୍ୟାକୁଳ ? ପୂଜା ଓ ଅର୍ଚ୍ଚନାର ତୃଷା କଣ ତୁମକୁ ଏଡ଼େ ଆକୁଳ କରିପକାଉଚି ଯେ ତୁମେ ସେଥିଲାଗି ଦୂଷିତ ପୂଜା ଗ୍ରହଣ କରି ତୃଷା ମେଣ୍ଟାଇବା ସକାଶେ ଏପରି ଅସ୍ଥିର ହୋଇପଡୁଚ ? ଧନଭ୍ରାନ୍ତ ଯେଉଁ ବଡ଼ଲୋକ ଜୀବନଥିବା ମଣିଷର ପୂଜା କରିପାରୁ ନାହିଁ, ଦରିଦ୍ର ଓ ଦଳିତ ମଣିଷ ଭିତରେ ମଧ୍ୟ ରହିଥିବା ଭଗବାନଙ୍କୁ ଯିଏ ପୂଜା କରିପାରୁ ନାହିଁ, ନିଜର ପୋଷାକୁକୁରକୁ ମଧ୍ୟ ମଣିଷ ଠାରୁ ଯିଏ ଅଧିକ ଆଦର ଦେଖାଉଚି, ସିଏ ତୁମର ପୂଜା କରିପାରିବ କିପରି ? ମିଛ, ମିଛ,—ସବୁ ଛଳନା, ସବୁ କପଟ ପୂଜା, ସବୁ କେବଳ ପ୍ରବଞ୍ଚନା ।

ତାହାକୁ ମୁଁ କେବେହେଲେ ପୂଜା ବୋଲି ସ୍ୱୀକାର କରିବି ନାହିଁ । ଯିଏ ତାକୁ ପୂଜା ବୋଲି କହିବ, ମୁଁ ତାକୁ ଗୁରୁ ବୋଲି କଦାପି ଗ୍ରହଣ କରିପାରିବି ନାହିଁ । ମୁଁ ପରା ଦେଖୁଚି, ଭିକାରୀ ହାତ ପତାଇ ଭିକ ମାଗୁଚି, ଦୁଃଖୀ ମଣିଷ ଧାନ ପାଇଁ ଜମିଦାର ପାଖରେ ଯାଇ ଅଳି କରୁଚି, ମଣିଷ ପୋକମାଛି ପରି ରୋଗରେ ସଢ଼ି ମରୁଚି, ମଣିଷ ମଣିଷକୁ ଖାଉଚି, ମଣିଷ ମଣିଷର ଭାଗ ଛଡ଼ାଇ ନେଉଚି, ମଣିଷର ସମାଜଭିତରେ ବାଘଛେଳିର ଛକାପଂଝା ଖେଳ ଗ୍ୱଲିଚି । ମୁଁ ପରା ଶୁଣୁଚି, ଗାଆଁ ଗହଳରେ, ରାସ୍ତାର ଧୂଳିଉପରେ, ବନ୍ୟାର ବିଭୀଷିକାରେ ହଜାର ହଜାର ମଣିଷ ବିକଳ ହୋଇ ଡାକୁଚନ୍ତି । ଯେତେବେଳେ ମୁଁ ଆଗକୁ ଯିବାକୁ ଚେଷ୍ଟା କରୁଚି, ସେମାନେ ମୋତେ ପଛରୁ ଓଟାରି ଧରୁଛନ୍ତି । ସେମାନଙ୍କୁ ରାସ୍ତାମଝିରେ ଏକା ଛାଡ଼ିଦେଇ ରତ୍ନସିଂହାସନ ଉପରେ ମୁଁ ତୁମକୁ ଖୋଜିବାକୁ ଯିବି କିପରି ? କଣାଗ୍ୱଳ କୁଡ଼ିଆ ଭିତରେ ସେମାନଙ୍କୁ ବସାଇରଖି ମୁଁ ତୁମକୁ ଧନୀର କକ୍ଷଭିତରେ ଖୋଜିବାକୁ ଯିବି କିପରି ? ଯେତେବେଳେ ହଜାର ହଜାର ଘର ଶ୍ମଶାନ ହୋଇ ପଡ଼ିରହିଚି, ମୁଁ ସେତେ-ବେଳେ ତୁମକୁ ମର୍ମର ପଥରର ମନ୍ଦିର ଭିତରେ ଖୋଜିବାକୁ ଯିବି କିପରି ? ମଣିଷ ଯେତେବେଳେ ଛାର ମଶାମାଛି ପରି ମରିବାରେ ଲାଗିଚନ୍ତି, ଅଶିକ୍ଷାର ନାନା ଅନ୍ଧାର ଭିତରେ ରହି ଯେତେବେଳେ ମଣିଷ ଭିତରର ସୁବାସ ବାହାରକୁ ଆସିପାରୁ ନାହିଁ, ଜଗତର ପ୍ରତ୍ୟେକ କ୍ଷେତ୍ରରେ ଯେତେବେଳେ ମଣିଷ ଜୀବନକୁ ନେଇ କନ୍ଦୁକ ପରି ଖେଳ ଖେଳାଯାଉଚି, ସେତେବେଳେ ତୁମକୁ ମୁଁ ଖାଲି ସନ୍ଥ, ମହାପୁରୁଷ ଓ ଧର୍ମଗୁରୁମାନଙ୍କ ଭିତରେ ଦେଖିପାରିବି କିପରି ? ନା—ଜଗତରେ

ଜଣେମାତ୍ର ସର୍ବହରା ରହିଥିବା ପର୍ଯ୍ୟନ୍ତ ତୁମକୁ ସର୍ବହରାର ଜୀବନରେ ଆବିର୍ଭୂତ ହେବାକୁ ପଡ଼ିବ, ଜଗତରେ ଜଣେମାତ୍ର ଦୁଃଖୀ ରହିଥିବା ପର୍ଯ୍ୟନ୍ତ ତୁମକୁ ସେହି ଦୁଃଖୀର କୁଟୀରରେ ହିଁ ଆତ୍ମପ୍ରକାଶ କରିବାକୁ ହେବ । ତୁମକୁ ମୁଁ ସେଇଠି ଦେଖିବି, ସେଇଠି ପୂଜିବି, ସେଇଠି ତୁମର ପ୍ରାର୍ଥନା କରିବି, ସେଇଠାରେ ହିଁ ତୁମର ଇଚ୍ଛା ପୂର୍ଣ୍ଣ ହେବାଲାଗି ମୁଁ ଜୀବନକୁ ଉତ୍ସର୍ଗ କରିବି ଓ ଏହାକୁ ହିଁ ମୋ' ଜୀବନର ଗୌରବ ବୋଲି ଅନୁଭବ କରୁଥିବି ।

୧୦ । ୫ । ୪୫

ବିଜୟ ? ବିଜୟ କାହାର ? ଅନ୍ୟାୟ ଉପରେ ବିଜୟ ନା ଅନ୍ୟାୟର ବିଜୟ ? ଅତ୍ୟାଗ୍ରର ଉପରେ ବିଜୟ ନା ଅତ୍ୟାଗ୍ରରର ବିଜୟ ? ସଂସାରରୁ ଯୁଦ୍ଧ ଲୋପ କରିଦେବାକୁ ଏହି ବିଜୟ ନା ସଂସାରରେ ଯୁଦ୍ଧର ଚେରକୁ ସ୍ଥାୟୀଭାବରେ ମଡ଼ାଇ ରଖିବାକୁ ଏ ବିଜୟ ? ଏହାକୁ କ'ଣ ଆମେ ମୁକ୍ତି ଓ ସ୍ୱାଧୀନତାର ବିଜୟ ବୋଲି କହିପାରିବା ? ତେବେ ଏହି ସ୍ୱାଧୀନତା କେଉଁଥିପାଇଁ, କାହାଲାଗି ବା ଏ ସ୍ୱାଧୀନତା ? ଇଏ କ'ଣ ଉପନିବେଶ ବଢ଼ାଇବାର ସ୍ୱାଧୀନତା, ସଂସାରଯାକ ଗୋରାରାଜତ୍ୱର ଗ୍ରାସକୁ ବଜ୍ର କରି ରଖିବାର ଓ ସଂସାରରେ ମହାଜନ ସାଜି ସଂସାର ଗୋଟାକୁ କିଣିନେବାର ଓ ବନ୍ଧା ରଖିବାର ସ୍ୱାଧୀନତା ? କିନ୍ତୁ ଭାରତବର୍ଷର କୃଷ୍ଣାଙ୍ଗ ମଣିଷ, କଲିକତା ସହରର ଉପବାସୀ ମଣିଷ ଯେତେବେଳେ ମୁଠାଏ ଭାତପାଇଁ ବିକଳ ଚିତ୍କାର କରୁଛି, ସେତେବେଳେ ଏହି ବିଜୟକୁ କଦାପି ପ୍ରକୃତ ବିଜୟ ବୋଲି କୁହାଯାଇ ପାରିବ ନାହିଁ । ଏହି ସ୍ୱାଧୀନତାକୁ ବି ପ୍ରକୃତ ସ୍ୱାଧୀନତା ବୋଲି କହିଲେ ଲାଜ ମାଡ଼ିବ । ଭାରତର ଗୋଡ଼ରେ ବେଡ଼ୀ ପଡ଼ିଥିବା ପର୍ଯ୍ୟନ୍ତ, ଉପନିବେଶ ଶବ୍ଦଟି ଜଗତର ଅଭିଧାନରେ ରହିଥିବା ପର୍ଯ୍ୟନ୍ତ, ସକଳପ୍ରକାର ସ୍ୱାଧୀନତାକୁ କେବଳ ଏକ ସ୍ୱଆଙ୍ଗ ବୋଲି କୁହାଯିବ, ଯାଦୁକର ହାତରେ ଥିବା ସୁନାଡ଼ିମ୍ବ ବୋଲି କୁହାଯିବ, ମୁକ୍ତିକାମୀ ଜଗତର ଆଖିରେ ଧୂଳି ଦେବାଲାଗି ଏକ ଫିସାଦ ବୋଲି କୁହାଯିବ ।

୧୬ । ୫ । ୪୫

ଅନ୍ତତଃ ଏତିକି ମୁଁ ଗର୍ବର ସହିତ କହିପାରିବି ଯେ ତିନିବର୍ଷର ଏହି ବନ୍ଧୁତା ଫଳରେ ମୁଁ ଉପରକୁ ଉଠିଛି । ଜୀବନକୁ ଚିହ୍ନିଛି, ଜଗତରେ ଗ୍ଭଲିଥିବା ସ୍ୱାର୍ଥର ଲଢ଼େଇ ଭିତରେ ତଥାପି ମୁଁ ମଣିଷର ମଣିଷପଣିଆକୁ ଆଦର କରିପାରିଛି । ବନ୍ଧୁ ଓ ବନ୍ଧୁତା, ସଂସାର ଆଉ ସମାଜ, ପ୍ରେମ ଓ ପ୍ରୀତି,— ସେହିଦିନଠାରୁ ଏସବୁ ମୋ'ଆଗରେ ଏକ ନୂତନ ବ୍ୟଞ୍ଜନାରେ ଆସି ଦେଖା ଦେଇଚନ୍ତି । ଏହି ଦିନଟିର ପୁଣ୍ୟସ୍ମୃତି ମୋତେ ଶକ୍ତି ଦେବ, ମୋତେ ବାଟ ଦେଖାଇନେବ ।

୧୭ । ୭ । ୪୫

ଆଜି ସକାଳେ ଶାନ୍ତିନିକେତନରେ ଆସି ପହଞ୍ଚିଲି । ନାଆଁ ଲେଖା ହୋଇଗଲା , ଛାତ୍ରାବାସରେ ଜାଗା ମଧ୍ୟ ମିଳିଲା । ଏଇଠୁ ଗୋଟାଏ ନୂଆ ପରସ୍ତର ଆରମ୍ଭ ହେବ । ତିନିବର୍ଷ ହେଲା ପାଠ ଛାଡ଼ିଥିଲି, ଏଣିକି ପୁଣି ସେହିଠାକୁ ଫେରି ଆସିବାକୁ ପଡ଼ିବ ।

୧୯ । ୭ । ୪୫

ଆଜି ମୋତେ ଅନେକ ଚିଠି ଲେଖିବାକୁ ପଡ଼ିଲା । ଏଠକୁ ପ୍ରଥମ କରି ଆସିଲି; ତେଣୁ ସମସ୍ତଙ୍କ ପାଖକୁ ନିଶ୍ଚୟ ଖଣ୍ଡେ ଲେଖାଏଁ ଚିଠି ଦେବାର କଥା । ଆଜି କାଳିବାବୁଙ୍କ ପାଖକୁ ମଧ୍ୟ ଖଣ୍ଡିଏ ଚିଠି ଲେଖିଲି । କାଳିବାବୁ ଅର୍ଥାତ୍ ଓଡ଼ିଶାର ସୁବିଦିତ ନାଟ୍ୟକାର ଶ୍ରୀଯୁକ୍ତ କାଳିଚରଣ ପଟ୍ଟନାୟକ । ଏବେ ମୁଁ 'ମାଟିର ମଣିଷ' ଉପନ୍ୟାସଟିକୁ ନାଟକାକାରରେ ଲେଖିଥିଲି । ଏବର୍ଷ ଗ୍ରୀଷ୍ମ ଛୁଟିରେ ଗାଆଁରେ ଆମେ ସେହି ନାଟକଟିର ଅଭିନୟ ବି କରିଥିଲୁ । ନାଟକର ପାଣ୍ଡୁଲିପିଟି ମୁଁ ତାଙ୍କରି ହାତରେ ଦେଇ ଆସିଚି । ଅଭିନୟର ଯୋଗ୍ୟ ବୋଲି ବିବେଚିତ ହେଲେ ସେ ସେଇଟିର ଅଭିନୟ କରାଇବେ, ନଚେତ୍ ଆବଶ୍ୟକ ସଂଶୋଧନମାନ କରି ସେ ମୋତେ ତାକୁ ଫେରାଇଦେବେ । କଟକରେ ଏଥର ତାଙ୍କ ସହିତ ପରିଚୟ ଓ କଥାବାର୍ତ୍ତା ହୋଇଯାଇଚି । ନୂତନ ଲେଖକମାନଙ୍କ ପ୍ରତି କୃତିବାନ୍ ଲେଖକମାନଙ୍କର ସାଧାରଣତଃ ଯେପରି ଗୋଟାଏ ପ୍ରକାର ବେଖାତିରିଆ ମନୋଭାବ ଥାଏ, କାଳିବାବୁଙ୍କ ପାଖରେ ସେପରି ମନୋଭାବ ଆଦୌ ଦେଖିଲି ନାହିଁ । ସବୁକଥାରେ ସେ ମୋତେ ଭାରି ଉତ୍ସାହ ଦେଉଥାଆନ୍ତି । ଯେଉଁ ଚିଠି ଖଣ୍ଡିକ ଲେଖିଥିଲେ, ସେଥିରେ ମଧ୍ୟ ଖାଲି ଉତ୍ସାହ ଭରି ରହିଥିଲା । ସେ ବି ନିପଟ ସତକଥା ଲେଖିଥିଲେ : ବିଦ୍ରୋହ ଓ ବିପ୍ଳବ, କଟାକ୍ଷ ଓ କଟୂକ୍ତି ମଧ୍ୟଦେଇ ନାନା ପ୍ରକାରର ଅଭିଜ୍ଞତା ତାଙ୍କୁ ତିଆରି କରିଚି, କେବଳ ମନର ଜୋରରେ ଲକ୍ଷ୍ମୀ ଅର୍ଥାତ୍ ଅର୍ଥ ବିରୁଦ୍ଧରେ ସେ ଯୁଦ୍ଧ କରି ଆସିଚନ୍ତି । ସେଇଥିପାଇଁ ସେ ଜାଣନ୍ତି ଯେ ସାହିତ୍ୟ ବା ଯେକୌଣସି ସୂକ୍ଷ୍ମକଳାର ସାଧନା କରୁଥିବା ମଣିଷକୁ ସର୍ବଦା ଉତ୍ସାହ ହିଁ ଦିଆଯିବା ଉଚିତ । ତାଙ୍କ ଚିଠିରେ ଗୋଟିଏ ଧାଡ଼ି ମୋତେ ଭାରି ଭଲ ଲାଗିଲା : 'ଆମ ଦେଶରେ ବହୁତ ରତ୍ନ ଅଛନ୍ତି, କେବଳ ଟିକିଏ ଘଷାମଜା ଦରକାର ।'

ମୁଁ ଶାନ୍ତିନିକେତନ ଆସିଲି ବୋଲି ଗୌରୀଭାଇ ଓ ନବବାବୁ ପ୍ରଭୃତି ମୋର ପୂଜ୍ୟ ବ୍ୟକ୍ତିମାନେ କୁଆଡ଼େ ମୋ' ଉପରେ ବଡ଼ ଅସନ୍ତୁଷ୍ଟ ହୋଇଚନ୍ତି । ଏସବୁ କଥା ମୁଁ ପଛରେ ଶୁଣିଲି । ମାତ୍ର ମୁଁ ଆଉ କଅଣ କରିବି ? ପ୍ରଥମ କଥା, ମୁଁ ନିଜକୁ ଠକିଁ ପାରିବି ନାହିଁ । ଯେଉଁ ଅନ୍ତର୍ନିହିତ ଶକ୍ତିସବୁ ମୋ'ରି ଭିତରେ ରହି ବାହାରକୁ ଆସିବାଲାଗି, ପରିପୂର୍ଣ୍ଣ ପ୍ରକାଶ ପାଇବାଲାଗି ମୋତେ

ନିୟତ ଅସ୍ଥିର କରୁଛନ୍ତି, ସେଗୁଡ଼ାକୁ ଘୃପିରଖି ମୁଁ ଏକ ଅସନ୍ତୁଷ୍ଟ ଓ ଅଶାନ୍ତ ଜୀବନ କଟାଇ ପାରିବି ନାହିଁ । ଆପଣାର ଜୀବନକଥା ଭାବିଲାବେଳେ ମୁଁ ଯେତେବେଳେ ମୋ' ଜୀବନର କୂଳଆଡ଼କୁ ଅନାଇ ଦେଖୁଚି ସେତେବେଳେ ସବୁକଥା ମୋତେ ବଡ଼ ଅପୂର୍ଣ୍ଣ ହୋଇ ପଡ଼ିଥିବାପରି ଦେଖାଯାଉଚି । ମୋର ଜୀବନ ଏପର୍ଯ୍ୟନ୍ତ ବଡ଼ ଅପୂର୍ଣ୍ଣ ରହିଚି, ଦେଶର ପ୍ରଶସ୍ତ ଓ ପବିତ୍ର କ୍ଷେତ୍ରରେ କାର୍ଯ୍ୟ କରିବାଲାଗି ମୋର ଶକ୍ତିଗୁଡ଼ିକର ଯଥେଷ୍ଟ ବିକାଶ ହୋଇ ନାହିଁ । ପ୍ରଥମେ ମୁଁ ଆପଣାକୁ ପ୍ରସ୍ତୁତ କରେ, ସାଗର ଭିତରକୁ ଲମ୍ଫ ଦେବା ଆଗରୁ ପ୍ରଥମେ ମୁଁ ଯଥେଷ୍ଟ ଶକ୍ତି ଓ ସାହସ ସଂଗ୍ରହ କରେ, ତା' ହେଲେ ଯାଇ ମୁଁ ଯୋଗ୍ୟ ଭାବରେ ହୁଏତ କିଛି କରିପାରିବି । ମାତ୍ର ତା' ନ କରି ପ୍ରଧାନତଃ ଅନ୍ୟଠାରୁ ପ୍ରେରଣା ଓ ଇଙ୍ଗିତ ନେଇ କଳକବ୍ଜା ପରି କାମ କଲେ, ଅଧା-ପାକଳ ମନ ନେଇ ସାଧାରଣ କ୍ଷେତ୍ରରେ ପ୍ରବେଶ କଲେ ହୁଏତ ମୁଁ ସେହି ଭୟଙ୍କର ସ୍ରୋତଭିତରେ କୁଆଡ଼େ ହଜିଯିବି । ମୋ'ପ୍ରତି ମୁଁ ବଡ଼ ଅନ୍ୟାୟ କରିବି । ଦ୍ୱିତୀୟ କଥା, ମୁଁ ଜଗତକୁ ମଧ୍ୟ ଠକିପାରିବି ନାହିଁ । ଦେଶର ସେବାକ୍ଷେତ୍ରରେ ଆଜି ଅନେକ କର୍ମୀ କାମ କରୁଚନ୍ତି, ମାତ୍ର ସେମାନଙ୍କ ଭିତରେ ଯଥେଷ୍ଟ ଆତ୍ମବିଶ୍ୱାସ ନାହିଁ; ଏବଂ ଏଣେ ଲୋକମାନଙ୍କର ଭାଗ୍ୟ ଓ ଦେଶର ଭବିଷ୍ୟତ ସେଇମାନଙ୍କ ହାତରେ ରହିଚି । ଭବିଷ୍ୟତ ସମାଜର ନୂତନ ରଚନା ବିଷୟରେ ସେମାନଙ୍କ ମନରେ କୌଣସି ପରିଷ୍କାର ଚିତ୍ର ନାହିଁ । ପ୍ରଧାନତଃ ଏକ ଭାବପ୍ରବଣତା ଦ୍ୱାରା ଟାଣିହୋଇ ସେମାନେ କାର୍ଯ୍ୟ କରୁଚନ୍ତି । ଅନେକ ସମୟରେ ସ୍ୱାର୍ଥ ଓ ଅର୍ଥର ମାୟା ସେମାନଙ୍କୁ ବଡ଼ ବଶ କରିପକାଉଚି । ବିପଦର ପରୀକ୍ଷା ସେମାନଙ୍କୁ ପଥଚ୍ୟୁତ କରିଦେଉଚି । ଖବରକାଗଜର ବିବୃତି ଓ ବାହ୍ୟାଡ଼ମ୍ବରପୂର୍ଣ୍ଣ ବକ୍ତୃତା ସେମାନଙ୍କୁ ବିଚଳିତ କରିପକାଉଚି । ସେମାନଙ୍କୁ ଅବସ୍ଥାର ଦାସ କରିପକାଉଚି । ସାଧାରଣ କ୍ଷେତ୍ରର କର୍ମୀ ଆଜି ବ୍ୟକ୍ତିତ୍ୱ ହରାଇ ବସିଚି । ସେ ନିଜେ ଖୁବ୍ ବେଶୀ ଚିନ୍ତାକରୁ ନାହିଁ । ଦଳ ବା ଦଳ-ନେତାର ଇଙ୍ଗିତ ଅନୁସାରେ ସେ କଥା କହୁଚି, କେତେବେଳେ ନିଜ ଇଚ୍ଛା ବିରୁଦ୍ଧରେ ଓ କେତେବେଳେ ନିଜ ଇଚ୍ଛାର ଅନୁମତିରେ । ମାତ୍ର ଏତେ ଲୋକଙ୍କର ଭାଗ୍ୟନେଇ ଦେଶରେ ଯେଉଁ ରାଜନୀତି ହେଉଛି, ସେହି ରାଜନୀତି ଏପରିଭାବେ ଚଳିଲେ ଲୋକଭାଗ୍ୟର ବା କି ଅବସ୍ଥା ହେବ ?

ଆମେ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ଯେତେ ନ କରୁ, ବାହାରେ ତା'ଠାରୁ ଅନେକ ବେଶୀ କହିହେଉ । ଆପଣା ଜୀବନରେ ଅଭ୍ୟାସ କରିବା ପୂର୍ବରୁ ଆମେ ସବୁକଥାକୁ ବାହାରେ କହିବୁଲୁ । ଆପଣାର କର୍ତ୍ତବ୍ୟ କରିବା ପୂର୍ବରୁ ଆଗ ଅଧିକାରଗୁଡ଼ାକୁ ମାଡ଼ିବସୁ । ଅନ୍ୟମାନଙ୍କର ଦୋଷତ୍ରୁଟିର ସମାଲୋଚନା କରିବସୁ । ଏହିଗୁଡ଼ାକ ହିଁ ଏ ଦେଶର ରାଜନୀତିକୁ ବଡ଼ ଦୁର୍ବଳ କରିପକାଇଛି । ଦେଶର ସ୍ୱାଧୀନତାକୁ ବିଳମ୍ବିତ କରିରଖିଚି । ମୁଁ ଏପରି ଭାବରେ ମୋ

ଦେଶକୁ ଠକିବି ନାହିଁ । ଦେଶର ଯୋଗ୍ୟ ହେବାଲାଗି ପ୍ରଥମେ ମୁଁ ଶକ୍ତି ସଂଗ୍ରହ କରିବି । ତା'ପରେ ହୁଏତ ଆପଣା ବାଟରେ ମୁଁ ଏହି ଦେଶର କିଛିହେଲେ କାର୍ଯ୍ୟ କରିପାରିବି । ମୁଁ ମେଣ୍ଢାପଲରେ ମେଣ୍ଢା ହେବାକୁ ଚାହେଁ ନାହିଁ, କୌଣସି କଳରେ ମୁଁ ବଡ଼ ବା ସାନ କୌଣସି କବ୍‌ଜା ହେବାକୁ ଚାହେଁ ନାହିଁ । ମୁଁ ମଣିଷ ହେବାକୁ ଚାହେଁ ।

୨୦ । ୭ । ୪୫

ସକାଳୁ ଉଠିଲି, ତଥାପି ଟିକିଏ ଡେରି ହୋଇଗଲା । ଗୋଟାଏ ଭଲ ଅଭ୍ୟାସକୁ ଆପଣାର କରିବାକୁ ଗଲେ ପ୍ରଥମେ ଅନେକ ବିଫଳତା ବି ଆସିଥାଏ । ତଥାପି ସ୍ଥିର କରିନେଲି ଯେ ପ୍ରତିଦିନ ଏଠାରେ ଉଠିବା ଘଣ୍ଟା ବାଜିବା ବେଳକୁ ମୋର ଗାଧୁଆ ସରିଥିବ ଓ ଜଳଖିଆ ଘଣ୍ଟା ବାଜିବାଯାଏ ସେହି ସମୟତକ ମୁଁ ସୂତା କାଟିବି ।

ଶ୍ରୀଯୁକ୍ତ ଅନିଲ କୁମାର ଚନ୍ଦ ହେଉଛନ୍ତି ଏଠି ଶିକ୍ଷାଭବନର ଅଧ୍ୟକ୍ଷ । ସକାଳେ ସେ ମୋତେ ତାଙ୍କ ସହିତ ସାକ୍ଷାତ କରିବାକୁ ଡାକିଥିଲେ । ପ୍ରାୟ ସାଢ଼େ ଏଗାରେଟାବେଳେ ମୁଁ ତାଙ୍କ ସହିତ ଦେଖା କରିବାକୁ ଗଲି । ପ୍ରଥମେ ମୋ'ରି କଥା ପଡ଼ିଲା । ଏଠାରେ ମୋର ଯେପରି କମ୍ ଖର୍ଚ୍ଚ ପଡ଼ିବ, ଅଗଷ୍ଟ ମାସ ଆଡ଼କୁ ସେ ତାହାର ବନ୍ଦୋବସ୍ତ କରିଦେବେ ବୋଲି କହିଲେ । ତାଙ୍କର ଅଯାଚିତ ସ୍ନେହ, ସହାନୁଭୂତି ଓ ଉଦାରତା ଦ୍ୱାରା ମୁଁ ଏତେଦୂର ମୁଗ୍ଧ ହୋଇଗଲି ଯେ ସେହି ସମୟଠାରୁ ତାଙ୍କୁ ମୋର ବଡ଼ଭାଇ ପରି ଅନୁଭବ କରିବାକୁ ଲାଗିଲି । ଅନୁଷ୍ଠାନଟି ମଧ୍ୟ ଠିକ୍ ନିଜର ଘର ପରି ଲାଗିଲା । ପ୍ରଥମେ ବିଦେଶୀ, ତାପରେ ଅର୍ଥାଭାବ, ମାତ୍ର ସେ ଆପଣାର କେତେପଦ କଥା ଦ୍ୱାରା ମୋର ମନରୁ ସକଳ ସନ୍ଦେହ ଦୂର କରିଦେଲେ । ସ୍ନେହ ଓ ସହାଭୁନୂତିକୁ ମୁଁ ଶାନ୍ତିନିକେତନର ବିଶେଷତ୍ୱ ବୋଲି ଜାଣିଲି ।

ତା'ପରେ ସେ ମୋତେ ଆଉ ଗୋଟାଏ ବଡ଼ କଥା ମଧ୍ୟ କହିଲେ । ସେ କହିଲେ, ସେ ଜଣେ ଜାତୀୟବାବାଦୀ । ଏହି ଅନୁଷ୍ଠାନକୁ ଯେତେ ଛାତ୍ର ଶିକ୍ଷାଲାଭ କରିବାକୁ ଆସୁଚନ୍ତି, ସେମାନେ ସମସ୍ତେ ଜାତୀୟ ଭାବରେ ଅନୁପ୍ରାଣୀତ ହୁଅନ୍ତୁ, ଦେଶଲାଗି କିଛି କରିବା ଲାଗି ସେମାନେ ଏବେଠୁ ପ୍ରସ୍ତୁତ ହୁଅନ୍ତୁ ଓ ସବୁ କ୍ଷେତ୍ରରେ ନିଜର କର୍ତ୍ତବ୍ୟ କରିବାକୁ ପ୍ରସ୍ତୁତ ରହିଥାନ୍ତୁ । ଏକଥା ସେ ସବୁବେଳେ ଇଚ୍ଛା କରନ୍ତି । ମାତ୍ର ତାଙ୍କର ଦୃଢ଼ ବିଶ୍ୱାସ ଯେ ଅଧକ୍ଷ ହିସାବରେ ଆଇନ୍ ଜାରିକରି, ଜବରଦସ୍ତି କରି, ବଡ଼ ବଡ଼ ସଭା ଡାକି, ଗରମ ଗରମ ବକ୍ତୃତାଦେଇ ଏସବୁ ଆଦୌ କରିହେବ ନାହିଁ । ଗୋଟିଏ ମେସିନ୍ ଚଳାଇ ଏତେଗୁଡ଼ାଏ ପିଲାଙ୍କୁ ତ୍ୟାଗ ଓ ଦେଶପ୍ରାଣତା କଦାପି ଶିଖାଇ ହେବ ନାହିଁ । ସେ ବଡ଼ ଦୁଃଖ କରି କହିଲେ ଯେ ଏଠିକାର ପିଲାଙ୍କ ଭିତରୁ କ୍ରମେ କ୍ରମେ

ଜାତୀୟତାଭାବ ମରି ମରି ଯାଉଚି ଓ ରବୀନ୍ଦ୍ରନାଥଙ୍କର ମହାନ୍ ସନ୍ଦେଶକୁ ସେମାନେ କ୍ରମେ ଭୁଲିଯିବାକୁ ଆରମ୍ଭ କରୁଚନ୍ତି । ଅନୁଷ୍ଠାନରେ ଗୋଟାଏ ଜାତୀୟଭାବାପନ୍ନ ବାୟୁମଣ୍ଡଳ ସୃଷ୍ଟି କରିବାକୁ ହେଲେ ଓ ଦେଶର ସ୍ୱାଧୀନତା ଲାଗି ସହାନୁଭୂତିର ଏକ ଜଳବାୟୁ ତିଆରି କରିବାକୁ ହେଲେ, ସେଇ ପିଲାଙ୍କ ଭିତରୁ ହିଁ ତା'ର ଜନ୍ମ ହେବା ଉଚିତ । ଜାତୀୟଭାବାପନ୍ନ ଅନ୍ତତଃ ଛଅ ସାତ ଜଣ ଛାତ୍ରଛାତ୍ରୀ ଯେତେବେଳେ ଏଠି ଛାତ୍ରାବାସରେ ଆସି ରହିବେ, ଆପଣାର କାର୍ଯ୍ୟକଳାପଦ୍ୱାରା ସେମାନେ ସେତେବେଳେ ଅନ୍ୟାନ୍ୟ ଅନେକ ଛାତ୍ରଙ୍କର ମନୋଭାବର ପରିବର୍ତ୍ତନ ଆଣିପାରିବେ ।

କ୍ଷମତାର ଲୋଭ ଗୋଟାଏ ବଡ଼ ମାରାତ୍ମକ ଜିନିଷ । ଯେତେବେଳେ ହାତରେ କ୍ଷମତା ନ ଥାଏ, ସେତେବେଳେ କ୍ଷମତା ପାଇବା ମାତ୍ରକେ ଆମେ ମନ ଅନୁସାରେ ସବୁ ଗଢ଼ି ଥୋଇଦେବୁ ବୋଲି କ୍ଷମତା ପାଇବାକୁ ବ୍ୟାକୁଳ ହୋଇପଡୁ । ମୁକ୍ତି ଓ ସମାନ ଅଧିକାରର ଦ୍ୱାହି ଦେଇ ଜଗତର ଦରବାରରେ ଆମେ କ୍ଷମତା ଦାବି କରିବାକୁ ଯାଉ । ମାତ୍ର ଯେତେବେଳେ ସେହି କ୍ଷମତା ହାତକୁ ଆସେ, ସେତେବେଳେ ଆମର ମନ ବୁଢ଼ା ହୋଇଯାଏ, କ୍ଷମତାର ଜାଲ ଭିତରେ ଆମେ ନିଜେ ଛନ୍ଦି ହୋଇଯାଉ ଏବଂ କ୍ଷମତାର ଅପବ୍ୟବହାର କରୁ । କ୍ଷମତାର ସଦ୍‌ବ୍ୟବହାର କରିବା ମଣିଷର ବାହାଦୁରୀ, ମଣିଷପଣିଆର ପରିଚ୍ଚାୟକ । ଏଠି ଶ୍ରୀ ଅନିଲବାବୁଙ୍କଠାରେ ସେଇକଥା ଦେଖିଲି । ପ୍ରେମର ଶାସନ ହେଉଛି ତାଙ୍କ ଆଖିରେ ସବୁଠାରୁ ବଡ଼ ଓ ସ୍ଥାୟୀ ଶାସନ । ସେଥିଲାଗି ଛାତ୍ରମାନଙ୍କ ଉପରେ କୌଣସି କଥା ଲଦିଦେବାକୁ ଚାହାନ୍ତି ନାହିଁ । ସେ ଚାହାନ୍ତି, ଛାତ୍ରମାନଙ୍କ ଭିତରୁ ହିଁ ସ୍ୱାଭାବିକ ଓ ସ୍ୱତଃପ୍ରବୃତ୍ତଃ ଭାବରେ ମଣିଷପଣିଆ ଓ କର୍ତ୍ତବ୍ୟଜ୍ଞାନର ଉଦୟ ହେଉ । କେତେଟା ସରକାରୀ ସ୍କୁଲରେ ଏପରି ଦୃଷ୍ଟାନ୍ତ ଦେଖିବାକୁ ମିଳେ, କେତେଟା ମାଷ୍ଟର ଏହି ଅନୁସାରେ କାମ କରିବାକୁ ମନ ବଳାଇଥାନ୍ତି ? ଜୋରିମାନା, ବେତମାଡ଼ ଓ ସ୍କୁଲରୁ ବାହାର କରିଦେବା ପ୍ରଭୃତି ପଚାଶ ରକମର ଅପକୀର୍ତ୍ତିରେ କେଉଁ ଅନୁଷ୍ଠାନ ଅପବିତ୍ର ହୋଇ ନାହିଁ ? ଏଠାରେ ସବୁ ଶିକ୍ଷକ ଅନ୍ୟପ୍ରକାରର । ଏଠାକାର ଶାନ୍ତ ସୌମ୍ୟ ବାତାବରଣ, ଉଦାର ପତ୍ରପୁଷ୍ପକୁଞ୍ଜ ଓ ବିରାଟ ଆକାଶ ସମସ୍ତଙ୍କୁ ସେହିପରି ଭାବରେ ତିଆରି କରିଚି । ଏହି ସମ୍ପଦ ପରାଧୀନ ଭାରତର ନୁହେଁ, ସେଥିଲାଗି ପରାଧୀନ ଭାରତ ଏହାକୁ ଚିହ୍ନିପାରୁ ନାହିଁ ।

କାଲି ଇଂରାଜୀ ବିଶ୍ୱଭାରତୀ ପତ୍ରିକା ପଢୁଥିଲି । ରବୀନ୍ଦ୍ରନାଥଙ୍କର 'A Friend' ନାମରେ ଏକ ଲେଖାର ଗୋଟିଏ ଧାଡ଼ି ପଢ଼ି ମୁଁ ସେଥିଇରେ ଅଭିଭୂତ ହୋଇଗଲି । ସେହି ଧାଡ଼ିଟି ହେଉଚି : 'In order to become a true friend, one must give oneself.' ଏହା ହିଁ ହେଉଛି ଯଥାର୍ଥ ବନ୍ଧୁତାର ମାନଦଣ୍ଡ । ମାତ୍ର ଜଗତରେ ଆଜି ବ୍ୟକ୍ତିଗତ, ପାରିବାରିକ, ରାଷ୍ଟ୍ରୀୟ ଓ

ଅନ୍ତର୍ଜାତୀୟ ସବୁ କ୍ଷେତ୍ରରେ ବନ୍ଧୁତାର କି ନିକୃଷ୍ଟ ଅଭିନୟ ଚାଲିଚି ? ନିଜ ସ୍ୱାର୍ଥର ଘେରିବାଡ଼ ଭିତରେ ରହି ଏଠି ସମସ୍ତେ ସମସ୍ତଙ୍କର ବନ୍ଧୁ ହୋଇପାରୁଛନ୍ତି, ସ୍ୱାର୍ଥର ସିଦ୍ଧି ପାଇଁ ସମସ୍ତେ କପଟବନ୍ଧୁତା ଦେଖାଇପାରୁଛନ୍ତି । ସେଥିଲାଗି ଆଜି କୌଣସି କ୍ଷେତ୍ରରେ ଶାନ୍ତି ନାହିଁ, ସାର୍ଥକତା ନାହିଁ । ଜଗତର ଏହି ସଂକୀର୍ଣ୍ଣ ପରିସର ଭିତରେ ମଣିଷର ନିଃଶ୍ୱାସ ଦିନକୁ ଦିନ ବନ୍ଦ ହୋଇଯାଉଚି, ତା' ଦେହରେ କଳଙ୍କର ମଳି ବସିଯାଉଚି, ଶେଷକୁ ସେ ସ୍ୱାର୍ଥ ହାତରେ ଗୋଟାଏ ଖେଳନାହିଁ ହୋଇଯାଉଚି । ଅବଶ୍ୟ ଅର୍ଥନୈତିକ ଦାରିଦ୍ର୍ୟ ମଧ୍ୟ ଏହାର ଆଉ ଗୋଟିଏ ବଡ଼ କାରଣ । ମାତ୍ର ଆମେ ଅନେକ ସ୍ଥଳରେ ଦେଖିବାକୁ ପାଉଚୁ ଯେ ଯେଉଁଠି ଧନ ବେଶୀ ରହିଚି, ସେହିଠାରେ ହିଁ କପଟତାର ଅଧିକ ଖେଳ ଚାଲିଚି । ଟଙ୍କା ପଇସାକୁ ଆମେ ମଣିଷପଣିଆର ମାନଦଣ୍ଡ ବୋଲି ଧରିନେଉଛୁ । ବାଗ୍ମିତା ବେଶଭୂଷା ଓ ବାହାର ସୌନ୍ଦର୍ଯ୍ୟକୁ ଆମେ ଅତିରିକ୍ତ ସମ୍ମାନ ଦେଖାଉଚୁ । ତେଣୁ ବାହ୍ୟ ଭଦ୍ରତା ଓ ବନ୍ଧୁତା ନାମରେ କପଟ ଖେଳ ଖେଳିବାଟାକୁ ଆମେ ଆଉ ଦୋଷାବହ ବୋଲି ମନେକରୁ ନାହୁଁ । ମିଛ ବନ୍ଧୁତାକୁ ବନ୍ଧୁତା ବିରୁଦ୍ଧରେ ବିଦ୍ରୋହ ବୋଲି ଅନୁଭବ କରୁ ନାହୁଁ, ସଂସାରରେ ଏଗୁଡ଼ାକ ଦେଖି ଦେଖି ଏଇଟା ଆମର ଦେହଘଷା ହୋଇଗଲାଣି । ତେଣୁ ଅନେକ ସମୟରେ ସତ୍‌ପଥ, ସତ୍‌କାର୍ଯ୍ୟ ଓ ସଦ୍‌ବନ୍ଧୁତାକୁ କାମ୍ୟ ବୋଲି ଜାଣି ସୁଦ୍ଧା ଆମେ କପଟର ଫାଶରେ ବାନ୍ଧି ହୋଇ ରହିଯାଉଚୁ । ଏହି ଫାଶରେ ନ ପଡ଼ିବାକୁ ହେଲେ ଅନେକ ଧୈର୍ଯ୍ୟ ଦରକାର । ସହଜରେ ଗୌରବ ନେବାର ଏକ ପାଗଳାମୀ ହୁଏତ ଆମ ଭିତରେ ଅଛି, ଯାହାକି ଆମ ଗୋଡ଼ ଖସାଇ ଦେଉଚି । ତେଣୁ ବନ୍ଧୁ ପରି ବନ୍ଧୁ ହୋଇ ରହିବାକୁ ହେଲେ ନୈତିକ ବଳ ଦରକାର, ଗୋଟାଏ ମହତ ଆଦର୍ଶକୁ ଆଖିଆଗରେ ରଖି ବାଟ ଚାଲି ଶିଖିବା ଦରକାର । ଆପଣାର ଜୀବନକୁ ପରିପୂର୍ଣ୍ଣ କରି ଗଢ଼ିବାଲାଗି ଆମ ପ୍ରତ୍ୟେକଙ୍କ ଭିତରେ ଗୋଟାଏ ଅସ୍ଥିର ଇଚ୍ଛା ମଧ୍ୟ ରହିଥିବା ଦରକାର ।

୨୧ । ୭ । ୪୫

ଆଜି ଠିକ୍ ସମୟରେ ଉଠିଥିଲି । ଉଠିବା ଘଣ୍ଟା ବାଜିବା ପୂର୍ବରୁ ମୋର ଗାଧୁଆ ସରିଥିଲା । ତେଣୁ ଅନେକ ସମୟ ପର୍ଯ୍ୟନ୍ତ ସୂତା କାଟିପାରିଲି । କ୍ଲାସକୁ ଯାଇଥିଲି । ସଞ୍ଜବେଳେ ବୁଲିବା ମଧ୍ୟ ହେଲା ।

ଗୋଟାଏ ଅପଚିନ୍ତାରେ ଆଜି ମୁଁ ବଡ଼ ମ୍ରିୟମାଣ ହୋଇପଡ଼ିଲି । ମୋ' ଜୀବନରେ ସମ୍ଭବତଃ ଏପରି ଗୋଟାଏ ଘଟଣା ଘଟିବାକୁ ଯାଉଚି, ଯାହା ଘଟିଲେ ମୋ'ର ଜୀବନ ଏକାବେଳକେ ବ୍ୟର୍ଥ ଓ ବିଫଳ ହୋଇଯିବ । ଯାହା ମୁଁ ଆଶା କରିଚି, ଯାହା ମୁଁ ସ୍ୱପ୍ନ ଦେଖିଚି, ଯାହା ପାଇଁ କେତେ କୁହା ଅମାନ୍ୟ କରି ମୁଁ ନିଜ ବିବେକର ଆହ୍ୱାନ ଅନୁସାରେ ଜୀବନଗଠନ କରିବା ଲାଗି ଶକ୍ତି ସଂଗ୍ରହ କରିଚି, ସେସବୁ ଏକାବେଳକେ ନଷ୍ଟ ହୋଇଯିବ ବୋଲି

ମନେ ହେଉଚି । ଆଜି ମୁଁ ଯାହାକୁ ନେଇ କେତେ କ'ଣ ଭାବିଲି, ମନରେ ଗୋଟାଏ ହତାଶାଭାବ ଆସିଲା । ଅନେକ ଆଶ୍ରୟ ଖୋଜିଲି, ମାତ୍ର କୌଣସି-ଠାରେ ମନକୁ ସ୍ଥିର ରଖିପାରିଲି ନାହିଁ । ଶେଷକୁ ଗୋଟାଏ ବଡ଼ ପାନ୍ଥଶାଳାରେ ଆଶ୍ରୟ ମିଳିଲା । ତାହା ହେଉଚି ସାଧନା ଓ କର୍ତ୍ତବ୍ୟର ପାନ୍ଥଶାଳା, ଗୋଟାଏ ଗୋଟାଏ ବିରାଟ ଜୀବନର ସ୍ୱପ୍ନ ନେଇ ପ୍ରତ୍ୟେକ ମଣିଷ ଯେଉଁ ପାନ୍ଥଶାଳାକୁ ଆସନ୍ତି ।

ମୁଁ ଯେ ଘୁଷୁରି ନ ହୋଇ ମଣିଷର ଜନ୍ମ ପାଇଚି, ତା ପଛରେ ନିଶ୍ଚୟ କିଛି ଉଦ୍ଦେଶ୍ୟ ରହିଛି । କୌଣସି ଏକ ତାଲିକା ଅନୁସାରେ ଭଗବାନ ମଣିଷକୁ ଏହି ସଂସାରକୁ ପଠାନ୍ତି ବୋଲି ମୁଁ ଅବଶ୍ୟ ବିଶ୍ୱାସ କରେ ନାହିଁ । ମାତ୍ର ଏଡ଼େବଡ଼ ଗୋଟାଏ ଶିଳ୍ପୀର ଏହି ସୃଷ୍ଟି—ଏହି ବିରାଟ ବିଶ୍ୱର ସମ୍ପଦ ଓ ଏହି ବାହୁର ବଳ, ସଂସାରଭରା ଏହି ପ୍ରେମ, ଏହି ଭ୍ରାତୃଭାବ, ଏହି ସମାଜ ଓ ଏହି ସହଯୋଗ ଭାବନା,—ଏସବୁ ପଛରେ କ'ଣ କୌଣସି ଉଦ୍ଦେଶ୍ୟ ନାହିଁ ? ମୁଁ ଏ କଥାକୁ କୌଣସି ପ୍ରକାରେ ଅସ୍ୱୀକାର କରିପାରିବି ନାହିଁ । ପ୍ରତ୍ୟେକ ମଣିଷର ସ୍ୱପ୍ନ ଅଛି, ଜୀବନ ରଚନାର ବିଶେଷ ପରିକଳ୍ପନାମାନ ରହିଚି । ଏହି ପୃଥିବୀରୁ ସେ ଯାହା ସଂଗ୍ରହ କରିଚି, ସେସବୁର ପରିଶୋଧ ଲାଗି ତା'ର ଏକ ସ୍ୱତନ୍ତ୍ର ପନ୍ଥା ରହିଚି । ବିପଦ ଆସିବ, ବାଧା ଆସିବ, ଶେଷକୁ ମୃତ୍ୟୁ ମଧ୍ୟ ଆସିବ, ଫୁଲ, ପାହାଡ଼, ନଦୀ ଓ ଝରଣାରେ ପୂରିଥିବା ଏହି ପୃଥିବୀରୁ ଦିନେ ବିଦାୟ ନେଇ ଯିବାକୁ ହେବ । ମାତ୍ର ସେଥିପାଇଁ କ'ଣ ମୁଁ ହତାଶ ହୋଇ-ପଡ଼ିବି ? ଜଣେ ମଣିଷ ହିସାବରେ ମୁଁ ମୋର କର୍ତ୍ତବ୍ୟ କରିଯିବି । ଆପଣାର ଶକ୍ତି ଅନୁସାରେ ପରିପୂର୍ଣ୍ଣ ଶ୍ରଦ୍ଧାର ସହିତ ସମସ୍ତଙ୍କ ଲାଗି ମୁଁ ମୋର କର୍ତ୍ତବ୍ୟ କରିଯିବି । ଏହାଠାରୁ ଅଧିକ କିଛି ମୁଁ ଆଶା ବା କରିବି କାହିଁକି ? ଏହି ପୃଥିବୀ ଅନାଦାର କରିପାରେ, ଦୂରକୁ ଫୋପାଡ଼ି ଦେଇପାରେ, ମାତ୍ର କେଉଁ ପୃଥିବୀର ସାଧ୍ୟ ଅଛି ମୋର ମଣିଷପଣିଆ ଅର୍ଥାତ୍ ମୋ ଭିତରେ କ୍ରମବିକଶିତ ହୋଇ ଆସୁଥିବା ବିଶେଷତ୍ୱଟିକୁ ପ୍ରକାଶଲାଭ କରିବାରୁ ବଞ୍ଚିତ କରି ରଖିବ ।

୨୨ । ୭ । ୪୫

ନିଜେ ତିଆରି ନ ଥିଲେ, ନିଜେ ନିଜର ଜୀବନକୁ ନ ଚିହ୍ନିଲେ, ନିଜେ ନିରନ୍ତର ବ୍ରତ ପରି ସାଧନା ଓ ପ୍ରାର୍ଥନା ନ କଲେ ଶେଷକୁ ଏହି ଜୀବନ ନିରର୍ଥକ ହୋଇଯିବ । ପୃଥିବୀରେ କେବଳ ନାନାବିଧ ଉପକରଣ ରହିଚି, ସେହି ଉପକରଣଗୁଡ଼ିକର ସଦ୍‌ବ୍ୟବହାର କରି ନିଜର ଜୀବନକୁ ସମୃଦ୍ଧ କରିବା ହେଉଚି ଆମ ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ସ୍କୁଲ, କଲେଜ ଓ ଶିକ୍ଷାନୁଷ୍ଠାନ ଜୀବନ-ଗଠନ ସକାଶେ ସେଥିଲାଗି ଏକ ଅନୁକୂଳ ବାତାବରଣ ଯୋଗାଇ ଦେଇଥାନ୍ତି । ମାତ୍ର ଯେଉଁ ଅଳସୁଆ ଅନ୍ୟଉପରେ ବା ପରିସ୍ଥିତି ଉପରେ ଭରସା ରଖି ଆପେ

ଶୋଇ ରହିଥିବ, ସେ କଦାପି ଆପଣାର ଜୀବନକୁ ଗଢ଼ିପାରିବ ନାହିଁ । ଅବଶ୍ୟ ଆଜିର ଏହି ଧନତନ୍ତ୍ରୀ ଯୁଗରେ ଅଳସୁଆ ରହି ମଧ୍ୟ ମଣିଷ ସୁଖୀ ହୋଇପାରୁଛି, ସଡକ ଓ ମଉଜରେ ସମୟ କଟାଇଦେଇ ପାରୁଛି । ମାତ୍ର ଏଗୁଡ଼ାକ ବଡ଼ କ୍ଷଣସ୍ଥାୟୀ, ଏଥିରେ କୌଣସି ଶ୍ରେୟ ନାହିଁ, ତେଣୁ ଯଥାର୍ଥରେ କୌଣସି ସନ୍ତୋଷ ମଧ୍ୟ ନାହିଁ ।

୨୩ । ୭ । ୪୫

ନାରୀଜାତିକୁ ମୁଁ ପ୍ରଥମତଃ ମାଆ ବୋଲି ଭାବିଥାଏ । ମାତ୍ର ନାରୀ ଅଶିକ୍ଷିତା ରହିଥିବା ପର୍ଯ୍ୟନ୍ତ ଆମ ସାମାଜିକ ନୈତିକତାର ଯେ ଅଧଃପତନ ହେଉଥିବ, ଏଥିରେ କୌଣସି ସନ୍ଦେହ ନାହିଁ । ଗତଥର କଲିକତା ଆସିଲା-ବେଳେ ଯାହା ଦେଖିଥିଲି, ଏଥର ମଧ୍ୟ ହାବଡ଼ା ଷ୍ଟେସନବାଟେ ଏଠାକୁ ଆସିଲାବେଳେ ଅଧିକ ସ୍ପଷ୍ଟଭାବରେ ସେହିକଥା ହିଁ ଦେଖିବାକୁ ପାଇଲି । ସେଠି **Booking Office**ରେ କେତେକ ସ୍ତ୍ରୀଲୋକଙ୍କୁ **Booking Clerk** କରି ରଖା-ଯାଇଚି । ଏମାନେ ସମସ୍ତେ ଆଙ୍ଗ୍ଲୋଇଣ୍ଡିଆନ୍ ବୋଲି ମୋର ମନେହେଲା । ସାଧାରଣ ଶ୍ରେଣୀର ଯାତ୍ରୀମାନଙ୍କ ପ୍ରତି ସେମାନଙ୍କର ବ୍ୟବହାର ଦେଖି ମୋତେ ବଡ଼ ଭୟ ଲାଗିଲା । ଭାବୁଥିଲି ଇଏ ମାଆ ନା ରାକ୍ଷସୀ ? ଗରିବ ଦେଖି ଯିଏ ଗୋଟାଏ ଜୀବନ୍ତ ମଣିଷକୁ ଅପମାନ ଦିଏ, ଅସଭ୍ୟ ଭାଷାରେ ଗାଳିଗୁଲଜ କରେ, ସିଏ ସମାଜରେ ମାଆପଦ ପାଇବାକୁ ଯୋଗ୍ୟ ହେବ କିପରି ? ଯଦି ପଇସା ଦେବାରେ କୌଣସି ଭୁଲ ହେଲା ବା ଆଉ କୌଣସି ଛୋଟ ଛୋଟ ଭୁଲ ଯଦି ଅଶିକ୍ଷିତ ଯାତ୍ରୀମାନଙ୍କ ତରଫରୁ ହେଲା, ତେବେ ସେମାନେ ଯାବତୀୟ ଅସଭ୍ୟ ଶବ୍ଦ ପ୍ରୟୋଗ କରୁଥିଲେ । ଅନେକ ସମୟରେ ଗୋଟାଏ ବାଡ଼ିରେ ଭୁଷାଏ ଦେବାକୁ ବି ଛାଡୁ ନ ଥିଲେ । ଏଇମାନଙ୍କୁ ମୁଁ ମାଆ ବୋଲି କହିବି ? ଏମାନଙ୍କୁ ଦେଶ ମାଆବୋଲି କହି ଭକ୍ତି କରିବି ? ଏମାନଙ୍କର ମୁହଁ ଉପରେ ସେହି ସ୍ନେହସନ୍ଦୀପ୍ତ ଉଜ୍ଜ୍ୱଳତା କାହିଁ, ଯାହାକୁ ଦେଖି ସନ୍ତାନ ଭିତରେ ପ୍ରେମର ଉଦ୍ରେକ ହୁଏ ? ଏମାନଙ୍କର ବ୍ୟବହାରରେ ସେହି ନାରୀସୁଲଭ କୋମଳତା କାହିଁ, ଯାହାର ପରିଚୟ ପାଇଲେ ପଥରପରି ମଣିଷର ମନ ମଧ୍ୟ କୋମଳ ହୋଇଯାଉଥାନ୍ତା । ଏମାନଙ୍କର ହୃଦୟରେ ସେହି ଉଦାର ମହନୀୟତା କାହିଁ, ଯାହାକୁ ଦେଖିଲେ ମୁଣ୍ଡ ଆପେ ଆପେ ନଇଁ ପଡ଼ନ୍ତା ? ଦୟା, କ୍ଷମା ଓ ଉଦାରତା ପ୍ରଭୃତି କୁଆଡ଼େ ନାରୀର ବିଶେଷ ଗୁଣ, ମାତ୍ର ଏମାନଙ୍କ ଭିତରେ ସେପରି କୌଣସି ବିଶେଷତ୍ୱ ଦେଖିବାକୁ ମିଳେ ନାହିଁ ।

୨୪ । ୭ । ୪୫

ସୂର୍ଯ୍ୟ ଅସ୍ତ ହୋଇଯାଉଥିଲା । ଭୁବନଡାଙ୍ଗା ଗାଆଁରୁ ମୁଁ ଛାତ୍ରାବାସକୁ ଫେରୁଥିଲି । ଅସ୍ତଗାମୀ ସୂର୍ଯ୍ୟ ହଠାତ୍ ମୋର ସବୁ ଆଖିକୁ ଆକର୍ଷିତ

କରିନେଲା । ସୂର୍ଯ୍ୟ ଅନେକବେଳୁଁ ଅସ୍ତ ହୋଇଯାଇଥିଲା, ନା—ଯାଇଥିଲା ଆଉ କେଉଁ ଦେଶରେ ପ୍ରଭାତର ଉତ୍ସବ ସୃଷ୍ଟି କରିବାକୁ । କେବଳ ତାର ଅସ୍ତକାଳୀନ କିରଣ ହିଁ ପୃଥିବୀ ଉପରେ ପ୍ରତିଫଳିତ ହେଉଥିଲା । ମୁଁ ପଶ୍ଚିମ ଦିଗକୁ ଅନାଇଲି । ପୃଥିବୀ, ଆକାଶ, ମେଘ ଓ ଆଲୋକ ସମସ୍ତେ ମିଶି ମୋ' ଆଗରେ ଗୋଟାଏ ଆଶ୍ଚର୍ଯ୍ୟ ଅଥଚ ଅପୂର୍ବ ଦୃଶ୍ୟର ସନ୍ନିବେଶ କଲେ । ପୋଖରୀର ହୁଡ଼ାଠାରୁ ଦୂରଦୂରନ୍ତବ୍ୟାପୀ ଶ୍ୟାମଳ ଶସ୍ୟକ୍ଷେତ୍ର ଓ ପ୍ରାନ୍ତର । ମଝିରେ ମଝିରେ ତାଳଗଛ ଓ ତା'ର ଅସ୍ପଷ୍ଟ ମୁକୁଟର ମଧୁର ସମାବେଶ । ତା'ପରେ ଦୂରର କୃଷ୍ଣଶ୍ୟାମଳ ବନାନି ଓ ଦିଗ୍‌ବଳୟ । ତା' ସେପାଖକୁ ମେଘର ତିନି ଚାରୋଟି ଉତ୍ତୁଙ୍ଗ ଶୈଳ । ମଝିରେ ଉପତ୍ୟକା ଏବଂ ତା'ପରେ ସ୍ୱର୍ଣ୍ଣ କିରଣର ବହୁଦୂରବ୍ୟାପୀ ଏକ ସାଗର ।

ମୁଁ ଅନାଇ ରହିଥାଏ । କିଛିକ୍ଷଣ ପରେ ଏହାକୁ କେବଳ ଏକ ଦୃଶ୍ୟରୂପେ ଦେଖିପାରିବାର ଶକ୍ତି ଯେପରି ଚାଲିଯିବାପରି ଲାଗିଲା । ମୁଁ ଭାବିଲି, ଲକ୍ଷ୍ୟ କେବଳ ଲକ୍ଷ୍ୟ ହୋଇ ରହିଚି, ଆଦର୍ଶ ସବୁଦିନ ଆଦର୍ଶ ହୋଇ ଦିଶୁଚି, ମଣିଷ ଆଗରେ ତା'ର କେବଳ ଝଲକମାତ୍ର ହିଁ ଦେଖାଯାଉଚି, ଯେପରି ଦେଖାଯାଉଥିଲା ଏହି ଅସ୍ତକାଳୀନ ଆଲୋକର ଝଲକ । ଆଦର୍ଶର ପଥରେ ଉତ୍ତୁଙ୍ଗ ଗିରିମାଳା ରହିଚି, ଯେପରି ନାଲି ଆଲୋକ ପଛରେ ସେହି ଉଚ୍ଚ ମେଘଖଣ୍ଡମାନ । ନାନା ପ୍ରତିବନ୍ଧକ ସତ୍ତ୍ୱେ ଆଦର୍ଶ ପ୍ରତ୍ୟେକ ମଣିଷକୁ ଏକ ଅପୂର୍ବ ଆକର୍ଷଣରେ ଟାଣିବସେ, ଏକ ଅଦ୍‌ଭୁତ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ମଣିଷ ଖାଇଢିପ, ବ୍ୟଙ୍ଗବିଦ୍ରୂପ ସବୁ ଡେଇଁ ସେହି ଆଦର୍ଶ ଆଡ଼କୁ ଧାଇଁବାଲାଗି ମନସ୍ଥ କରେ । ମୋତେ ବି ସେହିପରି ଅନେକ ବାଟ ଚାଲିବାକୁ ପଡ଼ିବ, ଅନେକ ଅଭିଜ୍ଞତା ଅର୍ଜନ କରିବାକୁ ହେବ, ଅନେକ ଅଗ୍ନିପରୀକ୍ଷା ମଧ୍ୟଦେଇ ଅତିକ୍ରମ କରିବାକୁ ପଡ଼ିବ । ପ୍ରକୃତିର ଖେଳ ଓ ବୈଚିତ୍ର୍ୟ ମଧ୍ୟଦେଇ ମଣିଷ ଭଗବାନ ବା ଆଦର୍ଶର ଆକର୍ଷଣ ଅନୁଭବ କରେ ବୋଲି ଆଗରୁ କବିର କବିତାରେ ପଢ଼ିଥିଲି, ଆପେ ଏପରି କଳ୍ପନା ମଧ୍ୟ କରିଥିଲି । ମାତ୍ର ଆଜି ପଶ୍ଚିମ ଆକାଶକୁ ଅନାଇ ଅନାଇ ବାଟ ଚାଲୁଥିବାବେଳେ ଗୋଟାଏ ଅପୂର୍ବ ସ୍ପର୍ଶ ଅନୁଭବ କଲି । ଆଗରୁ ଏପରି ଦୃଶ୍ୟ ହୁଏତ ମୁଁ ଅନେକଥର ଦେଖିଥିବି, ମାତ୍ର ଆଗରୁ ତା'ର ମହତ୍ତ୍ୱ ବୁଝି ନ ଥିଲି । ତେଣୁ ଏଥର ଦେଖି ଏକାବେଳେକେ ଅଭିଭୂତ ହୋଇପଡ଼ିଲି । ଦେହରେ ଶିହରଣ ଆସିଲା । ମନ କହିଲା, 'ଯାତ୍ରୀ, ଅନେକ ଦୂର,—ତୁ ଆଗେଇଚାଲ ।'

୨୫ । ୭ । ୪୫

ଆଜି ଉପରଓଳି ବଙ୍ଗଳାରେ ସାନ କବିତାଟିଏ ଲେଖିଥିଲି । ଏହା ମୋର ପ୍ରଥମ ଚେଷ୍ଟା । ଆଗରୁ ଭାରି ଭୟ ହେଉଥିଲା । ଅଭ୍ୟାସ ନାହିଁ,

ବଙ୍ଗଳା ଅକ୍ଷରଗୁଡ଼ାକ ମଧ୍ୟ ମୁଁ ଭଲକରି ଲେଖି ଜାଣି ନାହିଁ । ମାତ୍ର ସକାଳେ ଆଦିତ୍ୟପୁରରୁ ଫେରିବା ବାଟରେ ସେହି ସୁନ୍ଦର ଗ୍ରାମ୍ୟଦୃଶ୍ୟ ଦେଖି ହଠାତ୍ ମନଭିତରେ ଗୋଟିଏ ଧାଡ଼ି ବଙ୍ଗଳା କବିତା ମନକୁମନ ହୋଇଗଲା । ଟିକିଏ ଉତ୍ସାହିତ ହୋଇ ମୁଁ ପୁଣି ଚେଷ୍ଟା କଲି । ମୋର ସକଳ ହୃଦୟକୁ ପ୍ରକୃତି ସହିତ ମିଶାଇ ଦେବାକୁ ଚେଷ୍ଟା କଲି । ଆଶ୍ଚର୍ଯ୍ୟର କଥା, ଗୋଟିକ ପରେ ଗୋଟିଏ କରି ଭାବନା ଓ ଧାଡ଼ିଗୁଡ଼ିକ ମୋର ମନଭିତରକୁ ଆସିଗଲା । କାମଟା ଅତି ସହଜ ପରି ମନେହେଲା ।

ଆଜି 'ବୁଦ୍ଧ ପୂର୍ଣ୍ଣିମା' । ସେଥିଲାଗି ଭଗବାନ ବୁଦ୍ଧଙ୍କ ଉଦ୍ଦେଶ୍ୟରେ 'ମନ୍ଦିର'ରେ ବିଶେଷ ଉପାସନା ହୋଇଥିଲା । ରବୀନ୍ଦ୍ରନାଥଙ୍କର 'ହିଂସାୟ୍ ଉନ୍ମତ୍ତ ପୃଥ୍ୱୀ' ବୋଲାଯିବା ପରେ ଶ୍ରୀଯୁକ୍ତ କ୍ଷିତିମୋହନ ସେନ ବୁଦ୍ଧଦେବଙ୍କ ବିଷୟରେ ଗୋଟିଏ ଭାଷଣ ଦେଇଥିଲେ । ସେ କହିଲେ, ଯେତେବେଳେ ଜଣେ ମଣିଷ ଆଉ ଜଣେ ମଣିଷକୁ ହତ୍ୟା କରୁଛି, ସେତେବେଳେ ଆମେ ତାହାକୁ ଅପରାଧୀ ବୋଲି କହୁଚୁ, ତା'ଲାଗି ଶାସ୍ତିବିଧାନ କରୁଚୁ । ମାତ୍ର ଯେତେବେଳେ ଗୋଟାଏ ଜାତି ଆଉ ଗୋଟାଏ ଜାତିକୁ ହତ୍ୟା କରୁଛି, ସେତେବେଳେ ଆମେ ତାକୁ ସଭ୍ୟତା ବୋଲି କହୁଚୁ, ତାହାକୁ ଶାନ୍ତିପ୍ରତିଷ୍ଠାର ଏକମାତ୍ର ଉପାୟ ବୋଲି କହୁଚୁ । କି ଛଳନା ! ସଂସାରରୁ ଆଜି ମଧ୍ୟ ହିଂସା ସରି ନାହିଁ । ଦୁର୍ଯ୍ୟୋଧନର ବିଲୋପ ଲାଗି, ପାପର ପୂର୍ଣ୍ଣତ୍ୱ ଓ ଅଶାନ୍ତିର ହତ୍ୟାଲାଗି ଗାନ୍ଧାରୀ ଓ ଧୃତରାଷ୍ଟ୍ର ଯେପରି ଅପେକ୍ଷା କରି ରହିଥିଲେ, ସେହିପରି ନୂତନଯୁଗ ଆଜି ଅପେକ୍ଷା କରି ରହିଚି । ଏହି ଅଭିନୟ ଦିନେ ସରିବ, ଭୀଷଣତାର ପାତ୍ର ଓ ବିଭୀଷିକାର କୁଣ୍ଡ ଦିନେ ପୂର୍ଣ୍ଣ ହେବ, ଏହି ଧ୍ୱଂସ ଓ ପ୍ରଳୟର ପୂର୍ଣ୍ଣାହୁତି ହେବ । ସେଇଦିନ ଶାନ୍ତି ଆସିବ, ମଣିଷ ସ୍ନେହମମତା ନେଇ ପୁଣି ତା'ର ସଂସାର କରିବ । 'ବୁଦ୍ଧ ପୂର୍ଣ୍ଣିମା' ଦିନ ଆମର ହଠାତ୍ ମନେପଡ଼ିଗଲା ପରି ଆମେ ବୁଦ୍ଧଦେବଙ୍କର ପୂଜା କରୁ, ମାତ୍ର ବାସ୍ତବ ଜୀବନର ପ୍ରଶ୍ନମାନ ଆସି ଆଗରେ ଉପସ୍ଥିତ ହେଲାବେଳେ ଆମେ ସୁନାପୁଅ ପରି କୌଣସି ଆପତ୍ତି ନ କରି ହିଂସାର ଭୀଷଣ ହାତ ଆଗରେ ମୁଣ୍ଡ ପତାଇଦେଉ । ଅହିଂସାକୁ ଭୁଲିଯାଉ, ପଶୁଘାତକୁ ଭୁଲିଯାଉ, ବୋଧିଦ୍ରୁମ ତଳର ସେହି ପ୍ରକାଣ୍ଡ ତପସ୍ୟାର ପ୍ରଚଣ୍ଡତାକୁ ଭୁଲିଯାଉ । କି କପଟ ପୂଜା, କି ଛଳନାମୟ ଆରାଧନା, କି ଅପୂର୍ଣ୍ଣ ପ୍ରାର୍ଥନା ! ଏଥିରେ ମୁକ୍ତି କାହିଁ ! ଏଥିରେ କେବଳ ମହାତ୍ମାର ଅପମାନ ହେଉଚି, ମହାତ୍ମାର ଗୌରବହାନୀ ହିଁ ହେଉଚି ।

୨୬ । ୭ । ୪୫

ଓଡ଼ିଶା କଂଗ୍ରେସର ଜଣେ ଯୁବକ ନେତା ଶ୍ରୀମତୀ ମାଳତୀ ଦେବୀଙ୍କ ପାଖକୁ ଚିଠି ଲେଖିଛନ୍ତି ଯେ ସେଇ ମୋତେ ଶାନ୍ତିନିକେତନ ଆସି ଏଠାରେ

ନାମ ଲେଖାଇବାରେ ପ୍ରଶ୍ରୟ ଦେଇଛନ୍ତି । ସେଥିଲାଗି କୁଆଡ଼େ ସମସ୍ତେ ଶ୍ରୀମତୀ ମାଳତୀ ଦେବୀଙ୍କୁ ଦୋଷୀ କରୁଚନ୍ତି । ଶ୍ରୀମତୀ ମାଳତୀ ଦେବୀ ଶାନ୍ତିନିକେତନ ଆସିବେ ଓ ଏଠାରୁ ମୋ'ର ପଢ଼ିବା ସମ୍ବନ୍ଧରେ ସବୁ ଖବର ବୁଝି ମୋତେ ଚିଠି ଲେଖିବେ ଓ ତା'ପରେ ଯାଇ ମୁଁ ଏଠାକୁ ଆସିବି ବୋଲି ଓଡ଼ିଶାରେ ମୋତେ କହି ଆସିଥିଲେ । ମାତ୍ର ସେତେବେଳେ ଅନେକ ବ୍ୟକ୍ତି କୁଆଡ଼େ ତାଙ୍କୁ କୌଣସି ଚିଠି ନ ଦେବାକୁ ପରାମର୍ଶ ଦେଇଥିଲେ, ଯେପରିକି ମୁଁ ଏଠାକୁ ଆସି ନ ପାରିବି । ମାତ୍ର ଯାହାହେଉ, ତାଙ୍କର ଚିଠି ପାଇଁ ଅଧିକ ଅପେକ୍ଷା ନ କରି ତ ମୁଁ ଏଠାକୁ ଆସିଗଲି । ଶ୍ରୀମତୀ ମାଳତୀ ଦେବୀ ମଧ୍ୟ ବଡ଼ ସଦୟ ଭାବରେ ଏଠାରେ ମୋତେ ଅନେକ ସାହାଯ୍ୟ କଲେ ଓ ମୋ'ପାଇଁ ଅନେକ ଲୋକଙ୍କୁ କହିଲେ । ସେ ନ ଥିଲେ ଏଠାରେ ମୁଁ ହୁଏତ ଅନେକ ସୁବିଧାରୁ ବଞ୍ଚିତ ହୋଇଥାନ୍ତି ।

ଏସବୁ ଶୁଣି ଗୋଟାଏ କଥାରେ ମୋତେ ଭାରି କଷ୍ଟ ଲାଗିଲା । ମୁଁ ବର୍ତ୍ତମାନ ପିଲା ନୁହେଁ, ଜୀବନ ଓ ଜୀବନର ଉଦ୍ଦେଶ୍ୟ ବିଷୟରେ ମୋର କ୍ରମେ କ୍ରମେ ଗୋଟାଏ ମୋଟାମୋଟି ଧାରଣା ମଧ୍ୟ ହେଲାଣି । ତଥାପି କେତେଜଣ ଲୋକ ବିଗ୍ଭରୁଚନ୍ତି ଯେ ଶ୍ରୀମତୀ ମାଳତୀ ଦେବୀଙ୍କର ମୋତେ କୌଣସି ପ୍ରଶ୍ରୟ ଦେବା ଉଚିତ ନୁହେଁ । ଯେପରିକି ଜଣେ ବା କେତେଜଣ ଲୋକଙ୍କଠାରୁ ଧକ୍କା ଖାଇଲେ ମୁଁ ମୋର କର୍ତ୍ତବ୍ୟପଥରୁ ଖସିଯିବି ! ମୋର ଲକ୍ଷ୍ୟ ଭୁଲିଯିବି ! ତା'ପରେ ସେମାନେ କି ଉଦ୍ଦେଶ୍ୟରେ ମୋତେ ସେମାନଙ୍କ ଖୁଆଡ଼ରେ ନେଇ ପୂରାଇବାକୁ ମନ କରୁଚନ୍ତି, ପାଠ ନପଢ଼ି ମୁଁ ଏଇଦିନୁଁ ସେମାନଙ୍କ ସହିତ ତାଙ୍କରି ଦଳରେ ରହି ରାଜନୀତିକ କାର୍ଯ୍ୟ କରେବୋଲି ସେମାନେ କାହିଁକି ଗ୍ଭହୁଁଚନ୍ତି ? ରାଜନୀତିରେ ଅନେକ ଦିନ ରହି ସେମାନଙ୍କର ତ ମଣିଷ ବିଷୟରେ ଯଥେଷ୍ଟ ଅଭିଜ୍ଞତା ହେବଣି । ଆପଣାର କର୍ତ୍ତବ୍ୟବୋଧ ଅନୁସାରେ କାମ କରିବାକୁ ଓ ଅନ୍ୟର ପ୍ରରୋଚନାରେ ନ ଭୁଲିବାକୁ ମୋ' ଭିତରେ ଯଥେଷ୍ଟ ବଳ ନାହିଁ ବୋଲି ଯଦି ସେମାନେ ବିଗ୍ଭରୁଚନ୍ତି, ମୋତେ ମୋର ସ୍ୱନିର୍ବାଚିତ ବାଟରୁ ଖସାଇ ନିଆଯାଇ ପାରିବ ବୋଲି ଯଦି ସେମାନେ ଭାବି ପାରୁଚନ୍ତି, ତେବେ ମୋ'ପରି ଗୋଟାଏ ଅଯୋଗ୍ୟ ଓ ଅପାକଳ ମଣିଷକୁ ସାଧାରଣ କର୍ମକ୍ଷେତ୍ରର ପବିତ୍ର ଶିବିରକୁ ନେଇ ସେମାନଙ୍କର କି ଲାଭ ହେବ ? ପୁଣି ମୁଁ ମୋ' ନିଜ ବାଟରେ ଯିବାକୁ ପସନ୍ଦ କଲି ବୋଲି ସେଥିଲାଗି ଆଉ ଜଣକୁ ଦୋଷୀ କରାଯାଉଚି । ନା,—ଏହି କଥାଟାକୁ ମୁଁ କଦାପି ଆଚରଣ ରୂପେ ଗ୍ରହଣ କରିବି ନାହିଁ । ମୁଁ ଆଜିପର୍ଯ୍ୟନ୍ତ ପ୍ରଧାନତଃ ଆପଣା ଗୋଡ଼ରେ ହିଁ ଠିଆହୋଇ ଆସିଚି, ମୋର ବିବେକ ହିଁ ମୋର ଗୁରୁ ହୋଇ ରହିବ ।

୨୭ । ୭ । ୪୫

ଭାଇଙ୍କ ଠାରୁ ଚିଠି ପାଇଲି । ସେ ଲେଖିଚନ୍ତି ଯେ ମୁଁ ଆସିବାପରେ ସେମାନେ ଶାନ୍ତିନିକେତନ ବିଷୟରେ ନାନା ଲୋକଙ୍କଠାରୁ ନାନା କଥା ଶୁଣିବାକୁ ପାଇଚନ୍ତି । ଏସବୁ ସତ୍ତ୍ୱେ ସେ ଏଠାରୁ ସବୁବେଳେ ମୋର ସୁନାମ ଓ ସୁଖ୍ୟାତି ଶୁଣିବେ ବୋଲି ଆଶା ରଖିଚନ୍ତି । ଚିଠିଟାକୁ ଆଉ ଥରେ ପଢ଼ୁ ପଢ଼ୁ ବଡ଼ କାନ୍ଦ ମାଡ଼ିଲା । କୌଣସିମତେ ଏ କାନ୍ଦକୁ ସମ୍ଭାଳି ପାରିଲି ନାହିଁ । ଅବଶ୍ୟ ଶାନ୍ତିନିକେତନ ଯେପରି ହେବାର ଉଚିତ ଥିଲା, ବର୍ତ୍ତମାନ ତାହା ସେପରି ହୋଇ ନାହିଁ । ଏଠି ଅଧ୍ୟାପକମାନଙ୍କ ଠାରୁ ମଧ୍ୟ ମୁଁ ଏଇକଥା ଶୁଣିଚି । ଏହି ସ୍ଥାନର ଜୀବନ ଭିତରେ ଅନେକ ଅସ୍ୱାସ୍ଥ୍ୟକର ଜିନିଷ ପ୍ରବେଶ କରି ପକାଇଚି । ତଥାପି ଅନ୍ୟାନ୍ୟ ଅନେକ ଶିକ୍ଷାନୁଷ୍ଠାନ ଠାରୁ ଏହାର ଅନେକ ବିଶେଷତ୍ୱ ରହିଚି । ପୃଥିବୀରେ ସବୁଠାରେ ଭଲମନ୍ଦ ଉଭୟ ମିଶିକରି ଅଛି । ମଣିଷ ଭଲଟାକୁ ଗ୍ରହଣ କରିବ, ମାତ୍ର କୌଣସି ପ୍ରକାରର ଜାଲରେ ଆବଦ୍ଧ ହୋଇପଡ଼ିବ ନାହିଁ । ଯଦି ମୁଁ ପ୍ରକୃତରେ ମଣିଷ ହେବାକୁ ଇଚ୍ଛା କରୁଥାଏ, ଯଦି ମୋର ପ୍ରାର୍ଥନାରେ ପ୍ରକୃତ ସତ୍ୟନିଷ୍ଠା ଓ ଜୀବନ ଗଠନ କରିବାର ବାସନା ରହିଥାଏ, ତେବେ ମୁଁ ଏଣେତେଣେ ଖସିଯିବି ବା କାହିଁକି । ପ୍ରତ୍ୟେକ କ୍ଷେତ୍ରରେ ଆପଣାର କର୍ତ୍ତବ୍ୟ କରି ଅକ୍ଷତ ମନ ଓ ହୃଦୟ ନେଇ ମୁଁ ବିଜୟୀ ପରି ଚାଲି-ଯାଉଥିବି । ସେଇଥିଲାଗି ମୁଁ ନିତି ପ୍ରାର୍ଥନା କରିବି, ମୋର ଗୁରୁଜନମାନଙ୍କ ଠାରୁ ନିରନ୍ତର ଆଶୀର୍ବାଦ ମାଗୁଥିବି । ସେମାନେ ମୋତେ ବଳ ଦିଅନ୍ତୁ, ଧୈର୍ଯ୍ୟ ଦିଅନ୍ତୁ, ସତ୍‌ସାହସ ଦିଅନ୍ତୁ । ଅଳସୁଆମାନେ ତ ଅନେକ ରକମର କଥା କହିବେ, ଦାୟିତ୍ୱ ମୁଣ୍ଡାଇ ଜୀବନର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ଡରି ସେମାନେ ଯେକୌଣସି ଗୋଟାଏ ଦୋଷ ବାଛି ଦୂରରେ ରହିବାକୁ ଇଚ୍ଛା କରିବେ । ମାତ୍ର ସେଥିରେ ମୋର ଯାଏଆସେ କ'ଣ ? ଡରୁଆ ମଣିଷଙ୍କର ମନ ନେବା,—ଏକଥା ମୋର ପାଞ୍ଜି ଭିତରେ ନାହିଁ ।

୧ । ୮ । ୪୫

'ମନ୍ଦିର' ଉପାସନା ପରେ ଆଉ କେତେଜଣଙ୍କ ସହିତ ମିଶି ଭୁବନଡାଙ୍ଗା ଗାଆଁକୁ ଯାଇଥିଲି । ସେଠାରେ ଆମେ ଗୋଟାଏ ନର୍ଦ୍ଦମା ସଫା କରିଥିଲୁ । ଗାଆଁଲୋକଙ୍କ ସହିତ ମିଶି କେତେସମୟ ଗୋଟାଏ ଭଲ କାମ କରିବାକୁ ଭାରି ଭଲ ଲାଗିଥିଲା । ଆନନ୍ଦ ମଧ୍ୟ ମିଳିଲା ।

ଆମ ଦେଶର ମଣିଷ କ'ଣ ସବୁ ସାର ରଖିଚି ? କେବଳ ମଇଳା ଓ ମଇଳାଗଦା ଛଡ଼ା ତା'ର ସଂସାରରେ ଆଉ କ'ଣ ରହିଚି ? ଅସ୍ୱାସ୍ଥ୍ୟକର ପରିବେଶରେ ରହିବାରେ ସେ ବେଶ ଅଭ୍ୟସ୍ତ ହୋଇଗଲାଣି । ମଇଳା, ଦୁର୍ଗନ୍ଧ ଓ ଆବର୍ଜନା ତାକୁ ଆଉ ଖରାପ ଲାଗୁ ନାହିଁ । ଏହି ମଇଳା ଭିତରେ ରହି ରହି

ଜୀବନର ସ୍ୱଚ୍ଛତା ଓ ତାକୁ ଅର୍ଜନ କରିବାର ଶକ୍ତି ମଧ୍ୟ ତା'ର ଦିନକୁଦିନ ନଷ୍ଟ ହୋଇଯାଉଚି । ଆବର୍ଜନା ଭିତରେ ରହିଲେ ମଣିଷର ମନ କ୍ରମେ ନିଷ୍କ୍ରିୟପ୍ରାୟ ହୋଇଯାଏ । ମଣିଷର ଚିନ୍ତାଶକ୍ତି ଶିଥିଳ ହୋଇଯାଏ । ସୌନ୍ଦର୍ଯ୍ୟଜ୍ଞାନ ଓ ସୌନ୍ଦର୍ଯ୍ୟ ଉପଲବ୍ଧି କରିବାର ବାସନା ମଧ୍ୟ ଧୀରେ ଧୀରେ ମରିଯାଏ । ପ୍ରଧାନତଃ ଏହି କାରଣରୁ ଭାରତବର୍ଷର ପଲ୍ଲୀଜୀବନ ଆଜି ମୃତପ୍ରାୟ ହୋଇ ପଡ଼ିଚି, ପଲ୍ଲୀଗାଆଁର ମଣିଷ ବଡ଼ ଅଖ୍ୟାତ ଓ ଅବହେଳିତ ହୋଇ ରହିଚି । ଯୁଗ ଯୁଗ ଧରି ଗଦାହୋଇ ରହିଥିବା କୁସଂସ୍କାର ସ୍ତୂପର କଠୋର ଗ୍ରପ ଫଳରେ ସେ ଚିପି ହୋଇଗଲାଣି । ପ୍ରତିବାଦ କରିବାଲାଗି ମଧ୍ୟ ତା'ର କଣ୍ଠରେ ଭାଷା ନାହିଁ, ପ୍ରତିକାର କରିବା ତ ଦୂରର କଥା । ସେ ଖାଲି ଭୟ କରି ଶିଖିଚି । ସେ ବଡ଼ଲୋକକୁ ଡରେ, କାମ କରିବାକୁ ଡରେ, ରାଜାକୁ ଡରେ, ଅତ୍ୟାଚାରୀକୁ ଡରେ, ଶେଷକୁ ମରଣକୁ ବି ଡରେ । ପଥଧାରର ଅବହେଳିତ ପଥର ଉପରେ ସିନ୍ଦୂର ବୋଳି ସେ ତାକୁ ପୂଜା କରେ, ତାକୁ ଭୟ କରେ । ପଶୁପରି ଜୀବନଯାପନ କରି ମଧ୍ୟ ସେ ବେଶ୍ ସନ୍ତୁଷ୍ଟ ରହିଥିବା ପରି ଦେଖାଯାଏ । ସେ ଆପତ୍ତି କରେ ନାହିଁ, ଅନ୍ଧକାରର ଗହ୍ୱର ଭିତରୁ ବାହାରକୁ ଅନାଇବାକୁ ମଧ୍ୟ ସେ କେବେ ମନ କରେ ନାହିଁ, ପିଞ୍ଜରାର ବନ୍ଦୀ ପକ୍ଷୀପରି ଲୌହଦଣ୍ଡକୁ ଆଘାତ କରିବାକୁ ସେ ଭୁଲିଯାଏ । ଏହିପରି ଏକ କଦର୍ଯ୍ୟ ଅଶାନ୍ତିମୟ ଓ କ୍ଷୁଦ୍ର ସଂସାରକୁ ନେଇ ସେ ମରେ । ତଥାପି ତା'ର ଦୁଃଖ ଯାଏ ନାହିଁ ।

ସାରା ଦୁନିଆ ତାକୁ ଠକେ, ତଥାପି ସେ ତା'ର ଅଜ୍ଞ ଉଦାରତା ଦ୍ୱାରା ଜଗତକୁ ଆପଣାର ସର୍ବସ୍ୱ ଦେଇଦିଏ । ଏଇ ହେଉଚି ଭାରତର ପଲ୍ଲୀଜୀବନ ଏବଂ ଭାରତ ହେଉଚି ମୁଖ୍ୟତଃ ପଲ୍ଲୀର ଦେଶ ।

୧୨ । ୮ । ୪୫

ଆଜି ଆମେ ଦଳେ ବାନ୍ଧଗଡ଼ା ଗାଆଁକୁ ଯାଇଥିଲୁ । ସେଠାରେ କାମ କରି ଫେରିବାବେଳକୁ ବାଟରେ ଭୟଙ୍କର ବର୍ଷା ହେଲା । ବର୍ଷାରେ ତିନ୍ତି ତିନ୍ତି ଆମକୁ ଏକମାଇଲରୁ ଅଧିକ ବାଟ ଆସିବାକୁ ପଡ଼ିଲା । ଗାଧୋଇବାଠାରୁ ଅଧିକ ହୋଇଗଲା । ଛାତ୍ରାବାସକୁ ଫେରି ମୁଁ ଓଦାଲୁଗା ବଦଳି ପକାଇଲି । ହାଫ୍‌ପ୍ୟାଣ୍ଟ ଓ କଲାର୍‌ଲଗା ଗୋଟିଏ ସଟେଇ ପିନ୍ଧିଲି । ସେଇଆକୁ ପିନ୍ଧି ଯେତେବେଳେ ଖାଇବା ଘରକୁ ଖାଇବାପାଇଁ ବାହାରିଲି, ସେତେବେଳେ ଦୁଇ ତିନିଜଣ ବନ୍ଧୁ ମୋର ସେପରି କରିବାଟାକୁ ଆଦୌ ପସନ୍ଦ କଲେ ନାହିଁ । ଜଣେ ବନ୍ଧୁ ମତପ୍ରକାଶ କରି ପ୍ରଶ୍ନ କଲେ : ତୋ ଆପ୍ ଢୋସାଇଟିକୋ ବିଲ୍‌କୁଲ୍ କେଆର୍ ନାହିଁ କରତେ ? ଶୁଣି ମୋତେ ହସ ଲାଗିଲା, ଦୁଃଖ ବି ଲାଗିଲା । ଏପରି ପୋଷାକ ପିନ୍ଧିବା ଦ୍ୱାରା ସମାଜର ବିରୋଧୀ କୌଣସି କାର୍ଯ୍ୟ କଲୁଚି ବୋଲି

ମୁଁ ଆଦୌ ଭାବିପାରୁ ନାହିଁ । ତେବେ ସେଇଟା ଏମାନଙ୍କୁ ଏତେ ବାଧୁଚି କାହିଁକି ? ମୁଁ ନମ୍ରଭାବରେ ଉତ୍ତର ଦେଲି : **Dress is a man's own affair**, ଏତକ ଶୁଣି ସମସ୍ତେ ଅବଶ୍ୟ ଚୁପ୍ ହୋଇଗଲେ । କିଛି ସମୟ ପର୍ଯ୍ୟନ୍ତ ମୁଁ 'ସୋସାଇଟି'କୁ ଏହି 'କେଆର୍' କରିବା ବିଷୟରେ ଭାବୁଥିଲି । ପ୍ରଥମତଃ ହିନ୍ଦୀ ଓ ଇଂରାଜୀ ମିଶା ଏହି ବିକୃତ ବାକ୍ୟ ମୋତେ ବଡ଼ ଅସୁନ୍ଦର ଲାଗିଲା । ତା'ପରେ ସମାଜକୁ ଖାତିରି କରିବା କଥା : ଛୁଟିରେ ଗାଆଁକୁ ଯାଇଥିବାବେଳେ ଯେତେବେଳେ ଆମେ ଗାଆଁ ଦାଣ୍ଡରେ ସାହେବ ହୋଇ ଘୁରି-ଯାଉ, ସେତେବେଳେ ଆମେ କେଉଁ ସମାଜକୁ ଖାତିରି କରୁ ? ଚଟି, ଚଷମା ଓ ଫାଉଣ୍ଟେନ୍ କଲମରେ ଦେହମଣ୍ଡନ କରି ଆମେ ଯେତେବେଳେ ଗାଆଁକୁ କାମ କରି ଯାଉ, ସେତେବେଳେ ଆମେ କେଉଁ ସମାଜକୁ ସମ୍ମାନ ଦେଖାଉ ? ଯେତେବେଳେ ଗ୍ରାମ୍ୟ ଚାକରକୁ ଅସଭ୍ୟ ଭାଷାରେ ଗାଳିଦେଉ, ସେତେବେଳେ ବି ଆମେ ସମାଜକୁ ଖୁବ୍ ସମ୍ମାନ ଦେଖାଉ ।

ଆମେ ଭାବୁ ଯେ ବଢ଼ିଆ ବେଶଭୂଷାକୁ ଦେହରେ ଲଦି ଗଲେ ଆମେ ସମାଜକୁ ସମ୍ମାନ କରିଥାଉ । ଆମର ବୟସ ଓ ପାଠର ବୃଦ୍ଧି ସଙ୍ଗେ ସଙ୍ଗେ ଆମର ପୋଷାକ ମଧ୍ୟ ବଦଳିବାରେ ଲାଗିଥାଏ । ଦୁଇସାରରୁ କୋଡ଼ିଏ ସାର ହୁଏ । ଏସବୁ ପ୍ରକୃତରେ କେଡ଼େ ଭୁଲ୍ ଧାରଣା ! ନିଜର ହୃଦୟକୁ ସମାଜ ପାଖରେ ଅର୍ପଣ କର, ସମାଜ ଭିତରେ ଯେଉଁ ମଣିଷ ଅଶିକ୍ଷା ଓ କୁସଂସ୍କାରରେ ବୁଡ଼ିରହିଚି, ତାକୁ ଭାଇ ବୋଲି ଆଲିଙ୍ଗନ କର, ତାକୁ ଉପରକୁ ଉଠାଇବାକୁ ଚେଷ୍ଟା କର । ତା' ନ ହେଲେ ଆମେ କଦାପି ଏହି ସମାଜର ହୋଇ ରହି-ପାରିବୁ ନାହିଁ । ଏ ସମାଜ ମଧ୍ୟ ସମାଜ ହୋଇ ରହିବ ନାହିଁ ।

୧୪ । ୮ । ୪୫

ମଣିଷକୁ ବଡ଼ କରିବାକୁ ହେବ, ତା' ହେଲେ ମଣିଷ ସମାଜ ବି ବଡ଼ ହେବ । ଅନେକ ସମୟରେ ପ୍ରଧାନତଃ ଦୟାପରବଶ ହୋଇ ଆମେ ଗାଆଁ ଭିତରକୁ ଯାଉଚୁ, ଗାଆଁର ମଣିଷମାନଙ୍କର ଦୁର୍ଗତିରେ ଆମେ କେବଳ ଦୁଃଖ ପ୍ରକାଶ କରୁଚୁ । ସାତଦିନରେ ଥରେ ଆପଣାର ରାଜପ୍ରାସାଦରୁ ଓହ୍ଲାଇ ଆସି ଆମେ ସେମାନଙ୍କ ପାଇଁ ନଳାଟାଏ ବା ଅଳିଆଗଦାଟାଏ ସଫା କରିଦେଇ ଆସୁଚୁ । ତା'ପରେ ଆମେ ସେମାନଙ୍କ କଥା ଭୁଲିଯାଉଚୁ, ସେମାନେ ବି ଭୁଲି ନ ଯିବେ କାହିଁକି ? ଏହିପରି ଅପୂର୍ବ ଭାବରେ କେତେଦିନ କାର୍ଯ୍ୟ କଲାପରେ ଆମେ କହୁଚୁ ଗାଆଁର ମଣିଷଗୁଡ଼ାକ କିଛି ବୁଝୁ ନାହାନ୍ତି, ଯେତେ ଯାହା କଲେ ବା କହିଲେ ମଧ୍ୟ ସେମାନଙ୍କର ଆଖି କଦାପି ଫିଟିବ ନାହିଁ । ସେହିଠାରୁ ଆମର କାମ ବି ଇତି ହୋଇଯାଉଚି । ଆମେ ଆଶା କରି ବସୁଚୁ ଯେ ଆମେ ଥରେ ବା ଦୁଇଥର ଦେଖାଇଦେଲା ପରେ ଗାଆଁ ମଣିଷର ମନ

ବିଲ୍‌କୁଲ୍ ବଦଳିଯାଉ । ସେ ତା'ର ଘର ସଫା ରଖୁ ଓ ଦରକାର ପଡ଼ିଲେ ଆମରି ପରି ବଡ଼ ବଡ଼ ବକ୍ତୃତାମାନ ମଧ୍ୟ ଦେଉ । ମାତ୍ର ସେକଥା କ'ଣ କେବେହେଲେ ସମ୍ଭବ ହେଲାଣି ? ଉଚ୍ଚସ୍ତରରେ ଥାଇ ଆମେ ସେମାନଙ୍କୁ ଯୁଗ ଯୁଗ ଧରି ତଳକୁ ଚୁପି ରଖିଚୁ, ସମାଜଟାଯାକ ଏପରି ଖଣ୍ଡିଆ ଓ ଭାଗ ଭାଗ ହେବା ଫଳରେ ସେମାନଙ୍କ ସଂସାରର କେତେ ସୁଖ ଓ ସମୃଦ୍ଧିର ସମ୍ଭାବନା ବାଧାପ୍ରାପ୍ତ ହୋଇ ରହିଚି । ଏତେଶୀଘ୍ର କ'ଣ ସେହି ଅବ୍ୟବସ୍ଥା ବଦଳିଯିବ ? ସେମାନଙ୍କର ଦୁଃଖ ଓ ଅସାମର୍ଥଗୁଡ଼ାକୁ ଦେଖି ସୁଦ୍ଧା କେବେ ଆମ ଆଖିରେ ଟୋପାଏ ଲୁହ ଆସି ନାହିଁ, ଅନେକ ସମୟରେ ସେମାନଙ୍କ ଉଦ୍ଦେଶ୍ୟରେ ଆମେ ନାକ ଛିଞ୍ଚାଡ଼ିଚୁ । ସେମାନଙ୍କଠାରୁ ଦୂରରେ ରହିବାକୁ ଫିକର କରିଚୁ । ଆଜି ସେହି ଅପମାନିତ ମଣିଷ ପାଖକୁ ଫେରିଯିବାକୁ ହେବ, ସେମାନଙ୍କୁ ସାଙ୍ଗରେ ନେବାକୁ ପଡ଼ିବ । ତା'ନହେଲେ ଗତି ନାହିଁ ।

୧୫ । ୮ । ୪୫

'ମନ୍ଦିର' ଉପାସନା ପରେ ଆମେ ପ୍ରାୟ ପନ୍ଦର ଜଣ ସରିକି ଏକାଠି ମିଶି ବାନ୍ଧଗଡ଼ା ଗାଁଆକୁ ଯାଇଥିଲୁ । ଗଲାବେଳେ ଶ୍ରୀଭବନର ଝିଅମାନେ ଗୀତ ବୋଲି ବୋଲି ଯାଉଥାନ୍ତି । ମୋତେ ବଡ଼ ଖୁସି ଲାଗୁଥାଏ । ଆପଣାର ସମ୍ମାନିତ ସ୍ଥାନରୁ ଓହ୍ଲାଇ ଆସି ତଳେ ପଡ଼ିଥିବା ଭାଇମାନଙ୍କ ପାଇଁ କିଛି କରିବାକୁ ଯିବା କେଡ଼େ ଆନନ୍ଦର କଥା ? ଯେତେବେଳେ ସମସ୍ତେ ସେଇକଥା ହୃଦୟଙ୍ଗମ କରିବେ, ଦୂଷିତ ରାଜନୀତିର ଅସରନ୍ତି ତର୍କଭଣ୍ଡାର ଛାଡ଼ି ଯେତେବେଳେ ସମସ୍ତେ ଏହି କର୍ମଯୋଗ ବା ଜୀବନଯଜ୍ଞର ତତ୍ତ୍ୱ ବୁଝିପାରିବେ ଏବଂ ଆପଣା ଜୀବନରେ ଯଥାଶକ୍ତି ତାହାକୁ କାମରେ ଲଗାଇ ପାରିବେ, ସେତେବେଳେ ଯାଇ ଆମ ମଣିଷ ସମାଜର ଉଦୟ ହେବ ।

ଗାଆଁରେ ଆମେ କେତୋଟି ଦଳରେ ବାଣ୍ଟିହୋଇ ବିଭିନ୍ନ କାମ କରିବାକୁ ଗଲୁ । ଦୁଇଜଣ ଭଉଣୀଙ୍କ ସହିତ ମୁଁ ତିନିଟା ଖତଗଦା ସଫା କରିଥିଲି, ମଇଳାତକ ଉଠାଇ ନେଇ ଗୋଟିଏ ଦୂରଜାଗାରେ ପକାଇ ଦିଆ-ଯାଇଥିଲା । ଆମର ସବୁ ଅର୍ଥନୀତି, ରାଜନୀତି, ଦର୍ଶନ ଓ ମନୋବିଜ୍ଞାନ ପଢ଼ିବା ଆଗରୁ ଆମେ ଯଦି ନିଜେ ଗାଆଁକୁ ଯାଇ ସେଠାରେ ବାସ କରୁଥିବା ମଣିଷମାନଙ୍କର ଜୀବନଯାତ୍ରା ବିଷୟରେ ପ୍ରତ୍ୟକ୍ଷ ଅଭିଜ୍ଞତା ଲାଭ କରି ପାରୁଥାନ୍ତୁ, ତେବେ ଆମେ କେତେ ଅଧିକ ଜ୍ଞାନ ଉପାର୍ଜନ କରିପାରୁ ନ ଥାନ୍ତୁ ? ଆମ ଜୀବନର କର୍ମକ୍ଷେତ୍ରରେ ମଧ୍ୟ ସେହି ଜ୍ଞାନ ଆମକୁ ଅଧିକ ସାହାଯ୍ୟ କରି ପାରୁଥାନ୍ତା । ସ୍କୁଲ କଲେଜର ପଢ଼ାବହି ଓ ତତ୍ତ୍ୱଭିତରେ ଆବଦ୍ଧ ରହି ଆମେ କେଡ଼େ ବିକୃତ ଓ ହାସ୍ୟକର ଦୃଷ୍ଟିକୋଣମାନ ଅର୍ଜନ ନ କରୁଚୁ ? ଏଇଟା ହେଉଚି, ଏ ଯୁଗର ଗୋଟାଏ ବଡ଼ ବିରୋଧ । ନିତିଦିନର ଜୀବନ ମଧ୍ୟଦେଇ

ସିଏ ଜୀବନ ସହିତ ଅଙ୍ଗାଅଙ୍ଗୀ ଭାବରେ ସଂପୃକ୍ତ ହୋଇ ରହିଛି, ତା'ର ମତ କେତେବେଳେ ହେଲେ ଲୋଡ଼ାଯାଏ ନାହିଁ । ଚାଷୀଲାଗି ଉନ୍ନତିର ଯୋଜନା ହେଉଥିବାବେଳେ ଚାଷୀର ମତକୁ କେହି ଅପେକ୍ଷା ରଖନ୍ତି ନାହିଁ । ଶିକ୍ଷା ବ୍ୟବସ୍ଥା ବିଷୟରେ ଚିନ୍ତା କଲାବେଳେ ଛାତ୍ରମାନଙ୍କର ମନୋଭାବକୁ ବୁଝିବାଲାଗି କେହି ଚିନ୍ତାକରେ ନାହିଁ । ଶାସନ-ସଂସ୍କାର କରିବାକୁ ଗଲାବେଳେ ଶାସିତ ଶ୍ରେଣୀର ଅଭାବ ଓ ଅସୁବିଧା, ଇଷ୍ଟ ଓ ଅନିଷ୍ଟ ପ୍ରତି କେହି ଦୃଷ୍ଟି ପକାନ୍ତି ନାହିଁ । ସଭ୍ୟତାର ହାଟରେ ନିଜ ଉଦାରତାର ପ୍ରମାଣ ଦେଖାଇବାକୁ ଏ ଦେଶର ସରକାର ବେଳଅବେଳରେ ଗୋଟାଏ ଗୋଟାଏ କମିଟି ବା କମିଶନ ବସାଇ ଦିଅନ୍ତି, ଯେଉଁମାନେ ସଲାମ୍ ସାଲିଉଟ୍ ପାଇ ସ୍ପେଶାଲ ଗାଡ଼ିରେ ବୁଲି ଶେଷକୁ ଗୋଟାଏ ଲମ୍ବା ରିପୋର୍ଟ ଦିଅନ୍ତି, ଯାହାର କି ପ୍ରତ୍ୟକ୍ଷ ସମସ୍ୟା ସହିତ ଅନେକ ସମୟରେ ଖୁବ୍ ବେଶୀ ସମ୍ବନ୍ଧ ନ ଥାଏ । ସେଥିଲାଗି ବଙ୍ଗଳା ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ମଣିଷ ମରିସାରି ମାଟିରେ ମିଶିସାରିବା ପରେ ଦୁର୍ଭିକ୍ଷର କାରଣ ଦର୍ଶାଇ ତଦନ୍ତ କମିଟିର ରିପୋର୍ଟ ଏ ଦେଶରେ ପ୍ରକାଶ ପାଏ । ଏ ଦେଶରେ କମିଟି କମିଶନ ପୋଷିବାରେ ଯେତେ ଟଙ୍କା ଖର୍ଚ୍ଚ ହେଉଚି, ସେତିକି ଟଙ୍କା ଯଦି ଜନସାଧାରଣଙ୍କ ପିଛାରେ ଖର୍ଚ୍ଚ ହେଉଥାନ୍ତା, ଅଭାବଗ୍ରସ୍ତ ମଣିଷ ଲାଗି ଖଣ୍ଡେ ଘର ତିଆରି କରି ଦିଆଯାଉଥାନ୍ତା, ତା' ଗାଁରେ ସ୍କୁଲ ଖଣ୍ଡେ ବସାଇ ଦିଆଯାଉଥାନ୍ତା ବା ତା'ର ରୋଗବେଳେ ତାକୁ ଟୋପାଏ ଔଷଧ ଦିଆଯାଉଥାନ୍ତା, ତେବେ କେଡ଼େ ଭଲ ନ ହେଉଥାନ୍ତା । ଛାଡ଼, ରାଜନୀତି ଆଜି ଗୋଟାଏ ବିଳାସରେ ପରିଣତ ହୋଇ ସାରିଲାଣି । ସେଥିଲାଗି ଆଜି ଓକିଲ, ବାରିଷ୍ଟର, ମନ୍ତ୍ରୀ ଓ ମିଲ୍‌ମାଲିକ ସମସ୍ତେ ଦେଶସେବକ ଓ ରାଜନୀତିଜ୍ଞ ବୋଲାଇ ପାରୁଚନ୍ତି ।

୧୭ । ୮ । ୪୫

ପିଲାଦିନୁଁ ରବୀନ୍ଦ୍ରନାଥଙ୍କର ଯେଉଁ ଆଡ଼କୁ ପ୍ରବୃତ୍ତି ରହିଥିଲା, ତାଙ୍କର ପିତା ଦେବେନ୍ଦ୍ରନାଥ ସଙ୍ଗେ ସଙ୍ଗେ ତାଙ୍କ ଲାଗି ସେହି ପ୍ରବୃତ୍ତିଗୁଡ଼ିକର ବିକାଶ ପାଇଁ ଆବଶ୍ୟକ ସୁବିଧା କରି ଦେଉଥିଲେ । ଅର୍ଥାତ୍ ଆପଣା ଅନ୍ତର୍ନିହିତ ଶକ୍ତିଗୁଡ଼ିକର ବିକାଶଲାଗି ରବୀନ୍ଦ୍ରନାଥ ପିଲାଦିନେ କୌଣସିପ୍ରକାର ବାହ୍ୟ ବାଧାର ସମ୍ମୁଖୀନ ହେଉ ନ ଥିଲେ । ଜୀବନରେ କୌଣସିଦିନ ତାଙ୍କୁ ଅନ୍ନର ଚିନ୍ତା କରିବାକୁ ପଡ଼ି ନ ଥିଲା । ସିଏ ସଂଗୀତ ଶିଖିବାକୁ ମନ କରିବା ମାତ୍ରକେ ତାଙ୍କଲାଗି ବଙ୍ଗଳାର ଶ୍ରେଷ୍ଠ ସଂଗୀତଜ୍ଞମାନେ ଖଞ୍ଜାହୋଇ ରହିଲେ । ରବୀନ୍ଦ୍ରନାଥ ନାଟକ ଲେଖୁଥିଲେ, ତାଙ୍କରି ଘରେ ସେଗୁଡ଼ିକର ଅଭିନୟ ହେଉଥିଲା । ରବୀନ୍ଦ୍ରନାଥ ଗୀତ ଲେଖୁଥିଲେ, ତାଙ୍କରି ଘରେ ବଡ଼ବଡ଼ ବିଜ୍ଞଲୋକଙ୍କର ମଜଲିସ୍‌ରେ ସେଗୁଡ଼ିକୁ ଗାନ କରାଯାଉଥିଲା । ଏହିପରି ଏକ

ଅନୁକୂଳ ପରିସ୍ଥିତିରେ ସେ ଆପଣା ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ବିକାଶ କରିବାଲାଗି ସକଳ ସୁବିଧା ଲାଭ କରିଥିଲେ ।

ରବୀନ୍ଦ୍ରନାଥଙ୍କର ଜୀବନ ସହିତ ଆମେ ଏ ଦେଶରେ ସାଧାରଣ ଯୁବକ ଜୀବନର କି ତୁଳନା ବା କରିପାରିବା ? ପ୍ରତ୍ୟେକ ମଣିଷକୁ ବିକାଶଲାଗି ପରିପୂର୍ଣ୍ଣ ସୁଯୋଗ ଦେବାକୁ ହେବ, ଏହି ଜଗତକୁ ଚିହ୍ନି ପାରିବାଲାଗି ପ୍ରତ୍ୟେକ ମଣିଷ ଉପଯୁକ୍ତ ହୋଇ ତିଆରି ହେବ । କାମିକା ଲୋକଙ୍କୁ ତେଲ, ଲୁଣ ଓ ଡାଲିଗୁଡଜ ସକାଶେ ଭାବିବାକୁ ପଡ଼ିବ ନାହିଁ । ତା' ନ ହେଲେ ମଣିଷର ମଣିଷପଣିଆ ମରିଯିବ, ସେ ସକଳ ପ୍ରକାର ସୌନ୍ଦର୍ଯ୍ୟା-ନୁଭୂତିର ଶକ୍ତି ହରାଇ ବସିବ ।

ଜାପାନ ଆତ୍ମସମର୍ପଣ କଲା । ସେଥିଲାଗି ଭାରତପରି ଗୋଟାଏ ପରାଧୀନ ଦେଶରେ ମଧ୍ୟ ସରକାରୀ ଉଦ୍ୟମରେ ବିଜୟ-ଉତ୍ସବର ପାଳନ କରାଯାଉଚି । ମାଲିକ ଘରେ ଗ୍ଭକର ଉପରେ ନିତି ନାନାପ୍ରକାର ଅତ୍ୟାଗ୍ଭର କାରାଯାଉଥାଏ । ତଥାପି ବଡ଼ବାବୁ ବା ବଡ଼ ସାଆନ୍ତଙ୍କର ଜନ୍ମଦିନ ଆସି ପହଞ୍ଚିଲେ ତାକୁ ଯେମିତି ଅନୁଗ୍ରହ କରି ଖଣ୍ଡେ ନୂଆ ଲୁଗା ପିନ୍ଧିବାକୁ ଦିଆଯାଏ, ସେମିତି ବର୍ଷ ବର୍ଷ ଧରି ଆମକୁ ଗୋଲାମ କରି ରଖି, ଆମକୁ ଗ୍ଭବୁକ ମାରି ଓ କାଙ୍ଗାଳ କରି ଏହି ବିଜୟ-ଉତ୍ସବରେ ଆଜି ଆମକୁ ମିଠେଇ ବଣ୍ଟାଯାଉଚି, ଆମକୁ ଛୁଟି ଦିଆଯାଉଚି । ଦେଶର ବିଷଣ୍ଣ ମୁଖରେ ମିଷ୍ଟାନ୍ନ ଭର୍ତ୍ତି କରାଯାଇ ଜବରଦସ୍ତି ହସ ବାହାର କରିବାର ଚେଷ୍ଟା କରାଯାଉଚି । କି ଅପମାନ ! ଯେଉଁମାନେ ଆଜି ଏପରି କରିବାକୁ ସାହସ କରୁଚନ୍ତି, ସେମାନେ ବୋଧହୁଏ ଏହି ଦେଶକୁ ଆଜିଯାଏ ଚିହ୍ନିପାରି ନାହାନ୍ତି । ଦେଶର ଏହି ବିଷାଦତଳେ ଏକ ଅଭିଶାପ ରହିଚି ଯାହା ଦିନେ ଶତସହସ୍ର ବଜ୍ରମୁଷ୍ଟି ଉପରକୁ ଟେକି ଗର୍ଜନ କରିଉଠିବ; ଦେଶର ଏହି ବିଷାଦ ପଛରେ ଅଗ୍ନି ରହିଚି ଯାହା ଦିନେ ସବୁଳ ସକଳ କପଟାଗ୍ଭରକୁ ଭସ୍ମ କରିଦେବ, ସୁନାକୁ ଉଜ୍ଜ୍ୱଳ କରିବ ଓ ଭେଲକୁ କଳା ପାଉଁଶ କରିଦେବ ।

୧୮ । ୮ । ୪୫

ସଞ୍ଜବେଳେ ଆମେ ବାନ୍ଧଗଡ଼ା ଗାଆଁକୁ ଯାଇଥିଲୁ । ଗତ ବୁଧବାର ଦିନ ଯାହାସବୁ ସଫା ହୋଇଥିଲା, ଆମେ ଆଜି ସେହିଗୁଡ଼ିକ ଦେଖିବାକୁ ଯାଇଥିଲୁ । ଅନେକ ଜାଗାରେ ପୁଣି ମଇଳା ଜମି ସାରିଥିଲା । ମାତ୍ର ଏଥିପାଇଁ ଲୋକମାନଙ୍କୁ ମୁଁ କ'ଣ କହିବି, କିଛି ଠିକ୍ କରିପାରିଲି ନାହିଁ । ଭାବିଲି, ଆମ ଦେଶରେ ଯେଉଁ ଲକ୍ଷପତି ଓ ବଡ଼ଲୋକମାନେ ଅଛନ୍ତି, ସେମାନେ ବି ତ ଆପଣାର କୁତ୍ସିତ ଅଭ୍ୟାସ ଛାଡ଼ିପାରୁ ନାହାନ୍ତି. ନିଜ ଘରକୁ ସେମାନେ ଯଥେଚ୍ଛା ମଇଳା କରୁଚନ୍ତି । ଖାଲି ପନ୍ଦରଟା ଗ୍ଭକର ରହିଚନ୍ତି ବୋଲି ସିନା ସେମାନଙ୍କର

ଘର ପରିଷ୍କାର ଦେଖାଯାଉଚି ! ମାତ୍ର ଏଠି ଏମାନେ, ଖାଇବାକୁ ଯଥେଷ୍ଟ ଅନ୍ନ ନାହିଁ, ଦିନଯାକ ମୂଲ ଲାଗି ପେଟ ପୋଷୁଚନ୍ତି । ଅନ୍ଧାର ଗାତ୍ଭିତରେ ଖୁନ୍ଦିହୋଇ ରହିଲାପରି ରହିଚନ୍ତି, ଯଥେଷ୍ଟ ଝରକା କବାଟ ରଖି ଘର ତୋଳିବାକୁ ମଧ୍ୟ ଏମାନଙ୍କ ହାତରେ ପଇସା ନାହିଁ ବା ଜାଗା ନାହିଁ,— ଏମାନେ କିପରି ଏଡ଼େ ଚଞ୍ଚଳ ସ୍ୱାସ୍ଥ୍ୟର ନିୟମଗୁଡ଼ିକରେ ଅଭ୍ୟସ୍ତ ହୋଇ-ପାରିବେ ?

ଆଉ ଗୋଟାଏ କଥା,—ଯେତେଦିନ ପର୍ଯ୍ୟନ୍ତ ଏ ଦେଶର ଶାସନ ଏ ଦେଶର ମଣିଷହାତକୁ ନ ଆସିଚି, ଯେତେଦିନ ପର୍ଯ୍ୟନ୍ତ ଆମ ସମାଜରେ ବାଘ ଛେଳିର ବିଭବ ଖେଳ ଲାଗିରହିଚି, ସେତେଦିନ ପର୍ଯ୍ୟନ୍ତ ପଲ୍ଲୀର ଶିରୀ କଦାପି ପୂର୍ଣ୍ଣଭାବରେ ଫେରିଆସିବ ନାହିଁ । ଆମେ ନିଜେ ବେଶ୍ ଭଲରେ ରହିଚୁ ଏବଂ ଆମ ଦେଶପ୍ରୀତିର ପ୍ରମାଣ ଦେଖାଇବା ପାଇଁ ଦିନରେ ଥରେ ସେମାନଙ୍କ ଆଡ଼େ ବୁଲିଆସୁଚୁ । 'ଆଦର୍ଶ' ଦେଖାଇ ସପ୍ତାହରେ ଥରେ ସେମାନଙ୍କର ଘର ଚାରି-ପାଖରେ ଝାଡ଼ୁ ମାରିଦେଉଚୁ । ମାତ୍ର ତା'ର ସ୍ଥାୟୀ ପ୍ରଭାବ ପଡ଼ିବ କିପରି ? ସେମାନଙ୍କ ଠାରୁ ଆମେ ଏତେ ଚଞ୍ଚଳ କିପରି ଏକ ପରିବର୍ତ୍ତିତ ରୁଚିର ଆଶା କରିପାରିବା ? ଯଦି ଆମେ ସେହିମାନଙ୍କ ସ୍ତରରେ ଥାଆନ୍ତୁ, ତେବେ ହୁଏତ ବୁଝିପାରୁଥାନ୍ତୁ, ଏହି ଆବର୍ଜନା ଓ ଅସନ୍ତୋଷମୟ ଜୀବନକୁ ହିଁ ସେମାନେ କିପରି ଆପଣାର ଭାଗ୍ୟ ବୋଲି ମାନିନେଇଚନ୍ତି । ଯେତେବେଳେ ପେଟର ତାଡ଼ି ପ୍ରବଳ ହୁଏ, ସେତେବେଳେ ମଣିଷ ସବୁ ଭୁଲିଯାଏ, ଜୀବନର ସୁନ୍ଦର ସଂସାରଗୁଡ଼ାକୁ ମଧ୍ୟ ଭୁଲିଯାଏ । ଭାତ ମୁଠାଏ ଖାଇ ଆଂଶିକ ଭାବରେ ପେଟର ନିଆଁକୁ ଶାନ୍ତ କରିବାଲାଗି ଏଇ ଗାଆଁର ଲୋକମାନଙ୍କୁ ଦିନକୁ ବାରଘଣ୍ଟା ପରିଶ୍ରମ କରିବାକୁ ପଡ଼େ, ଏମାନେ ପୁଣି ଜୀବନ ଓ ସ୍ୱାସ୍ଥ୍ୟର ସୌନ୍ଦର୍ଯ୍ୟ ବା କ'ଣ ବୁଝିବେ ? ଆଉ ଆମେ ଆପଣାର ଖିଆଲ ଅନୁସାରେ ଏତେଟିକିଏ କ'ଣ କରିଦେଇ ସେମାନଙ୍କ ଠାରୁ ଏତେଗୁଡ଼ାଏ ଆଶା ବା କିପରି କରିବା ?

୨୧ । ୮ । ୪୫

ଆଜି କଟକ ଜେଲରୁ ଦୁଇଜଣ ବନ୍ଧୁଙ୍କଠାରୁ ଦୁଇଖଣ୍ଡ ଲମ୍ବା ଚିଠି ପାଇଛି । ପ୍ରଥମ ବନ୍ଧୁଜଣକ ମୋତେ ମୋ' କାର୍ଯ୍ୟରେ ଅନେକ ଉତ୍ସାହ ଦେଇଚନ୍ତି, ବିଭିନ୍ନ ପ୍ରକାରର ଟୀକା ଓ ସମାଲୋଚନାରେ ନ ହୁଡ଼ି ମୋତେ ମୋର ବିବେକ ଅନୁସାରେ କାମ କରିଯିବାକୁ ସେ କହିଚନ୍ତି । ମାତ୍ର ଦ୍ୱିତୀୟ ବନ୍ଧୁଙ୍କର ଚିଠି ଟିକିଏ ଭିନ୍ନ ରକମର । ଏଠାକୁ ଆସି ମୁଁ ମୋର ସଂକଳ୍ପ ଭୁଲିଚି, ସାଧାରଣ କ୍ଷେତ୍ରଲାଗି ପ୍ରସ୍ତୁତ ହେଉଥିବା ମୋର ଅନ୍ୟ ସାଥୀମାନଙ୍କ ଆଗରେ ମୁଁ ନୀଚ ଆଦର୍ଶ ଦେଖାଇଚି ବୋଲି ସେ ଅଭିଯୋଗ କରିଚନ୍ତି । ଶାନ୍ତିନିକେତନ

ଆସି ଅଧ୍ୟୟନ କରିବାଟାକୁ ସେ ଭବିଷ୍ୟତରେ ମୋର ସାଧାରଣ କ୍ଷେତ୍ରରେ କୌଣସି କାର୍ଯ୍ୟ କରିବା ଦିଗରେ ଏକ ବାଧ୍ୟ ବୋଲି ବର୍ଣ୍ଣନା କରିଚନ୍ତି । ଶୁଭାକାଙ୍‌କ୍ଷୀ ଏହି ବନ୍ଧୁଙ୍କର ସମାଲୋଚନା ମୋତେ ଆଦୌ ବିଚଳିତ କରି ଦେଇ ନାହିଁ । କାରଣ ମୁଁ ହଠାତ୍ ଓଡ଼ିଶା ଛାଡ଼ି ଏଠାକୁ ଏପରି ପଢ଼ିବାଲାଗି ଚାଲିଆସିବା ଦ୍ୱାରା ତାଙ୍କ ମନରେ ଯେଉଁ ଦୁଃଖ ହୋଇଚି, ବନ୍ଧୁ ହିସାବରେ ସେ ତାହା ହିଁ ପ୍ରକାଶ କରିଚନ୍ତି । ମାତ୍ର ମୋ'ପରି ଜଣେ ଅଯୋଗ୍ୟ ମଣିଷ ଖୁଆଡ଼ ଛାଡ଼ି ଚାଲିଆସିଲା ବୋଲି ସେମାନେ କାହିଁକି ଏଡ଼େ ଅସ୍ଥିର ହୋଇ ପଡ଼ୁଚନ୍ତି ? ସେମାନେ ଏପରି ଟାଣିଓଟାରି ମୋତେ କାହିଁକି ରାଜନୀତି ଭିତରେ ଭର୍ତ୍ତି କରିବାର ଚେଷ୍ଟା କରୁଚନ୍ତି ? ମୁଁ ଜାଣୁଚି ଯେ ରାଜନୀତି ଯଥେଷ୍ଟ ନୁହେଁ । ପୃଥିବୀରେ ଶାନ୍ତିପ୍ରତିଷ୍ଠା କରିବାକୁ ହେଲେ, ମଣିଷକୁ ମହୀୟାନ୍ କରିବାକୁ ହେଲେ ଏକ ଚୂଡ଼ାନ୍ତ ପରିବର୍ତ୍ତନ ଦରକାର, ମଣିଷର ମନୋରାଜ୍ୟରେ ମଧ୍ୟ ଗୋଟାଏ ବିପୁଳ ବିପ୍ଳବ ଆସିବା ଦରକାର । ତାହା ନ ହେଲେ କେବଳ ଶାସନତନ୍ତ୍ରର ପରିବର୍ତ୍ତନରେ ମଣିଷର ମୁକ୍ତି ନାହିଁ । ପୃଥିବୀର ଏହି ଗତ କେତେ ବର୍ଷର ଇତିହାସ ଆମକୁ ଅନ୍ତତଃ ଏତିକି ଶିକ୍ଷା ଦେଇପାରିବା ଉଚିତ । ରୁଷିଆ ଠାରୁ ଆମେ କେତେ କ'ଣ ଆଶା କରିଥିଲେ, ସମଗ୍ର ଜଗତ କେଡ଼େ ଆଗ୍ରହ ଓ ଆଶାରେ ରୁଷିଆ ଆଡ଼କୁ ଅନାଇ ରହିଥିଲା, ସଂସାରର କେତେ ଯୁବକ ରୁଷିଆକୁ କେନ୍ଦ୍ର କରି ମଣିଷଲାଗି ଏକ ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଦିନରାତି କେତେ ସ୍ୱପ୍ନ ଦେଖୁଥିଲେ । ମାତ୍ର ଆଜି ରୁଷିଆ ନିଜେ ପ୍ରମାଣ କରିଦେଇ ସାରିଲାଣି ଯେ କେବଳ ଏକ ରାଜନୀତିକ ପରିବର୍ତ୍ତନ ମଣିଷର ଜୀବନକୁ କଦାପି ବଦଳାଇ ଦେଇପାରିବ ନାହିଁ । ଅବଶ୍ୟ ରାଜନୀତିକ ପରିବର୍ତ୍ତନ ଦ୍ୱାରା ଅନ୍ୟାନ୍ୟ ପରିବର୍ତ୍ତନ ସକାଶେ ଏକ ଅନୁକୂଳ କ୍ଷେତ୍ର ନିଶ୍ଚୟ ପ୍ରସ୍ତୁତ ହେବ । ମାତ୍ର ସେହି କ୍ଷେତ୍ରଉପରେ ସାମୂହିକ ଜୀବନକୁ ସୁନ୍ଦର ଓ ମନୁଷ୍ୟୋଚିତ କରି ଗଢ଼ିବାର ଭାର ଏହି ମଣିଷ ହାତରେ । ସେହି ମଣିଷ ଯଦି ଉଚ୍ଚ ନ ହୁଏ, ତେବେ ସେ କେଉଁ ସୁନ୍ଦର ଜୀବନର ନିର୍ମାଣ ଲାଗି ଆପଣାକୁ ସମର୍ପଣ କରିଦେଇ ପାରିବ ? ମହାତ୍ମା ଗାନ୍ଧୀ ଓ ବିବେକାନନ୍ଦଙ୍କର ବାଣୀ ଅନ୍ତତଃ ଆମକୁ ଏହି ଶିକ୍ଷା ଦେଇପାରିବା ଉଚିତ ।

୨୩ । ୮ ୪୫

ଆଜି ଶ୍ରୀ ଅରବିନ୍ଦଙ୍କ ସମ୍ବନ୍ଧରେ ଛୋଟିଆ ବହିଟିଏ ପଢ଼ି ଶେଷ କରିଥିଲି । ତାଙ୍କ ବିଷୟରେ ମୁଁ ଆଗରୁ ଖୁବ୍ ବେଶୀ କିଛି ଜାଣି ନ ଥିଲି । ଅନ୍ୟମାନଙ୍କଠାରୁ ଶୁଣି ଅନେକ ସମୟରେ ମୁଁ ତାଙ୍କୁ ଜଣେ ପଳାୟନପନ୍ଥୀ ଓ କେବଳ ଆପଣାର ମୁକ୍ତିକାମୀ ବୋଲି ଧରି ନେଇଥିଲି । ଅନେକଙ୍କଠାରୁ ଶୁଣିଥିଲି ଯେ ସେ ଏହି ଯୁଦ୍ଧରେ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିବାଲାଗି ବି

କୁଆଡ଼େ ପରାମର୍ଶ ଦେଇଥିଲେ । ଏହି କଥାଟି କେତେଦୂର ସତ୍ୟ, ମୁଁ ସେକଥା ଜାଣେନା, ମାତ୍ର ଏଥିରେ କୌଣସି ସନ୍ଦେହ ନାହିଁ ଯେ ଅରବିନ୍ଦଙ୍କର ତପସ୍ୟା ଓ ସାଧନା ଆଜି ସାରା ଦେଶକୁ ଚମକାଇ ଦେଇଚି ।

ଥରେ ପଣ୍ଡିଚେରିଠାରେ ଶ୍ରୀ ରବୀନ୍ଦ୍ରନାଥ ତାଙ୍କୁ କହିଥିଲେ : You have the word and we are waiting to hear it from you; India will speak through your voice to the world. କିଏ କହିପାରେ ଯେ ଆପଣାର ତପସ୍ୟାପୀଠରୁ ଏକ ଅମୃତବାଣୀ ବହନ କରି ଶ୍ରୀ ଅରବିନ୍ଦ ବାହାରକୁ ଆସିବେ, ଜଗତକୁ ନୂତନ ମାର୍ଗ ଦେଖାଇବେ ଏବଂ ଏହି କ୍ଲାନ୍ତକ୍ଲିଷ୍ଟ ପୃଥିବୀରେ ଶାନ୍ତିପ୍ରତିଷ୍ଠା କରିବେ । ଶ୍ରୀ ଅରବିନ୍ଦଙ୍କୁ କେବଳ ରାଜନୀତି ସନ୍ତୁଷ୍ଟ କରି ପାରି ନ ଥିଲା, ତେଣୁ ଆପଣାର ସାଧନାମୟ ଜୀବନ ଆରମ୍ଭ କରିବା ଉଦ୍ଦେଶ୍ୟରେ ୧୯୧୦ରେ ସେ ପଣ୍ଡିଚେରି ଆସିଲେ । ଅବଶ୍ୟ ସେ ପ୍ରଥମେ ଭାବୁଥିଲେ ଯେ ଦେଶର ଅବସ୍ଥା ଟିକିଏ ବଦଳିଗଲେ ସେ ପୁଣି ରାଜନୀତି-କ୍ଷେତ୍ରକୁ ଫେରିଯିବେ । ମାତ୍ର ଆଉ ଏକ ବୃହତ୍ ସମ୍ପଦର ଅନୁସନ୍ଧାନ କରିବାବାଗି ସେ ସଂସାରକୁ ଆସିଥିଲେ, ତେଣୁ ଉପଯୁକ୍ତ କ୍ଷେତ୍ର ପାଇ ସେ ସେହି ଅନ୍ୱେଷଣ ଦିଗରେ ହିଁ ଆପଣାକୁ ବିକଶିତ କରାଇଲେ, ପୁଣି ରାଜନୀତିରେ ପ୍ରବେଶ କରିବାର ଇଚ୍ଛା ତ୍ୟାଗ କଲେ । ରାଜନୀତିକୁ ଫେରି ଆସିବାକୁ ତାଙ୍କୁ ସମସ୍ତେ କେତେ ଅନୁରୋଧ କଲେ, କଂଗ୍ରେସ ଅନୁଷ୍ଠାନର ସଭାପତି ପଦ ବି ତାଙ୍କୁ ଯଚାଗଲା । ଶେଷରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ପାଖକୁ ଗୋଟିଏ ଚିଠିରେ ସେ ଆପଣାର ଇଚ୍ଛା ବ୍ୟକ୍ତ କରି ଲେଖିଥିଲେ : Dear Chitta, I would not enter the world of action with my older ideas and inspirations. I am in search of a higher goal, when I reach that, I will begin my work. କିଏ ଜାଣେ, କେଉଁଦିନ ସେ ସମୟ ଆସିବ, ଯେତେବେଳେ ଶ୍ରୀ ଅରବିନ୍ଦ ଆପଣାର ସାଧନାରେ ପରିପୂର୍ଣ୍ଣତା ଲାଭ କରିବେ ଓ ଦେଶକୁ ତାଙ୍କର ମହାନ ଦାନ ଦେଇପାରିବେ !

ଶ୍ରୀ ଅରବିନ୍ଦ ଆପଣାର ସ୍ତ୍ରୀ ଶ୍ରୀମତୀ ମୃଣାଳିନୀ ଦେବୀଙ୍କ ପାଖକୁ ଯେଉଁ ଚିଠିସବୁ ଦେଇଥିଲେ, ସେଇଥିରୁ ସ୍ପଷ୍ଟ ହୋଇଯିବ ସେ କାହିଁକି ରାଜନୀତି ଛାଡ଼ି ଯୋଗସାଧନା କଲେ : I have three insanities. First, I firmly believe that all the qualities, the genius, the higher learning and education, all the wealth that is given to me, they are all His; that which is needed for the upkeep of the family and that which is an imperative necessity should alone be kept for personal use, the rest ought to be given back to God. If I spend all for my ownself, my comforts and luxuries, then I am really a thief...... In these hard days the

country is seeking alms at my doors, I have thirty crores of brothers and sisters in this country, many of them are dying of starvation, most of them are carrying on a sad and wretched existence. We have to do good to them and be useful to them. Do you agree to be an active partner with me in all this ?... The second insanity is on me now. It is this. I must see God face to face, at all costs. The religion of to-day which consists of taking His name...., of praying before assemblies, in showing off what a mighty person I am,—I do not want these. If God is there then there must be a path or other to know His existence, to see Him. However strenuous and untractable that path may be, I am resolved to go along that. Hinduism says that in ones own body and mind the path is. It has provided rules for the journey. I have started following them. Within a month I could feel that the words of Hinduism are not false. I have realized all the signs that it speaks of. It is now my desire to take you along that path..... The third madness is this......many people think of the motherland as a dead something, a cluster of fields and forests, rivers and mountains. I know my country as my Mother I revere her, I worship her.

୩୦ । ୮ । ୪୫

ପ୍ରତ୍ୟେକ ମଣିଷ ମହାପୁରୁଷ ନୁହେଁ । ପ୍ରତ୍ୟେକର ଜୀବନକାହାଣୀ ହୁଏତ ମହାପୁରୁଷର ଜୀବନକାହାଣୀ ପରି ମହତ୍ତ୍ୱପୂର୍ଣ୍ଣ ବି ନୁହେଁ । ତଥାପି ପ୍ରତ୍ୟେକ ମଣିଷର ଜୀବନ ତା' ଆପଣା ପାଖରେ ସବୁଠାରୁ ଅଧିକ ଏକ ମୂଲ୍ୟବାନ୍ ସମ୍ପଦ । ଆପଣା ଜୀବନର ଉତ୍ଥାନପତନ, ଆଲୋକ ଓ ଅନ୍ଧାରକୁ ଅତି ଆଦରରେ ଓ ଅତି ଯତ୍ନସହକାରେ ଲିପିବଦ୍ଧ କରି ରଖିବା ଉଚିତ । ତଦ୍ୱାରା ଅନ୍ତତଃ ଆପଣା ଆଗରେ ଆପଣା ଜୀବନର ରାସ୍ତାଟି କ୍ରମେ ଅଧିକ ପରିଷ୍କାର ହୋଇଯାଏ, ଜୀବନର ଲକ୍ଷ୍ୟଗୁଡ଼ିକୁ ଘୋଡ଼ାଇ ରଖିଥିବା କୁହେଳିକାର ଜାଲମାନ କ୍ରମେ ପରିଷ୍କାର ହୋଇଯାଏ । ସେଇଥିରୁ ମଣିଷ ଶିଖେ, ସେଇଥିରୁ ସେ ଛୋଟରୁ ବଡ଼ ହୁଏ । ଗ୍ରନ୍ଥଲବ୍ଧ ଜ୍ଞାନଠାରୁ ଆପଣା ଜୀବନର ବିଭିନ୍ନ ଅନୁଭୂତି ଓ ଅଭିଜ୍ଞତା ହିଁ ଆପଣା ଉପରେ ଅଧିକ ପ୍ରଭାବ ପକାଇଥାଏ । ନିଜର ବ୍ୟକ୍ତିଗତ ଜୀବନକ୍ଷେତ୍ରରେ ପ୍ରତ୍ୟେକ ମଣିଷ ହେଉଚି ଜଣେ ଜଣେ ମହାପୁରୁଷ । ଆପଣାର କର୍ତ୍ତବ୍ୟବୁଦ୍ଧି ଓ ବିବେକ ହିଁ ଯେକୌଣସି ମହାତ୍ମାର ଜୀବନାଦର୍ଶ ବା ଉପଦେଶ ଅପେକ୍ଷା ଆପଣାକୁ ଅଧିକ ସାହାଯ୍ୟ କରିଥାଏ ।

ମୋର ଏହି ଡାଏରୀ ଲେଖିବାର ଅଭ୍ୟାସ ଯେ ମୋତେ କେତେଦୂର ଉପକୃତ କରାଇଛି, ମୁଁ ସେକଥା ଭଲକରି ଜାଣେ । ସେଥିଲାଗି ଡାଏରୀଭିତରୁ ବିଗତ ଦିନର କେତୋଟି ପୃଷ୍ଠା ପଢ଼ିବସିବା ସମୟରେ ମୋ' ଆଖିରେ ବେଳେ ବେଳେ ଲୁହ ଭରିଆସେ । ଏମିତି ମୁଁ କେତେଥର କାନ୍ଦିଛି, ଖାଲି ଉପରକୁ ଚାହିଁ ଚାହିଁ ମୁଁ କେତେ ରାତି କଟାଇଦେଇଛି । ଡାଏରୀ ପଢ଼ୁଥିବାବେଳେ ହିଁ ମୁଁ ମୋ' ଜୀବନର ପ୍ରତ୍ୟେକ ପାହାଚଟିକୁ ଅତି ଆପଣାର ବୋଲି ଅନୁଭବ କରିଥାଏ । ଯେତେବେଳେ ନାନା ପ୍ରକାର ଦୁର୍ବଳ ଭାବନା ଆସି ମନକୁ ବିଚଳିତ କରେ, ମନରୁ ବଳ ଓ ସାହସ ତୁଟିଯାଏ, ବିପଦ ଓ ପରାଭବର ଚିନ୍ତାରେ ହୃଦୟ ବିକଳ ହୋଇପଡ଼େ, ସେତେବେଳେ ଏହି ଡାଏରୀର ପୃଷ୍ଠାଗୁଡ଼ିକ ହିଁ ମୋତେ ପୁଣି ଆପଣା ଘରକୁ ଲେଉଟାଇ ଆଣେ ।

୩୧ । ୮ । ୪୫

ଶ୍ରୀ Upton Sinclair ଙ୍କ ଲେଖା What God Means To Me ବହିଟା ପଢ଼ିଥିଲି । ଆତ୍ମବିଶ୍ୱାସ ଓ ଈଶ୍ୱରଙ୍କ ଉପରେ ଅଟଳ ଭକ୍ତି ରଖି ମଣିଷ କିପରି ସର୍ବଦା ସୁସ୍ଥ ରହିପାରେ, ଲେଖକ ତାହାର ଅନେକ ଦୃଷ୍ଟାନ୍ତ ଦେଇଚନ୍ତି । ଆମେରିକାରେ Christian Scientists ବୋଲି ଗୋଟିଏ ଗୋଷ୍ଠୀ ରହିଚି, ଯେଉଁମାନେ କୌଣସି ଔଷଧ ପ୍ରୟୋଗ ନ କରି ମଧ୍ୟ କେବଳ ପ୍ରାର୍ଥନା ଓ ମନର ଦୃଢ଼ତା ଦ୍ୱାରା କଠିନ ଓ ଅସାଧ୍ୟ ରୋଗମାନ ଭଲକରି ପାରୁଚନ୍ତି । ସିନ୍‌କ୍ଲେଆର୍ ନିଜେ ଲେଖିଚନ୍ତି ଯେ ସେ ବହୁକାଳ ଧରି ନିଦ୍ରା-ହୀନତା ରୋଗ ଭୋଗି ଆସୁଥିଲେ । ଦିନମାନର କାର୍ଯ୍ୟବ୍ୟସ୍ତତା ପରେ ବିଛଣାକୁ ଗଲାମାତ୍ରକେ ନାନାରକମ ଭାବନାର ଅଳିଆ ଓ ଝାଟୁଆ ଆସି ତାଙ୍କର ମନକୁ ଅଣନିଃଶ୍ୱାସୀ କରି ରଖୁଥିଲା ଓ ସେ ମୋଟେ ଶୋଇପାରୁ ନ ଥିଲେ । ପ୍ରଧାନତଃ ଭଗବତ୍ ପ୍ରାର୍ଥନା ଦ୍ୱାରା ହିଁ ସେ ଆପଣାକୁ ଏହି ରୋଗରୁ ମୁକ୍ତ କରି ପାରିଥିଲେ । ଏହିପରି ଗୋଟିଏ ବହି ପଢ଼ି ମନେହେଉଚି, ବିଜ୍ଞାନ ଯେତେ ଯେତେ ଆଗକୁ ଯାଉଚି, ମଣିଷ ଭଗବାନଙ୍କର ସେତିକି ସେତିକି ନିକଟବର୍ତ୍ତୀ ହୋଇଆସୁଚି । ପ୍ରଥମ ଯୁଗରେ ମଣିଷ ଅଜ୍ଞାନ ଓ ଅନ୍ଧ ଥିଲା । ତେଣୁ ଅନ୍ଧବିଶ୍ୱାସକୁ ଧର୍ମ ବୋଲି ଭାବି ସେ ନାନା କୁସଂସ୍କାର ଭିତରେ ବୁଡ଼ିରହିଥିଲା । ମାତ୍ର ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମଣିଷ ଅନେକ ସତ୍ୟ ଆବିଷ୍କାର କରିପାରିଲା । ପ୍ରକୃତି ଉପରେ ନାନା ବିଜୟ ହାସଲ କରି ସେ ମନୋରାଜ୍ୟର ନାନା ରହସ୍ୟକୁ ମଧ୍ୟ ଉଦ୍‌ଘାଟନ କରିବାକୁ ବାହାରିଲା । ଏହାଫଳରେ ନାନା ନୂତନ ରାଜ୍ୟ ତା'ର ଗୋଚର ହୋଇପାରିଲା । ଆଜି ପୃଥିବୀର ଏକାଧିକ ବୈଜ୍ଞାନିକ ଅନୁଭବ କଲେଣି ଯେ ଏହି ପ୍ରକୃତି ଅର୍ଥାତ୍ ତଥାକଥିତ ଜଡ଼ ସଂସାରର ଅନ୍ତରାଳରେ ଏକ ମହାନ୍ ଶକ୍ତି ବା ବିଶ୍ୱବିଧାୟକ ଚେତନା କାର୍ଯ୍ୟ କରୁଚି ଓ ତାହାରି ନିୟମରେ ସମସ୍ତ ଜଗତ ନିୟନ୍ତ୍ରିତ

ହେଉଛି, ଏହି ଶକ୍ତି ବା ଏହି ଚେତନା ଭଗବାନ୍ ବ୍ୟତୀତ ଆଉ କ'ଣ ହୋଇପାରେ ?

୬ । ୯ । ୪୫

ଆଜି ସନ୍ଧ୍ୟାବେଳେ ଭୁବନଡାଙ୍ଗା ଗାଆଁକୁ ଯାଇଥିଲି । ଗାଆଁ ସ୍କୁଲର ମାଷ୍ଟରଙ୍କ ସହିତ କଥାବାର୍ତ୍ତା ହେଲି । ସେ ମୁସଲମାନ, ମାତ୍ର ତାଙ୍କ ଭିତରେ କୌଣସି ସାମ୍ପ୍ରଦାୟିକ ଭାବ ନାହିଁ । ଗାଆଁର ସବୁପିଲାଙ୍କୁ ପାଠ ପଢ଼ାଇବାର ଦାୟିତ୍ୱ ତାଙ୍କ ଉପରେ ରହିଚି, ମାତ୍ର ଏହି ମହରଗ ସମୟରେ ମଧ୍ୟ ତାଙ୍କୁ ମାସିକ ବାରଟଙ୍କା ବେତନ ମିଳୁଚି । ତାହାରି ଭିତରୁ ସେ ନିଜେ ଖାଇବେ, ଚଳିବେ, ଘରକୁ ମଧ୍ୟ ଟଙ୍କା ପଠାଇବେ । ଯିଏ ଦେଶର ପିଲାଙ୍କୁ ତିଆରି କରୁଚି, ସେ ଯଦି ଏମିତି ଭିକ ମାଗିଲାପରି ପେଟ ପୋଷିବ, ତେବେ ଦେଶରେ କୋଡ଼ିଏଟା ବିଶ୍ୱବିଦ୍ୟାଳୟ ଖୋଲି ଆମର କି ଲାଭ ହେବ ? ଗାଆଁପିଲାର ପ୍ରଥମ ଶିକ୍ଷକ ଯେପର୍ଯ୍ୟନ୍ତ ନିଜକୁ ଏହି ସଂସାରରେ ନିରାପଦ ଓ ନିଶ୍ଚିନ୍ତ ମନେ-କରି ନାହିଁ, ଖାଇବା ଚିନ୍ତାରେ ଗାଆଁ ଲୋକଙ୍କ ଦୁଆରେ ଟିଉସନ୍ ଖୋଜି ବୁଲୁଚି, ସିଏ ଗାଆଁପିଲାଙ୍କୁ ଆତ୍ମବିଶ୍ୱାସୀ କରି ଗଢ଼ିପାରିବ କୁଆଡ଼ୁ ?

ଏହିଠାରେ ହିଁ ଆମଦେଶରେ ପ୍ରଚଳିତ ରହିଥିବା ଶିକ୍ଷା ପଦ୍ଧତିର ପ୍ରଥମ ଓ ପ୍ରଧାନ କଳଙ୍କ ନିହିତ ରହିଚି । ଅନେକ ସମୟରେ ଆମେ ହୁଏତ ଭାବୁ ଯେ ଗାଆଁ ସ୍କୁଲର ପିଲାଙ୍କୁ ପାଠ ପଢ଼ାଇବା ବଡ଼ ସହଜ । କଲେଜରେ ପାଠ ପଢ଼ାଇବା ବଡ଼ କଷ୍ଟ । ମାତ୍ର ଏଇଟା ବିଲକୁଲ ଓଲଟା କଥା । ଗାଆଁ ପ୍ରାଇମେରୀ ସ୍କୁଲରେ ପାଠ ପଢ଼ିଲାବେଳେ ପିଲାର ମନ କଞ୍ଚା ଥାଏ, ସେତେ-ବେଳେ ଉଚିତ ଶିକ୍ଷା ଓ ଉଚିତ ମାର୍ଗପ୍ରେରଣା ନ ପାଇଲେ ପିଲାର ଜୀବନ ଗୋଟାଏ ଭୁଲ ଛାଞ୍ଚରେ ପଡ଼ିଯାଏ । ଭବିଷ୍ୟତରେ ତାକୁ ପୁଣି ସଜାଡ଼ିବା ବଡ଼ କଷ୍ଟକର ହୋଇଯାଏ । ତେଣୁ ଦେଶର ଯୋଗ୍ୟତମ ଶିକ୍ଷାବିତ୍‌ମାନେ ପ୍ରାଇମେରୀ ସ୍କୁଲକୁ ହିଁ ଆସିବା ଦରକାର । ମାତ୍ର ଆମଦେଶରେ ମାଇନର ପାସ୍ କରି ପଇସା ଅଭାବରୁ ଯିଏ ଆଗକୁ ପାଠ ପଢ଼ି ନ ପାରୁଚି, ପ୍ରଧାନତଃ ସେଇ ପ୍ରାଇମେରୀ ସ୍କୁଲର ମାଷ୍ଟର ହୋଇ ଆସୁଚି । ମାତ୍ର ଏଣେ ହଜାର ହଜାର ଟଙ୍କା ଖରଚ କରି କଲେଜର ଅଧ୍ୟାପକମାନଙ୍କୁ ଅଧିକ ଦକ୍ଷ କରାଇବାଲାଗି ବିଦେଶକୁ ପଠାଯାଉଚି, ଯେଉଁମାନେ କି ତେଣୁ ଫେରିଆସି ଦେଶଲାଗି ବିଶେଷ କିଛି କରି ପାରୁନାହାନ୍ତି । ପ୍ରାଇମେରୀ-ସ୍କୁଲର ଶିକ୍ଷକମାନଙ୍କୁ ଆଜି ସମସ୍ତେ ସାଧାରଣତଃ ଏକ ଘୃଣାଦୃଷ୍ଟିରେ ଦେଖୁଚନ୍ତି, ତାଙ୍କୁ ସମସ୍ତେ ନୀଚ ସ୍ତରର ଏକ ସାନ ଗ୍ଭକିରିଆ ବୋଲି ହିଁ ଭାବୁଚନ୍ତି । ତେଣେ କଲେଜର କୋଠାଘରେ ଯେଉଁ ଅଧ୍ୟାପକ ନୋଟ୍ ଡାକିବା ବ୍ୟତୀତ ପ୍ରକୃତରେ ଆଉ କିଛି କରୁ ନାହିଁ, ତାଙ୍କୁ ସମସ୍ତେ ଜ୍ଞାନୀ ଓ ଗୁଣୀ ବୋଲି କହି ସମ୍ମାନ ଦେଖାଉଚନ୍ତି । ମୋର ତ ମତ

ଯେ ଯିଏ ପ୍ରାଇମେରୀ ସ୍କୁଲର ଶିକ୍ଷକ ହେବାକୁ ଯାଉଛି, ତାହାକୁ ହିଁ ଉଚ୍ଚତର ଶିକ୍ଷାଲାଗି ବିଦେଶକୁ ପଠାଯିବା ଉଚିତ ।

୧୩ । ୯ । ୪୫

ସନ୍ଧ୍ୟାବେଳେ ଏଠାରେ ପଢ଼ୁଥିବା ଦୁଇଜଣ ଓଡ଼ିଆ ଛାତ୍ରଙ୍କ ସହିତ କଥାବାର୍ତ୍ତା ହେଉଥିଲା । ସେମାନଙ୍କୁ ଅନ୍ୟମାନେ ଅନେକ ସମୟରେ କିପରି ଛୋଟଆଖିରେ ଦେଖୁଚନ୍ତି ସେମାନେ ମୋତେ ସେଇକଥା କହିଲେ । ମୁଁ ଭାବିଲି, ଶାନ୍ତିନିକେତନ ପରି ଗୋଟିଏ ଜାଗାରେ ଯେଉଁଠାରେ କି ଭାରତ-ବର୍ଷର ପ୍ରତ୍ୟେକ ପ୍ରାନ୍ତରୁ ଛାତ୍ର ଓ ଅଧ୍ୟାପକମାନେ ଆସି ରହିଚନ୍ତି, ଆମର ଦୁଇଟି କର୍ତ୍ତବ୍ୟ କରିବାର ଅଛି । ଆପଣାକୁ ସଚ୍ଚା ଓଡ଼ିଆ ବୋଲି ପ୍ରମାଣ ଦେବାକୁ ହେଲେ ପ୍ରଥମେ ମୁଁ ନିଜେ ଯଥାସମ୍ଭବ ସଙ୍କୀର୍ଣ୍ଣତାରୁ ମୁକ୍ତ ରହିବି, ଭାଇ ପରି ସମସ୍ତଙ୍କ ସାଙ୍ଗରେ ମିଶିବି, ସମସ୍ତଙ୍କଠାରୁ ଶିଖିବି । ଓଡ଼ିଆ ଯେ ବିଶ୍ୱମାନବର ପ୍ରାଣମୟ ରୂପର ଏକ ଅଙ୍ଗସ୍ୱରୂପ, ମୁଁ ଏଇକଥା ପ୍ରମାଣିତ କରିବି । ଦ୍ୱିତୀୟତଃ, ମୁଁ ଯେ ଓଡ଼ିଆ, ସେଥିଲାଗି ମୁଁ ଗର୍ବ ଅନୁଭବ କରିବି, ଉତ୍କଳର ବନ ଗିରି ନଦୀ ଓ ପ୍ରସ୍ରବଣର ଶୋଭା ମୋର ଅତି ଆପଣାର ସମ୍ପଦ ହୋଇ ରହିବ, ମୁଁ ମୋର ମାତୃଭାଷାକୁ ମାଆ ପରି ଭଲ ପାଇବି; ଏବଂ ଯେଉଁମାନେ, ଯେଉଁ ଦରିଦ୍ରମାନେ ଓଡ଼ିଆ ଜନଗଣର ସର୍ବପ୍ରଧାନ ଅଂଶ, ସେମାନଙ୍କର କଲ୍ୟାଣ ହେବାଭଳି କୌଣସି କାର୍ଯ୍ୟ କରିବାକୁ ମୁଁ ନିଜକୁ ପ୍ରସ୍ତୁତ କରିବି । ସେମାନଙ୍କ ଭିତରେ ଓଡ଼ିଆତ୍ୱ ତଥା ମାନବତ୍ୱର ଗୌରବମୟ ଅନୁଭୂତି ଆଣିବା ଲାଗି ମୁଁ ଯଥାସାଧ୍ୟ କାମ କରିବି । ମାତ୍ର ଅନ୍ୟପରି ସଙ୍କୀର୍ଣ୍ଣ ହୋଇ, ଯଥାର୍ଥ ଓଡ଼ିଶା ଓ ଓଡ଼ିଆକୁ ଭୁଲି କେବଳ ଓଡ଼ିଆତ୍ୱର ଅଭିମାନ କଲେ ମୋର ଆପଣାକୁ ଓଡ଼ିଆ ବୋଲାଇବାର ମଧ୍ୟ ଆଉ କୌଣସି ଗୌରବ ରହିବ ନାହିଁ । ଓଡ଼ିଆ ହୋଇପାରିବା ତ ଦୂରର କଥା ମୁଁ ମଣିଷ ପଦବାଚ୍ୟ ବି ହୋଇପାରିବି ନାହିଁ । ଟ୍ରାମ୍‌ରେ, ବସ୍‌ରେ ବା ରେଳଗାଡ଼ିରେ ଗଲାବେଳେ ଆମେ ଓଡ଼ିଆ ଲକ୍ଷ୍ମୀର ସୁନାପୁଅମାନେ ଓଡ଼ିଆ କୁଲିକୁ ଘୃଣା କରୁ, ତାକୁ ରେଳଡ଼ବାର ଚଟାଣ ଉପରେ ବି ବସିବାକୁ ଦେଉ ନାହିଁ । ତେବେ ଆମେ ଆପଣାକୁ କାହିଁକି ଓଡ଼ିଆ ବୋଲି କହିବା ?

୧୫ । ୯ । ୪୫

ଯେତେବେଳେ ମୁଁ ଅକାରଣରେ ମୋର ସମୟ ଅତିବାହିତ କରି ଦେଉଚି, ମୋର ମନ ବଡ଼ ଅସ୍ଥିର ହୋଇଉଠୁଚି । ଯେପରି ଭିତରୁ କିଏ ଲୁହା ଆଙ୍କୁଶର ଭୁଷା ମାରି ମୋତେ ଖାଲି ଆଗକୁ ଯିବାକୁ କହୁଚି । ଅଳସ ମେଳରେ ହସି ଖେଳି ମୁଁ ଯେତେବେଳେ କିଞ୍ଚିତ୍ ଆଶ୍ୱସ୍ତି ପାଇବାକୁ ଯାଉଚି, କିଏ ଯେପରି ମୋ ଭିତରୁ ଗର୍ଜନ କରି ଉଠିଲା ପରି କହିଉଠୁଛି 'ନା—ଏଠି ନୁହେଁ,

ଆହୁରି ଆଗକୁ !' ସମସ୍ତ ଜନସମାଜ, ସମସ୍ତ ସଂସାରର ଆମୋଦପ୍ରମୋଦ ଓ ହସଖେଳକୁ ପଛରେ ପକାଇ ଦେଇ କେବଳ ବାଟ ଚାଲିବାକୁ ହିଁ ଯେପରି କେହି ମୋତେ ପାଗଳ କରି ରଖିବାକୁ ଚାହୁଁଚି । ଅନେକ ସମୟରେ ସେହି ମୋତେ କନ୍ଦାଉଚି, ଦାରୁଣ ବିଷାଦ ଭିତରେ ମୋତେ ନିର୍ବାକ କରିଦେଉଚି, ପୁଣି ଅନେକ ସମୟରେ ସେଇ ମୋତେ ସ୍ନେହଭରା ହାତର ସ୍ପର୍ଶ ଦେଇ, ମୋର କପାଳରୁ ଝାଳ ଓ ଆଖିରୁ ଲୁହ ପୋଛିଦେଇ ମୋତେ ପୁଣି ସତେଜ କରି ଦେଉଚି । ମୋର ମନ ଯେତେବେଳେ ଦୁର୍ବଳ ହୋଇଯାଉଚି, ନାନା ରକମର ପ୍ରତୀତ ସତ୍ୟର ଝଲକରେ ମୁଁ ଅସଲ କଥାଗୁଡ଼ାକୁ ଯଥାର୍ଥ ମୂଲ୍ୟ ଦେଇ-ପାରୁ ନାହିଁ, ସେତିକିବେଳେ କିଏ ଯେପରି ମୋର ମନର ଗଭୀର ଗହନ ଭିତରେ କେତେ ଆଶା ଓ ବଳ ଆଣି ଭରିଦେଉଚି, ଠିକ୍ ସେତିକିବେଳେ ହିଁ ମୋ' ଭିତରେ ଜୀବନ ଓ ଜ୍ୟୋତିର ସ୍ପନ୍ଦନମୟ ବଂଶୀ ବାଜି ଉଠୁଚି । ସେଥିଲାଗି ଅନେକ ସମୟରେ ମଣିଷ ମହଲରୁ ଦୂରକୁ ପଳାଇ ଯାଇ ମୁଁ ଆପଣାର ମନକୁ ଓଜନ କରି ଭାରି ଶାନ୍ତି ପାଉଚି । ସେଥିଲାଗି ମଣିଷର ଭିଡ଼ ଭିତରେ ମୁଁ ଆପଣାକୁ ଲୀନ କରି ଦେଇପାରୁ ନାହିଁ, ସତେଯେପରି ମୋର ମନ କୁଆଡ଼େ ଲଗାମ ଛିଡ଼ାଇ ବୁଲିବାରେ ଲାଗିଚି । ମୁଁ ନିଜେ ମଧ୍ୟ ତା'ର ଠିକଣା ପାଉ ନାହିଁ । ଅନେକ ସମୟରେ ଏହି ଗୋଡ଼ିମାଟି, ଗଛପତ୍ର, ଆକାଶ ଆଉ ମେଘଭିତରେ ସେ ଅଦ୍ଭୁତ ରୂପ ଓ ଅଦ୍ଭୁତ ଭାଷାର ସୃଷ୍ଟି କରିବାରେ ଲାଗିଚି । ମଣିଷର ଆଖି ଉପରେ ସେ କେତେ ରକମର ବିସ୍ମିତ କୁହୁକ ଆଙ୍କି ଆଙ୍କି ଚାଲିଚି । ଯେପରି ସେଇ ମୋର ସବୁ, ସେଇ ସ୍ୱାଧୀନତା ଟିକକ ଲାଗି ହିଁ ଯେପରି ମୁଁ ଏହି ଜଗତକୁ ଆସିଚି ! ଏହି ଜଗତ ଭିତରେ ଯେପରି ମୁଁ କିଛିହେଲେ ଚାହେ ନାହିଁ, କେବଳ ଆପଣାକୁ ଚାହେ, ନିଜର ସ୍ୱଚ୍ଛ ଦର୍ପଣ ଉପରେ ଯେପରି ଆପଣାର ସ୍ୱଚ୍ଛ ଛାଇଟିକୁ ଦେଖିବାକୁ ଚାହେ, ଅସ୍ଥିର ଭିଡ଼ ଓ ଅଡୁଆ ଭିତରେ କେବଳ ନିଜକୁ ହିଁ ଚିହ୍ନିବାକୁ ଚାହେ, ଆପଣା ପଥଯାତ୍ରାର ପବିତ୍ର ଧୂଳି ବୋଳିହୋଇ ଯେପରି ଖାଲି ଅଭିଭୂତ ହୋଇ ରହିବାକୁ ଚାହେ । ସମସ୍ତ ମଣିଷଟାକୁ ହିଁ ମୁଁ ଭଲ ପାଇବାକୁ ଚାହେ । ମଣିଷର ଚମ, ମାଂସ, ହାଡ଼, ଟଙ୍କାପଇସା, ତା'ର ଆଡ଼ମ୍ବର ବା ଅଭିମାନକୁ ନୁହେଁ, ମାତ୍ର ତା'ର ଜୀବନ-ଗହନର ମଝିରେ ଥିବା ମନ୍ଦିର ଭିତରେ ତା'ର ଯେଉଁ ଯଥାର୍ଥ ବ୍ୟକ୍ତିତ୍ୱଟି ହୀରା ହୋଇ ଜଳୁଚି, ସବୁରି ରାଜ୍ୟ ଭିତରେ ମୁଁ ସେହି ବ୍ୟକ୍ତିତ୍ୱଟିକୁ ହିଁ ଆବିଷ୍କାର କରିବାକୁ ଚାହେ । ଆପଣାକୁ ଚିହ୍ନିବାର ଉଦ୍ୟମ କରି ଯେପରି ମୁଁ ଏତେ ଆନନ୍ଦ ପାଉଚି, ମୁଁ ସେହିପରି ଚାହୁଚି ଯେ ସମସ୍ତେ ବି ନିଜନିଜକୁ ଚିହ୍ନନ୍ତୁ, ସମସ୍ତେ ସେହିପରି ଆନନ୍ଦ ପାଆନ୍ତୁ । ସେଥିଲାଗି ଯେତେବେଳେ ମୁଁ କୌଣସି ମଣିଷକୁ ବାକ୍‌ଚାତୁରୀ, ବେଶଭଙ୍ଗୀ ଓ ଟଙ୍କାପଇସା ଭିତରେ ଲାଖି ରହିଯିବାର ଦେଖୁଚି, ମୋ'ଭିତରୁ ସେତିକିବେଳେ ଯେପରି କିଏ ଘୋର ପ୍ରତିବାଦ କରିଉଠୁଚି ।

୧୬ । ୯ । ୪୫

ହେ ବିଶ୍ୱଦେବତା, ହେ କର୍ମତୀର୍ଥର ଅଧିଷ୍ଠାତା, ଆଜି ତୁମ ଜଗତର ଗୋଟିଏ କ୍ଷୁଦ୍ର ମଣିଷ ମୁଁ, ତୁମ ସିଂହାସନର ପାହାଚତଳେ ବସି ଆକୁଳଭାବରେ ପ୍ରାର୍ଥନା କରୁଚି, ତୁମେ ମୋତେ ଶକ୍ତି ଦିଅ, ମୋର ହୃଦୟ ଭିତରେ ସିଂହପରି ବଳ ଦିଅ । ମୁଁ କିଛି ଗୁହେ ନାହିଁ; ନାମ, ଯଶ, ଖ୍ୟାତି ଓ ସମ୍ମାନକୁ ପଛରେ ପକାଇଦେଇ ମୁଁ ତୁମରି ଦୁଆରକୁ ହିଁ ଧାଇଁଆସିଚି, ତୁମେ ମୋତେ କଠିନ ବଜ୍ରାଘାତରେ ଶକ୍ତ କରିଦିଅ, କଠୋର କଷ୍ଟଶିକ୍ଷାରେ ମୋତେ ଶୁଦ୍ଧ କରିଦିଅ, ମୋର ସକଳ ଅଭିମାନ ଓ ଆଡ଼ମ୍ବରକୁ ତୁମେ ଚୂନା କରିଦିଅ । ମୁଁ କିଛି ମାଗିବାକୁ ଆସି ନାହିଁ, ତୁମରି ରଥ ପାଖରେ ଆପଣାକୁ କେବଳ ସମର୍ପଣ କରିବାକୁ ଆସିଚି । ମୁଁ ତୁମରି ମଣିଷକୁ ଭଲପାଇବି, ତୁମର ଏହି ମାନବସୃଷ୍ଟି ମୋ' ପାଇଁ ମର୍ତ୍ତ୍ୟରେ ଦେବତା ହୋଇ ରହିବ । ମୋ'ର ପଥ ଉପରେ ବିଶ୍ୱଫୁଲର ପରାଗ ଅଜାଡ଼ିହୋଇ ପଡ଼ିବ, ତୁମର ପକ୍ଷୀ ମୋ'ଲାଗି ପ୍ରତ୍ୟେକ ପ୍ରଭାତରେ ସଙ୍ଗୀତ ଗାଇବ, ମୋର ପୃଥିବୀଭରି ଓ ମୋ'ର ଯାତ୍ରାରେ ଶୁଭକାମନା ଜଣାଇ ତୁମର ଶଙ୍ଖ ବାଜିଉଠିବ ।

୧୭ । ୯ । ୪୫

ଆଜି ଏକାବେଳକେ ସବୁ କାମ ବନ୍ଦ । ସବୁ ରୁଟିନ୍ ଏକାବେଳକେ ବଦଳିଯାଇଚି । ରାତି ପାହିବା ଆଗରୁ ଆମେ ଛାତ୍ରାବାସରୁ ବାହାରି ପଡ଼ିଥିଲୁ । ବାଟରେ ସୂର୍ଯ୍ୟୋଦୟ ଦେଖାହେଲା । ନିଜନିଜର ଥଳିଟିମାନ ଧରି ପାଞ୍ଚ ଛଅମାଇଲ ବାଟ ଗ୍ଲିବାପରେ ଆମେ ଗୋଟିଏ ନଈକୂଳରେ ପହଞ୍ଚିଲୁ । ସେଇଠି ଆମର ସମସ୍ତ ଦିନଟି କଟିଥିଲା । ଖିଆପିଆ, ହସଖେଳ, ତା'ପରେ ଜୀବନସମ୍ବନ୍ଧୀ ନାନାପ୍ରକାରର ପ୍ରଶ୍ନୋତ୍ତର ଭିତରେ କିପରି ଭାବରେ ଯେ ସମୟ କଟି ଯାଉଥିଲା, ଆମେ କେହି ସେକଥା ଜାଣିପାରୁ ନ ଥିଲୁ । ଆଜି ଦିନଟାସାରା କେବଳ ଆନନ୍ଦରେ କଟିଗଲା,—ଗୀତ ଗାଇ, ହସି, ଖେଳି । ମଣିଷ ଯେ ଆନନ୍ଦ ଦରକାର କରେ, ଆଜି ମୁଁ ସେକଥା ଆହୁରି ସ୍ପଷ୍ଟଭାବରେ ଅନୁଭବ କରିପାରିଲି । ଏ ଜୀବନ ମୁକ୍ତି ଗୁହେ, ମନ ଗୁହେ ଆପଣାର ସୀମାବଦ୍ଧ ପ୍ରୟୋଜନର ଜାଲଭିତରୁ ବାହାରିଆସି ଆକାଶ ଓ ଅରଣ୍ୟାନିର ଅନନ୍ତ ଶୋଭାଭିତରେ ଆପଣାକୁ ହଜାଇ ଦେବାକୁ । ଯିଏ ଆଜି ମଣିଷକୁ ଏହି ଆନନ୍ଦରୁ ବଞ୍ଚିତ କରି ରଖିଚି, ସେଇ ହେଉଚି ମଣିଷର ସବୁଠାରୁ ବଡ଼ ଶତ୍ରୁ । ଗୋଟାଏ ଅର୍ଥନୈତିକ ବିଷକୁଣ୍ଡ ଭିତରେ ଜଗତଟାକୁ ବୁଡ଼ାଇରଖି ଯେଉଁ ଅସୁର ଆଜି ଉନ୍ମତ୍ତ ହୋଇ ନାଚୁଚି, ମଣିଷକୁ ଉପାସୀ ରଖି ଯେଉଁ ନିର୍ଲଜ୍ଜ ମଣିଷପଶୁ ଆଜି ଶାସକ ତଥା ରକ୍ଷକର ସିଂହାସନରେ ବସି ବଡ଼ାଇ କରୁଚି, ପଙ୍କକାଦୁଅ, ଅଳିଆ ଓ ଆବର୍ଜନା ଭିତରୁ ମଣିଷଭାଇକୁ ଉଠାଇନେଇ ତାକୁ

ଆନନ୍ଦ ଦେବାକୁ, ତା'ର ମୃତ ପ୍ରାଣଭିତରେ ଦୃପ୍ତ ଆତ୍ମବୋଧର ସଞ୍ଚାର କରିବାକୁ ଯେଉଁ ଅଭିମାନୀ ଆପଣା ଉଚ୍ଚାସନରୁ ଓହ୍ଲାଇ ଆସିପାରୁ ନାହିଁ, ସେ ଆପଣାକୁ ମଣିଷ ବୋଲି ବା କିପରି କହିପାରିବ ?

ଆଜି ସ୍ୱାଧୀନ ସ୍ୱାଧୀନ ବୋଲି ସମସ୍ତେ ଚିତ୍କାର କରୁଛନ୍ତି, ଜଗତର ପ୍ରତ୍ୟେକ କ୍ଷେତ୍ରରେ ଆଜି ଏହି ସ୍ୱାଧୀନତାର ଦୁହାଇ ଦିଆଯାଉଛି । ମାତ୍ର ପ୍ରକୃତରେ ସ୍ୱାଧୀନତା କାହିଁ ? ମଣିଷ ସମାନ ହେବ, ମଣିଷ ମୁକ୍ତ ହେବ, ଏହି ସତ୍ୟତାକୁ ପୃଥିବୀର ସାମ୍ୟବାଦୀ ତା'ର ପ୍ରଥମ ଉଦାହରଣରେ ହିଁ ବିକୃତ କରିପକାଇଛି, ମଣିଷକୁ ଗୋଟାଏ ବଡ଼ ପିଞ୍ଜରା ଭିତରେ ଆବଦ୍ଧ କରାଯାଇ ତା'ର ଗୋଡ଼ରୁ ବେଡ଼ି ଫିଟାଇ ଦିଆଯାଇଛି । ମଣିଷ କାମ କରୁଛି, ଖାଉଛି, ମାତ୍ର ସରକାର ଓ ସମାଜକର୍ତ୍ତାର ଗୋଇନ୍ଦା ସିପାହୀ, ସିନେମା, ଖବରକାଗଜ ଓ ଶିକ୍ଷାର ଢଳେଇ ଛାଞ୍ଚଗୁଡ଼ାକୁ ଆଣି ତା' ଆଗରେ ରଖାଯାଉଛି, ସେହି ନିର୍ଦ୍ଦିଷ୍ଟ ଛାଞ୍ଚଗୁଡ଼ାକ ଭିତରୁ ସେ ଆଦୌ ବାହାରିପାରୁ ନାହିଁ । ଗୋଡ଼ପାଇଁ ସିନା ଯୋତା ତିଆରି ହୁଏ, ମାତ୍ର ଆଜିକାଲି ଯୋତାପାଇଁ ଗୋଡ଼କୁ ଅନୁରୂପ କରି ଗଢ଼ିବାର ହାସ୍ୟାସ୍ପଦ ପ୍ରଚେଷ୍ଟା ମଧ୍ୟ ମଣିଷ ଆରମ୍ଭ କରିଦେଲାଣି । ଚୀନଦେଶରେ ଆଗେ ଜୋତାଭିତରେ ମଣିଷର ପାଦକୁ ଜବରଦସ୍ତି ଆବଦ୍ଧ କରି ରଖାଯାଉଥିଲା, ପାଦର ସାଧାରଣ ଓ ପ୍ରାକୃତିକ ବୃଦ୍ଧି ଓ ବିକାଶରେ କୃତ୍ରିମ ବାଧା ଦିଆଯାଉଥିଲା । ସେଥିଲାଗି ପାଦ ବଡ଼ ବିକୃତ ହୋଇଯାଉଥିଲା । ଆଜି ମଧ୍ୟ ମଣିଷର ମନକୁ ସେହିପରି ଗୋଟାଏ ଢଳେଇ ଛାଞ୍ଚଭିତରେ ଗଢ଼ାଯାଉଛି । ପ୍ରାୟ ପ୍ରତ୍ୟେକ ଦେଶରେ ଏପରି ହେଉଛି । ମାତ୍ର ପିଂଜରାଭିତରେ ରହିଥିବା ବନ୍ଧନମୁକ୍ତ ଚଢ଼େଇ କେବଳ ଡେଣା ମେଲାଇପାରିବ ସିନା, ଉଡ଼ିପାରିବ କେମିତି ? ସବୁ ରାଜନୀତି, ସବୁ ସମାଜବ୍ୟବସ୍ଥା ପ୍ରଧାନତଃ ଗୋଟାଏ ଗୋଟାଏ କିସମର ଢଳାଇ ଛାଞ୍ଚ ପରି । ମଣିଷକୁ ଜବରଦସ୍ତି ଗୋଟାଏ ପ୍ରକାର କରି ଗଢ଼ିବାକୁ ଆଜି ସମସ୍ତେ ବ୍ୟାକୁଳ । ମାତ୍ର ଏହାଦ୍ୱାରା ମଣିଷର ଯଥାର୍ଥ ମୁକ୍ତି ଆସିବ କି ? ମଣିଷ ଗୋଟାଏ ଗୁମ୍ଫାରୁ ବାହାରି ଆଉଗୋଟାଏ ଗୁମ୍ଫାରେ ପଶିବ ସିନା, ମାତ୍ର ଅନ୍ଧାର ତୁଟିବ ନାହିଁ ।

୨୩ । ୯ । ୪୫

ମୁଁ ଜାଣେନା, ତଥାପି ଯେପରି ମନେହେଉଛି ଯେ ଗୋଟାଏ ଆକସ୍ମିକ ପତନ ମୋ'ଲାଗି ଅପେକ୍ଷା କରି ରହିଛି । ଅନେକ ସମୟରେ ଲାଗୁଛି, ମୋତେ ଅତିଶୀଘ୍ର ଗୋଟାଏ ପରୀକ୍ଷା ଭିତରଦେଇ ଯିବାକୁ ହେବ, ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ହୁଏତ ମୁଁ ଆଗକୁ ଯିବି, ନଚେତ୍ ଚିରକାଳ ଲାଗି ବିସ୍ମୃତିର ଅନ୍ଧାର ଭିତରେ ଲୁପ୍ତ ହୋଇଯିବି । ଗତ କେତେଦିନ ହେଲା ଆପଣାକୁ ଯେପରି ଗୋଟାଏ ଯନ୍ତ୍ରବତ୍ ମନେହେଉଛି, ମନ ଯେପରି ସବୁକଥାରେ ଖାଲି ଉଦାସ

ହିଁ ରହିଚି । ସକଳପ୍ରକାର ଉତ୍କର୍ଷ ଲାଗି ସେ ଯେପରି ସକଳ ଉତ୍ସାହ ହରାଇ ପକାଇଚି, ବଡ଼ ବୀତସ୍ପୃହ ହୋଇପଡ଼ିଚି । ରସଭଣ୍ଡାରର ଅଧିକାରୀ ଯେପରି ଜୀବନଯାତ୍ରାରେ ରସ ଅଜାଡ଼ିବାକୁ ପରାଙ୍ମୁଖ ହୋଇ ବସିଚି । ଜୀବନବୀଣାର ସଙ୍ଗୀତଧର୍ମୀ ତାରଗୁଡ଼ାକ ଯେପରି ମଉନହୋଇ ରହିଚନ୍ତି । ଏପରି କାହିଁକି ଯେ ହେଉଚି, ସେ କଥା ମୁଁ ବୁଝିପାରୁ ନାହିଁ । ମୋତେ କେହି ପରୀକ୍ଷା କରୁଚି କି ? ମୋ'ରି ଭିତରେ ରହି ଏପରି ଏକ ପରୀକ୍ଷା ଦ୍ୱାରା କେହି ମୋତେ ଓଜନ କରି ଦେଖିବାକୁ ଚାହୁଁଚି କି ? ଏବଂ ଏହି ପରୀକ୍ଷା ଶେଷରେ ଆନନ୍ଦମୟ ଆତ୍ମପ୍ରକାଶ କରିବାକୁ କୌଣସି ନିଷ୍ଠୁର ବନ୍ଧୁ ଅପେକ୍ଷା କରି ରହିଚି କି ? ମୁଁ କିଛି ବୁଝିପାରୁ ନାହିଁ । ବେଳେବେଳେ ଏହି ବୀତସ୍ପୃହତା ବିରୁଦ୍ଧରେ ବିଦ୍ରୋହ କରିବାକୁ ଇଚ୍ଛା ହେଉଚି । କାହିଁକି, ମୁଁ ତ ମୋର ନୀରବ ପଥରେ ମନଖୁସିରେ ଖେଳିଖେଳି, ମୋର କ୍ଷୁଦ୍ର କ୍ଷୁଦ୍ର ସଫଳତାରେ ସନ୍ତୋଷ ଲାଭ କରି ଚାଲିଯାଉଥିଲି । ମୁଁ ଚାଲିଯାଉଥିଲି ଏକ ସୁଦୂରର ପଥରେ, ଦୂରର ଅସ୍ପଷ୍ଟ ଭିତରେ ରହିଥିବା ଏକ ଆଲୋକର ଝଲକ ମୋତେ ସବୁଛଡ଼ା କରାଇ ଦାଣ୍ଡରେ ନେଇ ଠିଆ କରାଇଥିଲା । ମୁଁ ନିଶ୍ଚୟ ଯିବି, ପଥଧୂଳିର ପ୍ରାଣମୟ ପରାଗ ବୋଲିହୋଇ, ଯାତ୍ରାପଥର ଜୀବନମୟ ସ୍ପନ୍ଦନରେ ନାଚିନାଚି ମୁଁ ଯିବି;—ମୁଁ ଖାଲି ଯିବାକୁ ଚାହେଁ । ମୁଁ ଆଉ କିଛି ଚାହେଁ ନାହିଁ,—କାହାରି ଦୁଆରେ ମୁଁ ସମ୍ମାନ ଲାଗି ଭିକ୍ଷାପାତ୍ର ପସାରିବି ନାହିଁ, ମୁଁ ମାନ ଅଭିମାନର ପ୍ରୟାସୀ ନୁହେଁ । ତେବେ ମୋ' ପଥରେ ଆଜି ଏ ବାଧା କାହିଁକି ? ହେ ଅପାରବଳ ଭଗବାନ୍, ମୋର ଦୁର୍ବଳ ଅନ୍ତର ଭିତରେ ତୁମେ ବଳ ଭରିଦିଅ, ମୋତେ ବିଦ୍ରୋହ କରିବାର ଶକ୍ତି ଦିଅ, ମୋତେ ଶାନ୍ତଭାବରେ ବଞ୍ଚି ଶାନ୍ତ ଭାବରେ ମରିବାକୁ ଦିଅ । ମୋ'ର ଜୀବନ ତା'ର ଆପଣା ଗତିରେ ବହିଯାଉ, ଆପଣାର ପ୍ରତ୍ୟେକ ଅଭିଜ୍ଞତା, ପ୍ରତ୍ୟେକ ବିପଦଶିକ୍ଷା ଓ ପ୍ରତ୍ୟେକ ପରୀକ୍ଷାକୁ ସେ ପଦ୍ମରୂପେ ଫୁଟାଇ ଚାଲିଯାଉ, ଏହିପରି ଫୁଲ ଫୁଟାଇବାର ଆନନ୍ଦରେ ଆଗକୁ ଯାଇ ମରଣରେ ସେ ପରିପୂର୍ଣ୍ଣତା ଲାଭ କରୁ ।

ଜୀବନରେ ମୁଁ ପାଗଳ ହୋଇ ବାହାରିଚି । ଏହି ପାଗଳ ମନଟା ଭିତରେ ତୁମେ ଲାଭ-କ୍ଷତି ବିଚାରର ସଂଶୟଗୁଡ଼ାକୁ ଭରି ଦିଅନା । ନା-ନା, ଏତେ ଆଶା ଓ ଏତେ ସ୍ୱପ୍ନକୁ ଭାଙ୍ଗିଦେବାକୁ, ଏହି ଯାତ୍ରାକୁ ଏକ ମରୀଚିକାର ଭ୍ରମ-ଯାତ୍ରାରେ ପରିଣତ କରିଦେବାକୁ ମୁଁ ତୁମକୁ କୌଣସି ଅଧିକାର ଦେବି ନାହିଁ । ତୁମେ ଯିଏ ହୁଅ ପଛକେ, ମୁଁ ତୁମ ବିରୁଦ୍ଧରେ ବିଦ୍ରୋହ କରିବି । ମୁଁ ଅଟକି ରହିବି ନାହିଁ ।

୨୪ । ୯ । ୪୫

କିଏ କାହିଁକି ମୋର ଜୀବନଟାକୁ ଏପରି ଭାବରେ ବାନ୍ଧି ରଖିବାକୁ ଚେଷ୍ଟା କରୁଚି, ବ୍ୟର୍ଥତାର ମେଘପୁଞ୍ଜ ଭିତରେ ମୋତେ ଚିରଦିନ ଲାଗି

ଘୋଡ଼ାଇ ରଖିବାକୁ କିଏ ଏପରି ଆନନ୍ଦ ପାଉଚି, ମୋର ଜୀବନାକାଶର ନିର୍ମଳ ପବନ ଓ ବିମଳ କିରଣକୁ କିଏ ଯେପରି କୁହୁଡ଼ିବାଣ ମାରି ମଳିନ କରିଦେବାକୁ ବସିଚି ? କାହିଁକି, ମୁଁ ତା'ର ଦରବାରରେ କି ଦୋଷ କରିଚି ? ମୋର ବାଟ ଆହୁରି ଅନେକ ବାକି ଅଛି । ସେହି ବାଟ ମୋତେ ନାନା ଦୁଃଖ ଦେଇ ସେହି ଦୁଃଖର ଦର୍ପଣରେ ତା'ର ରୂପକୁ ମୋ' ଆଗରେ ଉଜ୍ଜ୍ୱଳତର କରି ଚାଲିଚି । ଘରଛଡ଼ା ହୋଇ ମୁଁ ଯେତେବେଳେ ବାଟକୁ ବାହାରି ସାରିଲିଣି, ସେତେବେଳେ କିଏ କାହିଁକି ମୋତେ ପଛରୁ ଟାଣିଧରିବ ? ମୋତେ ମୋର ଆପଣା ବାଟରେ ଚାଲିବାକୁ ଦିଅ, ଜୀବନର ପୁରୁଣା ଛାଞ୍ଚକୁ ଭାଙ୍ଗି ତାକୁ ନୂତନ କରି ଗଢ଼ିବାକୁ ଦିଅ, ନିଆଁ ଭିତରେ ପୋଡ଼ିଜାଳି ମୋର ସକଳ ଅହଙ୍କାରକୁ ଭସ୍ମ କରିବାକୁ ଦିଅ । ଜୀବନର ଏହି ନୂଆ କଢ଼ଟି ଯେତେବେଳେ ଫୁଟିବାର ସ୍ୱପ୍ନ ଦେଖୁଚି, ତୁମେ ତାକୁ ଫୁଟିବାକୁ ଦିଅ, ସକାଳର କିରଣ ଓ ସନ୍ଧ୍ୟାର ସାଗର-ସଙ୍ଗୀତରେ ତୁମେ ତାକୁ ମୁଗ୍ଧ ହେବାକୁ ଦିଅ । କିନ୍ତୁ କିଏ ତୁମେ ତାକୁ ମୂଳରୁ କାଟିଦେବାକୁ ବସିଚ ? କ'ଣ ମୋର ଦୋଷ ? ମୁଁ ସ୍ୱପ୍ନ ଦେଖିଥିଲି ବୋଲି ? ଫୁଟିବାର ଅଭିମାନ କରିଥିଲି ବୋଲି ? ମାତ୍ର ଫୁଟିଉଠିବା କ'ଣ ମୋର ଜନ୍ମଗତ ଅଧିକାର ନୁହେଁ ? ହୁଏତ ଆଦିକାଳରୁ ଆଜିପର୍ଯ୍ୟନ୍ତ ଜଗତର କେତେ କେତେ ନିଷ୍ଠୁର ଶକ୍ତି ଏମିତି ମଣିଷକୁ ମାରିଦେବାର ଷଡ଼ଯନ୍ତ୍ର କରିବାକୁ ବସିଚି, ମଣିଷର ଆତ୍ମାକୁ ଅବରୁଦ୍ଧ କରି ରଖିବାକୁ ଚାହିଚି, ମାତ୍ର ମଣିଷ ତଥାପି ଫୁଟି-ଉଠିଚି, ତାକୁ ଅର୍ଥାତ୍ ତା'ର ଫୁଟିବାର ବାସନାକୁ କେହି ଦଳିଦେଇ ପାରିନାହିଁ ।

୨୭ । ୯ । ୪୫

ସମସ୍ତ ଅନ୍ତର ଭିତରେ ଆଜି ମୁଁ ଯେପରି ଗୋଟାଏ ପରିବର୍ତ୍ତନ ଲକ୍ଷ୍ୟ କରିପାରୁଚି । ଆଜିଯାଏ ଯିଏ ମୋର ହୃଦୟକୁ ନାନାପ୍ରକାର ବିଷାଦଚିନ୍ତାରେ ଅଧୀର ଓ ଆକୁଳ କରି ପକାଉଥିଲା, ଆଜି ସେପରି ସେଇ ମୋର ପ୍ରାଣର ପ୍ରତ୍ୟେକ ତନ୍ତ୍ରୀରେ ଅପାର ପୁଲକ ଭରିଦେଇ ଯାଉଚି । ଆଜି ମନଟା ଆନନ୍ଦରେ ଫାଟି ପଡ଼ିଲାପରି ଲାଗୁଚି, ଯେକୌଣସି ବାଧାକୁ ଦଳିଦେଇ ଚାଲିଯିବାର ଶକ୍ତି ଯେପରି ସେ ଆଜି ଫେରିପାଇଚି । ଆଜି ମୁଁ ଅତି ସ୍ପଷ୍ଟ ଭାବରେ ଗୋଟାଏ କଥା ଅନୁଭବ କରିପାରୁଚି : ଯେଉଁ ଅନ୍ତରାତ୍ମା କନ୍ଦାଇପାରେ, ସେଇ ପୁଣି ହସାଇ-ପାରେ । ଆଜି ମୁଁ ଏହି ନିଗୂଢ଼ ଅଥଚ ବୃହତ୍ ରହସ୍ୟଟିକୁ ଭେଦ କରିପାରିଚି । ଆଜି ଯେପରି ମୋର ଅନ୍ତର ଭିତରୁ କେହି ସ୍ନେହାର୍ଦ୍ର ଆଘାତରେ ମୋତେ ଡାକି ଡାକି କହୁଚି, 'ଏ ବାଧା କିଛି ନୁହେଁ, ସେଥିଲାଗି ଅଧୀର ହୋଇ ପଡ଼ିବାକୁ ତୋ'ର ଆଦୌ ସମୟ ନାହିଁ । ଦିନେ ନା ଦିନେ ଏହି ବାଧା ଅବଶ୍ୟ ପରାଜୟ ସ୍ୱୀକାର କରିବ । ତୁ ଆଗକୁ ଚାଲ, ଆଉ ଏମିତି ସମୟ ନଷ୍ଟ କରନା, ତୋ'ର ଉଦାସ ଆଖି ଓ ନିରସ ଓଠ ଦେଖାଇ ତୁ ମୋତେ ଆଉ ନିରାଶ କରିଦେ'ନା ।'

ଆଜି ରାଜା ରାମମୋହନ ରାୟଙ୍କର ଶ୍ରାଦ୍ଧୋତ୍ସବ ଥିଲା । ସେଥିଲାଗି ଖରାବେଳେ ଏଠାରେ ଗୋଟିଏ ସଭା ହୋଇଥିଲା । ପଣ୍ଡିତ ଶ୍ରୀ ହଜାରିପ୍ରସାଦ ଦ୍ୱିବେଦୀଙ୍କର ଭାଷଣରୁ ରାମମୋହନଙ୍କ ସମ୍ବନ୍ଧରେ ଆଜି ଦୁଇଟି କଥା ଜାଣିବାକୁ ପାଇଲି । ରାମମୋହନ କବୀର ଓ ନାନକଙ୍କୁ ହିନ୍ଦୁଧର୍ମର ଦୁଇଜଣ ସଂସ୍କାରକ ଗୁରୁ ବୋଲି ମାନୁଥିଲେ, କାରଣ ସେମାନେ ଇସଲାମ୍ ଓ ହିନ୍ଦୁଧର୍ମ ଭିତରେ ଏକ ସୁନ୍ଦର ସମନ୍ୱୟ ସମ୍ଭବ କରି ପାରିଥିଲେ । ହିନ୍ଦୁଧର୍ମର ଅଚଳାୟତନ ଗଣ୍ଡିକୁ ଭାଙ୍ଗିଦେଇ ସେମାନେ ତା'ଭିତରକୁ ସବୁ ଜାତିର ଲୋକଙ୍କୁ ଟାଣି ଆଣିଥିଲେ । ଦ୍ୱିତୀୟତଃ, ଏହି ରାମମୋହନ ହିଁ ଗତ ଶତାବ୍ଦୀର ପ୍ରଥମ ପାଦରେ ହିନ୍ଦୀଭାଷାର ପ୍ରଥମ ଛାପା ପୁସ୍ତକ ଲେଖିଥିଲେ ।

କିନ୍ତୁ ଶ୍ରୀ ରାମମୋହନଙ୍କ ଗୁଣବର୍ଣ୍ଣନ କରିବାକୁ ଯାଇ ଶ୍ରୀଯୁକ୍ତ ପ୍ରବୋଧ ସେନ୍ ଯାହା କହିଲେ, ସେଇଟା ମୋତେ ଆଦୌ ଭଲ ଲାଗିଲାନାହିଁ । ସେତେବେଳର ମୋଗଲ ବାଦଶାହ ରାମମୋହନଙ୍କୁ 'ରାଜା' ଉପାଧିରେ ଭୂଷିତ କରିଥିଲେ ଏବଂ ଏହାକୁ ମଧ୍ୟ ପ୍ରବୋଧବାବୁ ରାମମୋହନଙ୍କର ଗୁଣିତ୍ୱର ଏକ ପରିଚୟକ ବୋଲି କହିଥିଲେ । ସେତେବେଳେ ଦିଲ୍ଲୀର ବାଦଶାହ କେବଳ ନାମକୁମାତ୍ର ବାଦଶାହ । ଇଂରେଜ ବଡ଼ଲାଟମାନଙ୍କ ହାତରେ ସେମାନେ କେବଳ ଖେଳନା ପରି ହୋଇ ରହିଥିଲେ । ଆପଣାର ନାମମାତ୍ର ସିଂହାସନଟାକୁ ହାତରେ ରଖିବାର ବିକଳ ଚେଷ୍ଟାରେ ସେମାନେ ଲାଞ୍ଜ ଟେକି ଶରଣ ପଶି ଇଂରେଜମାନଙ୍କର ଆଶ୍ରୟ ନେବାରେ ବ୍ୟସ୍ତ ରହିଥିଲେ । ମୁଁ କଳ୍ପନା କରିପାରୁ ନାହିଁ ସେପରି ଜଣେ ବାଦଶାହ ରାମମୋହନଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ଦ୍ୱାରା କେତେଦୂର ମୁଗ୍ଧ ହୋଇ ତାଙ୍କୁ 'ରାଜା' ଉପାଧି ଦେଇଥିଲେ ଓ ଜଣେ ବାଦଶାହଙ୍କଠାରୁ 'ରାଜା' ଉପାଧି ପାଇ ରାମମୋହନଙ୍କ ଗୌରବ ପ୍ରକୃତରେ କେତେଦୂର ବୃଦ୍ଧି ପାଇଥିଲା । ତାହା ବଦଳରେ ଯଦି ଭାରତବର୍ଷର ଲୋକସାଧାରଣ ରାମମୋହନଙ୍କୁ କେବଳ ମହାତ୍ମା ବା ଅତି-ମାନବ ହିସାବରେ ଉପରକୁ ଆଡ଼େଇ ଦେଇ ତାଙ୍କୁ ଆପଣାର କରିନେଇ ପାରିଥାନ୍ତେ, ତେବେ ଭାରତର ଘରେ ଘରେ ଏକ ନୂତନ ଧର୍ମର ପ୍ରାଣସଞ୍ଚାର ହୋଇପାରିଥାନ୍ତା । ଇଂରେଜ ସରକାରଙ୍କ କୃପାପାତ୍ର ହିସାବରେ 'Knight' ଉପାଧି ନେଇ ରବୀନ୍ଦ୍ରନାଥ ବଡ଼ ହେବା ଯେପରି, ବିଦେଶୀର ଖେଳପିତୁଳା ଦିଲ୍ଲୀର ପତନୋନ୍ମୁଖ ଓ ନଷ୍ଟବ୍ୟକ୍ତିତ୍ୱ ବାଦଶାହଙ୍କଠାରୁ ମିଳିଥିବା 'ରାଜା' ଉପାଧିଦ୍ୱାରା ରାମମୋହନଙ୍କୁ ବି ବଡ଼ କରିବାକୁ ଯିବା ସେହିପରି । ଆମ ସାଧାରଣଙ୍କ ଆଖିରେ ସେଇଟା ରାମମୋହନଙ୍କ ପ୍ରତିଭାଲାଗି ହୁଏତ ଏକ ବଡ଼ ପରିଚୟ ହୋଇପାରେ, ମାତ୍ର ରାମମୋହନଙ୍କ ଜୀବନରେ ତାହା ଗୋଟିଏ ବେଡ଼ିପରି କାର୍ଯ୍ୟ କରିଥିଲା ବୋଲି ମୋର ମନେହେଉଛି । ରବୀନ୍ଦ୍ରନାଥ କହିଚନ୍ତି, ପର୍ବତ ଶିଖରରେ ଜମାଟ ବାନ୍ଧି ରହିଥିବା ତୁଷାର ପର୍ବତଲାଗି ଗୋଟାଏ

ବୋଝ ପରି । ମାତ୍ର ପର୍ବତ ଫୁଟାଇ କରୁଣା ଓ ଆନନ୍ଦର ରସଧାରା ନେଇ ଯେଉଁ ଝରଣା ତଳକୁ ବହିଆସେ, ତାହାକୁ ସାରା ପୃଥିବୀ ଆପଣାର କରିନିଏ ।

ରାଜମସ୍ତକର କିରୀଟ ରାଜାକୁ ବଡ଼ କରେନା । ତା'ର ଦୈନନ୍ଦିନ ଜୀବନର କାର୍ଯ୍ୟ ହେଉଚି ତାର ଯଥାର୍ଥ ଗୌରବ । ବାହ୍ୟ ଭୂଷଣ ଓ ଅଳଙ୍କାର ମଣିଷକୁ ବଡ଼ କରେନା, ସେଗୁଡ଼ାକ ତାକୁ କେବଳ ବାନ୍ଧିରଖେ, ନାନା ଛଳନା-ମୟ ରୂପ ଦେଖାଇ ତାକୁ ଭୁଲାଇ ରଖିବାକୁ ଚେଷ୍ଟା କରେ । ସଂସାର ଭିତରେ ଆପଣାକୁ ଅଜାଡ଼ିଦେଇ ହିଁ ମହାତ୍ମା ଧନ୍ୟ ହୁଏ । ମାତ୍ର ଆମେ ସମସ୍ତେ ମହାତ୍ମାର ଅନ୍ଧ ପୂଜା କରିବାଲାଗି ଆଜି ଯେପରି ଭାରି ମତ୍ତ ହୋଇ ପଡ଼ିଲୁଣି ! ଆମର ଦୈନନ୍ଦିନ ଜୀବନରେ ଆମେ ବଡ଼ ସହଜରେ ଯେକୌଣସି ମହାତ୍ମାକୁ ଅସ୍ୱୀକାର କରିପାରୁ, ତା'ର ଉପଲବ୍ଧ ଜୀବନସତ୍ୟଗୁଡ଼ିକର ଅପମାନ ବି କରିପାରୁ, ମାତ୍ର ତା'ର ସ୍ମୃତିଦିବସମାନଙ୍କରେ ଆମେ ନିଜର କୃତ୍ରିମ ଭକ୍ତିର ବଡ଼ ବିଜ୍ଞାପନ କରିଥାଉ । ଆପଣା ଆପଣାର କର୍ମକ୍ଷେତ୍ରରେ ଆମେ ଭୟଙ୍କର ବ୍ୟକ୍ତିବାଦୀ; ଆମର ସ୍ୱାର୍ଥ, ଆମର ଉଦ୍ଦେଶ୍ୟ ଓ ଆମର ଲାଳସାମାନ କୁହୁଡ଼ିପରି ଆମର ଜୀବନକୁ ଘେରିକରି ରହିଥାଏ । କୌଣସି ମହାତ୍ମାର ଜୀବନାଲୋକକୁ ଆପଣାର ଜୀବନ ଉପରେ ପ୍ରତିଫଳିତ କରାଇ ଆମେ ନିଜ ଜୀବନଟିକୁ ଅଧିକ ନିର୍ମଳ କରିବାର ଖୁବ୍ ବେଶୀ ଚେଷ୍ଟା କରୁ ନାହିଁ । ମହାତ୍ମା ଆଗରେ ନିଜେ ମାର୍ଜିତ ଓ ଶୁଦ୍ଧ ହୋଇ ଠିଆହେବାର ସତ୍‌ସାହସ ଆମର ନ ଥାଏ । ସେଥିଲାଗି ମହାତ୍ମାମାନଙ୍କୁ ନିର୍ବାସିତ କରି ରଖିଦେବାକୁ ଆମେ ଏତେ ସରାଗ ଦେଖାଉ । ମନ୍ଦିର ଭିତରେ, ଗୋଟାଏ ନିର୍ଦ୍ଦିଷ୍ଟ ଦର୍ଶନ ଭିତରେ ଓ କେତେଟା ବହି ଭିତରେ ଆମେ ସେମାନଙ୍କୁ ବନ୍ଦକରି ରଖୁ । ଦରକାର ପଡ଼ିଲେ ସେହି ବହି ଓ ସେହି ଦର୍ଶନ ଖୋଲି ଆମେ ସେମାନଙ୍କୁ ମନେପକାଉ ।

ଆମର ଏହି ପୂଜାକୁ ମୁଁ ବଡ଼ ପ୍ରାଣହୀନ ବୋଲି କହିବି । ସେଥିଲାଗି ଆମ ଆଖିକୁ ବିଭିନ୍ନ ସମୟର ବିଭିନ୍ନ ମହାତ୍ମା ପରସ୍ପରଠାରୁ ଅଲଗା ଅଲଗା ଦେଖାଯାନ୍ତି । ସେମାନଙ୍କ ଭିତରେ ଆମେ ତୁଳନା କରି ବସୁ, ଅସୁନ୍ଦର ବ୍ୟବଧାନମାନ ସୃଷ୍ଟି କରୁ, ସେମାନଙ୍କ ଭିତରେ ସନ୍ଦେହ ଓ ବିରୋଧର ପାଚେରୀମାନ ଠିଆ କରିଦେଉ । ଦରକାର ପଡ଼ିଲେ ଗୋଟାଏ ଅନ୍ଧ ଓ ଆଦିମ ଭାବପ୍ରବଣତାରେ ଭାସିଯାଇ ସେହି ମହାତ୍ମାମାନଙ୍କର ନାମ ନେଇ ଆମେ କଳହ କରି ବସୁ, ଲାଠି ନେଇ ମୁଣ୍ଡ ଫଟାଫଟି ହେଉ । ମାତ୍ର ମହାତ୍ମା କ'ଣ ସେଇଆ ଚାହେଁ ? ସବୁ ମହାତ୍ମା ଯେ ଗୋଟିଏ ଚିରନ୍ତନ ସତ୍ୟର ଅମୃତବାଣୀ ନେଇ ସଂସାରରେ ଜନ୍ମଗ୍ରହଣ କରନ୍ତି, ଏକଥା ଆମେ ଆଉ କେବେ ବୁଝିବୁ ? ନାନା ରୂପ ଭିତରଦେଇ ଯେ ଗୋଟାଏ ରୂପାତୀତ ମହାନ୍ ବାଣୀ ଓ ଅଳଙ୍କାରହୀନ ଅମିତ ସତ୍ୟ ଏହି ଜଗତରେ ଆତ୍ମପ୍ରକାଶ କରିଥାଏ, ଏକଥା ଆମେ ଆଉ କେବେ ଉପଲବ୍ଧି କରିବୁ ?

୧୬ । ୧୦ । ୪୫

ଦଶହରା ଛୁଟୀରେ ଗାଆଁକୁ ଆସିଚି । ଅନ୍ୟାନ୍ୟ ନାନା କାର୍ଯ୍ୟ ଭିତରେ ଏଥର ମୁଁ ଗୋଟାଏ ବିଶେଷ କାର୍ଯ୍ୟ ମଧ୍ୟ କରିଥିଲି । ଭୋଟଦାତାମାନଙ୍କର ପୁରୁଣା ତାଲିକାକୁ ସଂଶୋଧନ କରି ନୂଆ ତାଲିକା ତିଆରି କରିବା ଉଦ୍ଦେଶ୍ୟରେ ମୁଁ ଆମ ଥାନାର ଗୋଟିଏ ଅଞ୍ଚଳକୁ ଯାଇଥିଲି । କଂଗ୍ରେସର ବୈଧାନିକ ନୀତିରେ ମୋର ମୋଟେ ବିଶ୍ୱାସ ନାହିଁ । ଏସବୁ ଦ୍ୱାରା ସାଧାରଣ କ୍ଷେତ୍ରରେ ପ୍ରତିକ୍ରିୟାଶୀଳ ଲୋକଙ୍କୁ ହିଁ ଅଧିକ ପ୍ରଶ୍ରୟ ଦିଆଯାଉଚି ବୋଲି ମୋର ମତ । ମୁଁ ଖାଲି ଯାଇଥିଲି ବର୍ଷାଦିନରେ ସୁଦୂର ପଲ୍ଲୀ ଅଞ୍ଚଳରେ ଲୋକମାନେ କିପରି ଜୀବନ କଟାଉଚନ୍ତି, ସେହି ବିଷୟରେ ଏକ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ କରିବାକୁ । କାରଣ ସେଇମାନଙ୍କ ଜୀବନର ସତ୍ୟ ହେଉଚି ମୋ'ଆଗରେ ପ୍ରକୃତ ସତ୍ୟ, ଦେଶର ବାସ୍ତବ ପରିସ୍ଥିତି ସହିତ କେବଳ ସେହି ସତ୍ୟର ହିଁ ସମ୍ବନ୍ଧ ରହିଚି । ଏଥର ମୁଁ ଯେଉଁଆଡ଼େ ଯାଇଥିଲି, ସେଆଡ଼େ କଂଗ୍ରେସର କର୍ମୀମାନେ ଆଗରୁ କେବେ ପାଦ ପକାଇ ନ ଥିଲେ । ଏହି ଅଞ୍ଚଳରେ ଆଗରୁ କେବେ କୌଣସି ସଭାସମିତି ହୋଇ ନ ଥିଲା ବା କୌଣସି ରଚନାତ୍ମକ କାର୍ଯ୍ୟ ମଧ୍ୟ ହୋଇ ନ ଥିଲା । ଯେତେବେଳେ ମୁଁ ପ୍ରଥମେ ଯାଇ କୌଣସି ଗାଆଁରେ ପହଞ୍ଚେ, ମୋତେ କିଏ ଟୀକାବାଲା ବୋଲି କହନ୍ତି, କିଏ କହେ ପୋଷ୍ଟପିଅନ୍ ଆସିଚି, କିଏ କହେ ମୁଁ ଚୌକୀଦାରୀ ଟିକସ ଆଦାୟ କରିବାକୁ ଆସିଚି । ଏସବୁ ପରିସ୍ଥିତିର ସମ୍ମୁଖୀନ ହୋଇ ମୋତେ ବଡ଼ ଲାଜ ଲାଗିଲା । ଆମେ ଯେଉଁ-ମାନଙ୍କର କାଣିଚାଏ ହେଲେ କୌଣସି ଉପକାର କରି ନାହୁଁ, ଯେଉଁମାନେ ପାଣି କାଦୁଅରେ ସଢ଼ୁଥିଲାବେଳେ ଆମେ ତେଣେ ସହରମାନଙ୍କରେ ସଭାସମିତି ଓ ଶୋଭାଯାତ୍ରା କରି ବୁଲୁଚୁ, ମୁଁ ସେଇମାନଙ୍କ ପାଖକୁ ଆସିଚି ଭୁଲାଇ ବା ଫୁସୁଲାଇ ସେମାନଙ୍କର ଟିପଚିହ୍ନ ବା ଦସ୍ତଖତ ନେବାକୁ ! ଇଏ ଖାଲି ମଣିଷର ଭାଗ୍ୟକୁ ନେଇ ଖେଳିବା କଥା । ବିଶେଷତଃ ଲୋକମାନଙ୍କଠାରୁ ଟିପଚିହ୍ନ ନେଉଥିଲାବେଳେ ମୋତେ ଭାରି କଷ୍ଟ ଲାଗୁଥିଲା । ମୁଁ ଭାବୁଥିଲି, ଯେଉଁ ଜାତିର ଏତେଗୁଡ଼ାଏ ମଣିଷ ଆପଣାର ନାଆଁଟା ମଧ୍ୟ ଲେଖି ଶିଖି ନାହାନ୍ତି, ସେହି ଜାତିଲାଗି ଆମେ ପ୍ରକୃତରେ କଣ କରିଚୁ ? ଏହି ମୂର୍ଖତା ଓ ଅଜ୍ଞତାର ଲାଜକୁ ଆମେ କେବେହେଲେ ଆପଣାର ଲାଜ ବୋଲି ଅନୁଭବ କରିଚୁ କି ? ଜିନ୍ନାଙ୍କ ସହିତ ଦେଖାସାକ୍ଷାତ କରିବାରେ, ସିମଲା ସମ୍ମିଳନୀରେ ଯାଇ ସାମିଲ ହେବାରେ ଆମେ ଯେତେ ସମୟ ଦେଇଚୁ, ସେହି ଅନୁପାତରେ ଏଠି ଅଧେ ବା ପାଏ ସମୟ ବି ଦେଇଚୁ କି ? ତଥାପି ଯେତେବେଳେ ଭୋଟ ନେବାର ବେଳ ଆସି ପହଞ୍ଚୁଚି, ବା ଯେତେବେଳେ କଂଗ୍ରେସର ସଭ୍ୟସଂଖ୍ୟା ବଢ଼ାଇବା ଦରକାର ପଡ଼ୁଚି, ସେତେବେଳେ ଆମେ ନାନା ମିଠା ପ୍ରସ୍ତରରେ ସେମାନଙ୍କୁ ଭୁଲାଇବାକୁ ଆସି ପହଞ୍ଚିଯାଉଚୁ । ଗତ କେତେଦିନ ଭିତରେ

ମୋର ଯେତିକି ଅଭିଜ୍ଞତା ହୋଇଚି, ସେତିକିରୁ ମୁଁ ଜାଣିପାରିଚି ଯେ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମକୁ ଭଲଭାବରେ ବୁଝି ସାଧାରଣତଃ ଲୋକେ କଂଗ୍ରେସର ମେମ୍ବର ହୁଅନ୍ତି ନାହିଁ । ପରିଚିତ କର୍ମୀଙ୍କର କଥାକୁ ଏଡ଼ି ନ ପାରି ହୁଏତ ଅନେକେ ଚାରିଅଣା ପଇସା ଦେଇ କଂଗ୍ରେସର ମେମ୍ବର ହୁଅନ୍ତି ଓ କାମ ଛିଡ଼ାଇ ଦିଅନ୍ତି । କିନ୍ତୁ ଏଗୁଡ଼ାକୁ କେବଳ ବାହ୍ୟ ପ୍ରସାର ବୋଲି କୁହାଯିବ ନାହିଁ କି ? ଯଦି ଏଥର କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରେ, ତେବେ ଲୋକ-ସାଧାରଣଙ୍କୁ ବାଧ୍ୟତାମୂଳକ ସାଧାରଣ ଶିକ୍ଷା ଦେବା ତା'ର ପ୍ରଥମ ଓ ସର୍ବପ୍ରଧାନ କର୍ତ୍ତବ୍ୟ ହୋଇ ରହିବା ଉଚିତ । ଅନ୍ତତଃ ସେତିକି ହୋଇପାରିଲେ ଦେଶସେବା ନାମରେ ଆଉ ଲୋକମାନଙ୍କୁ କେହି ଠକି ପାରନ୍ତା ନାହିଁ । ଦେଶରେ ଯେତେବେଳେ ଯାହା ଯାହା ଘଟୁଚି, ଲୋକମାନେ ସେକଥା ଜାଣିପାରନ୍ତେ ଏବଂ ଆପେ ତାହାର ଭୁଲ୍ ଠିକ୍ ବିଚାର କରିପାରନ୍ତେ ।

ତଥାପି ଏଥର ମୁଁ ଗୋଟାଏ ବଡ଼ କଥା ବି ଦେଖିପାରିଲି । ଯେଉଁସବୁ ଗାଆଁରେ କଂଗ୍ରେସର ବାର୍ତ୍ତା କେବେହେଲେ ପଶି ନାହିଁ, ସେଠି ମଧ୍ୟ ଲୋକମାନେ ଦୃଢ଼ସ୍ୱରରେ କହୁଚନ୍ତି ଯେ କଂଗ୍ରେସ ହିଁ ଲୋକଙ୍କର ଇଜ୍ଜତ ରଖିଚି । ମହାତ୍ମା ଗାନ୍ଧୀଙ୍କୁ ସେମାନେ ମଣିଷ ଭିତରେ ଦେବତା ବୋଲି ବିଶ୍ୱାସୁଚନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତା'ପରେ ଭାବିଲି, ଗୋଟାଏ ଲୋକର ନିରଭିମାନ କର୍ମସାଧନା ଲୋକମନରେ କେଡ଼େ ଅଦ୍‌ଭୁତ ପ୍ରଭାବ ନ ପକାଇଚି ! ଗୋଟାଏ ଲୋକ ଆଜି ଲୋକସାଧାରଣଙ୍କ ସ୍ତରକୁ ଓହ୍ଲାଇ ଆସିପାରିଚି ବୋଲି ସମସ୍ତ ଦେଶ କିପରି ତାକୁ ଆପଣାର କରିନେଇଚି ! ତାହାରି ନିଶ୍ୱାସର ପବନ କିପରି ଦେଶର କୋଟି ନିଶ୍ୱାସରେ ସଂପ୍ରସାରିତ ହୋଇଯାଇଚି ! ଏବଂ ଆମେ ସେହି ପବିତ୍ର ବ୍ୟକ୍ତିତ୍ୱର ଲାଭ ଉଠାଇ ଲୋକଙ୍କର ଭକ୍ତି ଓ ସହାନୁଭୂତି ପାଉଚୁ, ଗାନ୍ଧୀର ନାମ ନେଇ ବର୍ତ୍ତମାନ ଭୋଟ ଆସିଲାବେଳକୁ କେଡ଼େ ଦମ୍ଭରେ ଲୋକଙ୍କ ପାଖକୁ ଯାଇପାରୁଚୁ !

ଏହି ଛୁଟୀ ଭିତରେ ଜିଲାବୋର୍ଡ଼ର ନିର୍ବାଚନ ବି ହୋଇଗଲା । ଅବଶ୍ୟ ଆମ ଥାନାରେ କଂଗ୍ରେସ ସହିତ କେହି ପ୍ରତିଦ୍ୱନ୍ଦ୍ୱିତା କରି ନ ଥିଲେ । ମାତ୍ର କଟକ ସବ୍‌ଡ଼ିଭିଜନର ଚାରିଟା ଜାଗାରେ ଅନ୍ୟ ପ୍ରାର୍ଥୀ ଠିଆ ହୋଇଥିଲେ । ସେସବୁ ସ୍ଥାନରେ କଂଗ୍ରେସ ତରଫରୁ ପ୍ରଚାର କରିବା ସକାଶେ ଆମ ଗାଆଁରୁ କର୍ମୀମାନେ ବି ଯାଇଥିଲେ । ମୁଁ ସେମାନଙ୍କ ଠାରୁ ଶୁଣିଲି ଯେ କଂଗ୍ରେସ ଯେଉଁଠି ଆଜିଯାଏ କୌଣସି କାମକରି ନାହିଁ, ସେଠାରୁ ମଧ୍ୟ କଂଗ୍ରେସ ତରଫରୁ ପ୍ରାର୍ଥୀମାନେ ଠିଆ ହୋଇଚନ୍ତି । ସେଠି ମଧ୍ୟ ବଡ଼ ଜୋରସୋରରେ ଭୋଟପ୍ରଚାର ଚାଲିଚି । ରାଜନୀତିକ ଚାତୁରୀ ଦୃଷ୍ଟିରୁ ଯାହା ହୋଇଥାଉ ପଛକେ, ମୁଁ ଏସବୁ କଥାକୁ ମୋଟେ ବୁଝିପାରେ ନାହିଁ । ମୋର ମନେହୁଏ ଯେ

ଲୋକମାନଙ୍କର ଅଜ୍ଞତାର ସୁଯୋଗ ନେଇ ଏହାଦ୍ୱାରା ସେମାନଙ୍କର ଭାଗ୍ୟ ସହିତ ଖେଳ ଖେଳିବା ହିଁ ସାର ହେଉଚି । ସେମାନଙ୍କୁ ଭଲମନ୍ଦ ବିଗ୍ଭର କରିବାର ଶକ୍ତି ଦିଆଯାଉ ନାହିଁ, ଉତ୍ତେଜିତ ପ୍ରଗ୍ଭରରେ ଭୁଲାଇ ଦିଆଯାଉଚି । ମୁଁ ଭାବୁଚି, ଯେଉଁଠାରେ କଂଗ୍ରେସ କୌଣସି କାର୍ଯ୍ୟ କରି ନାହିଁ, ଲୋକମାନଙ୍କର କୌଣସି ଉପକାର କରି ନାହିଁ, ଲୋକମାନଙ୍କୁ ଆପଣାର କାର୍ଯ୍ୟ ଦ୍ୱାରା ନିଜର କରିପାରି ନାହିଁ, ସେଠୁ କଂଗ୍ରେସ ଭୋଟ ବି କାହିଁକି ମାଗିବାକୁ ଯିବ । ପ୍ରଗ୍ଭର ଦ୍ୱାରା ଲୋକ ଭୁଲାଇବା ଲାଗି ତା'ର କି ଅଧିକାର ଅଛି ? ତୁଚ୍ଛା ପ୍ରଗ୍ଭର ଦ୍ୱାରା ଯେ କିପରି ଦୂଷିତ ଓ ହାନିକାରକ ପରିଣତି ଯେ ହୋଇପାରେ, ଆମେ କଣ ନାତ୍‌ସି ଜର୍ମାନୀ ଓ ଫାସିଷ୍ଟ ଇତାଲୀରୁ ଜାଣିପାରିଲୁ ନାହିଁ ? କଂଗ୍ରେସ ଆଗ କାମ କରୁ, ଲୋକସାଧାରଣଙ୍କୁ ନାଗରିକ ଶିକ୍ଷା ଦେଉ, ତା'ପରେ କଂଗ୍ରେସ ତ ବଳେବଳେ ଲୋକଙ୍କର ପ୍ରତିନିଧି ହୋଇପାରିବ । ପ୍ରତିନିଧି ମନୋନୟନ କରିବାଲାଗି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡର ଆଉ କି ଆବଶ୍ୟକତା ରହିବ ? ହୁଏତ ଏପରି ବାଟରେ ଗଲେ କଂଗ୍ରେସ ବେଶୀ ସଂଖ୍ୟାରେ ଜିଲ୍ଲାବୋର୍ଡ ଭିତରକୁ ପଶି ପାରିବ ନାହିଁ । ସେକଥା ନ ହେଲେ ବା କ'ଣ ହୋଇଯାଉଚି ? ଯେତେବେଳେ କଂଗ୍ରେସ ଲୋକସାଧାରଣଙ୍କର ଆପଣାର ହେବ, ସେତିକିବେଳେ ଯାଇ କ୍ଷମତାରେ ବସିବ । ଏହା ପୂର୍ବରୁ ମଧ୍ୟ ଥରେ କଂଗ୍ରେସ ହାତକୁ କ୍ଷମତା ଯାଇଚି । ତା'ର ଅନ୍ତତଃ ଏତିକି ବୁଝିପାରିଥିବା ଉଚିତ ଯେ ଏହି ଶାସନକ୍ଷମତା ବାହାରକୁ ଯେଡ଼େ ବଡ଼ ଦେଖାଗଲେ ମଧ୍ୟ ଏହା ଭିତରେ ପ୍ରକୃତ କାର୍ଯ୍ୟ କରିବାର କ୍ଷମତା ଖୁବ୍ ବେଶୀ ନାହିଁ । ତେଣୁ ଏପରି ଖଣ୍ଡିଆ କ୍ଷମତା ହାତକୁ ନେବାଲାଗି କଂଗ୍ରେସ ଏପରି ବ୍ୟାକୁଳ ହୋଇପଡ଼ୁଚି କାହିଁକି ? ହୁଏତ କେହି କହିପାରନ୍ତି, କଂଗ୍ରେସ ହାତକୁ କ୍ଷମତା ଗଲେ ଏହା ଭାରତର ସର୍ବପ୍ରଧାନ ଲୋକ ଅନୁଷ୍ଠାନ ବୋଲି ସାରା ପୃଥିବୀ ମଧ୍ୟ ଜାଣିବାକୁ ପାଇବ । ମାତ୍ର ଅସଲ କଥା ହେଉଚି, ଲୋକପ୍ରିୟତା ବାହାରୁ ଆସିବ ନାହିଁ, ଏହାକୁ ଏହି ଦେଶରେ ହିଁ ଅର୍ଜନ କରିବାକୁ ହେବ । ଶକ୍ତି ବାହାରୁ ଆସିବ ନାହିଁ, ଏହି ଦେଶକୁ ଜାଗ୍ରତ କରି ଏହାରି ଭିତରୁ ହିଁ ଶକ୍ତି ଉତ୍ପନ୍ନ କରିବାକୁ ପଡ଼ିବ । ତେଣୁ ମୁଁ କହିବି ଯେ ଏହି ନିର୍ବାଚନରେ ଯେତେ ଶକ୍ତି ଓ ଅର୍ଥର ଅପଚୟ କରାଯାଉଚି, ତାହାକୁ ରଚନାତ୍ମକ କାର୍ଯ୍ୟକ୍ରମ ଓ ରାଜନୀତିକ ଚେତନାର ବିକାଶ ଦିଗରେ ଖରଚ କରାଯାଇଥିଲେ ହୁଏତ ଭାରତବର୍ଷର ଅଧିକ ମଙ୍ଗଳ କରାଯାଇ ପାରିଥାନ୍ତା । ତାହା ହିଁ ବାଟ, ଏଇଟା ବାଟ ନୁହେଁ । ଏ ଖାଲି କାମ କରିବାର ଛଳନା ଦେଖାଇ ନିରାଟ କର୍ମହୀନତାର ଆଚରଣ କରିବା । ଏଥିରେ ଦେଶ ଅବାଟକୁ ଯିବ, ନେତା ଅବାଟକୁ ଯିବେ, ବନ୍ଧୁ ଓ ସେବକ ସାଜି ନାନା ପ୍ରକାର ଇତରମନା ଲୋକ ଆସି କଂଗ୍ରେସ ଭିତରେ ପଶିବେ, ଦେଶର ଅଚଳା ଶକ୍ତିକୁ କେବଳ ଗୋଟାଏ ଅସ୍ଥାୟୀ ଚଞ୍ଚଳତା ଭିତରେ ମତାଇ ଦିଆଯିବ ।

ଆଜି ଷୋଳ ତାରିଖ, ସେକଥା ମୁଁ ଭୁଲିବି କିପରି ? ବୟସରେ ମୁଁ ଯେତିକି ଯେତିକି ବଡ଼ ହେଉଛି, ସେତିକି ସେତିକି ଯେପରି ମତେ ଭିତରୁ କିଏ ଅତି ଆପଣାର ମଣିଷପରି ଆସି ଚେତାଇଦେଇ ଯାଉଚି । କ୍ଷମତାର ଲୋଭ, ସମ୍ମାନର ମୋହ ଓ ଛଳନାର ଜାଲଭିତରୁ ବାହାରେ ରହିବାକୁ ମତେ ଯେପରି କେଉଁ ସଖା ଦିନରାତି ସୂଚାଇଦେଇ ଯାଉଚି । ଆପଣା ପ୍ରତି, ଆପଣାର ଦେଶ ପ୍ରତି ଓ ଜଗତ ପ୍ରତି ମୋର କର୍ତ୍ତବ୍ୟ କରିବାରେ ହିଁ ମୁଁ ମୋର ଶେଷ ଶକ୍ତିର ବିନିଯୋଗ କରିବାକୁ ଚେଷ୍ଟା କରିବି ।

୧୬ । ୧୧ । ୪୫

ଯାହାପାଇଁ ଶାସନ ଚାଲୁଚି, ଯାହା ସକାଶେ ଶିକ୍ଷା ବ୍ୟବସ୍ଥା ଗଢ଼ା-ହେଉଚି, ସେହିସବୁ ବିଷୟରେ ତା'ର ମତ ଲୋଡ଼ିବାକୁ କେହି ଆବଶ୍ୟକ ମନେକରୁ ନାହାନ୍ତି । ଗୋଟାଏ ଦୃଷ୍ଟିରୁ ଦେଖିଲେ ସିଏ ସବୁବେଳେ ବଞ୍ଚିତ ହୋଇ ରହୁଚି । ସେଥିଲାଗି ତା'ଲାଗି ସଭାସମ୍ମିଳନୀର ପ୍ରସ୍ତାବ ଓ ବିଧାନ-ସଭାର ବିଧାନ ଅନୁସାରେ ଯେତେ ଯାହା ବ୍ୟବସ୍ଥା ହେଉଚି, ସେଥିରେ ତା'ର ବିଶେଷ କିଛି ଲାଭ ହେଉ ନାହିଁ । ଯେପର୍ଯ୍ୟନ୍ତ ସେ ନିଜେ ବିଚାର କରି ନ ଶିଖିଚି ଓ ନିଜର ବିଚାରକୁ ଉପସ୍ଥାପିତ କରି ନ ଶିଖିଚି, ସେପର୍ଯ୍ୟନ୍ତ ଉପରେ ଥାଇ ସମସ୍ତେ ପ୍ରଧାନତଃ ତା'ର ଭାଗ୍ୟକୁ ନେଇ ଖେଳ ଖେଳୁଥିବେ, ଏବଂ ସିଏ ନିଜେ ତିମିର ଭିତରେ ରହିଥିବ । ନା—ମଣିଷର ଶାସନ ଚଳାଇବାକୁ ହେଲେ ମଣିଷକୁ ମଣିଷର ବ୍ୟବହାର ଦେବାକୁ ହେବ । ଅର୍ଥାତ୍ ଦେଶର ପ୍ରତ୍ୟେକ ମଣିଷ ଆପଣାକୁ ମଣିଷ ବୋଲି ଅନୁଭବ କରିବ, ତା'ର ଭଲମନ୍ଦ ସିଏ ବାଛିବ, ତା'ର ଶତ୍ରୁମିତ୍ରକୁ ସେହି ଚିହ୍ନି ରଖିବ । ତା'ର ଭାଗ୍ୟକୁ ସିଏ ନିଜେ ଗଢ଼ିବ, ସିଏ ନିଜେ ନିୟନ୍ତ୍ରଣ କରିବ । ସ୍ୱାଧୀନ ଦେଶରେ ଆମକୁ ଲୋକସମୂହ ଭିତରେ ଏହିପରି ଏକ ଚେତନା ଆଣିବାକୁ ପଡ଼ିବ । ନହେଲେ ରକ୍ଷା ନାହିଁ । ଏପରି ନ ହୋଇପାରିଥିବା ପର୍ଯ୍ୟନ୍ତ ନାନାପ୍ରକାର ସ୍ୱାର୍ଥସିଦ୍ଧିର କୁହେଳି ପ୍ରଭାତର ସୂର୍ଯ୍ୟକୁ ଘୋଡ଼ାଇ ରଖିଥିବ । ତେଣୁ ଆଗ ଶିକ୍ଷା ଦରକାର, ଲୋକଶିକ୍ଷା ଅର୍ଥାତ୍ ମନୁଷ୍ୟତ୍ୱବୋଧର ଶିକ୍ଷା ଦରକାର । ସମସ୍ତଙ୍କୁ ଏହି ଶିକ୍ଷା ମିଳିଲେ ଆମର ଅନେକ ସମସ୍ୟା ଅତି ସହଜରେ ସମାଧାନ ହୋଇଯିବ । ନାନା କ୍ଷୁଦ୍ର ରାଜନୀତିକ ଖେଳ ଓ ବାହାରକୁ ଏତେବଡ଼ କରି ଦିଶୁଥିବା କୂଟନୈତିକ ଅଭିନୟର ବିଶେଷ ହୋଇଯିବ । ଆଜି ମଣିଷ ପାଖକୁ ମଣିଷକୁ ଚରାଉଥିବା ବ୍ୟକ୍ତିମାନେ ସମ୍ମାନର ଉଚ୍ଚାସନରେ ବସି ମଣିଷ ପାଇଁ କଣ ଦରକାର ବା କଣ ଦରକାର ନୁହେଁ, ଏହାରି ଉପରେ ବଚସା କରିବାରେ ଲାଗିଚନ୍ତି । ନାନା ଦଳ ନାନା ମତଲବ ନେଇ ମଣିଷ ଭୁଲାଇବାକୁ ଆସୁଚନ୍ତି । ମଣିଷକୁ ମାଛ-ମାଂସ, ରସଗୋଲା ଦେଇ, ମହାପ୍ରସାଦ ଛୁଆଁଇ, ଲାଞ୍ଚ ଦେଇ ତା'ର ଭୋଟ ନିଆଯାଉଚି, ତଥାପି ଏହାକୁ ହିଁ ପ୍ରଜାତନ୍ତ୍ର ବୋଲି କୁହାଯାଉଚି । ଏହି କପଟ

ଖେଳ କେତେଦିନଯାଏ ଗ୍ଲଲିଥିବ, ଏହି ଅନ୍ୟାୟ ଖେଳକୁ ଆମେ କେତେଦିନ-ଯାଏ ସହୁଥିବା ? ମଣିଷର ପାଳି ଆଉ କେବେ ଆସିବ ?

୨୧ । ୧୧ । ୪୫

ଏଥର ଛୁଟି ପରେ ଘରୁ ବାହାରିବା ସମୟରେ ଭାଇ କହିଲେ ଶାନ୍ତିନିକେତନରୁ ତ ମୋତେ ଖୁବ୍ ବେଶୀ ସାହାଯ୍ୟ ମିଳୁ ନାହିଁ । ତେଣୁ ଆସନ୍ତା ବର୍ଷଠାରୁ କଟକରେ ସରକାରୀ କଲେଜରେ ପଢ଼ିଲେ ମଧ୍ୟ ଚଳିବ । ମୁଁ କୌଣସି ଉତ୍ତର ଦେଇ ନ ଥିଲି । ତଥାପି ମନଟା ଭାରି କଷ୍ଟ ହେଲା । ଏହିପରି କଥା ହୁଏତ ମୋତେ ଅନେକ ଥର ଶୁଣିବାକୁ ମିଳିବ । ସବୁଠାରୁ ବଳି ଦୁଃଖର କଥା ଯେ ଘରେ ମୋର ମନକଥାଟାକୁ ଆଜିଯାଏ ବି ବୁଝି-ପାରିଲେ ନାହିଁ । ଯାହାକୁ ମୁଁ କଳଙ୍କିତ ମନେକରି ପଛରେ ପକାଇଦେଇ ଆସିଚି, ଖାଲି ଡ଼ିଗ୍ରୀ ପାଇବାର ପାଠ ସକାଶେ ମୁଁ ସେଠାକୁ ପୁଣି ଫେରିଯିବି କିପରି ? ଜୀବନରେ ମୁଁ ହୁଏତ ସବୁ ଛାଡ଼ିପାରିବି, ମାତ୍ର ମୋର ବିବେକକୁ ପ୍ରତ୍ୟାଖ୍ୟାନ କରିପାରିବି ନାହିଁ । ସମ୍ପଦ, ଗୌରବ ସବୁ ଗୋଟି ଗୋଟି ହୋଇ ମୋତେ ଛାଡ଼ି ଗ୍ଲଲିଯିବ ପଛକେ, ମୋର ଆଦର୍ଶକୁ ମୁଁ ଶେଷପର୍ଯ୍ୟନ୍ତ ନିଜର-କରି ରଖିଥିବି । ଯେଉଁଦିନ ମୋ ହାତରୁ ସେତକ ମଧ୍ୟ ଗ୍ଲଲିଯିବ, ସେଦିନ ସମ୍ପଦ, ଧନ, ମାନ, ଯେତେ ଯାହା ଥାଉ ପଛକେ, ମୁଁ ଆଉ ନିଜକୁ ଜଣେ ମଣିଷ ବୋଲି କହିପାରିବି ନାହିଁ । ଏଠାରେ ବେଶୀ ଖର୍ଚ୍ଚ ପଡ଼ୁଚି ବୋଲି ଘରେ ମୋତେ ଅନ୍ୟତ୍ର ଯିବାଲାଗି କହୁଚନ୍ତି । ତେବେ ମୁଁ ବରଂ ଅମ୍ଳାନ ମୁଖରେ ପଢ଼ା ଛାଡ଼ି ଗ୍ଲଲିଯିବାକୁ ପ୍ରସ୍ତୁତ ଅଛି, ମାତ୍ର ପୁଣି ସେହି କଳଙ୍କ ଭିତରକୁ ଯାଇପାରିବି ନାହିଁ । ସେମାନେ ଅନେକ ସମୟରେ ଏକାଧିକ କଂଗ୍ରେସ ନେତାଙ୍କର ଉଦାହରଣ ଦିଅନ୍ତି, ଯେଉଁମାନେ କି ସରକାରୀ କଲେଜରେ ପାଠ ପଢ଼ି ମଧ୍ୟ ନିଜର ଜୀବନରେ ଅନେକ କିଛି ହୋଇପାରିଚନ୍ତି । ମୁଁ ସେହି ନେତାମାନଙ୍କର ନିନ୍ଦା କରୁ ନାହିଁ, ମାତ୍ର ତଥାପି ସେମାନଙ୍କୁ ମୁଁ ନକଲ କରିବାକୁ ମଧ୍ୟ ଗ୍ଲହୁ ନାହିଁ । କାହାର ପ୍ରରୋଚନାରେ ପଡ଼ି ତ ଆପଣା ଜୀବନର ବାଟ ଗ୍ଲଲୁ ନାହିଁ । ଯାହା ମୁଁ ଭଲ ବୁଝିଚି, ଆଜି ପର୍ଯ୍ୟନ୍ତ ସେଇଆ କରିଆସିଚି । ନିଜ ବିବେକକୁ ହିଁ ଗୁରୁ ବୋଲି ମାନିଆସିଚି ।

ଜଣେ ବିରାଟ ମନୀଷୀଙ୍କର କଳ୍ପନା ଶାନ୍ତିନିକେତନକୁ ଏକ ବିଶେଷ ଓ ମହନୀୟ ରୂପ ଦେଇପାରିଚି । ଗୋଟାଏ ବିଶେଷ ଆଦର୍ଶ ବା ଜୀବନ ଦର୍ଶନ ନେଇ ଏହି ଅନୁଷ୍ଠାନ ଆରମ୍ଭ ହୋଇଚି । ଆଜି କ୍ଷୁଦ୍ରତର ମଣିଷଙ୍କ ହାତରେ ପଡ଼ି ସେହି ଅନୁଷ୍ଠାନ ହୁଏତ ସେପରି ପରିଗ୍ଲଳିତ ହୋଇପାରୁ ନାହିଁ । ନିଜର ଖିଆଲ ଅନୁସାରେ ଏମାନେ ଅନେକ ସମୟରେ ଶାନ୍ତିନିକେତନକୁ ବଡ଼ ବିକୃତ ଓ ବିକଳାଙ୍ଗ କରିପକାଉଚନ୍ତି । ତେଣୁ ଏକ ସାଧନାକ୍ଷେତ୍ର ହେବା ପରିବର୍ତ୍ତେ

ଏହା ଏକ ତୀର୍ଥକ୍ଷେତ୍ର ବା ଧର୍ମକ୍ଷେତ୍ର ହେବାକୁ ବସିଚି । ଏଠି ବିଳାସର ମାତ୍ରା ଅତ୍ୟଧିକ ବଢ଼ିଯାଉଚି, ପଣ୍ୟ ବିନିମୟରେ ବ୍ୟବସାୟ ବି ଚାଲିଲାଣି । ରବୀନ୍ଦ୍ର ସାହିତ୍ୟକୁ ସାହିତ୍ୟ ହିସାବରେ ନ ଦେଖି ଲାଭଜନକ ଏକ ବ୍ୟବସାୟରେ ସାଧନ ରୂପେ ଗ୍ରହଣ କରାଗଲାଣି । ରବୀନ୍ଦ୍ରଙ୍କର ନାମକୁ ଯେତେଦୂର exploit କରାଯାଇପାରେ କରାଯାଉଚି । ବର୍ତ୍ତମାନ ପର୍ଯ୍ୟନ୍ତ ଯେତିକି ଭଲ ବାକୀ ରହିଚି, ତାହା ବି ମରଣୋନ୍ମୁଖ ହୋଇ ରହିଥିବା ପରି ଲାଗୁଚି । ଏସବୁ ଦେଖି ମନେହେଉଚି, କେତେଦିନ ପରେ ଏହି ଅନୁଷ୍ଠାନଟି ପ୍ରଧାନତଃ ବଡଲୋକ-ମାନଙ୍କର ଗୋଟାଏ ଆଡ଼୍ଡ଼ାରେ ପରିଣତ ହୋଇଯିବ । ଗରିବଙ୍କ ସକାଶେ ଏଠି ଆଉ କୌଣସି ବାଟ ଖୋଲା ରହିବ ନାହିଁ । ଏଥର ଆମ ଗାଆଁ ସ୍କୁଲରେ ପିଲାଙ୍କ ଆଗରେ ମୁଁ ଯେତେବେଳେ ଶାନ୍ତିନିକେତନର କଥାମାନ କହୁଥିଲି, ସେତେବେଳେ ସେମାନେ ଏହାକୁ ଖୁବ୍ ପସନ୍ଦ କଲେ, ମାତ୍ର ପରମୁହୂର୍ତ୍ତରେ କହିଲେ, 'ଆମକୁ ତ ଏଇଠି ଘରେ ଖାଇପିଇ ପାଠ ପଢ଼ିବାକୁ ପଇସା ଜୁଟୁ ନାହିଁ, ଆଉ ଶାନ୍ତିନିକେତନର ତୋଟାମୂଲ ଆମେ କାହିଁକି କରିବାକୁ ଯିବା ।

ସେଥିପାଇଁ ଗୋଟାଏ ଜିଦ୍ ଭିତରୁ ଆସୁଚି ଯେ, ଯେପରି ହେଉ ପଛକେ ମୁଁ ଏହିଠାରେ ହିଁ ପଢ଼ିବି ଓ ଯଥାସମ୍ଭବ ଏଠାକାର ଭଲ ଜିନିଷଗୁଡ଼ିକୁ ଗ୍ରହଣ କରିବି । ଖାଲି ପଇସା ବଳରେ ଗୋଟାଏ ଶ୍ରେଣୀ ଏହି ଅନୁଷ୍ଠାନର ଅଯୋଗ୍ୟ ଅଧିକାରୀ ହୋଇ ରହିବ, ଏକଥା କଦାପି ଚଳିବ ନାହିଁ । ଅଭାବ-ସତ୍ତ୍ୱେ ଏଠାକୁ ତଥାପି ଆସିବାକୁ ହେବ, ଏଠୁ ସାର ନେଇ ମଣିଷ ହେବାକୁ ପଡ଼ିବ ।

୨୪ । ୧୧ । ୪୫

'ସମାଜ'ରୁ ପଢ଼ିବାକୁ ପାଇଲି ଯେ ଓଡ଼ିଶାରେ ଡିଷ୍ଟ୍ରିକ୍ଟ ବୋର୍ଡ ନିର୍ବାଚନରେ କଂଗ୍ରେସର ବିପୁଳ ଜୟ ହୋଇଚି । ଏହାଦ୍ୱାରା ଅନ୍ତତଃ ଏତିକି ଜଣାପଡ଼ିଲା ଯେ ଲୋକଶକ୍ତି କଂଗ୍ରେସ ପଛରେ ହିଁ ରହିଚି । ଏହି ଲୋକମତକୁ କଂଗ୍ରେସ ଯଦି ଠିକ୍ ମାର୍ଗରେ ପରିଚାଳିତ କରିପାରନ୍ତା ! ମାତ୍ର ଅନେକ ସମୟରେ ମୋର ମନେହୁଏ ଯେ ଲୋକେ ଅନେକ ଆଗକୁ ଚାଲିଗଲେଣି, କିନ୍ତୁ ନେତାମାନେ ହିଁ ପଛରେ ପଡ଼ିଚନ୍ତି ।

୭ । ୧୨ । ୪୫

ଏହି ଜଗତର ମଣିଷକୁ ଚିହ୍ନିବି, ତାକୁ ସବୁଠାରୁ ଅଧିକ ଆପଣାର ବୋଲି ଭାବିବି, ତା'ର ଦୈନନ୍ଦିନ ଜୀବନ, ସୁଖଦୁଃଖ, ଅଶ୍ରୁ ଓ ଆନନ୍ଦ ଭିତରେ ରହି ମୁଁ ନିଜକୁ ମଧ୍ୟ ବିକଶିତ କରି ଚାଲିଥିବି । ଏହା ହିଁ ମୋର ଲକ୍ଷ୍ୟ ।

୧୬ । ୧୨ । ୪୫

ଏଇ କେତୋଟି ଦିନ ମୋର ସବୁକାମ ଛାଡ଼ି ମୁଁ ଶ୍ରୀ Edmund Holmesଙ୍କର ଦୁଇଟି ବହି ଭିତରେ ନିମଗ୍ନ ହୋଇ ରହିଚି । ସବୁ ଛାଡ଼ି ମୁଁ ସେହି ବହିକୁ ଧରି ବସିବାକୁ ହିଁ ଚାହୁଁଚି । ମୋର ମନେହେଉଚି, ଆଗରୁ ମୋର ମନଭିତରେ ଯେଉଁସବୁ ଧାରଣା ଥିଲା ଅଥଚ ପ୍ରକାଶିତ ହେବାର ବାଟ ପାଉ ନ ଥିଲା, ବା ଯେଉଁଗୁଡ଼ିକ ପ୍ରକାଶ କରିବାଲାଗି ମୋର ଯଥେଷ୍ଟ ଶକ୍ତି ନ ଥିଲା, ଏହି ଦୁଇଟି ବହିଭିତରେ ଯେପରି ମୁଁ ସେହିସବୁ ଭାବନାର ପରିଚୟ ପାଉଚି । ସେଥିଲାଗି ମୋର ଆନନ୍ଦର ସୀମା ନାହିଁ । ବହିରେ ଥିବା ତିନୋଟି କଥା ଯେପରି ମୋ' ମନଉପରେ ଗାର ପଡ଼ି ରହିଯାଇଚି : Grow and you will know; Grow and you will see; Grow you will become.

କେତେଦିନ ହେଲା ହୃଦୟ ଭିତରେ ମୁଁ ଗୋଟାଏ ଅସ୍ଥିର ଆନନ୍ଦ ଅନୁଭବ କରିପାରୁଚି । ମୋର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟଦେଇ ସବୁବେଳେ ସତେଅବା କାହାର ହସ ଫୁଟିଉଠୁଥିବାପରି ଲାଗୁଚି । ମୋତେ ଖାଲି ଭୁଲାଇ ରଖୁଚି । ନିକଟ ଦୂର, ଆପଣା ପର ସବୁ ଖାଲି ଆନନ୍ଦ ଓ ଆବେଗମୟ ବୋଧ ହେଉଚି । ପୃଥିବୀର ସବୁ କାନ୍ଦ ଭିତରେ, ଜଗତର ସବୁ ଦୈନ୍ୟ ଓ ଦୁଃଖ ଭିତରେ ଯେପରି ଗୋଟାଏ ଆଗାମୀ ଆନନ୍ଦର ସନ୍ଦେଶ ଲୁଚି ରହିଥିଲା ପରି ମନେହେଉଚି । ସବୁ ଆବରଣ ଭାଙ୍ଗି ସବୁଠାରେ ଆନନ୍ଦର ଉତ୍ସରଣ ସୃଷ୍ଟି କରିଦେବା ଲାଗି ଖାଲି ଜଗତ ଭିତରକୁ ଡେଇଁ ପଡ଼ିବାକୁ ଇଚ୍ଛା ହେଉଚି । ମୁଁ ଜାଣେନା, ତଥାପି ମୋର ମନେହେଉଚି ଯେ ପ୍ରତ୍ୟେକ ମଣିଷର ଜୀବନରେ ବୋଧହୁଏ ଏହିପରି ଏକ ସମୟ ଆସୁଥିବ, ଯେତେବେଳେ ସେ ଖାଲି ଆତ୍ମହରା ହୋଇପଡ଼ୁଥିବ, ଆପଣାର ଆଖିଆଗରେ ଜୀବନର ଦୀର୍ଘ ପଥକୁ ସେ ଅତି ସ୍ପଷ୍ଟଭାବରେ ଦେଖିପାରୁଥିବ, ସତେଅବା କାହାର ଇଙ୍ଗିତ ପାଇଥିବା ପରି ସେ କେତେ କେତେ ଯୁଗର ସଂଶୟକୁହୁଡ଼ି ଭେଦ କରି ଖାଲି ଆଗକୁ ଯିବାଲାଗି ଉଚ୍ଛନ୍ନ ହୋଇ ଉଠୁଥିବ ।

୩ । ୨ । ୪୬

ଗୋଟାଏ ପୁରୁଣା ବର୍ଷ ଯାଇ ଆଉ ଗୋଟାଏ ନୂଆ ବର୍ଷ ଆସିଲା । ମାତ୍ର ମୁଁ କଣ ପୁରୁଣା ମନର ଅଳିଆ ଆବର୍ଜନାକୁ ପଛରେ ପକାଇଦେଇ ଆପଣାର ପାତ୍ରହସ୍ତରେ ନୂତନର ଦୁଆରେ ଆସି ଠିଆ ହୋଇପାରିଲି କି ? ନୂତନର ଅଭିନନ୍ଦନ କରିବା, ଆପଣା ମନର ସଜ୍ଜିତ ତୋରଣ ଦେଇ ନୂତନକୁ ଘରଭିତରକୁ ବରଣ କରିଆଣିବା ଆଦୌ ସହଜ ନୁହେଁ । ନୂତନ ବଡ଼ ନିଷ୍ଠୁର, କେବଳ ପୁରାତନର ଯାବତୀୟ ଜୀର୍ଣ୍ଣତା ଓ ମଳିନତାର ସମାଧି ଉପରେ ହିଁ ନୂତନଲାଗି ଆସନ ତିଆରି ହୋଇପାରେ ।

ଅନେକଦିନ ହେଲା ମୁଁ ଡାଏରି ଲେଖି ନାହିଁ । କାରଣ ମୋତେ ଜଣା ନାହିଁ, ତଥାପି ମୁଁ ଏତିକି କହିପାରିବି ଯେ ମୁଁ କେବେହେଲେ ମୋର କର୍ତ୍ତବ୍ୟକୁ ଭୁଲିଯାଇ ନାହିଁ । ଶାନ୍ତିନିକେତନର ଗ୍ରନ୍ଥାଳୟ ମୋତେ ପାଗଳ କରିଦେଇଚି, ଜ୍ଞାନର ବିରାଟ ଗ୍ରନ୍ଥାଘର ଆଗରେ ପ୍ରକୃତରେ ଆମେ କେଡ଼େ କ୍ଷୁଦ୍ର, ଯେତେ ଚେଷ୍ଟା କଲେ ମଧ୍ୟ ଆମେ ଏହାର ସହସ୍ରାଂଶ ବି ଜାଣିପାରୁ ନାହିଁ । ମୁଁ ଅନୁଭବ କରୁଚି ଯେପରି ଏଠାକାର ଗ୍ରନ୍ଥାଳୟଠାରୁ ମୁଁ ଏକ ଉଚ୍ଚାଟ ଆହ୍ୱାନ ପାଇଚି । ତାହାରି ଭିତରେ ଆପଣାର ମନ ଓ ଧ୍ୟାନକୁ ବୁଡ଼ାଇ ରଖିବାକୁ ଭାରି ମନ ହେଉଚି । ଏହି ଆହ୍ୱାନକୁ ଶୁଣିପାରିବାର ଶକ୍ତି ମୋର ସବୁଦିନ ଲାଗି ରହିବ କି ନାହିଁ କେଜାଣି ? ଜ୍ଞାନଘରେ ବୟସଲାଗି କୌଣସି ବାଧା ନାହିଁ, ଜ୍ଞାନର ଆକର୍ଷଣ ଲାଗିଲେ ବୃଦ୍ଧ ବି ବାଉଳା ହୋଇଯାଇପାରେ ।

ଯା' ଭିତରେ ବଡ଼ଦିନ ଭ୍ରମଣ ସରିଯାଇଚି । ପାଠଭବନର ପିଲାଙ୍କ ସହିତ ମୁଁ ଜାମାଲପୁର, ଗୟା ଓ ହଜାରିବାଗ ପ୍ରଭୃତି ସ୍ଥାନ ବୁଲିଆସିଚି । ଏହାଦ୍ୱାରା ଶାନ୍ତିନିକେତନର କିଶୋରଶିକ୍ଷା ବିଷୟରେ ମୋର ଅନେକ ଅଭିଜ୍ଞତା ହୋଇପାରିଚି । ଏଠି ପିଲାଏ ଖୁବ୍ ଖୁସୀରେ ବଢ଼ୁଚନ୍ତି, ଜୀବନର ଦୁଃଖମୟ ଦିଗଟାକୁ ଏମାନଙ୍କଠାରୁ ଦୂରରେ ରଖାଯାଇଚି, ଖୁବ୍ ଭଲ ଓ ଆଶାର କଥା । ଛାତ୍ରକୁ ସରସ ଓ ସୁନ୍ଦର କରି ବଢ଼ାଇବାକୁ ହେଲେ ଏମିତି ଏକ ଆନନ୍ଦ ଓ ହସଭରା ବାତାବରଣ ହିଁ ସୃଷ୍ଟି କରି ରଖିବାକୁ ପଡ଼େ । ମାତ୍ର ଏଠି ପିଲାମାନଙ୍କୁ ଯେପରି ଆନନ୍ଦ ଭିତରେ ରଖାଯାଉଚି, ସେଇଟାକୁ ମୁଁ ସମ୍ପୂର୍ଣ୍ଣ ନିର୍ମଳ ବା ସ୍ୱାଭାବିକ ଆନନ୍ଦ ବୋଲି ଆଦୌ କହିପାରିବି ନାହିଁ । ଏମାନେ ପରସ୍ପର ପାଖରେ ହୃଦୟ ଖୋଲି କଥାବାର୍ତ୍ତା କରିପାରୁ ନାହାନ୍ତି, ଏହି ପିଲାଟିଦିନରୁ ଭିତରେ ଗୋଟାଏ ରକମର ଭାବ ରଖି ବାହାରେ କପଟ ମିଠା ଭଦ୍ରତା ଦେଖାଇବା ମଧ୍ୟ ଏମାନଙ୍କର ଆୟତ୍ତ ହୋଇଗଲାଣି । କର୍ମଜନିତ ଆନନ୍ଦ, ଅର୍ଥାତ୍ ଆପଣାର କାମ ଆପେ କରିବା ଦ୍ୱାରା ମିଳୁଥିବା ଆନନ୍ଦ ଏମାନେ ଖୁବ୍‌ବେଶୀ ପାଇ ନାହାନ୍ତି । ଓଲଟି ଆପେ ଅଳସୁଆ ହୋଇ ବସି ଆପଣାର କାମଟା ଅନ୍ୟ କାହାରି ଦ୍ୱାରା ହୋଇଗଲେ ଏମାନେ ନିଜକୁ ଭାଗ୍ୟବାନ୍ ମନେକରୁଚନ୍ତି । ଏମାନଙ୍କ ଭିତରେ ମୁଁ ଯଥେଷ୍ଟ ସହଭାବ ଓ ସହିଷ୍ଣୁତା ଦେଖିବାକୁ ପାଇଲି ନାହିଁ । ସମସ୍ତେ ଏକାଠି ମିଶି ଗୋଟାଏ ଦାୟିତ୍ୱକୁ ତୁଲାଇନେବା ମନୋଭାବ ଏଠି କେତେକ ଶିକ୍ଷକଙ୍କ ପାଖରେ ମଧ୍ୟ ନାହିଁ, ପିଲାମାନଙ୍କଠାରେ ଆସିବ କୁଆଡ଼ୁ ? ପ୍ରକୃତିର ବିଭିନ୍ନ ରୂପବଦଳର ସହିତ ତାଳ ରଖି, ସମୟାନୁବର୍ତ୍ତୀ ହୋଇ ମଣିଷ ଯେଉଁ ଆନନ୍ଦ ପାଏ, ଏମାନେ ସେହି ଆନନ୍ଦ ପାଇ ନାହାନ୍ତି । ସକାଳୁ ଉଠିବାର ଅଭ୍ୟାସ, ପରିଷ୍କାର ରହିବାର ଓ ସତ କହିବାର ଅଭ୍ୟାସ, ସ୍ୱାସ୍ଥ୍ୟର ନିୟମ ଅନୁସାରେ ଖାଇବା, ପିନ୍ଧିବା ଓ ଶୋଇବାର ଅଭ୍ୟାସ ଏମାନଙ୍କର ନାହିଁ ।

ଏହି ପିଲାମାନେ ଯେ ଏହି ଦେଶର ମଣିଷ, ଏ ଦେଶର ମାଟି, ଜୀବନ ଓ ମଣିଷକୁ ଆତ୍ମୀୟ ପରି ଭଲପାଇବାର ଯେ ଗୋଟାଏ କର୍ତ୍ତବ୍ୟ ସେମାନଙ୍କର ରହିଚି, ସେମାନଙ୍କୁ ଏହି ବୋଧ ଦିଆଯାଇ ନାହିଁ । ଏ ଦେଶ ସେମାନଙ୍କର ଦେଶ, ଭବିଷ୍ୟତ ଜୀବନର ବହୁମୁଖୀ କାର୍ଯ୍ୟଦ୍ୱାରା ସେଇମାନଙ୍କୁ ଯେ ଏହି ଦେଶକୁ ସମୃଦ୍ଧିମନ୍ତ କରିବାକୁ ହେବ, ସେମାନେ ଏହି ପ୍ରେରଣା ପାଇପାରୁ ନାହାନ୍ତି । ଏ ଦେଶର ସୁବିଧାଭୋଗୀ ଉଚ୍ଚତର ବର୍ଗ ହିସାବରେ ସେମାନଙ୍କର ଯେ ଦେଶର ଜନଗଣଙ୍କ ପ୍ରତି ଗୋଟାଏ କର୍ତ୍ତବ୍ୟ ମଧ୍ୟ ରହିଚି, ଏକଥା ସେମାନଙ୍କୁ କୁହାଯାଇ ନାହିଁ । ପିଲାଟି ଦିନରୁ ଛାତ୍ର ସବୁମଣିଷକୁ ଭଲ ପାଇ ଶିଖିବ, ପ୍ରତ୍ୟେକ ଜୀବନକୁ ସମ୍ମାନ କରିବ, କାହାରି ପ୍ରତି ଘୃଣା ରଖିବ ନାହିଁ, ବିଶ୍ୱଭାରତୀର ଛାତ୍ରମାନଙ୍କଠାରୁ ନିଶ୍ଚୟ ଏତିକି ଆଶା କରାଯିବା ଉଚିତ ।

ଏତେଟିକିଏ କଷ୍ଟ ସହିବାକୁ ପଡ଼ିଲେ ଏମାନେ ଆତଙ୍କିତ ହୋଇ ଉଠୁଚନ୍ତି । ଭାରତର ଭବିଷ୍ୟତ ଆକାଶ କମ୍ପାଇ ଯେଉଁ ଭୀଷଣ ଝଡ଼ଝଞ୍ଜା ବହିବ, ସେହି ଝଡ଼ର ସମ୍ମୁଖରେ ଏମାନେ ନିଜକୁ ଉଚ୍ଚ, ଉନ୍ନତ ଓ ଉଦ୍ଦୀପିତ କରି ରଖିପାରିବେ କିପରି ? ଭବିଷ୍ୟତ ଭାରତର ବିରାଟ ଗଠନ ପର୍ବରେ ଏମାନେ କ'ଣ କୌଣସି ଭାଗ ନେବେ ନାହିଁ ? ତେବେ ସେମାନଙ୍କୁ ସେପରି ଶିକ୍ଷା ନ ମିଳୁଚି କାହିଁକି ? ବର୍ତ୍ତମାନ ତଥା ଭବିଷ୍ୟତ ଭାରତ ଏହି ଶାନ୍ତିନିକେତନ-ଠାରୁ ଅନେକ କିଛି ଆଶା କରେ । ଦେଶର କେତେ ପଇସା ଖରଚ ହୋଇ ଏଠାରେ ଶିକ୍ଷାଦାନର କାର୍ଯ୍ୟକ୍ରମ ଚାଲିଚି, ଏଠିକାର ଛାତ୍ରଛାତ୍ରୀ ଜାତିର ସେହି ଋଣକୁ ପରିଶୋଧ କରିବାଲାଗି ଏଇଦିନୁ ତିଆରି ହେବା ଉଚିତ ।

୨୭ । ୨ । ୪୬

ଆଜି ମୁଁ ନିଜକୁ ଚିହ୍ନିପାରୁ ନାହିଁ । ଯିଏ ମୋର ଭିତରେ ରହି ମୋତେ ହସାଇ କନ୍ଦାଇ, ନାନା ସମୟରେ ନାନା ଆଘାତ ଆଲିଙ୍ଗନଦ୍ୱାରା ସଂଜୀବିତ କରି ରଖିଥିଲା, ଆଜି ମନର ଅନ୍ତରାଳରେ ମୁଁ ତାକୁ ଖୋଜି ପାଉ ନାହିଁ । ଆଜି କିଏ ମୁଁ ଦିଗ ହରାଇ ପକାଇଚି ? ମୋର ଅତି ପ୍ରିୟ ସେଇ ପ୍ରିୟତମକୁ ତେବେ ମୁଁ ଚିହ୍ନିପାରୁ ନାହିଁ କିପରି ?

ଆଜି ମନେ ପଡ଼ୁଚି, ତିନିବର୍ଷ ତଳେ ଜେଲଭିତରେ ବନ୍ଦୀ ଜୀବନ ଯାପନ କରିବା ବେଳର କଥା । ମୁଁ ସେତେବେଳେ କବିତା ଲେଖିବାକୁ ଆରମ୍ଭ କରୁଥିଲି । କାହାରି ଉତ୍ସାହରେ ନୁହେଁ, କୌଣସି ଆଶା ରଖି ନୁହେଁ, ସମସ୍ତ ସକାଳ ସମୟଟା ଗୋଟାଏ ଜାଗାରେ ବସି ମୁଁ ଖାଲି ଲେଖି ଯାଉଥିଲି । ସେତେବେଳେ ମନେହେଉଥିଲା, ଯେପରି ମୋ ଜୀବନପଥର ସକଳ ବାଧାବିଘ୍ନ ଓ ଭୀଷଣତା ଭିତରେ ଗୋଟାଏ ଆଲୁଅ ଆଗରେ ରହି

ମୋତେ ବାଟ କଢ଼ାଇ ନେଇଯାଉଚି । ସେତେବେଳେ ମୁଁ ଯେପରି ମୋର ଅତି ଆପଣାର ଗୋଟାଏ କାହାକୁ ଚିହ୍ନିଥିଲି, ତାହାରି ଇଙ୍ଗିତରେ ଓ ତାହାରି ଆକର୍ଷଣରେ ମୁଁ ସତତ ଗ୍ଭଲିଯାଉଥିଲି । ଜଗତର ଏତେ ନିକଟରେ ଥାଇ ସୁଦ୍ଧା ଏତେ ଦୂରରେ, ଦରଦୀ ଓ ଦୁଃଖୀ, ଚିନ୍ତାକୁଳ ରାଜବନ୍ଦୀମାନଙ୍କର ସେହି ଅଦ୍‌ଭୁତ ମେଳଭିତରେ ମଧ୍ୟ ମୁଁ ଯେପରି ଅଶେଷ ପରିତୃପ୍ତିର ସହିତ ରହିଥିଲି । କାମ କରିବାରେ, ବାଟ ଗ୍ଭଲିବାରେ ଓ ଝୁଣ୍ଟିକରି ପଡ଼ି ପୁଣି ଉଠି ବାଟ ଗ୍ଭଲିବାରେ ମୁଁ ଯେପରି ଏକ ସ୍ୱର୍ଗୀୟ ସନ୍ତୋଷ ପାଉଥିଲି ।

ମାତ୍ର ଆଜି ? ନାନା ଖାଇଢିପ ଭିତର ଦେଇ ମୁଁ ଏପର୍ଯ୍ୟନ୍ତ ଆସିଲିଣି । ଏହା ଭିତରେ ଅନେକ ଭୁଲ କରିଚି । ଅନେକ ଶିଖିଚି । ଅନେକ ଅପମାନ ପାଇଚି । ପଥର ସମ୍ପଦ କରି ସେଗୁଡ଼ାକୁ ମଧ୍ୟ ଲୁଗାକାନିରେ ବାନ୍ଧିରଖିଚି । କେତେଥର ମର୍ମାହତ ହୋଇପଡ଼ିଚି । ତଥାପି ସେଇ ଆଘାତକୁ ବିଜୟୀ ସେନାନାୟକର ଲଲାଟକ୍ଷତ ପରି ମୁଁ ଅତି ଆଦରରେ ସହ୍ୟ କରି-ନେଇଚି, ସେଥିରେ ବି ଗୌରବ ମନେକରିଚି । ସେଇ ହାତର ଇଙ୍ଗିତ, ଯିଏ ମୋତେ ନାନା ଉପାୟରେ ଜୀବନରେ କଠିନ ଶିକ୍ଷାର ଯୋଗ୍ୟ କରିଚି, ମାସ ମାସ ଧରି କନ୍ଦାଇଚି, ମୁଁ ଆଜି ତାକୁ ଚିହ୍ନିପାରୁ ନାହିଁ କିପରି ?

ତେବେ ମୁଁ କ'ଣ ତାକୁ ହରାଇ ବସିଚି ? ମିଛ କଥା—ଯିଏ ମୋର ଏତେ ଆପଣାର ପରି ଏତେ ନିକଟରେ ରହି ଆସିଥିଲା, ସେ ମୋତେ ଏପରି ଭାବରେ ଛାଡ଼ି ଗ୍ଭଲିଯାଇ ପାରିବ କିପରି ? ସେ ଅଛି, ସିଏ ମୋ'ରି ଭିତରେ ଅଛି, ମୋର ପ୍ରତ୍ୟେକ ମୁହୂର୍ତ୍ତରେ ସେ ମୋତେ ପରୀକ୍ଷା କରୁଚି, ଆପଣାର ମାପକାଠି ପକାଇ ମୋତେ ମାପୁଚି । ମୁଁ ବେଶ୍ ଅନୁଭବ କରିପାରୁଚି, ମୋର ମନର ଦଉଡ଼ିକୁ ଠିକ୍ ହାତରେ ଧରିଚି । ମଜା ଦେଖିବାକୁ ହୁଏତ ଦଉଡ଼ିଟାକୁ ଟିକିଏ ହୁଗୁଳା କରିଦେଇଚି । ମୁଁ ସଂସାର ଭିତରେ ରହିବି, ସମସ୍ତଙ୍କୁ ପ୍ରିୟ କରିବି । ସମସ୍ତ ଜଗତକୁ ମୋର ଆପଣାର କରି ରଖିବି; ତଥାପି ନିଜର ନିଜତ୍ୱକୁ ମୁଁ ଭୁଲିବି ନାହିଁ, ନିଜର ଅତି ଆପଣାର ସେହି କର୍ଣ୍ଣଧାରକୁ ଭୁଲିବି ନାହିଁ । ଏହା ହେଉଚି ମୋର ସବୁଠାରୁ ବଡ଼ ଶିକ୍ଷା । ମାତ୍ର ଯେତେବେଳେ ମୁଁ ସଂସାରର ଉଚ୍ଛଳ ଜନସମୁଦ୍ର ଭିତରେ ପଶିଯାଉଚି, ସେତିକିବେଳେ ମୁଁ ବେଳେବେଳେ ଏପରି ଆତ୍ମହରା ହୋଇପଡ଼ୁଚି କାହିଁକି ? ସବୁ ଦୁଆରେ ହାତ ପତାଇବାକୁ, ସବୁ ପାତ୍ରରୁ ଜଳପାନ କରିବାକୁ ଓ ସବୁ ପତରରୁ ଖାଦ୍ୟ ଗୋଟାଇବାକୁ ମୁଁ ଏପରି ଅଧୀର ହୋଇପଡ଼ୁଚି କାହିଁକି ? ଏହି ପୃଥିବୀକୁ ଯେ ମୁଁ ଭଲପାଏ, ସବୁରି ସହିତ ଯେ ମୁଁ ଏକାତ୍ମ ଅନୁଭବ କରେ, ଏହା କ'ଣ ତା'ର ପ୍ରମାଣ ? ଅବଶ୍ୟ ଆତ୍ମସମର୍ପଣରେ ହିଁ ପ୍ରେମପ୍ରୀତିର ଆତ୍ମପ୍ରକାଶ ହୋଇଥାଏ । ମାତ୍ର ଏହି ଆତ୍ମସମର୍ପଣ ଦୁଇ ପ୍ରକାରର,—ସବଳ ଆତ୍ମସମର୍ପଣ

ଓ ଦୁର୍ବଳ ଆତ୍ମସମର୍ପଣ । ବେଳେବେଳେ ଅନ୍ତରଭିତରୁ ଏପରି ଗୋଟାଏ ଦୁର୍ବଳତା ଆସେ, ଯାହାଦ୍ୱାରା କି ଜୀବନର ସମସ୍ତ ସୌନ୍ଦର୍ଯ୍ୟ ଓ ସମସ୍ତ ଉଜ୍ଜ୍ୱଳତା ନଷ୍ଟ ହୋଇଯାଏ ଏବଂ ସେତେବେଳେ ଠିକ୍ ଗୋଟିଏ ଭୁଗ୍ଣ ମୂଷାପରି ମୁଁ ଏ ଗାତରୁ ସେ ଗାତ ହେଲାପରି ଦ୍ୱାରଦ୍ୱାର ହୋଇ ବୁଲେ । ସେତେବେଳେ କୌଣସି ଉଦ୍ଦେଶ୍ୟ ନ ଥାଏ । ଦୁର୍ବଳର ଏହି ଅପ୍ରୀତିକର ଓ ଉପହାସକର ପ୍ରୀତିଭିକ୍ଷା ଜଗତରେ କିଛି ସାଧନ କରିପାରେ ନାହିଁ । କେବଳ ପଶ୍ଚାତାପ ହିଁ ସାର ହୁଏ । ଏହିପରି ଦୁର୍ବଳ ଓ ସନ୍ଦିଗ୍ଧ ଚିତ୍ତର ଆତ୍ମସମର୍ପଣ କରିବାର ଅର୍ଥ ହେଉଚି ଜଗତରେ ଅପମାନିତ ହେବା, ନିଜର ତଥା ଜଗତର ସୌନ୍ଦର୍ଯ୍ୟହାନି ଘଟାଇବା ।

ପ୍ରତ୍ୟେକ ମଣିଷର ଜୀବନରେ ଗୋଟାଏ ଗୋଟାଏ ଲକ୍ଷ୍ୟ ଥାଏ । ସେ ସେହି ଲକ୍ଷ୍ୟ ପଥରେ ଚାଲିବାର ବାସନା ରଖି ଯାଉଥାଏ । ସତ୍ୟସନ୍ଧାନର ନିଶା ଓ ନିଷ୍ଠା ତା'ର ଅନ୍ତର ଭିତରକୁ ସାହସ ଓ ସୌନ୍ଦର୍ଯ୍ୟରେ ଭରି ରଖିଥାଏ ଏବଂ ସେହି ସାହସ ବଳରେ ହିଁ ସେ ଆପଣା ଜୀବନର ଦୁଆରକୁ ଜଗତ ଆଡ଼କୁ ଖୋଲା ରଖିଥାଏ । ସେ ବାଟ ଚାଲୁଥାଏ, ଏକାକୀ ଚାଲୁଥାଏ, ତଥାପି କିଏ ଆସି କିଛି ଲୁଟିନେବ ବୋଲି ତା'ର କୌଣସି ଭୟ ନ ଥାଏ । ତା'ର ଜୀବନଯାତ୍ରା ତାକୁ ଅନେକଙ୍କ ସହିତ ପରିଚିତ କରାଏ, ତା'ର ଜୀବନପସରା ଉପରେ ଅନେକଙ୍କର ସ୍ନେହ ଓ ଶ୍ରଦ୍ଧା ଆସି ଅଜାଡ଼ି ହୋଇଯାଏ । ସେ ସଂସାରକୁ ଦିଏ, ସଂସାରଠାରୁ ନିଏ; ତଥାପି ଆପଣାର ପଥରେ ହିଁ ଚାଲୁଥାଏ । ଭଣ୍ଡାରର ରତ୍ନରାଶି ସରିଯିବ ବୋଲି ସନ୍ଦେହ କରି ସେ କାହାରିପାଇଁ ତା'ର ଗଣ୍ଡାଘରକୁ ଚାବି ପକାଇ ରଖେ ନାହିଁ । ଏହାକୁ ସବଳର ଆତ୍ମସମର୍ପଣ ବା ଆତ୍ମନିବେଦନ ବୋଲି ମୁଁ କହିବି ।

ଯାହାପାଖରେ ଅର୍ପଣ କରିବାଭଳି ନିଜର କିଛି ନାହିଁ, ସିଏ କାହାକୁ କଣ ଦେଇପାରିବ ? ଯାହାଠାରେ ଜୀବନ ନାହିଁ, ପରପାଇଁ ଜୀବନ ଦେବାର ଅଭିଳାଷ ରଖିବା ତା'ପକ୍ଷରେ ଖୁବ୍ ସହଜ, ମାତ୍ର ବଡ଼ ନିରର୍ଥକ । ବିରାଡ଼ିର ଭୋକ ଶାନ୍ତି କରିବା ପାଇଁ ମୂଷାର ଆତ୍ମନିବେଦନ ପରି ଏହା ଦୁର୍ବଳତା ଓ ସହାୟହୀନତାର ପରିଚାୟକ । ଜଗତରେ ଯିଏ ଯଥାର୍ଥ ମଣିଷ ହୋଇପାରିବ, କେବଳ ସେଇ ଯଥାର୍ଥ ଆତ୍ମସମର୍ପଣ କରିପାରିବ ।

ଜଗତରେ ଯାହା ଯେଉଁଠାରେ ଭଲ ରହିଚି, ମୁଁ ନିଶ୍ଚୟ ସେଠାକୁ ଯିବି । ଅପମାନ ଓ ଆଘାତ ପାଇ ମଧ୍ୟ ମୁଁ ସେଠାକୁ ଯିବି । ଜଗତରେ ଯାହା ଭଲ, ଯେଉଁଥିରେ ମଣିଷର ଭଲ ନିହିତ ରହିଚି, ମୁଁ ସେଇଥିପାଇଁ ଆତ୍ମଦାନ କରିବି । ସଂସାରର ପ୍ରତ୍ୟେକ ଜିଜ୍ଞାସୁ ଓ ମୁକ୍ତିକାମୀ ମଣିଷ ସହିତ ମୁଁ ସଖ୍ୟସ୍ଥାପନ କରିବି, ମୋ' ଜୀବନର ଦର୍ପଣଟିକୁ ମୁଁ ସେଇଠି ପରିଷ୍କାର କରି

ଧରିରଖିବି । ମାତ୍ର ଦୁର୍ବଳ ଓ ସହାୟହୀନଭାବରେ ଅବିଶ୍ୱାସପୂର୍ଣ୍ଣ ସନ୍ଦିଗ୍ଧ ମନ ନେଇ ସମସ୍ତଙ୍କର ଗୋଇଠା ଖାଇବା ପାଇଁ ମୁଁ ରାସ୍ତାଉପରେ ପଡ଼ି ରହିବି ନାହିଁ ।

ଜଗତକୁ ମଣିଷ ହୋଇ ଆସିଚି, ତେଣୁ ଅନ୍ୟର ମଣିଷ ହେବାରେ ତାକୁ ସାହାଯ୍ୟ କରି ହିଁ ମୁଁ ଏହି ମହାଋଣର ପରିଶୋଧ କରିବି । ମାତ୍ର ମଣିଷକୁ ପଶୁ କରି ବା ପଶୁକୁ ଅତିପଶୁ କରି ମୁଁ ନିଜର ମଣିଷପଣିଆର ଅବମାନନା କରିବି ନାହିଁ । ମୋର ଜୀବନ, ମୋର ସ୍ନେହ, ପ୍ରେମ ଓ ଭଲପାଇବା ଜଗତଲାଗି ସବୁବେଳେ ମୁକ୍ତ ରହିବ, ମାତ୍ର ମୋ' ନିଜଭିତରେ ମଧ୍ୟ ଆପଣାଲାଗି ବିଶ୍ୱାସ ଭରି ରହିଥିବ, ମୋର ସ୍ୱକୀୟ ପଥରେ ଚାଲିବାର ଗୌରବ ମଧ୍ୟ ଭରି ରହିଥିବ ।

୧୧ । ୫ । ୪୬

ଆଜିକୁ ଛଅଦିନ ହୋଇଗଲା । ସେଇ ଖଟ, ଖଟରୁ ପାଇଖାନା, ଗାଧୁଆଘର ବା ଖାଇବା ଥାଳି । ବାସ୍ । ଆସାମ ବୁଲି ଆସିଥିଲି । ମାତ୍ର ଶେଷରେ ନଓଗଙ୍ଗ୍ ସହରରେ ଏଠି ଭଦ୍ରଲୋକଙ୍କ ଘରେ ଗୋଟାଏ ରୀତିମତ ହାସପାତାଲ ଖୋଲିବସିଲି । ଟେବୁଲ ଉପରେ ଔଷଧ ଶିଶି, କାଗଜିଲେମ୍ବୁ, କାଚଗିଲାସ ଆଉ କପ୍‌ପି ଆଲା ।

ପିନ୍ଧା ଲୁଙ୍ଗି ଆଉ ହାଫ୍‌ଶାର୍ଟ ଖଣ୍ଡିକ କେତେଥର ଝାଳରେ ଭିଜି ପୁଣି ମନକୁମନ ଶୁଖି ସାରିଲାଣି, ଝାଳମରା ହୋଇ ହୋଇ ଚମ ଗନ୍ଧାଇଲାଣି । ତଥାପି ସେଇ ସମାନ ବିଛଣା ଉପରେ ସେଇ ନେଳିଆ ଚାଦରଟି ଘୋରିହୋଇ ମୁଁ ଶୋଇରହିଚି । ବେଶ ବଦଳାଇବାକୁ ବାହାରକୁ ଯିବାକୁ ମନ ଥିଲେ ମଧ୍ୟ ଯାଇପାରୁ ନାହିଁ ।

ଏଠି ପଡ଼ି ପଡ଼ି ଦୁଇଧାଉଡ଼ି ଘରର ଟିଣଛାତ ମଝିରେ ଥିବା ତିନିକଣିଆ ଆକାଶକୁ ଦେଖି ଦେଖି ବଡ଼ ଚିଡ଼ି ମାଡ଼ିଲାଣି ।

କଡ଼ ଲେଉଟାଇ ରାସ୍ତାକୁ ଅନାଉଚି । ଘରସାମନାର ଏଇ ରାସ୍ତାଟି ଅଳ୍ପଦୂର ଯାଇ ଗୋଟିଏ ତିନିଛକିରେ ପହଞ୍ଚିଚି । ସେଠୁ ଗୋଟିଏ ଆଡ଼େ ଗଲେ କଲେଜ ପଡ଼େ ବୋଲି ଶୁଣିଚି, ଆରଟିରେ ଗଲେ କ'ଣ ପଡ଼େ କେଜାଣି ? ରାସ୍ତାଉପରେ ଘୋଡ଼ାଗାଡ଼ି, ମଟର ଚାଲିଯାଉଚି । ଛୋଟଛୋଟ ପୁଅଝିଅଙ୍କର ସ୍କୁଲ ଯିବା ଓ ଆସିବା ଛଅଥର ଓ ଛଅଥର, ଏମିତି ବାରଥର ଦେଖିଲିଣି । ସେମାନେ ଥରେ ଥରେ ଘରଭିତରର ମୋ' ଖଟିଆ ଉପରକୁ ଖାଲି ଆଖି ପକାଇଦେଇ ଚାଲିଯାଉଚନ୍ତି । ଏହି ଖଟିଆ ଉପରେ ଯେ ଗୋଟାଏ ରୋଗୀ ଶୋଇଚି, ଏହି ଛଅଦିନ ଭିତରେ ସେମାନେ ନିଶ୍ଚୟ ଜାଣିସାରିଲେଣି

ସଡ଼କ ପାଖଟା ଖୁବ୍ ସୁନ୍ଦର । ଦଂରଢ଼ଙ୍କା ନେଳି ଆକାଶଭିତରେ କେତେରକମର ଗଛ । ଗୁଆଗଛଗୁଡ଼ିକ ମୋତେ ସବୁଠାରୁ ଅଧିକ ସୁନ୍ଦର ଦିଶୁଚି । ଏ ରାସ୍ତାଟି ଯେତେଆଡ଼େ ଯାଇଚି, ସେହି ସବୁଆଡ଼ର ଦୃଶ୍ୟ କେଡ଼େ ସୁନ୍ଦର ହୋଇ ନ ଥିବଟି ?

ଏହି ସହରଟିରେ ଏତେ ଫୁଲ, ଗୋଟାଏ ଗୋଟାଏ ଗଛରେ ମୋଟେ ପତର ନାହିଁ—ଖାଲି କାନ୍ଦି କାନ୍ଦି ଫୁଲ । ଦୂରରୁ କି ସୁନ୍ଦର ଦେଖାଯାଉଚି ! ଗୋଟିଏ ଗଛରେ ନାଲିଫୁଲର କାନ୍ଦି, ଆଉ ଗୋଟାଏ ରକମର ଗଛରେ ହଳଦିଆ ଫୁଲର କାନ୍ଦି ।

ମନ ଉଚ୍ଛନ୍ନ, ଉଚାଟ ହୋଇ ଉଠୁଚି । ଯେତେବେଳେ ଗୋଟାଏ ଉନ୍ମାଦରେ ଉଠିପଡ଼ୁଚି, ଇଚ୍ଛା ବିରୁଦ୍ଧରେ କିଏ ମୁଣ୍ଡଟାକୁ ବୁଲାଇଦେଇ ଶୁଆଇ ପକାଉଚି ।

ଶରୀରର କି ଅଧିକାର ଅଛି ମନକୁ ଏପରିଭାବରେ ତା' ବଶରେ ରଖିବ ? ମୋର ଶରୀରରେ ସିନା ରୋଗ, ଶରୀରଟା ରୋଗୀ; କିନ୍ତୁ ମନରେ କି ରୋଗ ଅଛି ? ସିଏ କାହିଁକି ଶରୀରଟା ସହାଶେ ଏଇ ଖଟିଆ, ଏ ଟିଣଛାତ ଓ ଏହି ଓଷଦଶିଶି ଭିତରେ ବାନ୍ଧିହୋଇ ପଡ଼ିଥିବ । ତାକୁ କାହିଁକି ଏଠାରୁ ଛୁଟି ଦିଆ ନ ଯିବ ?

୧୬ । ୫ । ୪୬

ଦୁଇପାଖରେ ଖାଲି ପାଣି, ଦୂରରେ ବ୍ରହ୍ମପୁତ୍ରର ପାହାଡ଼ୀ ତଟ । କିଛି ଲେଖିବି, ଏହିକଥା ଭାବି ବସୁ ବସୁ ତେଜପୁର ସହର କ୍ରମେ ଅଦୃଶ୍ୟ ହୋଇଯାଉଚି । ଦୂରର ଦିଗ୍‌ବଳୟ ଅନେକ ସ୍ଥାନରେ ପ୍ରାୟ ସରଳରେଖା ପରି । ମଝିରେ ମଝରେ ଗୋଟାଏ ଗୋଟାଏ ଅପରିଚିତ ପର୍ବତର ନୀଳ ପଟରେଖା । ତଥାପି ଗୋଟାଏ ପାହାଡ଼ର ନାଆଁ ସମସ୍ତେ ଜାଣନ୍ତି, ଯେଉଁଟାକି ସମସ୍ତ ପୂର୍ବଦିଗଟାକୁ ଆବୋରି ରହିଚି । ଏଇଟା ହେଉଚି ଭାରତ ଓ ବର୍ମା ସୀମାନ୍ତର ମିକିର ପର୍ବତଶ୍ରେଣୀ ।

ସକାଳୁ ସୂର୍ଯ୍ୟକିରଣ ପଡ଼ି ନାହିଁ । ମଝିରେ ମଝିରେ ଝୁପୁରୁ ଝୁପୁରୁ ମେଘ ବରଷିଯାଉଚି । ବେଶ୍ ଥଣ୍ଡା ଲାଗୁଚି । ପ୍ରାୟ ଅଧଘଣ୍ଟାଏ ହେବ ଆମ ଜାହାଜ ଗୁଡ଼ିବାକୁ ଆରମ୍ଭ କରିଚି । ଅନେକ ସମୟରେ ଜଳକଣାମାନ ପବନ ସହିତ ଉଡ଼ିଆସି ଦେହରେ ବାଜିଯାଉଚି । ସମସ୍ତ ଅଙ୍ଗ ପୁଲକିତ ହୋଇଉଠୁଚି ।

ଜାହାଜଟି ଖୁବ୍ ବଡ଼ । ଯା'ଠାରୁ ଅଧିକ ବଡ଼ ଜାହାଜ ମୁଁ ଆଗରୁ କେବେ ଦେଖି ନାହିଁ । ତେଣୁ ମୋର ଅନୁମାନଟା ହୁଏତ ଭୁଲ ବି ହୋଇପାରେ ।

କାରଣ ଖବରକାଗଜରେ ପଢ଼ିଛି, ଜାପାନ ୧୯୪୨ ମସିହାରେ ଇଂରେଜ ପକ୍ଷର ୩୧୦୦୦ ଟନ୍‌ର ଗୋଟିଏ ଜାହାଜ ବୁଡ଼ାଇ ଦେଇଥିଲା । ତଥାପି ଅନ୍ୟ ଅଧିକ ବଡ଼ ଜାହାଜ ଯେତେବେଳେ ଦେଖି ନାହିଁ, ସେତେବେଳେ ଏଇ ମୋ’ ପାଖରେ ବଡ଼ ଜାହାଜ ।

ଜାହାଜରେ ଯାତ୍ରୀ ସଂଖ୍ୟା ଖୁବ୍ ଅଳ୍ପ । ଡେକ୍‌ର ଗୋଟିଏ ପାଖରେ ବିଛଣାଟି ମେଲାଇଦେଇ ଆମେ ବିଶ୍ରାମ ନେଇଚୁ,—ମୁଁ ଆଉ ଶାନ୍ତିନିକେତନର ମୋର ଜଣେ ସାଥୀ । ପାଖରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ବିଶ୍ରାମଘର । ଆଗରେ ଡେକ୍‌ଉପରେ ତୃତୀୟ ଶ୍ରେଣୀର ଯାତ୍ରୀମାନେ ନିଜ ନିଜର ସଂସାର ମେଲି ଦେଇଚନ୍ତି । ନାନା ରକମର ଜିନିଷ,—ଡାଲ, ଘିଅଠେକି, ପଇଡ଼ ଓ ଲଣ୍ଠନଠାରୁ ଆରମ୍ଭ କରି ପଙ୍ଖା, ଛତା ଓ ଫୁଲଦାନି ପର୍ଯ୍ୟନ୍ତ । ଅନେକେ ନିଘୋଡ଼ ନିଦରେ ଶୋଇଚନ୍ତି ଆପଣା ଜିନିଷଗୁଡ଼ିକୁ ମୁଣ୍ଡ ଶିରିପାଖରେ ରଖି । ପ୍ରତ୍ୟେକଙ୍କ ପାଖରେ ଅବଶ୍ୟ ଜିନିଷର ପରିମାଣ ଖୁବ୍ କମ୍ । ସେଗୁଡ଼ିକୁ ଟିକିଏ ଭଲଭାବରେ ବାନ୍ଧି ଗୋଟିଏ ପାଖରେ ରଖିଦେଇ ଆଉ ଗୋଟିଏ ପାଖରେ ନିଜ ନିଜର ବିଛଣା ପକାଇ ଶୋଇଥିଲେ ସେମାନେ ଅଧିକ ଆରାମ ପାଇ-ଥାଆନ୍ତେ । କିନ୍ତୁ ନିଜ ନିଜର ବୋଝଗୁଡ଼ିମାନ ନିଜ ଆଖିଆଗରୁ ଅନ୍ତର କରିବାକୁ ସେମାନେ ନାରାଜ । ଜିନିଷ ଖୁବ୍ ଅଳ୍ପ ନା, ସେଥିଲାଗି ସେଥିପ୍ରତି ଏତେ ଲୋଭ । ସହରର ଭିକାରୀ ଯେପରି ନିଜର ଗ୍ଉଳ ପୁଡ଼ାଟିକୁ ସାତଗଣ୍ଠି ପକାଇ ରଖେ, କଲଟରୀ କଚେରିର ଚପରାସୀ ଯେମିତି ନିଜ ଚପ୍‌କନର ପିତଳ ମୋହରଟିକୁ ସବୁବେଳେ ବାଗେଇ ଦେଉଥାଏ, ଠିକ୍ ସେମିତି ।

ଯେତେକ ତୃତୀୟ ଶ୍ରେଣୀର ଯାତ୍ରୀ ଚେଇଁଚନ୍ତି, ସେମାନେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି । କାହାରି କାମ ସହିତ କାହାରି କାମର କୌଣସି ସମ୍ପର୍କ ନାହିଁ । ତଥାପି ସମସ୍ତଙ୍କର କାମ ମିଶି ଏହି ଜାହାଜଟିରେ ଗୋଟିଏ ଅପୂର୍ବ ଦୃଶ୍ୟ ସୃଷ୍ଟି କରି ରଖିଚି । ଦୂରରେ ଜଣେ ଯାତ୍ରୀଭାଇ ଆପଣା ବଇଁଶୀ ଉପରେ ଗୋଟାଏ ଆସାମୀ ସୁରର ଲହର ପକାଇଚି । ନଓଗଙ୍ଗ୍‌ରୁ ସିଲଘାଟ ପର୍ଯ୍ୟନ୍ତ ରେଲଗାଡ଼ିରେ ସେଦିନ ଜର ଦିହରେ ଆସୁଥିବାବେଳେ ଜଣେ ଖୁବ୍ ଭଲ ବଇଁଶୀ ବଜାଉଥିଲା, ଶୁଣିଥିଲି । ଅଦୂରରେ ଗ୍ରିପାଞ୍ଚଜଣ ଆସାମୀ ଭାଇ ବିଡ଼ି ଟାଣିବା ସଙ୍ଗେ ସଙ୍ଗେ ଆପଣା ଆଡ଼ର ଘରୋଇ କଥାବାର୍ତ୍ତା ଚଳାଇଚନ୍ତି । ଆମର ଠିକ୍ ପାଖରେ ବସିଥିବା ତିନିଜଣ ପଶ୍ଚିମା ଭାଇ ଚୂଡ଼ାପୁଡ଼ା ଖୋଲି ଚୂଡ଼ା, ଗୁଡ଼ ଓ ତେନ୍ତୁଳିର ଗୋଟାଏ ମଜାଦାର ଶୁଖିଲା ଜଳଖିଆ ଯୋଗାଡ଼ କରୁଚନ୍ତି । ଦ୍ୱିତୀୟ ଶ୍ରେଣୀ ବିଶ୍ରାମ ଘର ଭିତରୁ ତେଇଶି ଚବିଶି ବରଷର ଯୁବକଟିଏ ତୃତୀୟ ଶ୍ରେଣୀର ଯାତ୍ରୀମାନଙ୍କୁ ବୁଲି ଦେଖିବାରେ ବ୍ୟସ୍ତ ଅଛି ।

ଲେଖୁଁ ଲେଖୁଁ ଜାହାଜ ଅନେକ ବାଟ ଚାଲିଆସିଲାଣି । ତେଜପୁରର ପାହାଡ଼ଟି ଅନେକ ଦୂରକୁ ଚାଲିଗଲାଣି । ଦୂରଦୂରାନ୍ତର ମିକିର ଶୈଳଶ୍ରେଣୀ ଆହୁରି ମ୍ଳାନ ଓ ଅସ୍ପଷ୍ଟ ହୋଇଗଲାଣି । ମଝିରେ ମଝିରେ ନଈର ପଠା, ବାଲି ଓ ଗୋଚର ଭୂଇଁ । ପାଣିଭିତରେ କେତେ ଜାଗାରେ କେତେ ଡଙ୍ଗା ବୁଡ଼ିକରି ରହିଚି, କୋଉଠି ଖାଲି ପାଲଟା ବା ଖାଲି ମଙ୍ଗଟା ଉପରକୁ ଦେଖାଯାଉଚି । ପାଗଟା ବର୍ତ୍ତମାନ ବି ମେଘୁଆ ରହିଚି । ଆମ ଜାହାଜ ବ୍ରହ୍ମପୁତ୍ର ନଦୀର ଦକ୍ଷିଣ କୂଳେ କୂଳେ ଚାଲିଚି ।

ଯା'ରିଭିତରେ ଡେକ୍‌ଟାଯାକ ବଡ଼ ଅଳିଆ ହୋଇଗଲାଣି । ଅନେକ ଜାଗାରେ ବିଡ଼ି ଓ ସିଗାରେଟ୍‌ର ପୋଡ଼ା ଅବଶିଷ୍ଟାଂଶ ପଡ଼ିଚି । କେହି କେହି ପାନଖିଆଳି କଞ୍ଚାଗୁଆର ଚୋପାଗୁଡ଼ାକୁ ଡେକ୍‌ଉପରେ ପକାଇ ଦେଇଚନ୍ତି । ଚୂଡ଼ା, ମୁଢ଼ି ଏଣେ ତେଣେ ପଡ଼ିଚି । ଜଳଖିଆ ଖାଉ ଖାଉ କେହି ଅସାବଧାନତାବଶତଃ ପାଣି ଇଡ଼ିଦେଇଚି । ଏହାଛଡ଼ା କାଗଜିଲେମ୍ବୁର ଚୋପା ଓ ମଞ୍ଜି, ଛିଣ୍ଡା କାଗଜ ଓ ଅନ୍ୟାନ୍ୟ ଅନେକ ଜିନିଷ । ଝାଡ଼ୁବାଲା ଆସି ଦ୍ୱିତୀୟ ଶ୍ରେଣୀର ଦୁଆରଟିକୁ ଦୁଇଥର ସଫା କରି ଚାଲିଗଲାଣି । ଏପାଖଟାକୁ ପରିଷ୍କାର କରିବା ବୋଧହୁଏ ଆଇନରେ ନାହିଁ । କିନ୍ତୁ ଏପାଖରେ ରୋଗ ହେଲେ ସେପାଖକୁ ବ୍ୟାପିବାକୁ କେତେ ଡେରି ଲାଗିବ ? ରୋଗ କ'ଣ ଟିକେଟ ଦେଖି ବିଚାର କରିବ ?

ଯାତ୍ରୀମାନଙ୍କ ଲାଗି ଦିନତମାମର ଗୁଜରାଣ ପାଇଁ ଗୋଟିଏ ଦୋକାନ ମଧ୍ୟ ଅଛି । ପାନ, ବିଡ଼ି, ସିଗାରେଟ୍ ଓ ଦିଆସିଲି ଛଡ଼ା ବୁଟଭଜା, ମଟରଭଜା, ଚୂଡ଼ା ଓ ସେମିତା ମୁଢ଼ି ବି ମିଳୁଚି । ଆମେ ମଧ୍ୟ ଯା'ଭିତରେ ସେଇଠାରୁ କିଣିଆଣି ମୁଢ଼ି, ବୁଟ ଓ ମଟର ଭଜାର ବେଶ୍ ଗୋଟାଏ ଶ୍ରାର୍ଦ୍ଧ କରି ସାରିଲୁଣି । ହଁ ଗୋଟାଏ ହିନ୍ଦୁ ହୋଟେଲ ଅଛି । ରୁଟା ଓ ଭାତ ମିଳିବ ବୋଲି ସାଇନ୍‌ବୋର୍ଡ ଉପରେ ଲେଖା ହୋଇଚି । ମୁସଲମାନ ହୋଟେଲର ସାଇନ୍‌ବୋର୍ଡ଼ଟା ଏଠୁ ଠିକ୍ ଦେଖାଯାଉ ନାହିଁ । ନିଶ୍ଚୟ ଆଉ ପାଖରେ ଥିବ । ଯାହାହେଉ, ଏହି ଦେଶରେ ହିନ୍ଦୁ ପାଣି, ମୁସଲମାନ ପାଣି, ହିନ୍ଦୁ ହୋଟେଲ ମୁସଲମାନ ହୋଟେଲ, ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ମୁସଲମାନ ବିଶ୍ୱବିଦ୍ୟାଳୟର ନିରାପଦ ବ୍ୟବସ୍ଥାମାନ ରହିଚି, ଧର୍ମ ନଷ୍ଟ ହେବାର କୌଣସି ଭୟ ନାହିଁ । ଇନ୍ଦ୍ରସଭା ପରି ବା ଚିତ୍ରଗୁପ୍ତ ସୁପରଭାଇଜର ହୋଇ ବସିଥିବା ନରକକୁଣ୍ଡ ପରି ଆମ ଦେଶର ସମାଜରେ କାହାର ସ୍ଥାନ କେଉଁଠି, କାହାର ଚାଲିବା ବାଟ କେଉଁଟା, ସେସବୁ ଆଦିକାଳରୁ ଶାସ୍ତ୍ରବାଦସମ୍ମତ ଭାବରେ ନିୟତ ହୋଇ ରହିଚି ।

ହୁଏତ ଏତେବେଳେକେ ଯାଇ ସୂର୍ଯ୍ୟ ମେଘମୁକ୍ତ ହେଲେ । ଅବଶ୍ୟ ଏଠାରୁ କିଛି ଜଣାପଡ଼ୁ ନାହିଁ । ମାତ୍ର ଦୂରରେ ବାଲି ଉପରେ ଅଧେ ଖରା

ପଡ଼ିଚି । ସୂର୍ଯ୍ୟ କିରଣ ପଡ଼ି ସବୁବାଲି ଜକଜକ କରୁଚି । ଅତିଦୂରରେ ଦୁଇ-ତିନିଟା ବୋଝାଇ ପଟୁଆ ଦେଖାଯାଉଚି । ପୁଣି ଗୋଟାଏ ନୂଆ ପାହାଡ଼,—ଗଛଗୁଡ଼ାକ ବି ମେଘପରି ନୀଳ ଦେଖାଯାଉଚି । ନଈ ଭିତରେ ଦୁଇପାଖରେ ବାଉଁଶ ପୋତାହୋଇ ଆମ ଜାହାଜର ଗତିପଥ ନିର୍ଦ୍ଦିଷ୍ଟ ହୋଇ ରହିଚି । ଏଇତକ ସୀମା ଭିତରେ କେବଳ ଗଭୀର ଜଳ, ଅନ୍ୟତ୍ର ହୁଏତ ଜାହାଜ ବାଲିରେ ଲାଖି ଯାଇପାରେ ।

କାଲି ଆଉ ଆଜିର ଏତେବେଳ ! କାଲି ଜ୍ୱରପରେ ଦୁର୍ବଳ ଶରୀର ଓ ମନର ଭାର ବହନ କରି ଖଟ ଉପରେ ଭଁହୁଁ ହେଉଥିଲି । ସମସ୍ତ ଚିନ୍ତା, ସମସ୍ତ ଧ୍ୟାନ କେବଳ ନିଜର ଜୀବନ ନେଇ କେନ୍ଦ୍ରିତ ରହିଥିଲା । ବ୍ୟକ୍ତିଗତ ଜୀବନକୁ ଆବୋରି ଧରିଥିବା ଗୋଟାଏ ବୃହତ୍ତର ଜୀବନ ଯେ ରହିଚି, ସେକଥା କାଲି ମୋତେ ମନେପଡ଼ୁ ନ ଥିଲା । ଏକମାତ୍ର ଭାବନା ଥିଲା ମୁଁ କିପର ଭଲ ହେବି, କେଉଁଠି କେତେଦିନ ରହିବି ଓ କିପରି ଶୀଘ୍ର ଯାଇ ଘରେ ପହଞ୍ଚିବି । ଆଜି ସେସବୁ ଚିନ୍ତା ଆଦୌ ନାହିଁ । ବ୍ରହ୍ମପୁତ୍ର ନଦୀର ଉତ୍ତାଳ ତରଙ୍ଗମାଳା, କୂଳଆଡ଼ୁ ବହି ଆସୁଥିବା ଉଲ୍ଲସିତ ପବନ ଆଉ ଦୂରର ପାହାଡ଼ ଓ ଅରଣ୍ୟ-ଘେରା ସେହି ନୀଳବର୍ଣ୍ଣ ଚକ୍ରବାଳ, ମୋର ମନକୁ ବି ଆଜି ଉଡ଼ାଇ ନେଇ ଗ୍ଲଲିଚନ୍ତି । ଖାଲି ଉଡ଼ିଯିବାକୁ, ଭାସିଯିବାକୁ ଓ ବାହାରି ଯିବାକୁ ଇଚ୍ଛାହେଉଚି । କାଲି ମୁଁ ଯେତେ ଗଛ ଦେଖିଥିଲି, ଯେତେ ଫୁଟାଫୁଲ ଦେଖିଥିଲି, ଯେତେଯେତେ ପକ୍ଷୀର ଡାକ ଶୁଣିଥିଲି, ଯେପରି ସେଗୁଡ଼ାକ ମନ ଭିତରେ ଆଦୌ ପଶିପାରୁ ନ ଥିଲା । ନିଜ ଚିନ୍ତାରେ ଅତି ବ୍ୟସ୍ତ ରହି ମୁଁ ନିଜେ ସେଗୁଡ଼ାକୁ ବାହାରେ ଅଟକାଇ ରଖିଥିଲି । ମାତ୍ର ଆଜି ଦୂର ଚକ୍ରବାଳରେ ଗୋଟିଏ ଗଛ ଦେଖିବାକ୍ଷଣି ଭିତରେ ମଧ୍ୟ ମୁଁ ତାହାରି ସ୍ପନ୍ଦନ ଅନୁଭବ କରିପାରୁଚି । ଦୂରର ଗୋଟିଏ ପାହାଡ଼ ଦେଖିଲେ ମନଭିତରେ ଯାଇ ତା'ର ସ୍ପର୍ଶ ବାଜିଯାଉଚି । କୌଣସି କଥା ଆଜି ନୀରସ ବା ନିଷ୍ପ୍ରାଣ ବୋଲି ମନେହେଉ ନାହିଁ । ଗୋଟାଏ ଦିନରେ ଏହି ମନ ଭିତରେ କି ଚମତ୍କାର ପରିବର୍ତ୍ତନ !

ଗୋଟାଏ ଘାଟରେ ଜାହାଜ ଅଟକିଚି । ଏଇଟାକୁ ମିଶାଇ ଆମେ ତିନିଟା ଘାଟରେ ଅଟକି ସାରିଲୁଣି । ବୋଧହୁଏ ଅଧେ ରାସ୍ତା ଶେଷ ହୋଇ-ଗଲାଣି । ଆଗର ସେଇ ପର୍ବତ ସବୁ ଅନେକବେଳୁ ଅଦୃଶ୍ୟ ହୋଇଗଲାଣି । ବର୍ତ୍ତମାନ ବ୍ରହ୍ମପୁତ୍ରର ଉତ୍ତର ଦିଗନ୍ତରେ ଦୂର ହିମାଳୟର ତୁଙ୍ଗ ପର୍ବତଶ୍ରେଣୀ ଦେଖାଯାଉଚି । ହିମାଳୟ, ଯେତେଦୂରରୁ ହେଲେ ମଧ୍ୟ ଏହି ଦୃଶ୍ୟ ଦେଖିବା ମୋ ଜୀବନରେ ଏଇ ପ୍ରଥମ ।

ନଈର ଧାର ଉପରେ ଅନେକ ରକମର ବଙ୍କା ରାସ୍ତା କାଟି ନିଜର ବାଟ ଠଉରେଇ ଆମ ଜାହାଜ ଗ୍ଲଲିଚି । ଯା'ଭିତରେ ଅସରାଏ ବର୍ଷା ବି

ହୋଇଗଲାଣି । ପୁଣି କଅଁଳିଆ ଖରା ପଡ଼ିଚି । ଉତ୍ତର ଦିଗରେ ମଝିରେ ମଝିରେ ହିମାଳୟର ଦିଗନ୍ତଲମ୍ବିତ ପର୍ବତମାଳା ଦୃଷ୍ଟିଗୋଚର ହେଉଚି । ପର୍ବତ ବୋଇଲେ ଗଛ, ଲତା ବା ପଥର କିଛି ଦେଖାଯାଉ ନାହିଁ । ଖାଲି ନୀଳବର୍ଣ୍ଣର ଗୋଟାଏ ପ୍ରାଚୀର । ଦକ୍ଷିଣ ପାଖରେ ସାନ ସାନ ବଣ ଓ ବୁଦା । ନିକଟରେ କୌଣସି ଗାଆଁଗଣ୍ଡା ଥିଲାପରି ମନେହେଉ ନାହିଁ । କେତେ ଛୋଟ ବଡ଼ ଡଙ୍ଗା ନଈ ମଝିରେ ପାଲ ଉଡ଼ାଇ ଗ୍ଭଲିଯାଉଚି । ଅନେକ ମାଲବୋଝାଇ ନଉକା ମଧ୍ୟ ଦେଖିବାକୁ ମିଳୁଚି । ନାଉରୀର ଜୀବନ କେଡ଼େ ସରସ ହୋଇ ନ ଥିବ ! ପ୍ରଶାନ୍ତ ଜଳରାଶି ଉପରେ ସେ କେତେଦିନ, କେତେ ରାତି, କେତେ ଉଦୟ, ଓ କେତେ ଅସ୍ତ ଏମିତି ନିର୍ଭୀକ ଓ ନିଶ୍ଚଳ ଭାବରେ କଟାଇ ଦେଉ ନ ଥିବ । ନାଉରୀର ପୃଥିବୀ ହେଉଚି ବଡ଼ ସ୍ଥିର, ବଡ଼ ଅନାକୁଳ ।

ହଠାତ୍ ଦୂରରେ ଗୋଟିଏ ଗାଆଁ ଦେଖିବାକୁ ପାଇଲି । ଗଛଗୁଡ଼ିକର ଉହାଡ଼ରୁ ଘରଘରମାନ ଖରାରେ ସ୍ପଷ୍ଟଭାବରେ ଦେଖାଯାଉଚି । ନଈକୂଳରେ ଗାଈଗୋରୁ ଚରୁଚନ୍ତି । ନାଉରୀମାନଙ୍କର ଅସ୍ଥାୟୀ ଘାଟଘରମାନ ବି ଦେଖାଯାଉଚି ।

ଆମ ଜାହାଜ ଯେତେଯେତେ ଆଗକୁ ଯାଉଚି, ହିମାଳୟର ଗିରିଶ୍ରେଣୀ ସେତେସେତେ ଲମ୍ବି ଲମ୍ବି ଯାଉଚି । ସମସ୍ତ ଉତ୍ତର ଦିଗ ଗୋଟିଏ ଲମ୍ବା ନୀଳରଙ୍ଗର ଟେବୁଲ ପରି ଦେଖାଯାଉଚି । ହଠାତ୍ ମଝିରେ ଅନ୍ୟ ରକମର ଗୋଟାଏ ମୁନିଆ ପର୍ବତ । ବୋଧହୁଏ ବେଶ୍ ନିକଟରେ । ତା'ର ଗଡ଼ାଣି, ଭାଙ୍ଗ ଓ ଉପତ୍ୟକାମାନ ବେଶ୍ ବାରିହୋଇ ପଡୁଚି । ମେଘ ଭାସି ଭାସି ଗ୍ଭଲିଚି । ମେଘ ଭିତରୁ ପର୍ବତ ଉପରେ ଖରାପଡୁଚି । ଆଲୋକ, ଛାୟା ଓ ବାଦଲ ସମସ୍ତେ ପର୍ବତଟାକୁ ଯେଝା ବାଗରେ ଚିତ୍ରିତ କରି ବସିଚନ୍ତି ।

ଏମିତି ଆମ ଜାହାଜ, ଜାହାଜ ସହିତ ଆମେ ରାସ୍ତା କଟାଇ ଗ୍ଭଲିଚୁ । ବାଟରେ କେତେଗୁଡ଼ିଏ ଗାଆଁ ପଡ଼ଲାଣି । ଖାଲି ଧାଡ଼ି ଧାଡ଼ି କଦଳୀଗଛ, ସାନ ସାନ କୁଡ଼ିଆ । ନଈ ଅତଡ଼ା ଉପରେ ବସି ପିଲାମାନେ ବସି ବନଶି ପକାଉଚନ୍ତି ।

ବୋଧହୁଏ ଗୌହାଟୀ ପାଖହୋଇ ଆସିଲାଣି । ନଦୀର ଦୁଇପାଖରେ ଉଚ୍ଚ ଉଚ୍ଚ ପର୍ବତମାଳା । ନଈସୁଅର ଲହରୀ ପର୍ବତର ତୀଖ ପଥରରେ ବାଡ଼େଇ ହେବାରେ ଲାଗିଚି । କେତେକ ପର୍ବତ ଉପରେ ଛୋଟବଡ଼ ମନ୍ଦିର ବି ଦେଖିବାକୁ ମିଳୁଚି । ନଈର ସୁଅ ସହିତ ଦଳଗୁଡ଼ାକ ଭାସିଯାଉଚି ।

ଗୌହାଟୀରେ ଖୁବ୍ ଭିଡ଼ । କୁଲିମାନଙ୍କର ଭାରି ଧସ୍ତାଧସ୍ତି । କିନ୍ତୁ ଯାତ୍ରୀ ଖୁବ୍ କମ୍ ଓହ୍ଲାଇଲେ । ତେଣୁ ଅନେକ କୁଲି ନିରାଶ ହୋଇ ଫେରିଗଲେ ।

ତା'ପରେ ନୀଳାଚଳ ଓ ଭୁବନେଶ୍ୱରୀ ପର୍ବତ ଏବଂ କାମାକ୍ଷାଦେବୀଙ୍କର ମନ୍ଦିର, ଧର୍ମ ଓ ଭକ୍ତି ଯେଉଁଠାରେ ମୂଲ ଦିଆହୋଇ ଖରିଦ କରାଯାଏ । ଆଉ ଏଇଟା କୁଆଡ଼େ ସାରା ଭାରତବର୍ଷରେ ହିନ୍ଦୁମାନଙ୍କର ଗୋଟାଏ ବଡ଼ ତୀର୍ଥସ୍ଥାନ ।

ତେଜପୁରଠାରୁ ଅମିନଗାଓଁ ୧୦୨ ମାଇଲ ବାଟ । ସଞ୍ଜ ହେଲା-ବେଳକୁ ଆମେ ଠିକଣା ଜାଗାରେ ପହଞ୍ଚିଗଲୁ । ଜାହାଜରୁ ରେଳ ପାଖକୁ ଦୌଡ଼ିବାକୁ ପଡ଼ିବ । ଆସାମ୍ ମେଲରେ ଖୁବ୍ ଭିଡ଼ ହୁଏ, ଆମଆଡ ପୁରୀ ଗାଡ଼ିଠାରୁ ମଧ୍ୟ ବେଶୀ । ସମସ୍ତ ରାତି ଓ କାଲି ସକାଳ ଓଳିଟା ଗାଡ଼ିରେ କଟାଇବାକୁ ହେବ । ଭଲ କରି ଟିକିଏ ଜାଗା ମିଳିଗଲେ ଶାନ୍ତିରେ ରାତିଟା କଟିପାରିବ ।

ରେଳରେ ଭଲ ଜାଗା ଖଣ୍ଡେ ଯୋଗାଡ଼ କରିବା ଗୋଟାଏ ବିଜିନେସ୍ । ମୁହଁ ଟାଣ କରି କଥା କହିବାକୁ ହେବ । ଦେଖାଯାଉ, କ'ଣ ହେଉଚି ।

୧୭ । ୫ । ୪୬

ଆସାମ ମେଲ୍‌ରେ ୨୭୫ ମାଇଲ ଯାତ୍ରା କରି ଆଜି ସକାଳ ଦଶଟାରେ ଏଠାରେ ପହଞ୍ଚିଲି । ଗାଡ଼ିରେ କି ଭିଡ଼ ! ଖାଲି ଘୁମେଇ ଘୁମେଇ ରାତିଯାକ କଟିଗଲା, ଅଥଚ ଭଲକରି ଟିକିଏହେଲେ ଶୋଇପାରିବା ଲାଗି କେତେବେଳେ ହେଲେ ସୁବିଧା ପାଇଲି ନାହିଁ । ତବାରେ ଦୁଇଜଣ ନିଶାଖୋରଙ୍କର କଥାବାର୍ତ୍ତା ମୋର ଅନେକ ଦିନଯାଏ ମନେରହିଥିବ । ଜଣେ ଭଦ୍ର ଓ ଆରଜଣକ ଅଭଦ୍ର ନିଶାଖୋର । ଅର୍ଥାତ୍ ପ୍ରଥମ ଜଣକ ଜଣେ ରେଳବାଇ ଅଫିସର ଓ ଚୁରୁଟ ଟାଣନ୍ତି; ଆର ଜଣକ ସେହି ରେଳବାଇରେ ତଳ ପାହିଆରେ କାମ କରନ୍ତି, ବିଡ଼ି ସିଗାରେଟରେ କାମ ଚଳାନ୍ତି ।

ଆସାମ ଛାଡ଼ି କେତେବେଳେ ବଙ୍ଗଳା ଭିତରେ ପ୍ରବେଶ କଲି, କିଛି ଜାଣିପାରିଲି ନାହିଁ । ବସିବାଜନିତ ଅସୁବିଧାଟା ମନକୁ ଏପରି ଘାରି ଦେଇଥିଲା ଯେ ବଡ଼ ବଡ଼ ଷ୍ଟେସନଗୁଡ଼ିକର ନାଆଁ ପଚାରି ମନେରଖିବାକୁ ବି ମୁଁ ଭୁଲି ଯାଇଥିଲି । ଜ୍ୱରଜନିତ ଦୁର୍ବଳତା ଓ ଏହି ଭିଡ଼ ଭିତରେ ତଥାପି ଟିକିଏ ଆରାମ ପାଇବା ଲାଗି ଆକୁଳ ହୋଇପଡ଼ିବା,— ମୁଁ କେବଳ ଏତିକି ଅନୁଭବ କରୁଥିଲି । ଭୋର ହେଲାବେଳକୁ ଆମେ ଆସି ପାର୍ବତୀପୁର ଜଙ୍କ୍‌ସନ୍‌ରେ । ସେଠାରେ ଆମ ଗାଡ଼ି ଦେଢ଼ଘଣ୍ଟା ପଡ଼ିରହିଲା ।

କାଛ୍‌ନା ଷ୍ଟେସନ କେତେବେଳେ ପଡ଼ିବ, ସେ ବିଷୟରେ ମୋର କୌଣସି ଧାରଣା ନ ଥିଲା । ସେଥିଲାଗି ପ୍ରାୟ ସାତଟା ଷ୍ଟେସନ ଆଗରୁ ବିଛଣାପତ୍ର ବାନ୍ଧି ମୁଁ ସଜବଜ ହୋଇ ବସିଥିଲି । କାଛନାରେ ବହୁତଗୁଡ଼ିଏ ଓଡ଼ିଆ

ପାଖରେ ଓହ୍ଲାଇ ପଡ଼ିଲି । ଦେଖିଲି, ନାରାୟଣ ଷ୍ଟେସନକୁ ଆସିଚି । କାଳେ ଡେରି ହୋଇଯିବ ବୋଲି ସେ ଏକାବେଳକେ ଝାଳନାଳ ହୋଇ ଘରୁ ଦଉଡ଼ି ଦଉଡ଼ି ଆସିଥିଲା ।

ତାଙ୍କ ଘରେ ପହଞ୍ଚିଲୁ । ଗୋଡ଼ହାତ ଧୋଇ ଜଳଖିଆ ଖାଇବାକୁ ହେଲା । ଜଳଖିଆ ଅର୍ଥାତ୍ ଏକାବେଳକେ ପାଞ୍ଚଛଅ ରକମର ଫଳାହାର । ନାଗର ନଈରେ ଖୁବ୍ ଭଲକରି ଗାଧୋଇଲି । ବୁଡ଼ାପାଣିରେ ଗାଧୋଇବାର ଅବଶୋଷଟା ଅନେକ ଦିନ ପରେ ମେଣ୍ଟିଲା । ତା'ପରେ ଖାଇବା, ଅନ୍ନବ୍ୟଞ୍ଜନ ମିଶି ଅତି କମ୍‌ରେ ଷୋଳ ସତର ପ୍ରକାର । ମତେ କାଞ୍ଜିଆଗଦାରେ ପଶିଲା ପରି ଲାଗୁଥାଏ । ହଠାତ୍ ଏତେଗୁଡ଼ାଏ ଚର୍ଚ୍ଚା ଆରେଇଲା ନାହିଁ । ଘରେ ସବୁ ପରିବା ମିଶାଇ ଗୋଟାଏ ସିଝା କରିଦେବାକୁ ବୋଉ ଉପରେ ମୁଁ ହାକିମୀ ଦେଖାଏ, ମାତ୍ର ଏଠାରେ ତ ସୁନାପୁଅଟି ପରି କେବଳ ଖାଇବାକୁ ହିଁ ହେବ । ତଥାପି ମୁଁ ମାଛ, ମାଂସ ବା ଅଣ୍ଡା କିଛି ଖାଏ ନାହିଁ ବୋଲି ସେମାନଙ୍କର ମନସ୍ତାପ, ଭଲ ଜିନିଷ କିଛି ଖୁଆଇପାରିବେ ନାହିଁ । ଯେ ଆମିଷ ଖାଏ, ତା'ପାଖରେ ସିନା ମାଛମାଂସ ଲୋଭନୀୟ ହେବ, ମୋ'ପରି ଗୋଟାଏ ନୂତନ ଦୀକ୍ଷିତ ନିରାମିଷଭୋଜୀ ପକ୍ଷରେ ଏହାର କୌଣସି ଆକର୍ଷଣ କାହିଁକି ରହିବ ? ଏଇ ଖୁବ୍ ଗୋଟାଏ ଭଲ ଖାଇବାର ଆଶାଟା ମନ ଭିତରେ ରହିଥିବାଯାଏ ମନରେ ସନ୍ତୋଷ ନ ଥାଏ । ଅତି ଆଗ୍ରହରେ ମାଉଁସକୁ ରାନ୍ଧି ଖାଇଲାବେଳକୁ ଯଦି ଜିଭକୁ ଟିକିଏ କୋଉଠି ଅରୁଚି ଲାଗିଲା ତେବେ ଖାଉଥିବା ଲୋକର ସେ ଦିନଟି ବଡ଼ କଷ୍ଟନାରେ କଟେ । 'ଆଜି ଖାଇବାଟା ବଢ଼ିଆ ଜମିବ' ଯଦି ଏହି ଆଶାଟା ମାଂସ ଆସିଲାବେଳୁ ମନକୁ ଉଚ୍ଛାଳି ବସେ, ତେବେ ଖାଉଥିଲାବେଳକୁ ରନ୍ଧାରେ ଟିକିଏ ଅଘଟଣ ହୋଇଗଲେ ଖାଇବାଟା ତ ଜମେ ନାହିଁ, ମନଟା ବି ଭାରି ଅତୃପ୍ତ ରହିଯାଏ । ମନର ଏହି ଅତୃପ୍ତିକୁ ଜିତିବାପାଇଁ ତ ମୁଁ ମାଛ ମାଂସ ଛାଡ଼ିଚି ।

ଆଜି ଗାଡ଼ିରେ ଆସୁ ଆସୁ ଦେଖିଲି କେମିତି ଜଣେ ଇରାନୀ ବାଳିକା ଡବାଭିତରେ ଜିନିଷ ବିକ୍ରୀ କରୁ କରୁ ଜଣେ ଯାତ୍ରୀଠାରୁ ପଇସା ଠକି ନେଇଗଲା । ତା'ର ଅଭଦ୍ର ବ୍ୟବହାର, ଭୟ ଦେଖାଇ ପଇସା ନେବାର କପଟ ଛଳନା ଦେଖି ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ପେଟ ପାଇଁ, ପଇସା ପାଇଁ ଏମାନେ ସବୁ ବିସର୍ଜି ଦେଇଥିଲାପରି ମନେହେଲା । ବାଳିକାଟି ଗ୍ଲଲିଯିବା ପରେ ଡବା ଭିତରେ ଥିବା ହିନ୍ଦୁ ମୁସଲମାନ ସବୁ ଯାତ୍ରୀ ପ୍ରତିବାଦ ଜଣାଇ ସିଂହପରି ଗର୍ଜନ କରିଉଠିଲେ । ମାତ୍ର ସିଏ ଥିଲାବେଳେ ଉପରେ ପଡ଼ି ପଦେ କଥା କହିବାକୁ ବି କାହାରି ସାହସ ହେଉ ନ ଥିଲା । ଆମେ ପରାଧୀନ, ଆମର ମନଟା ହିଁ ହୁଏତ ସବୁଠାରୁ ବେଶୀ ପରାଧୀନ । ଆମର ଭଗ୍ନ ନୈତିକ ସ୍ୱାସ୍ଥ୍ୟ ଆମକୁ

ସବୁଠାରୁ ଅପମାନିତ କରାଉଚି । ପେଟକୁ ଦାନା ନ ପାଇ ତ ଏ ଦେଶର ମଣିଷ ପୋକ ପରି ମରୁଚନ୍ତି, ମାତ୍ର ପେଟକୁ ଓ ପିନ୍ଧକୁ ଯଥେଷ୍ଟ ପାଇ ମଧ୍ୟ ଏ ଦେଶରେ ଏପରି ଅନେକ ମଣିଷ ଅଛନ୍ତି, ଯେଉଁମାନେ ନିଜର ମନ, ନିଜର ବିବେକ ଓ ନିଜର ସମୀକ୍ଷଣ ଶକ୍ତିକୁ ପର ପାଖରେ ବିକି ଦେଇଚନ୍ତି । ଏଇ ବଦ୍ଧମୂଳ Cultural Conquest ର ପ୍ରତିଶୋଧ ଯେଉଁଦିନ ନିଆଯିବ, ସେଇଦିନ ଏ ଦେଶର ମଣିଷ ପ୍ରକୃତରେ ସ୍ୱାଧୀନ ହେବ ।

୧୮ । ୫ । ୪୬

କାଲି ସଂଜବେଳେ ବୁଲିବାକୁ ଯାଇ ଆମେ ରେଲଷ୍ଟେସନ ଉପରକୁ ଉଠିଚୁ କି ନାହିଁ, ପ୍ରବଳ ଝଡ଼ ମାଡ଼ି ଆସିଲା । ଆମେ ଘରକୁ ଫେରିଆସିଲୁ । ପରେ ଝଡ଼ କମିଗଲା, ବର୍ଷା ବି ହେଲା ନାହିଁ । ଅନେକ ସମୟ ପର୍ଯ୍ୟନ୍ତ ସମସ୍ତ ପୂର୍ବଦିଗକୁ ଭରିଦେଇ କେବଳ ବିଜୁଳି ମାରୁଥିଲା । ତା'ପରେ ସ୍ୱଚ୍ଛ ଚନ୍ଦ୍ରକିରଣ ଦେଖିବାକୁ ମିଳିଲା, ଆକାଶ ଏକାବେଳେକେ ସଫା ହୋଇଗଲା ।

ସକାଳେ କାଞ୍ଚନଜଂଘା ଶୃଙ୍ଗ ଦେଖିପାରିବି ବୋଲି ଖୁବ୍ ଭୋରରୁ ଉଠି ଅନେକ ଦୂର ପର୍ଯ୍ୟନ୍ତ ରେଳଲାଇନ୍ ଉପରେ ଚାଲି ଚାଲି ଯାଇଥିଲି । ମାତ୍ର ଈଷତ୍ ମେଘର ଗୋଟିଏ ପର୍ଦ୍ଦା ଉତ୍ତର ଦିଗଟିକୁ ଘୋଡ଼ାଇ ରଖିଥିବାରୁ ଶୃଙ୍ଗ ଆଉ ଦୃଷ୍ଟିଗୋଚର ହେଲା ନାହିଁ । ମନ ଖରାପ ହେଲା, ଫେରିଆସିଲି ।

ଖରାବେଳେ ଗୁରୁଦେବଙ୍କର 'ଡାକଘର' ନାଟକ ପଢ଼ି ଶେଷ କଲି । ଦେଶରେ ଅନେକ 'ଅମଲ୍' ତ ସବୁଦିନେ ତୀବ୍ର ମନୋବେଦନା ପାଉଚନ୍ତି, ମାତ୍ର 'ଠାକୁର୍ଦ୍ଦା' କେତେଜଣଙ୍କର କପାଳରେ ଜୁଟୁଚି ?

× × ×

ସେଦିନ ଆସାମ ମେଲରେ ଖୁବ୍ ଭିଡ଼ । ବେଞ୍ଚ ପୂରି ତବାଟିର ମଇଳା ଚଟାଣ ମଧ୍ୟ ଯାତ୍ରୀମାନଙ୍କ ଦ୍ୱାରା ଭରପୂର । ମୁଁ କଣିକିଆ ହୋଇ ଗୋଟିଏ ବେଞ୍ଚରେ ବସିଥାଏ । ମୋ'ପାଖରେ ଆଉଜଣେ ବାବୁ ବସିଥାନ୍ତି । ସେ ଜଣେ ରେଲବାଇ କର୍ମଚାରୀ । ଧୋତି ସାଙ୍ଗକୁ ଗେଞ୍ଜି, ଗେଞ୍ଜି ଉପରେ ରେଲବାଇ ବୋତାମଲଗା ଧଳା କୋଟ୍ । ଆମ ଗୋଡ଼ପାଖକୁ ଚଟାଣ ଉପରେ ଆଉଜଣେ ପ୍ରୌଢ଼ ଭଦ୍ରଲୋକ ବସିଥିଲେ । ବାଳ ପାଚିଯାଇଚି, ଆଖି ଦୁଇଟା କୋରଡ଼ ପରି, ଗାଲ ଏକାବେଳେକେ ପଶିଯାଇଚି । ଡୋଳା ଦୁଇଟା ନିଦ୍ରାଳୁ ମଣିଷର ଡୋଳାପରି ଢଳ ଢଳ । ଦେଖିଲେ ମନେହୁଏ, ଜଣେ ପକ୍‌କା ନିଶାଖୋର । ସିଏ ମଧ୍ୟ ଜଣେ ତଳିଆ ରେଲବାଇ କର୍ମଚାରୀ । ଘର ଢାକା, ଛୁଟିରେ ଘରକୁ ଯାଉଚନ୍ତି ।

ଭଦ୍ରଲୋକ ଜଣକ ପ୍ରଥମେ ଶାନ୍ତିନିକେତନ ବିଷୟରେ ମୋତେ ଅନେକ ପ୍ରଶ୍ନ କଲେ । ସବୁଗୁଡ଼ାକ ଖିଆଲି ପ୍ରଶ୍ନ । ଶେଷରେ ମୁଁ ଗୀତ ଗାଇ ଜାଣିଚି କି ନାହିଁ, ସେକଥା ମଧ୍ୟ ପଚାରିଲେ । ଶାନ୍ତିନିକେତନ ବୋଇଲେ ଏମାନେ ଯେପରି ନାଚଗୀତର ଗୋଟାଏ ନାମଜାଦା ଆଖଡ଼ା ବ୍ୟତୀତ ଆଉ କିଛି ବୁଝନ୍ତି ନାହିଁ ! ଶାନ୍ତିନିକେତନର ଛାତ୍ର ବୋଲି ଜାଣିବା ପରେ ପରେ ଗୀତର ଫରମାସ କରିବସିବା ଯେ କିପରି ଭଦ୍ରତା, ମୁଁ ସେକଥା ଠଉରାଇ ପାରୁ ନ ଥାଏ । ତା'ପରେ ଭଦ୍ରଲୋକ ଜଣକ ନିଜର ନାସ ଡିବା କାଢ଼ିଲେ, ନାସକୁ ଖଇନି ପରି ଚୂନ ଦେଇ ମଳି ଖାଇଲେ । ତା'ପରେ ନିଜର ମଗରମୁହାଁ ଚୁରୁଟ୍ ଲଗାଇ ଟାଣିବାକୁ ଲାଗିଲେ । ଦ୍ୱିତୀୟ ନିଶାଖୋର ମହାଶୟ ବଡ଼ ବିକଳ ଓ ଗଦ୍‌ଗଦ ଦୃଷ୍ଟିରେ ବାବୁଙ୍କର ଚୁରୁଟ୍‌କୁ ଚାହିଁ ରହିଥାନ୍ତି । ଚୁରୁଟ୍‌ରୁ ବାହାରୁଥିବା ଧୂଆଁ ସଙ୍ଗେ ସଙ୍ଗେ ତାଙ୍କର ମନଟା ସତେଯେପରି ଦୋଳି ଖେଳି ବୁଲୁଥାଏ । ସମ୍ଭାଳି ନ ପାରି ସେ ଶେଷରେ ବଡ଼ବାବୁଙ୍କ ସଙ୍ଗରେ ଆଳାପ ଜମାଇଦେଲେ, ଅବଶ୍ୟ ବଙ୍ଗଳାରେ ।

"ବାବୁ, ସେଇ ଜିନିଷଟିର ନାମ କଣ ?"

"ଯା' ନାଆଁ ହେଉଚି—, ଯାକୁ ଆମେରିକାର ଲୋକମାନେ ଖାଆନ୍ତି ।"

"କୋଉଠି କିଣିବାକୁ ମିଳିବ ?"

"ନା—ଯୁଦ୍ଧବେଳେ ଅନେକ ଆମେରିକାନ୍ ଏ ଦେଶକୁ ଆସିଥିଲେ, ଏସବୁ ଜିନିଷ ସେଇମାନେ ଖାଉଥିଲେ । ସେମାନେ ତ ବିଡ଼ି କି ଅର୍ଡିନାରୀ ସିଗାରେଟ୍ ଖାଇବେ ନାହିଁ, ତେଣୁ ସେମାନଙ୍କ ସକାଶେ ଏହି ଜିନିଷଟି ଆମେରିକାରୁ ଆସୁଥିଲା । ବର୍ତ୍ତମାନ ସେମାନେ ନିଜ ଦେଶକୁ ଚାଲିଗଲେଣି, ତେଣୁ ଏସବୁ ଜିନିଷ ଆଉ ମିଳୁ ନାହିଁ । ଅବଶ୍ୟ ଆମ ରେଲବାଇ ଡିପାର୍ଟମେଣ୍ଟର ଫନ୍ଦିରେ ମୁଁ ଏଥିରୁ କିଛି ରଖି ନେଇଚି ।"

"କୋଉଠି ବି ଖୋଜିଲେ ମିଳିବ ନାହିଁ ?"

"ହଁ, କଲିକତା ବା ବମ୍ବେର ବଡ଼ ବଡ଼ ଦୋକାନ, ଯେଉଁଠି ଆମେରିକାନ୍‌ମାନେ ସଉଦାପତ୍ର କରୁଥିଲେ, କେବଳ ସେହିସବୁ ଦୋକାନରେ ମିଳିଲେ ମିଳିପାରେ । ତଥାପି ମିଳିବା ମୁସ୍କିଲ ।"

"ହଁ ବାବୁ, ମୁଁ ତ ଠିକ୍ ସେଇକଥା ଭାବୁଚି । ମୁଁ ବି ଦିନେ ଖାଉଥିଲି, କିନ୍ତୁ ଆଜିକାଲି ଆଉ କିଣିବାକୁ ମିଳୁ ନାହିଁ । ଏଇଥର ଢାକାରେ ନିଶ୍ଚୟ ଖବର ନେବି ।"

"ଆମେରିକାନ୍‌ମାନେ ଏହି ଜିନିଷଟିକୁ ଖୁବ୍ ଭଲ ପାଆନ୍ତି । ଏଥିରେ ବେଶୀ ନୁହେଁ, ସାମାନ୍ୟ ମାଦକ ରହିଚି । ଜିନିଷଟା ଖୁବ୍ ମିଠା, ସ୍ଵାଦୁ ଖାଇବା ପରେ ଏଇଟି ଖାଇଲେ ମନ ବିଲକୁଲ ତାଜା ହୋଇଯାଏ ।"

"ମୁଁ ବାସନ୍ତ୍ରୁ ବାରିନେଇଚି ଯେ ଏଇଟା ଗୋଟାଏ ଭଲ ଜିନିଷ । ମୁଁ ମଧ୍ୟ ରୋଜ୍ ଗୋଟାଏ ଦୁଇଟା ଜିନିଷ ଖାଏ । ତେବେ ଆଜି ସାଙ୍ଗରେ ଆଣିବାକୁ ଭୁଲିଯାଇଚି । ତେଣୁ ଭାବୁଥିଲି, ବାବୁଙ୍କ ପାଖରୁ ଯଦି—"

"ମୁଁ କେବଳ ଥରକ ପାଇଁ ସରଞ୍ଜାମ ସାଙ୍ଗରେ ଆଣିଥିଲି । ପାଖରେ ଥିଲେ ମନ କଣ ସମ୍ଭାଳିହୋଇ ରହିବ ? ଦିନକରେ ସବୁ ଶେଷ ହୋଇଯିବ । ସେଥିଲାଗି ଘରେ ରଖିଦେଇ ଆସିଚି । ଆଉଗୋଟାଏ ଜିନିଷ ଏଠି ପାଖରେ ଅଛି । ସେଇଟା ମଧ୍ୟ ଆମେରିକାନ୍ ଜିନିଷ । ନାସ କରାଯାଏ, ଖଇନି ପରି ଖିଆଯାଏ ମଧ୍ୟ ।"

କଥାର ଶେଷ ଅଂଶଟି ଶୁଣିବାଲାଗି ଆରଜଣଙ୍କର ଆଉ ଉତ୍ସାହ ନ ଥିଲା । ଚୁରୁଟ୍ ଟାଣିବାକୁ ନ ପାଇ ତାଙ୍କର ମନ ଏକାବେଳେକେ ଫିକା ପଡ଼ିଗଲା । ଅଗତ୍ୟା କଥାବାର୍ତ୍ତା ବନ୍ଦ କରି ସେ ଆପଣାର ସିଗାରେଟରୁ ଖଣ୍ଡେ ଲଗାଇ ପାକୁପାକୁ କରି ଟାଣିବାକୁ ଆରମ୍ଭ କଲେ । ତାହା ପୂର୍ବରୁ ଶିଷ୍ଟତା ରଖି ସେ ବଡ଼ବାବୁଙ୍କୁ ଖଣ୍ଡେ ସିଗାରେଟ ଯାଚିଲେ । ବାବୁ କହିଲେ, "ନା ଥାଉ, ମୁଁ ସିଗାରେଟ ଖାଏନା ।"

୧୯ । ୫ । ୪୬

ରବୀନ୍ଦ୍ରପାଣ୍ଡି ଶ୍ରଦ୍ଧା ପାଇଁ ଖବରକାଗଜରେ ପୁଣି ଗୋଟାଏ ବିଜ୍ଞାପନ ବାହାରିଚି । ଠିକ୍ ବିଜ୍ଞାପନ ପରି ବଡ଼ ବଡ଼ ଛାପା ଅକ୍ଷରରେ । ଏ ପର୍ଯ୍ୟନ୍ତ ଯଥେଷ୍ଟ ଟଙ୍କା ଉଠିପାରି ନ ଥିବାରୁ ସମିତିର ସଭାପତି ସେଇଟାକୁ ଜାତି ପକ୍ଷରେ ଗୋଟାଏ ବଡ଼ ଲଜ୍ଜାର କଥା ବୋଲି କହିଚନ୍ତି ।

ଯିଏ ଦେଉଳ ତୋଳାଏ, ଦେଉଳ ତୋଳା ସରିଗଲେ ତା'ର ସେହି ଦେଉଳରେ କୌଣସି ଏକ୍ସ୍ଟିଆ ଅଧିକାର ରହିବା ଉଚିତ ନୁହେଁ । କେବଳ ଭକ୍ତର ହିଁ ଦେଉଳ ଭିତରକୁ ଯିବାର ହକ୍ ରହିଚି ।

ନାନାପ୍ରକାର ଭକ୍ତିଆଡ଼ମ୍ବର କରି ପାପୀ ଦେଉଳ ଭିତରକୁ ଯିବାଲାଗି ଚେଷ୍ଟା କରିଥାଏ, ଷାଠିଏ ଫୁଲରେ ସତୁରି ପୂଜାର ଆୟୋଜନ କରିଥାଏ । ମାତ୍ର ଯେତେ ଯାହା କରୁନା କାହିଁକି, ତଦ୍ଵାରା ସିଏ ପାଞ୍ଚ ଛଅଟା ଉଚ୍ଚ ଆସନରେ ବସି ବାହାବାହା ପାଇବ ସିନା, ମାତ୍ର ମନ୍ଦିରର ଦୁଆର ତା'ଲାଗି ସବୁଦିନ ବନ୍ଦ ରହିଥିବ । ମନ୍ଦିର ଭିତରକୁ ଯିବାଲାଗି ଯେଉଁ ଶୁଚି ଦରକାର, ସେହି ଶୁଚି ଅଭିମାନୀ ଠାରେ କାହିଁ ?

ଦେଶର ମଣିଷ-ଯଖ କେତେଜଣ ମିଳି କବିର କୁଶାସନକୁ ସୁନା ଛାଉଣି କରିବାକୁ ବସିଚନ୍ତି । ଉଡ଼ନ୍ତା ଲଙ୍ଗଳା କବିମନକୁ ଯଖଘରେ ସୁନାରୂପା ଖୁଣ୍ଟରେ ବାନ୍ଧିରଖିବାର ଧୃଷ୍ଟତା ଜାତି ଯେପରି ନ କରେ !

ଦେଶର ଚ୍ଛରିଆଡ଼େ ଖାଲି ପୂଜାର ଆୟୋଜନ, ଚ୍ଛରିଆଡ଼େ ବଣିଆ ଡାକି ମୂର୍ତ୍ତି ଗଢ଼ାହେଉଚି । ବିହାରର ବେଗୁସରାଇଠାରେ ଗାନ୍ଧିଜୀଙ୍କର ଦେଉଳରେ ରୀତିମତ ନୀତି, ଆରତି ଓ ଭୋଗରାଗ ଚ୍ଛଲିଲାଣି । କରାଚୀରେ ବି ବାପୁଜୀଙ୍କର ଏକ ଶଙ୍ଖମର୍ମର ମୂର୍ତ୍ତି ତିଆରି କରିବାର ବରାଦ ହୋଇଗଲାଣି । ପ୍ରତିକୃତିଟିର ଉନ୍ମୋଚନ କରିବେ ବୁଢ଼ା ଭାରତମନ୍ତ୍ରୀ ପେଥିକ୍ ଲରେନ୍ସ ସାହେବ । ଅସ୍ତହୀନ ବ୍ରିଟିଶ୍ସାମ୍ରାଜ୍ୟର ଜଣେ ମନ୍ତ୍ରୀ ସେଇ କୁଲି-ବାରିଷ୍ଟର ଅଧଲଙ୍ଗଳା ଫକୀରର ପ୍ରତିମୂର୍ତ୍ତି ଉନ୍ମୋଚନ କରିବେ, ଇଏ ତ କମ୍ ସମ୍ମାନର କଥା ନୁହେଁ ଦେଶପକ୍ଷରେ !

ପୁଣି କଲିକତାର ଗୋଟାଏ ଜାଗାରେ ସୁଭାଷ ବୋଷଙ୍କର ପୂଜା ହେଉଚି । ରାଣୀ ଭବାନୀ ସେଠି ନେତାଜୀଙ୍କ ହାତରେ ଖଡ୍‌ଗ ଦେଉଚନ୍ତି । ନେତାଜୀ-ନିଶା ଗଞ୍ଜୋଡ଼ମାନଙ୍କୁ ବେଶ୍ ଘାରିଚି ।

ନେତାଜୀ ଦେଶକୁ ନେତୃତ୍ୱ ଦେଉଥିବାବେଳେ କେହି ଶୁଣୁ ନ ଥିଲେ, ଏବେ ତାଙ୍କର ପାଦୁକ ପାଇବାକୁ ଜଣେ ଜଣେ ଲକ୍ଷଲକ୍ଷ ଟଙ୍କା ଖରଚ କରି ଦେଉଚନ୍ତି । ଲାଙ୍ଗୁଡ଼କୁ ହଜାରେ ହାତ ଲମ୍ବା କରି ତାକୁ ମୋଡ଼ିମୋଡ଼ି ଉଚ୍ଚ ଆସନ କରି ବସିଲେ ମଧ୍ୟ ମାଙ୍କଡ଼ ମାଙ୍କଡ଼ ହୋଇ ରହିବ । ମଣିଷ ହେବାର ରାସ୍ତା ଅଲଗା । ପଇସା ଖରଚ କରି, ବିଭୂତି ପାଇ ନେତାଜୀଙ୍କ ମନ୍ଦିରର ବାଟ ପାଇବା ବଡ଼ ମୁଷ୍କିଲ । ଟଙ୍କା ଖରଚ କଲାବାଲା ଚ୍ଛହିଁଥିବେ, ଅଥଚ ସଚ୍ଚା ଭକ୍ତପାଇଁ ମାଗଣାରେ ବାଟ ଫିଟିଯିବ । ରାମେଶ୍ୱର, ମନୋରଞ୍ଜନ ବା ଦେବବ୍ରତ କେତେ ହଜାର ଟଙ୍କା ଖରଚ କରିଥିଲେ ? ମାତ୍ର ଶେଷରେ ସେହିମାନଙ୍କ ନଡ଼ିଆ ହିଁ ପ୍ରଥମେ ମନ୍ଦିର ଭିତରକୁ ଗଲା !

ରବୀନ୍ଦ୍ରନାଥ ଓ ନେତାଜୀଙ୍କ ନାଆଁରେ ଅନେକ ସମୟରେ 'ବଙ୍ଗାଳି' ଛପା ଦିଆହେବାର ଚେଷ୍ଟା ହେଉଚି । ହାତୀର ବିରାଟ ଶରୀର ଦେଖି ବେଙ୍ଗ ଭାବୁଚି, ତାକୁ ଆଣି ତାହାରି ଘରେ ବାନ୍ଧି ରଖିବ । ବରଫଳ ନେଇ କାଉ କେତେ ଦେଶ ଯିବ, କେତେକେତେ ପର୍ବତ, ପ୍ରାନ୍ତର ଆଉ ଡୋଟାରେ ଗଛ ସମ୍ଭବ କରାଇବ, ତା'ବୋଲି ପହିଲି ବରଗଛଟା କଣ ସବୁ ଗଛକୁ ଓପାଡ଼ି ଆଣି ନିଜ ଚ୍ଛରିପାଖରେ ଲଗାଇବାକୁ କହିବ ?

୨୦ । ୫ । ୪୬

ଜମିଦାରିଆ ଆଲାପଆମୋଦ ଭିତରେ ରହି କ୍ରମେ ବଡ଼ ଚିଟା ଲାଗିଲାଣି । ସମୟ କଟାଇବାକୁ କିଛି ଉପକରଣ ନାହିଁ । ମାନସିକ ଖାଦ୍ୟ

ଲାଗି କୌଣସି ବ୍ୟବସ୍ଥା ନାହିଁ । ସେଇଥିଲାଗି ହୁଏତ ପେଟଟା ବେଶୀ ଭାରିଭାରି ଲାଗୁଚି । ଏମାନେ ଯଦି ମନ କରନ୍ତେ, ତେବେ ଖୁବ୍ ସୁନ୍ଦର ଲାଇବ୍ରେରୀଟିଏ ରଖିପାରନ୍ତେ ।

ଖାଲି ମାଛ, ମାଂସ, ଶିକାର ଆଉ ଖେଳ । ଏହି କେତେଟା ଆୟତନ ଭିତରେ ଏମାନଙ୍କର ଜୀବନ ଓ ମନ ଆବଦ୍ଧ ହୋଇ ରହିଚି । ଟଙ୍କା ଖରଚ କରିବାର ବାଟ ଖୋଜିବାକୁ ଯାଇ ଏମାନେ କେବଳ ନିଜ ଅଯୋଗ୍ୟତା ଓ ଅପଦାର୍ଥତାର ପ୍ରମାଣ ଦେଉଚନ୍ତି ସିନା !

ଦିନଯାକ କେବଳ ମାଛ, ମାଂସ ଆଉ ମଜା କରିବାର ଚିନ୍ତା ! ମଜା କରିବାଛଡ଼ା ଯେମିତି ଆଉ ଜୀବନ ହିଁ ନାହିଁ ! ଯଦି ମଣିଷ ଭିତରେ ତା'ର ମଣିଷପଣିଆ ବଢ଼ି ନ ପାରିଲା, ତେବେ ଖାଲି କାଦୁଅ ପିଣ୍ଡୁଳାର ଆୟତନଟାକୁ ବଢ଼ାଇ କି ଲାଭ ? ନା,—ଏଠାରେ ମୋଟେ ମନ ଲାଗୁ ନାହିଁ । ଗାଆଁ କଥା ମନେପଡ଼ୁଚି । ଗରିବ ଗରିବ ହେଲେ ମଧ୍ୟ ସେ ମଣିଷ, ମାଛମାଂସ ଓ ମଜାମଜ୍‌ଲିସ୍ ବଦଳରେ ହସ, କାନ୍ଦ, ଉପାସ, ଉତ୍ସବ ଓ ବର୍ଷାଶୀତରେ ସେ ଅନ୍ୟଜଣକର ଖବର ରଖେ, ପଡ଼ିଶାଘରେ କାହାର ପେଟ ଅପୂରା ଥିବାପର୍ଯ୍ୟନ୍ତ କାହାର ଭାତ ସଢ଼ିପଚି ଯାଏ ନାହିଁ ବା ଫୋପାଡ଼ି ଦିଆଯାଏ ନାହିଁ । ସେଇ ତାର ଯଥେଷ୍ଟ, ସେଇ ତାର ସ୍ୱର୍ଗସୁଖ !

ଏଠି ଏତେ ଧନ ଜମା ରହି କଳଙ୍କି ଲାଗିଯାଉଚି । ଖାଲି ମାଟିପିଣ୍ଡର ଆୟତନଟାକୁ ହିଁ ବଢ଼ାଇବାରେ ଏଠି ଧନ ଖରଚ ହେଉଚି । ଅଥଚ ଆମ ପୃଥିବୀରେ ଧନର କେତେ ଆବଶ୍ୟକତା ନ ରହିଚି ! ମୁଠାଏ ଗୁଉଳ ପାଇଁ କେତେ ଭୋକିଲା ଆଖି ଅନାଇ ରହିଚି; ଢୋକେ ପାଣି ବା ଟୋପାଏ ଓଷଦ ପାଇଁ କେତେ ମଣିଷ ମରଣ ପାଖରେ ହାର ମାନୁଚନ୍ତି, ଅଥଚ ଏହି ଘରେ ବାସ କରୁଥିବା ଲୋକମାନଙ୍କର କଣ କିଛିହେଲେ କରିବାର ନାହିଁ ? ଉପଭୋଗର ମୂଢ଼ତା ଭିତରେ ବୁଡ଼ିରହି ଏମାନେ ନିଜପ୍ରତି ତଥା ସଂସାର ପ୍ରତି କେଡ଼େ ଅନ୍ୟାୟ ନ କରୁଚନ୍ତି ?

ବିରାଟ ପୃଥିବୀର କେଡ଼େ କ୍ଷୁଦ୍ର ଅଂଶରେ ଏମାନଙ୍କର କାରବାର ! ମଣିଷର ଜୀବନଛାଞ୍ଚ ବହନ କରୁଥିଲେ ମଧ୍ୟ ଏମାନେ କୂଅବେଙ୍ଗ ପରି ସନ୍ତୁଷ୍ଟ ରହିପାରୁଚନ୍ତି କିପରି ? ଏମାନଙ୍କ ଭିତରେ ଯେଉଁଟିକକ ମଣିଷପଣିଆ ବା ଯେଉଁଟିକକ ଅମର ଆଲୋକ ରହିଥିଲା, ତା'ଗୁରିପାଖରେ କଣ କାଦୁଅର ପରଳ ପଡ଼ିଯାଇଚି ? ଏଇ ଚିଟା ଜୀବନର କ୍ଳାନ୍ତିକର ଗୁରୁଭାର ମୁଣ୍ଡାଇ ଏମାନେ ମୁହୂର୍ତ୍ତକ ପାଇଁ ସୁଦ୍ଧା ଅସ୍ୱସ୍ତିବୋଧ କରନ୍ତି ନାହିଁ ?

କାଲି ଉଦୟବାବୁଙ୍କ ସଙ୍ଗେ ଏଠିକା ଡାକ୍ତରଙ୍କର ଘରକୁ ବୁଲିଯାଇଥିଲି । ଜଣେ ଡାକ୍ତରଙ୍କର ଜୀବନଯାପନପ୍ରଣାଳୀ ଦେଖି ଦାବା ହୋଇଗଲି । ସକାଳୁ ସ୍ନାନ ସାରି ସେ ମୁଡ଼ିଗୁଡ଼ ଜଳଖିଆ କଲେ । ତା'ପରେ ତାଙ୍କର 'ଆହ୍ନିକ' ଆରମ୍ଭ ହେଲା । ପ୍ରଥମେ ଖଇନି ମଳାହୋଇ ପାଟିରେ ପଡ଼ିଲା । ତା'ପରେ ଗୁଡ଼ାକର ହୁକା ସଜାଡିଆଣି ଦେଲା । ତା'ଆଗରୁ ଅବଶ୍ୟ ବିଡ଼ିଟଣା ସରିଥିଲା । ହୁକାଟଣା ପରେ ମସଲା ପ୍ରସ୍ତୁତ ହେଲା,—ଗୁଆ, ଲବଙ୍ଗ ଓ ଗୁଜରାତିର ଗୁଣ୍ଡ; ସେଇଟା ହେଲା ଆହ୍ନିକର Finshing Touch.

ଜଣେ ଲୋକ ବୋତଲ ଧରି ଔଷଧ ପାଇଁ ଆସିଲା । ସେଦିନ ରବିବାର ବୋଲି ମନା କରିଦିଆଗଲା । ଅବଶ୍ୟ ଉଦୟବାବୁ କହିବାରୁ ଶେଷରେ ଔଷଧ ମିଳିଲା । ଗରିବର କପାଳ ଖରାପ, ବାର ଦେଖି କଣ ରୋଗ ଆସିପାରନ୍ତା ନାହିଁ ? ଆଉ ବାରମାନଙ୍କରେ ଆସୁଥିଲେ କଣ ଡାକ୍ତରବାବୁଙ୍କର କଥାଚଟକଣା ଖାଇବାକୁ ପଡ଼ୁଥାନ୍ତା ? ଭାବିଲି, ଆମର ବର୍ତ୍ତମାନ ସମାଜରେ ସବୁ ଆଡ଼ମ୍ବର, ଖାଲି ଗୋଟାଏ ଗୋଟାଏ ଢୋଲ !

୨୧ । ୫ । ୪୬

ଏଠିକା କାରଖାନା ଦେଖି ଦିନକୁଦିନ ବେଶୀ ବିସ୍ମିତ ହେବାକୁ ପଡ଼ୁଚି । ଏଠାରେ ଖଣ୍ଡେ ମାଇନର ସ୍କୁଲ ଅଛି । ଦୁଇଟା ଛୋଟ କୋଠରୀରେ ପାଞ୍ଚଟା କ୍ଲାସ ହୁଏ,—ଦୁଇଜଣ ମାଷ୍ଟର । ତା'ଭିତରେ ଜଣେ ଏଠାରେ ପୋଷ୍ଟମାଷ୍ଟରି ବି କରନ୍ତି । ପିଲାଏ ବଡ଼ିଭୋରରୁ ଆସି ପୋଷ୍ଟଅଫିସ୍ ସାମନାରେ ଜମା ହୁଅନ୍ତି । ପୋଷ୍ଟମାଷ୍ଟର ବାବୁ ଆପଣାର ସକାଳ କର୍ମ ସାରି ପ୍ରାୟ ଆଠଟା କି ନଅଟାବେଳେ ପୋଷ୍ଟଅଫିସ୍ ଘରେ ସେମାନଙ୍କଠାରୁ ପଢ଼ା ନିଅନ୍ତି ଓ ପରଦିନ ପାଇଁ ସେମାନଙ୍କୁ ପଢ଼ା ଦିଅନ୍ତି । ତା'ପରେ ପିଲାଏ ପଣ୍ଡିତଙ୍କ ପାଖରେ ପଢ଼ିବାଲାଗି ସ୍କୁଲଘରକୁ ଚାଲିଯାଆନ୍ତି ।

ଏଇ ଗାଆଁଟା ଦୁଇ ପ୍ରଦେଶର ସୀମାରେ । ସେଥିଲାଗି ବେଆଇନ୍ ଝୋଟ ସରବରାହ ତଦାରଖ କରିବା ପାଇଁ ଏଠାରେ ଜଣେ ଲାଇସେନ୍ସ ଆସିଷ୍ଟାଣ୍ଟ ଅଛନ୍ତି । ଯେତେଦୂର ସମ୍ଭବ ଉକ୍ତ ଭଦ୍ରଲୋକ ମାଟ୍ରିକ୍ ପାଶ୍ କରିଛନ୍ତି ବା ମାଟ୍ରିକ୍ ପରୀକ୍ଷା ଦେଇ ଫେଲ୍ ହୋଇଚନ୍ତି । କାରଣ କଣ ମୁଁ ଜାଣେ ନା, ତଥାପି ଏହି ଜମିଦାରଙ୍କ ଘରେ ତାଙ୍କର ଦୁଇଓଳି ଖାଇବା ଓ ଜଳଖିଆ ହୁଏ । ସନ୍ଧ୍ୟା ପରେ ଜଳଖିଆ ଖାଇସାରି ଗାଆଁର କୌଣସି ଜାଗାରେ ବ୍ରିଜ୍‌ଖେଳ ଜମେ, ଏଇ ଲାଇସେନ୍ସ ବାବୁ ସେଥିରେ ବଡ଼ପଣ୍ଡା ହୁଅନ୍ତି । ଟଙ୍କା ବାଜିରଖି ଖେଳ ହୁଏ । ରାତି ଦୁଇଟା ତିନିଟାବେଳେ ଯେତେବେଳେ ଖେଳ ସରେ, ସେତେବେଳେ କିଏ ଟଙ୍କା ହାରିଥାଏ, କିଏ ବା ଜିତିଥାଏ ।

ଆଉ ଏଇମାନେ ହେଉଚନ୍ତି, ଆମଦେଶର ସରକାରୀ ଚାକିରିଆ, ଭଦ୍ରଭାଷାରେ କହିଲେ ଆମ ଦେଶର Public servant. ନିଜର କର୍ତ୍ତବ୍ୟ ତ ଅନେକଦିନରୁ ଭୁଲିସାରିଚନ୍ତି, ପୁଣି ଗାଆଁଭିତରେ ବଡ଼ ନିଶ୍ଚିନ୍ତଭାବେ ଅକର୍ତ୍ତବ୍ୟ କରିବାକୁ ମଧ୍ୟ ଏମାନେ ଇଚ୍ଛାବୋଧ କରୁ ନାହାନ୍ତି । ଯେଉଁ କଳର ପେଚକସ୍ ଏତେ ଢିଲା, ସେହି ସରକାର ଆଉ କେତେଦିନ ଚାଲିବ ? କୋରାପୁଟର ବିଷମକଟକରେ ଦେଖିଥିଲି କେମିତି ଛୋଟବଡ଼ ପୋଲିସ୍ କର୍ମଚାରୀ ଓ ଫରେଷ୍ଟ ଅଫିସର ପେଟ୍ରୋମାକ୍ସ ଲଗାଇ ରାତିଯାକ ଜୁଆ ଖେଳୁଥିଲେ । ନିଜର ଅଯୋଗ୍ୟତା ସତ୍ତ୍ୱେ ଏତେଗୁଡ଼ାଏ ଯୋଗ୍ୟତା ପାଇ ଏମାନେ ନିଜର ନୈତିକତା ଟିକକ ପୋଡ଼ି ଖାଇଚନ୍ତି ଓ ଗାଆଁର ଧୂଳିବାଟରେ ଜୋତା ଫଟଫଟ କରି ଗାଆଁର ବାତାବରଣକୁ ନଷ୍ଟ କରିବାକୁ ଆସିଚନ୍ତି । ସେମାନେ ଗାଆଁଲୋକଙ୍କର ପଇସାରେ ପୋଷା ହେଉଚନ୍ତି, ଅଥଚ ଏଠିକା ଲୋକେ ଯେ ଏହି ଫଙ୍କ-ଜମାଏତ୍‌କୁ ବନ୍ଦ କରାଉ ନାହାନ୍ତି, ସେଇକଥାଟା ମୋତେ ଭାରି ଖରାପ ଲାଗୁଚି । ସ୍ୱରାଜ ସରକାରରେ ଯଦି ସରକାର ଲୋକସାଧାରଣଙ୍କର ସଚ୍ଚା ସେବକ ହେବାକୁ ଚାହେଁ, ତେବେ ସେଥିରେ ଏପରି ଫାଁପରା ଲୋକଙ୍କର କୌଣସି ସ୍ଥାନ ରହିବା ଉଚିତ ନୁହେଁ ।

ସେଇ ଲାଇସେନ୍‌ସ ଭଦ୍ରଲୋକ ଜଣକ ମୁସଲମାନ । ଦିନେ ଖାଇଲାବେଳେ ଦେଖିଲି, ଧର୍ମାନ୍ତରର ଲୋକ ବୋଲି ତାଙ୍କପ୍ରତି ଟିକିଏ ଅଲଗା ରକମର ବ୍ୟବହାର କରାଗଲା । ଦେଖି ମୋତେ ଭାରି କଷ୍ଟ ଲାଗିଲା । କାଲି ରାତିରେ ତାଙ୍କୁ ସେଇକଥା କହିଲି । ସେ ବା କି ଉତ୍ତର ଦିଅନ୍ତେ ? ପରଦୁଆରେ ମୁଣ୍ଡ ଗୁଞ୍ଜିଚନ୍ତି ଯେତେବେଳେ, ଭଦ୍ରଲୋକଟି ପରି ସବୁ ସହି ନେଉଚନ୍ତି । ମୁଣ୍ଡ ଗୁଞ୍ଜିବାଟା ହେଉଚି ତ ନିଜର ହାର ମାନିବା !

ଏହି ଛୁଟିରେ ବଙ୍ଗଳା ଓ ଆସାମର ଅଧିକାଂଶ ଅଞ୍ଚଳ ଦେଖିଆସିଲି । ଦେଖିଲି, ମୁସଲମାନମାନେ ସବୁଠାରେ ବଙ୍ଗଳା ବା ଆସାମୀ କହନ୍ତି । ଅନେକ ଉର୍ଦ୍ଦୁ ଜାଣନ୍ତି ବି ନାହିଁ । ଅନେକଙ୍କର ନାଆଁ ବଙ୍ଗଳା, ଇସ୍‌ଲାମିକ୍ ଶବ୍ଦ ମିଶାହୋଇ ବିକୃତ ହୋଇଯାଇଚି । ଏଠିକାର ମୁସଲମାନମାନଙ୍କ ପରି ଏତେ ଗରିବ ମୁଁ ଆଗରୁ ଓଡ଼ିଶା ବାହାରେ କୋଉଠିହେଲେ ଦେଖି ନ ଥିଲି । ଯେପରି ଏମାନଙ୍କର କୌଣସି ନିଜତ୍ୱ ବା କୌଣସି ବୈଶିଷ୍ଟ୍ୟ ହିଁ ନାହିଁ ! କାଲି ତ ଦେଖିଲି ଖାଇବାପାଖରେ ଜଣେ ମୁସଲମାନ ପ୍ରତି କିପରି ପାତ୍ରାନ୍ତର ବ୍ୟବହାର କରାଗଲା ! ତଥାପି ଏଇ ପ୍ରଦେଶଟାରେ ହିଁ ଧର୍ମ ନେଇ ବେଶୀ ଦଙ୍ଗା ! ନିଜର ମୁସଲମାନୀ ପାଇଁ ଏଠି ଅନେକେ ନିଜର ଅଭିମାନ ଦେଖାନ୍ତି, ଠିକ୍ ଯେମିତି ରବୀନ୍ଦ୍ରନାଥ ବା ନେତାଜୀଙ୍କୁ 'ବଙ୍ଗାଳି' କରିଦେଇ ଅନେକ ତଥାକଥିତ ବଙ୍ଗାଳି ନିଜର ଦାମ୍ଭିକତା ଦେଖାଇଥାଆନ୍ତି !

୨୫ । ୬ । ୪୬

ମେ' ମାସ ପନ୍ଦର ତାରିଖରେ ବାଗଲପୁର ଗାଆଁର ପଞ୍ଚ-ଜମାୟତରେ ଠିକ୍ ହେଲା ଯେ ଗାଆଁ ଦେଉଳରେ ହରିଜନମାନେ ବି ପ୍ରବେଶ କରିବାର ଅଧିକାର ପାଇବେ । ଇଏ କଣ ଗୋଟାଏ ଖିଆଲ୍ ନା କଂଗ୍ରେସବାଲାଙ୍କର ଜବରଦସ୍ତି ? ନଅପୁରୁଷର କୁଳରକ୍ଷକ ଠାକୁର ଦଧିବାମନ,—ପୁଣି ଦୁଇଶହ ଘର ସମ୍ଭ୍ରାନ୍ତ କରଣବସ୍ତି ! ତଥାପି ସେଦିନ ଟୋକାଠାରୁ ବୁଢ଼ାଯାଏ ସମସ୍ତେ ହାତ ଉଠାଇଲେ ଓ କହିଲେ : ହରିଜନମାନଙ୍କୁ ଗାଆଁ ମନ୍ଦିର ଖୋଲିଦେବା ଉଚିତ । ସଭାର ସଭାପତି ସ୍ୱୟଂ ଗାଆଁର ବାବାଜୀ ମହାପ୍ରଭୁ । ପିଲାଏ ତାଳି ମାରି ସଭାର ନିଷ୍ପତ୍ତିକୁ ଗାଆଁଯାକ ରାଷ୍ଟ କରିଦେଲେ ।

ଉଦ୍ଦାମ ଉତ୍ସାହ ଓ ଅବିରାମ ଆୟୋଜନ । ଶହେ ଦୁଇଶହ ସରିକି ଗାଆଁରେ ପିଲାଏ ଢୁଙ୍ଗୁରା ପିଟି ବୁଲିଲେ ଯେ ଜୁନ୍ କୋଡ଼ିଏ ତାରିଖ ଦିନ ବାଗଲପୁର ଗାଆଁରେ ହରିଜନମାନେ ମନ୍ଦିରପ୍ରବେଶ କରିବେ । ସବୁ ହାଟରେ ଅନୁରାଗୀ କର୍ମୀମାନେ ସଭା କଲେ । କିଏ ବୁଝିଲା, କିଏ ବୁଝିଲା ନାହିଁ; କିଏ କହିଲା, 'ହଉ, ସେଦିନ ସଭା ତ ହେବ, ସେଠି ଆମେ ଆମ କଥା କହିବା ନାହିଁ ?'

ଦେଖୁ ଦେଖୁ ଖାଇଢିପ ଗାଆଁ ଦାଣ୍ଡ ସମାନ ହୋଇଗଲା । ନଇକୂଳରୁ ଗାଆଁ ଭିତରଯାଏ ଅଗଣିତ ପତରଫୁଲର ଫାଟକ । ହରିଜନ ସାହି ସଫା ହେଲା । ସେମାନେ ମଦ, ମାଉଁସ ଛାଡ଼ିଦେବାକୁ ଶପଥ କଲେ । ପାଣପାଟକ ଆଉ ଗୋରୁମଡ଼ା କାଟିଲେ ନାହିଁ । ଶେଷକୁ ସେହି ଦିନଟି ଆସି ପହଞ୍ଚିଲା । ପୂଜ୍ୟ ବିନୋବାଜୀଙ୍କର ଆଶୀର୍ବାଦ ମିଳିଲା । ଜିଲ୍ଲାର ଓ୍ୱରିଆଡ଼ୁ କର୍ମୀମାନେ ଆସିଲେ । ସକାଳ ଆଠଟାରେ ପତାକା ଉଡ଼ାହେଲା । ତା'ପରେ ଆଶ୍ଚର୍ଯ୍ୟ ହରିହରଙ୍କ ପୌରୋହିତ୍ୟରେ ଅସଲ ଉତ୍ସବଟି ଅନୁଷ୍ଠିତ ହେବ । ପ୍ରାୟ ହଜାରେ ସରିକି ମଣିଷମୁଣ୍ଡର ଗହଣରେ ଶୋଭାଯାତ୍ରା ଆସିଲା । ସବୁ ଦାଣ୍ଡରେ ଶଙ୍ଖ, ହୁଳହୁଳି ଓ ଦୂବଫୁଲର ବରଷା । ଗାଆଁ ପ୍ରାଣପାଇ ଉଚ୍ଛୁଳି ଉଠିଲା । ମେଘୁଆ ସକାଳର ଉଦାସ ମନରେ ସତେଅବା କିଏ ବିଜୁଳିକାଠି ଛୁଆଁଇଦେଲା ! ହରିଜନ ବୋହୂମାନେ ନୂଆଶାଢ଼ୀ ପିନ୍ଧି, ଓଢ଼ଣା ଟାଣି ଗଲେ ଠାକୁରଙ୍କର 'ଶ୍ରୀରୂପ' ଦେଖିବାକୁ । ଉତ୍ସବ ସରିଲା,—ଆକାଶ ଫାଟିଲା ନାହିଁ କି ଦେଉଳ ଭୁଷୁଡ଼ି ପଡ଼ିଲା ନାହିଁ । କୃପାଶୀଳ ଠାକୁର ଆଉ କ'ଣ ଚକାଡୋଳା ପକାଇ ଏହି ଅରକ୍ଷିତ ବର୍ଜିତ ସନ୍ତାନମାନଙ୍କୁ ଆଶୀର୍ବାଦ କଲେ କି ? ଆଖପାଖର ଗାଆଁଲୋକେ ଗ୍ରହିଁ ରହିଲେ,—'କୋଉଦିନ ହଇଜା ଲାଗିବ, ବାଗଲପୁରରେ କାଉଶାଗୁଣା ଉଡ଼ିବେ ।' ତା' ବି ହେଲା ନାହିଁ । ବାଗଲପୁରର ଧାନକ୍ଷେତରେ ପାଚିଲା ଧାନର ଢେଉ ଖେଳିଲା ।

ଇଏ କଣ ଦିନକର କାମ, ସେଇଦିନ ଆରମ୍ଭହୋଇ ସେଇଦିନ ସରିଲା ?

୧୯୨୮ ମସିହାରେ ନାନା ବାଧାବିଘ୍ନ ଦେଇ ଯେତେବେଳେ ଗାଆଁରେ ହରିଜନ ପିଲାଙ୍କଲାଗି ସ୍କୁଲଖଣ୍ଡେ ବସିଲା, ସେତେବେଳେ ଅନେକଙ୍କର ଆଖି ସହିଲା ନାହିଁ । ଦିନେ ରାତିରେ ହଠାତ୍ ଘରଖଣ୍ଡିକ ପୋଡ଼ିଗଲା, କାହା ଚକ୍ରାନ୍ତରେ କେଜାଣି ? କରଣସାହୀରେ ଭାଗବତ ହସ୍ତା ବସିଥାଏ,—କର୍ମୀ ଗୌରାଙ୍ଗ ଦାସ ଯେତେବେଳେ ବାଉରିସାହୀରେ ହଇଜାମଙ୍କୁ ଦେଖୁଥାନ୍ତି, କିଏ କହୁଥାଏ, ଗୋଟାଏ କୁଲକ୍ଷଣ ମଣିଷ ଏଡ଼େବଡ଼ ଗାଆଁର ନାଆଁ ବୁଡ଼ାଇଲା'; ବୁଢ଼ାମନ ସିନା ପଛମୁହାଁ, ମାତ୍ର ତରୁଣର ତରଳ ମନର ଗତି ସବୁବେଳେ ଆଗକୁ । କରଣ, ବ୍ରାହ୍ମଣ, ପାଣ, ବାଉରି, କଣ୍ଡରା ସବୁ ଟୋକାଟକ ମିଶି ସତାଅଶୀ ଜଣରେ ଯୁବକସଂଘ ଗଢ଼ାହେଲା । ଲାଠିଖେଳ, କୀର୍ତ୍ତନଶିଖା, ଜୋରସୋରରେ ଚାଲିଲା । ଗାଆଁର ଗୋଚର ପଡ଼ିଆ ରଜବାଗୁଡ଼ି ଖେଳରେ କମ୍ପିଉଠିଲା ।

ତା'ପରେ '୩୦ ଓ '୩୨ର ସତ୍ୟାଗ୍ରହ-ଯଜ୍ଞ । ଚାରିଆଡ଼େ ପୁଲିସର ଧରପଗଡ଼ ଓ ବେତମାଡ଼ର ପାଳି ଆରମ୍ଭ ହୋଇଗଲା । ଦିନେ ନଈବାଲିରେ ସଭା ହେଲା, ଗୌରାଙ୍ଗବାବୁ ଓ ଇନ୍ଦ୍ରମଣି ବାବୁଙ୍କୁ ପୁଲିସ୍ ଧରି ନେଇଗଲେ । କିଏ ଡରରେ କବାଟ କିଳିଲା, କିଏ ଗାଆଁକୁ ପ୍ରମାଦ ଗଣିଲା । ସରକାର ଆଉ ଜାତି ଭିତରେ ଯେ ଦେଶର ମୁକୁଟ ନେଇ ଲଢ଼େଇ ଚାଲିଚି, ତାହାର ପ୍ରଥମ ସୂଚନା ଗାଆଁ ଲୋକେ ପାଇଲେ ।

୧୯୩୪ରେ ସେମାନେ ଖଲାସ ହୋଇ ଆସିଲେ । ସେଇଦିନଠାରୁ ଗାଆଁରେ ରୀତିମତ କଂଗ୍ରେସ କାମ ଚାଲିଲା । କପାଚାଷ, ସୂତାକଟା ଓ ଜାତୀୟ ପ୍ରଚାର ଲୋକମାନଙ୍କୁ ଖୁବ୍ ମାନସିକ ରସଦ ଯୋଗାଇଲା, ଲୋକମନର ବଦ୍ଧ ମଳିନତା ଧୀରେ ଧୀରେ ତରଳିବାକୁ ଲାଗିଲା । ପିଲାଏ ସକାଳୁ ଉଠି ଡ୍ରିଲ୍ କଲେ, ଶନିବାରକୁ ଶନିବାର ଆଲୋଚନା-ସଭା ବସିଲା, ଗାଆଁ ପାଣ୍ଠି ପାଇଁ ମୁଠିଚାଉଳ ଆଦାୟ ହେଲା । ୧୯୩୭ ମସିହାରେ ଗାଆଁର ଅନେକ ଯୁବକ ଭୋଟ ପ୍ରଚାର କରି କଂଗ୍ରେସକୁ ଜୟଯୁକ୍ତ କଲେ । ୧୯୩୮ ଦଶହରାକୁ ଗାଆଁ ପିଲାଏ ଲେଖନ ଓ ତାଳପତ୍ର ଛାଡ଼ି ଠେଙ୍ଗା ପୂଜିଲେ ।

ତାପରେ ଯୁଦ୍ଧ, ଅଭାବ ଓ ଜାପାନୀ ଆତଙ୍କ । ରାତିରେ ଠେଙ୍ଗା ଇଣ୍ଡନ ଧରି ଗାଆଁ ଜଗାହେଲା । ସୂତା କଟା ଜୋରସୋରରେ ଚାଲିଲା । ଗାଆଁର ପ୍ରାୟ ସବୁଘରେ ଅରଟରେ ସୂତା କଟା ହେଲା ।

ଅଗଷ୍ଟ ଆନ୍ଦୋଳନର ହାଉଆରେ ଗାଆଁ ପୁଣି ତେଜି ଉଠିଲା । ତିନିଜଣ ହରିଜନଙ୍କ ସମେତ ଷୋଳଜଣ କାରାବରଣ କଲେ । ଗାଆଁର ଜୀବନ ପୁଣି କିଛିଦିନ ପାଇଁ ଶୁନ୍‌ଶାନ୍ ଓ ଶିଥିଳ ହୋଇଗଲା ।

୧୯୪୫ରେ କର୍ମୀମାନେ ମୁକୁଳିଲେ । ଯୁଦ୍ଧ ଜିତିଲା ବୀରଙ୍କର ନବୀନ ଉତ୍ସାହରେ ଗ୍ରାମ୍ୟଜୀବନ ପୁଣି ପ୍ରାଣମୟ ହୋଇଉଠିଲା । କର୍ମୀମାନେ ଗାଆଁ ସମାଜକୁ ନୂଆଜୀବନ ଦେବାରେ ଲାଗିପଡ଼ିଲେ । ଗାଆଁ ମଣିଷର ସରଳ, ତରଳ ମନଭିତରେ ଆନ୍ଦୋଳନ ଆରମ୍ଭ ହୋଇଗଲା । ଦାଣ୍ଡରେ, ବାଟରେ ଓ ଭାଗବତ ସଭାରେ ସେଇକଥାର ଚର୍ଚ୍ଚା ପଡ଼ିଲା । ଧୀରେ ଧୀରେ ସମସ୍ତେ ବୁଝିଲେ । ଶେଷରେ ସଭାରେ ନିଷତ୍ତି ହେଲା ଅମୁକ ତାରିଖରେ ହରିଜନମାନେ ମନ୍ଦିରରେ ପ୍ରବେଶ କରିବେ । ଏହି ଇତିହାସର ଭୂମିକା ଉପରେ ଜୁନ୍ କୋଡ଼ିଏ ତାରିଖର ଉତ୍ସବ ସୃଷ୍ଟି ।

କିନ୍ତୁ ଖାଲି ଦିଅଁ ଦେଖିଲେ କି ମନ ବୋଧ ହୁଏ ? ନଈର ନାଚ ଦେଖିଲେ ସିନା ଖାଲି ଉଛନ୍ନ ମନର ପୀଡ଼ା ଭୋଗିବାକୁ ହୁଏ ! ନିଜର ଚମ ମାଉଁସ ଓ ପଞ୍ଜରାହାଡ଼ ତଳେ ସେଇ ଦିଅଁକୁ ଦେଖିଲେ ସିନା ଯାଇ ଦିଅଁ ମିଳେ ! ପ୍ରତ୍ୟେକ ମଣିଷ ଭିତରେ ଏହି ପବିତ୍ର ମନୁଷ୍ୟତାବୋଧ ଆଣି ନ ପାରିଲେ ଆମର ସବୁ ସଂସ୍କାରକଳ୍ପନା ବୃଥା ହୋଇଯିବ । ସେଥିଲାଗି ଗାଆଁର ଖଟିଖାଇଲା ଲୋକଙ୍କୁ ନେଇ ମଜଦୁର ଯୁବକସଂଘ ଗଢ଼ାହେଲା, ସେଇମାନଙ୍କ ଭିତରୁ ସମ୍ପାଦକ ଓ କର୍ମିମଣ୍ଡଳୀ ବଛା ହେଲେ । ସମାଜରେ ନିଜର ନ୍ୟାଯ୍ୟ ସ୍ଥାନ ବଜାୟ ରଖିବା ଓ ଦେଶର ସ୍ୱାଧୀନତା ପାଇଁ ନିଜକୁ ପ୍ରସ୍ତୁତ କରିବା ଏହି ସଂଘର ଉଦ୍ଦେଶ୍ୟ ରହିଲା । ହରିଜନ ସାହିକୁ ଖବରକାଗଜ ଆସିଲା । ଲାଠି ଶିଖା ଓ ନାଗରିକ ଶିକ୍ଷା ଆରମ୍ଭ ହେଲା । ପ୍ରତି ରବିବାର ଦିନ ସେମାନଙ୍କର ସଭା ବସିଲା । ଗାଆଁର ଗଉଡ଼ମାନେ ଅଜା ଅମଳର ସବାରିକାନ୍ଧିଆ ଛାଡ଼ିଦେଲେ । କରଣମାନେ ବିନା ଆପତ୍ତିରେ ନିଜର ସାଆନ୍ତିଆ ଅଧିକାରଟି ମଧ୍ୟ ଛାଡ଼ିଲେ ।

ତା'ପରେ କୋଠଗ୍ରଷ,—ଗାଆଁର ଆବାଦୀ ଜମିକୁ ଏକାଠି କରି ଗୋଟିଏ ହିପାଜତରେ ରଖିବାର ସ୍ୱପ୍ନ କାର୍ଯ୍ୟରେ ଫଳିଲା । ହିଡ଼ ଭଙ୍ଗାହେଲା, ଗାଆଁର ଷାଠିଏ ହଳୁଆ ବିସ୍ମିତ ଉତ୍ସାହରେ ମାଟି ତାଡ଼ି ପାଗ କରିଦେଲେ । ଏହି କୋଠଗ୍ରଷ ପଛରେ ଗାଆଁର ନାନା ଆଶା ରହିଚି । ଗାଆଁକୁ ନୂଆରୂପ ଦେବାର କଳ୍ପନା କେତେ ଲୋକଙ୍କ ମନରେ ଖେଳୁଚି । ଏହି ସହଯୋଗ ଓ ସଦ୍‌ଭାବକୁ କାମରେ ଲଗାଇ ଗାଆଁର ସ୍ୱାସ୍ଥ୍ୟ, ଗାଆଁର ଗୋଧନ ଓ ଗାଆଁର ସାମୂହିକ ଜୀବନକୁ ବଦଳାଇ ଦେବାର ଉଜ୍ଜ୍ୱଳ ଚିତ୍ର ମଧ୍ୟ ଏହି କୋଠଗ୍ରଷ ପଛରେ ରହିଚି । ଅବଶ୍ୟ ଏହାକୁ ସମ୍ପୂର୍ଣ୍ଣ କୋଠଗ୍ରଷ ବୋଲି କୁହାଯାଇପାରିବ ନାହିଁ । ସେହି ପୁରାତନ ଜମିସ୍ୱତ୍ୱ ରହିଚି, ଆବଶ୍ୟକତା ଅନୁଯାୟୀ ଶସ୍ୟର ସମବିତରଣ ବର୍ତ୍ତମାନ ଅନେକ ଦୂରରେ । ତଥାପି ସମସ୍ତଙ୍କର ଆଶା, ଏହି ସହଯୋଗ ଓ ମନମିଳନକୁ ଆସ୍କାର ଦେଇପାରିଲେ ଭବିଷ୍ୟତରେ ଆହୁରି ଅନେକ ସ୍ୱପ୍ନ ସଫଳ ହୋଇପାରିବ ।

୨୫ । ୭ । ୪୬

ଗାଆଁରେ ଛୁଟିଟା କଟାଇ ମୁଁ ପୁଣି ଶାନ୍ତିନିକେତନକୁ ଫେରି ଆସିଚି । ଏଥର ଆସିବା ପଥରେ ଅନେକ ବାଧା ରହିଥିଲା । ସବୁଠାରୁ ବଡ଼ ବାଧାଟା ହେଉଚି ପଇସାର ଅଭାବ । ଏହି ସମାଜର ଗୋଟାଏ ମଣିଷ ମୁଁ ଏତେ ଇଚ୍ଛା ଥାଇ ମଧ୍ୟ କାହିଁକି ଯେ ଜ୍ଞାନାର୍ଜନରୁ ବଞ୍ଚିତ ହୋଇ ରହିବି, ଏହି ଅପମାନର ଜ୍ୱାଳା ମୁଁ ସହିପାରିଲି ନାହିଁ । ସେଥିପାଇଁ ପଇସାର କୌଣସି ବ୍ୟବସ୍ଥା ହେବା ପୂର୍ବରୁ ହିଁ ମୁଁ ଚାଲିଆସିଲି ।

ମୋର ମନଟା ବର୍ତ୍ତମାନ ଏପରି ଗୋଟାଏ ଦୋଳାୟମାନ ଅବସ୍ଥା ଭିତର ଦେଇ ଗତି କରୁଚି, ମୁଁ ତା'ର କିଛି ଅନ୍ତ ପାଉ ନାହିଁ । ମନ ବର୍ତ୍ତମାନ ଏକାବେଳେକେ ଚୁପ୍, କେବଳ ନୀରବରେ ସବୁ ଗ୍ରହଣ କରି ଚାଲିଯାଉଚି । କଣ୍ଠଟାକୁ ବି ଏକାବେଳେକେ ବନ୍ଦ ହୋଇଯିବା ଲାଗି ସେ ବୋଧହୁଏ ସତର୍କ କରିଦେଇଚି । ଭିତରେ ସତେଅବା ଅବିରତ ସଙ୍ଗୀତର ମୂର୍ଚ୍ଛନା ଛୁଟିଚି, ଅଥଚ କଣ୍ଠ ଫିଟି ଭାଷା ବାହାରୁ ନାହିଁ । ବାହାରୁ ତାଲା ଲଗାଇଦେଇ ତେଣେ ଭିତରେ କିଏ ଯେପରି କେତେ ରକମର ଚଞ୍ଚଳ ଖେଳ ସୃଷ୍ଟି କରିବାରେ ଲାଗିଚି, ଆଉ ମୁଁ କେବଳ ଗ୍ରହଣ କରି ଚାଲିଚି । ଆତ୍ମପ୍ରକାଶ କରିବାର ସକଳ ଶକ୍ତି କୁଆଡ଼େ ଚାଲି ଯାଇଥିବାପରି ଲାଗୁଚି । ମନକୁ କିଛି ଲେଖି ହେଉ ନାହିଁ, ଫିଟା ମନରେ ମୁଁ ଗୀତଟିଏ ମଧ୍ୟ ଗାଇପାରୁ ନାହିଁ । ମନେହେଉଚି, ଯେପରି ଗୋଟାଏ ଭାବସ୍ରୋତ ଅତି ନୀରବରେ ବାହାର ଜଗତରୁ ମୋର ମନଭିତରକୁ ନିରତ ବହିଚାଲିଚି । ଆଗେ ଏପରି ସମୟ ଆସିଥିବାର ବି ମୋର ମନେଅଛି, ଯେତେବେଳେ ମନର ସକଳ ଧାରା କେବଳ ଭିତରୁ ବାହାରକୁ ହିଁ ଛୁଟିବାରେ ଲାଗିଥିଲା । ଏହି ଆଗମନ ଓ ନିର୍ଗମନ, ଏ କଣ ମଣିଷ ଜୀବନର ରୀତି, ଗୋଟାକପରେ ଗୋଟାଏ ନିଶ୍ଚୟ ଆସିବ ? ଏହି ମିଶିବା ଓ ମିଶାଇବା, ଦେବା ଆଉ ନେବା, ଅନେକ ଭିତରେ ନିଜକୁ ଚିହ୍ନିବା ଓ ନିଜକୁ ଅନ୍ୟସମୂହଠାରେ ପରିଚିତ କରାଇବା, ଧାରାର ଏଇ ଅଦଳବଦଳଟି କଣ ସବୁବେଳେ ସବୁ ମଣିଷର ଜୀବନରେ ଲାଗି ରହିଥାଏ ? ଏହା ହିଁ କଣ ଏ' ଜୀବନର ସ୍ୱାଭାବିକ ରୀତି ? ମୁଁ କିଛି ବୁଝିପାରୁ ନାହିଁ । କିନ୍ତୁ ମୋ' ମନର ଆନନ୍ଦ ତ କୌଣସି ପ୍ରକାରେ ଊଣା ହୋଇଯାଇ ନାହିଁ । ସଂସାର ଭିତରେ ଆପଣାକୁ ବୁହାଇଦେଇ ପାରୁ ନାହିଁ ବୋଲି ମନ ତ ଅତୃପ୍ତ ରହିଗଲା ପରି ମୋତେ ଲାଗୁ ନାହିଁ !

ଆସିଲାଦିନ ରାତିରେ—ସହିତ କଥାବାର୍ତ୍ତା ହେଉହେଉ ନିହାତି ମନକଥାଟା କହିପକାଇଲି । 'ଯଦି ମଣିଷ ଅନ୍ତତଃ ଜଣକୁ ପରିପୂର୍ଣ୍ଣ ଭାବରେ ଜାଣିପାରେ, ତେବେ ସେଇ ତା'ପକ୍ଷରେ କିଛି କମ୍ କଥା ହୁଅନ୍ତା ନାହିଁ ।'

ଅନ୍ତତଃ ଜଣକ ପାଖରେ ଯଦି ସେ ଆପଣାର ମନକୁ ଖୋଲିଦେଇ ପାରନ୍ତା, ତେବେ ତାହା କଣ କମ୍ ଗୌରବର କଥା ହୁଅନ୍ତା ? କିନ୍ତୁ ପୃଥିବୀରେ ଏପରି ଉଦାହରଣ କେତୋଟି ଦେଖିବାକୁ ମିଳିବ ? ଏହି ଦୀନକ୍ଳିଷ୍ଟ ପୃଥିବୀ ଭିତରେ କେତେ ଅବିଶ୍ୱାସ ଓ ସନ୍ଦେହ ଛନ୍ଦି ହୋଇ ନ ରହିଚି ? ଭଲ ପାଇବାର କେତେ ହତ୍ୟା ନ ହେଉଚି ? ଏହି ଗୁମ୍ପାଭିତରୁ ବାହାରିବାର ବାଟ କାହିଁ ? ଅନ୍ୟକୁ ସମ୍ପୂର୍ଣ୍ଣରୂପେ ଆପଣାର କରିନେବାକୁ ହେଲେ, ନିଜକୁ ତ୍ୟାଗମୂର୍ତ୍ତି, ପ୍ରେମମୂର୍ତ୍ତି ଓ କର୍ମମୂର୍ତ୍ତି କରିବାକୁ ହେବ । ଯିଏ ନିଜର ଦୁଆର ଖୋଲି ନ ପାରିବ, ଭିତରକୁ ଆସିବାକୁ ଚାହୁଁଥିବା ଅତିଥିଠାରୁ ଯିଏ ଗୋଟାଏ ପାସ୍‌ପୋର୍ଟ ଦରକାର କରୁଥିବ, ସିଏ ଜଗତ ସହିତ କିପରି ପରିଚିତ ହୋଇପାରିବ ?

Love one or love all, each leads to the same thing if you are sincere to your love. Without loving one, you can never love all; and without an all-loving attitude, your love for the one can never attain perfection and cannot give you real satisfaction.

୭ । ୮ । ୪୬

ଆଜି ରବୀନ୍ଦ୍ରନାଥଙ୍କର ଶ୍ରାଦ୍ଧଦିବସ । ସକାଳୁ ମନ୍ଦିରରୁ ଆସିବାପରେ ସମୟତକ ବୃଥା ନଷ୍ଟ କରିଦେଲି । ଲାଭ, କ୍ଷତି, ଉପକାର ବା ଅପକାର ବାଛିବାର ଶକ୍ତି ନାହିଁ । ମୁଁ ଖାଲି ଅନାଇ ରହିଚି, ଓ ମୋ'ରି ଜୀବନ ଭିତରଦେଇ ଯେପରି କିଏ ତା'ର କାମତକ କରି ଚାଲିଯାଉଚି ।

ପଅରିଦିନ ରବୀନ୍ଦ୍ରନାଥଙ୍କର କବିତା ସମ୍ବନ୍ଧରେ ଜଣେ ଅଧ୍ୟାପକ ପ୍ରବନ୍ଧଟିଏ ପଢ଼ିଲେ । ସହଜ ଓ ସରଳ କବିତା ସମାଲୋଚକର ନିହାଣତଳେ ପଡ଼ି କିପରି ଭାଙ୍ଗିରୁଜି ସୌନ୍ଦର୍ଯ୍ୟହୀନ ହୋଇଯାଇପାରେ, ତାହାରି ନମୁନା ମିଳିଗଲା । ଗୁରୁଦେବଙ୍କର କବିତା ପଢ଼ିଲାବେଳେ କୁଆଡ଼େ ଭାସି ଚାଲିଗଲାପରି ମନେହୁଏ, ଜୀବନମରଣର ସୀମାଗୁଡ଼ାକୁ ଡେଇଁଗଲାପରି ଲାଗେ । କିନ୍ତୁ ତାହାର ସମାଲୋଚନା ପଢ଼ି, ସେସବୁ କଥା ଚିନ୍ତା କରି ବୁଝିଲାବେଳକୁ ମୋର ମୁଣ୍ଡ ବଥାଇବାକୁ ଆରମ୍ଭ କଲା । ସରଳ ଓ ସରସ ଜିନିଷକୁ ଜାଇଯୁକ୍ତ ଓ ରସଶୁଷ୍କ କରିଦେବା ଯଦି ସମାଲୋଚନାର ପରିମାପକ ହୋଇଥାଏ, ତେବେ ସେ କଥା ନିଆରା । ମାତ୍ର ଯିଏ ଏଡ଼େ ସହଜ, ଯିଏ ଅନ୍ତରର ଏତେ ପାଖରେ, ତାକୁ ଜାଣିଶୁଣି ନାନା ଶବ୍ଦାଡ଼ମ୍ବର ଭିତରେ ଜଟିଳ କରି ପକାଇବାଟା ମୋତେ କାହିଁକି ଆଦୌ ଭଲ ଲାଗିଲା ନାହିଁ ।

ଅନେକ ସମୟରେ ଖାଲି ଉଡ଼ିଯିବାକୁ ମନ ହେଉଚି । ସ୍ୱପ୍ନ ଦେଖିଲାପରି ବେଳେବେଳେ ଲାଗୁଚି ଯେପରି କେଉଁ ଶିଳାଶିଖରର ନିର୍ଜନ

ନୀରବ ବନଲୀଳା ମୋତେ ହାତଠାରି ଡାକୁଚି, କେଉଁ ସାଗରବେଳାର ପ୍ରଶାନ୍ତ ଓ ପ୍ରଶସ୍ତ କୋଳରେ ଯେପରି ମୋ'ପାଇଁ ଆସନ ତିଆରି ହୋଇ ଥୁଆହୋଇଚି । ସଂସାରର ସବୁରକମର ବନ୍ଧନ, ସବୁ ହସ, ସବୁ କାନ୍ଦ, ସବୁ ରୂପ ଓ ସବୁ ବିରୂପ ଛାଡ଼ି ଖାଲି ଅନନ୍ତ ଆକାଶରେ ଉନ୍ମତ୍ତ ଭୋଳାପାଗଳ ପବନର ସହଚର ହିସାବରେ ଖାଲି ବାହାରିଯିବାକୁ ଇଚ୍ଛା ହେଉଚି । ଖାଲି ନିଜକୁ ଚିହ୍ନିବା, ନିଜ ଭିତରେ, ମଣିଷ ଭିତରେ, ଜଗତ ଭିତରେ ଓ ସର୍ବୋପରି ନିତ୍ୟନୃତ୍ୟମାନ ଏହି ସୃଷ୍ଟିଲୀଳା ଭିତରେ ନିଜକୁ ଚିହ୍ନିନେବା ମୋର ଉଦ୍ଦେଶ୍ୟ ହୋଇ ରହିବ । ଆଜି ଅନେକ ଦୂରର କେଉଁ ଆଲୋକିତ ମୁଖ ମୋତେ ପାଗଳ କରି ପକାଉଚି । ସବୁ ଛାଡ଼ିଦେଇ କେବଳ ତାହାରି ପାଖକୁ ଦଉଡ଼ିଯିବାକୁ ହିଁ ଇଙ୍ଗିତ ଦେଉଚି । ଏହି ସୃଷ୍ଟି, ଜୀବନର ଏହି ଖେଳ, ବିରାଟ ପ୍ରକୃତିର ଏହି ନିତ୍ୟଲୀଳା, ଯେପରି ସମସ୍ତେ ସେହି ଅସୀମ ଓ ଅନନ୍ତ ଭିତରେ ନିଜକୁ ଖୋଜି ପାଇବାକୁ ଧାଉଁଚନ୍ତି । କେହି ଜଣେ ଅନାଦି ପୁରୁଷ ଯେପରି ସଂସାରର ସବୁ ମନ, ସବୁ ଧ୍ୟାନ ଓ ସବୁ ଜୀବନକୁ ଅଧିକାର କରିବସିଚି । ସମସ୍ତ ବିଶ୍ୱସଂସାର ଯେପରି କେବଳ ତାହାରି ଆତ୍ମପ୍ରକାଶ ମାତ୍ର ! ଆପଣା ଜୀବନର ଅନନ୍ତ ଲୋଡ଼ିବାଦ୍ୱାରା, କଠୋର ଜୀବନଯାତ୍ରାର ନାନା ତପସ୍ୟାଦ୍ୱାରା ସେହି ଅନନ୍ତ ଭିତରେ ଆପଣାର ସ୍ଥାନଟିକୁ ବାଛି ନେବାପାଇଁ କଣ ମୁଁ ଏହି ଜଗତକୁ ଆସିଚି ?

ଜଗତରେ ଶାନ୍ତି କାହିଁ ? ଏହି ଅଳ୍ପଦିନ ଭିତରେ କେଡ଼େ ଚଞ୍ଚଳ ମୁଁ କେତେ ଖୋଳ ବଦଳାଇ ସାରିଲିଣି, ତଥାପି ଶାନ୍ତି କାହିଁ ? ସମସ୍ତ ଶରୀର ଭରି-ରହିଥିବା ସେହି ଦାରୁଣ ଦହନଜ୍ୱାଳା ତ ଏବେ ବି ନିଭିଲା ନାହିଁ ! ଆତ୍ମପ୍ରତିଷ୍ଠା, ଯଶଖ୍ୟାତି, ଉଚ୍ଚ ଶିକ୍ଷା, ସ୍ୱାର୍ଥସାଧନ ଓ ରାଜନୀତି କୌଣସି ଜାଗାରେ ତ ଶାନ୍ତ ଭାବରେ ରହି ହେଲା ନାହିଁ ! ତେବେ କଣ ଖାଲି 'ଏଠି ନୁହେଁ' 'ଏଠି ନୁହେଁ' ହୋଇ ଜୀବନଟା ଗ୍ଲିଯିବ ? ନିଜ ଲକ୍ଷ୍ୟରେ ପହଞ୍ଚିବା ପାଇଁ ବାଟ ସଜାଡ଼ୁ ସଜାଡ଼ୁ କଣ ସମସ୍ତ ଜୀବନ କଟିଯିବ ? କିନ୍ତୁ ତୀର୍ଥକାକ ପରି ଏହି ଜୀବନ ବଞ୍ଚିବାରେ ବା କି ଲାଭ ଅଛି ?

ଯୁକ୍ତିରେ ମୋ'ର ମନ ସନ୍ତୁଷ୍ଟ ହୋଇ ପାରୁ ନାହିଁ । ମୋର ହୃଦୟରେ ଏହି ଯୁକ୍ତିଗୁଡ଼ାକ ଆଦୌ କାଟୁକରି ପାରୁ ନାହିଁ । ମୁଁ ମଣିଷ, ଏହାହିଁ ମୋର ଏକମାତ୍ର ଯୁକ୍ତି । ଯୁକ୍ତିପଟୁ ମନଟା ସବୁବେଳେ ହୃଦୟର କୋମଳ ଅନୁଭୂତି ପାଖରେ ପରାଜୟ ସ୍ୱୀକାର କରୁଚି । ଜୀବନ, ଲକ୍ଷ୍ୟ ଓ ପରମ ଜୀବନର ପ୍ରଶ୍ନ ଯେଉଁଠି ଉଠୁଚି, ସମସ୍ତ ଯୁକ୍ତି ସେଠାରେ ନିର୍ବାକ୍ ହୋଇ ପଡ଼ିରହିବ । ଖାଲି ଯୁକ୍ତିଦ୍ୱାରା ମଣିଷ ଜୀବନ ବଞ୍ଚେ ନାହିଁ । ଯୁକ୍ତି କରି କର୍ତ୍ତବ୍ୟ ଠିକ୍ କରିବା ଆଗରୁ ମାଆ ପୁଅକୁ ସ୍ନେହ କରି ଶିଖେ । ଭଲ ମନ୍ଦ, ଠିକ୍ ଭୁଲ୍ ଓଜନ କରି, ନିଜର ଅସନ୍ତୁଷ୍ଟ ମନକୁ ସନ୍ତୁଷ୍ଟ କରି କେହି ଆପଣା ଜୀବନର ଆଦର୍ଶ ଠିକ୍ କରି ପାରିବ ନାହିଁ । ମଣିଷର ହୃଦୟ ହୁଏତ ଏପରି ଏକ ଉପାଦାନରେ ଗଢ଼ା

ହୋଇଚି ଯେ ଆପଣାର ଅନୁକୂଳ କୌଣସି ଏକ ପ୍ରବାହର କ୍ଷୀଣ ସଂସ୍ପର୍ଶରେ ଆସିଲେ ସେ ବିନା ଯୁକ୍ତିରେ ଓ ବିନା ସଙ୍କୋଚରେ ସେଇଥିରେ ଭାସି ଚାଲିଯିବାକୁ ବାହାରି ପଡ଼ିବ ।

ଜଗତର କୌଣସି ଦର୍ଶନ ବା କୌଣସି ମତବାଦକୁ ମୁଁ ଭୁଲ୍ ବୋଲି ଦେଖି ପାରୁ ନାହିଁ । ଯେପରି ସବୁ ରାସ୍ତା ସେହି ଏକ ପରମପିତାଙ୍କର ସିଂହାସନ ପାଖକୁ ହିଁ ପଡ଼ିଚି । ସେଥିଲାଗି ମୋର ଆଉ ଯୁକ୍ତି ଶୁଣିବାକୁ ଇଚ୍ଛା ହେଉ ନାହିଁ, ବୁଦ୍ଧିଜୀବୀ ସମାଲୋଚକର ସମାଲୋଚନା ବା ଧର୍ମାନ୍ଧର ଧର୍ମଖୋସାମଦ ଶୁଣି ଯାହା ପୁଣ୍ୟ, ଯାହା ପବିତ୍ର ଓ ଯାହା ସ୍ୱଚ୍ଛ, ତାହାକୁ ସନ୍ଦେହଚକ୍ଷୁରେ ଦେଖିବାକୁ ମନ ହେଉ ନାହିଁ । ଗୁଡ଼ାଏ ଶାସ୍ତ୍ର ଓ ଗୁଡ଼ାଏ ମତବାଦ ପଢ଼ିସାରିଲା ପରେ ଯଦି ମୋତେ କେବଳ ସେହି ଜ୍ଞାନ ହିଁ ମିଳିବ, ତେବେ ମୁଁ ଏତେ ଲମ୍ବା ବାଟଦେଇ ଯିବି କାହିଁକି ? ପ୍ରତ୍ୟେକ ଧର୍ମ ପବିତ୍ର, ପ୍ରତ୍ୟେକ ପନ୍ଥା, ପ୍ରତ୍ୟେକ ତପସ୍ୟା ଓ ପ୍ରତ୍ୟେକ ଯଜ୍ଞରେ ପରମେଶ୍ୱରଙ୍କର ଆଶୀର୍ବାଦ ହିଁ ରହିଚି । କେବଳ ଆପଣାଲାଗି ହିଁ ଗୋଟାଏ ବାଟ ବାଛିନେବାକୁ ବାକୀ ରହିଚି । ମୁଁ ଆଜି ସେହି ବାଟ ବାଛି ପାରୁ ନାହିଁ । ଏତେ ବାଟର ବିସ୍ତରଜାଲ ଭିତରେ ଠିଆହୋଇ ମୁଁ ଆଜି ନିର୍ବାକ୍ ହୋଇ ଅନାଇ ରହିଚି । କାହାର ମନ୍ତ୍ର ପଢ଼ିବି, କେଉଁ ରୀତିରେ ପୂଜା କରିବି, ସେଇ କଥାଟା ମୋତେ ଆଜି ଦ୍ୱନ୍ଦ୍ୱ ଭିତରେ ପକାଇ ଦେଇଚି । ମୋର ହାତଗୋଡ଼ ଓ ମନ ଏକାବେଳେକେ ବାନ୍ଧି ହୋଇଗଲା ପରି ଲାଗୁଚି ।

ହେ ଜୀବନଦେବତା, ମୋତେ କହିଦିଅ ମୋର ବାଟ କେଉଁଠି । ତୁମେ ମୋ'ଠାରୁ କ'ଣ ଚାହଁ ? ସଂସାର ଭିତରେ, ବା ସଂସାର ବାହାରର ନିର୍ଜ୍ଜନତା ଭିତରେ ମୁଁ ତୁମକୁ ପାଇବି, ତୁମେ ମୋତେ ସେଇକଥା କହିଦେଇ ଯାଅ । ଅଶେଷ ଆକାଶର ଶୂନ୍ୟନୀଳିମା ଭିତରେ ମୁଁ ତୁମରି ହାତ, ତୁମରି କୀର୍ତ୍ତି ଓ ତୁମରି ସୌନ୍ଦର୍ଯ୍ୟ ଦେଖିବାକୁ ପାଉଚି । ଅଶେଷ ସଂସାରର ଅନନ୍ତ ପ୍ରାଣଲୀଳା ଭିତରେ ମଧ୍ୟ ତୁମରି ନୃତ୍ୟ ମୋତେ ପାଗଳପ୍ରାୟ କରି ଦେଉଚି । ମନଭିତରେ ତୁମେ, ଆକାଶ, ନଦୀ, ପର୍ବତ, ଗୁହା ଓ ଗହନକାନନ ଭିତରେ ତୁମେ, ପୁଣି ଏହି ସଂସାରର ଜୀବନ, ମଣିଷ, ଧନୀ, ଦରିଦ୍ର, ଭୋକୀ, ଦୁଃଖୀ ଓ ମ୍ଳେଚ୍ଛ ଭିତରେ ମଧ୍ୟ ତୁମେ । ମୋତେ ତୁମେ କହିଦିଅ, ମୁଁ କେଉଁବାଟରେ ଯିବି, ମୋର ବାଟ ମୋତେ କହିଦିଅ ।

୧୦ । ୮ । ୪୬

କାଲି ଅଗଷ୍ଟ ନ'ଅ ତାରିଖ ଚାଲିଗଲା । ଆମର ଏଠି ସେହି ଉପଲକ୍ଷରେ ପତାକା-ଉତ୍ତୋଳନ ଓ ସଭା ହୋଇଥିଲା । ଯେଉଁମାନେ ସଭାରେ ବକ୍ତା ଓ ପୁରୋଧା ଥିଲେ, ସେମାନେ ଏହି ସ୍ମରଣୀୟ ଦିବସଟିର ମୂଲ୍ୟ ଓ

ମହତ୍ତ୍ୱକୁ ଠିକ୍‌ଭାବରେ ଜାଣି ନଥିଲା ପରି ମନେହେଲା । ଅଗଷ୍ଟ ବିପ୍ଳବର ଅଭିନନ୍ଦନ ଦିନରେ ରବୀନ୍ଦ୍ରନାଥଙ୍କର ସ୍ୱଦେଶିକତା ଓ ଶାନ୍ତିନିକେତନର ରାଜନୀତି ସମ୍ବନ୍ଧରେ ଅନେକ ଅବାନ୍ତର କଥା ଶୁଣିବାକୁ ମିଳିଲା । ଯେଉଁ ଦିନଟି ଯେଉଁ ଅବସର ପାଇଁ ବିଶେଷ ଭାବରେ ଉଦ୍ଦିଷ୍ଟ ହୋଇ ରହିଥାଏ, ସେହି ଅବସରରେ କେବଳ ତାହାର କଥା ପଡ଼ିବା ଉଚିତ, ତାହାରି ସଂକଳ୍ପ ହେବା ଉଚିତ । ତା' ନ ହେଲେ ଆମେ ସତ୍ୟପ୍ରତି ଉଚିତ ସମ୍ମାନ ଦେଖାଇ ପାରିବା ନାହିଁ । ଯେଉଁମାନେ ଶାନ୍ତିନିକେତନରେ ଅଛନ୍ତି, ସେମାନେ ବାହାରର ରାଜନୀତିରେ ଭାଗ ନେଇପାରିବେ ନାହିଁ । ସେମାନଙ୍କର ଏକମାତ୍ର କାର୍ଯ୍ୟକ୍ଷେତ୍ର ହେଉଚି ଦେଶର ଗଠନମୂଳକ ଦିଗ । ସଭାରେ ଏହିପରି ଅନେକ କଥା ଶୁଣିବାକୁ ମିଳିଲା । ଏହି ଯୁକ୍ତିଟିର ସମର୍ଥନ କରିବାକୁ ଯାଇ ସଭାପତି French Academy ର ଉଦାହରଣ ଦେଇଥିଲେ । ଫରାସୀ ମହାବିପ୍ଳବ ସମୟରେ ଯେତେବେଳେ ପାରିସ୍ ସହରର ରାସ୍ତାଘାଟ ଗୁଳିର ଆବାଜରେ କମ୍ପିଉଠୁଥାଏ, ଶତ ଶତ ନିରୀହ ମଣିଷଙ୍କର ଚିତ୍କାରରେ ଆକାଶ ଫାଟିପଡୁଥାଏ, ସେତେ-ବେଳେ ମଧ୍ୟ French Academy ର ଅଧିବେଶନମାନ ବଡ଼ ନିଦକ ଭାବରେ ଚାଲିଥିଲା, ଦେଶର ଅସ୍ଥିର ଅବସ୍ଥା ସତେଯେପରି ଏକାଡ଼େମିର ସଦସ୍ୟମାନଙ୍କର ହୃଦୟକୁ ତିଳେହେଲେ ବିଚଳିତ କରିପାରୁ ନ ଥିଲା ! ଶାନ୍ତିନିକେତନର ଉଦାହରଣ ଦେଇ ସଭାପତି କହିଲେ ଯେ ଏହି ଅନୁଷ୍ଠାନ ହେଉଚି ଜାତିସଂଗଠନ ଓ ଜାତୀୟ ସଂସ୍କୃତିନିର୍ମାଣର ଅନୁଷ୍ଠାନ; ବାହାରର କମାଣଗର୍ଜନ ଓ ବାହାରର ଆର୍ତ୍ତଧ୍ୱନି ଏହି ଆଶ୍ରମର ଶାନ୍ତିଭଙ୍ଗ କରିପାରିବ ନାହିଁ । ଠିକ୍ କଥା,—ଗତ ଯୁଦ୍ଧ ସମୟରେ ଆମେରିକା ଓ ଇଂଲଣ୍ଡର ବିଜ୍ଞାନଶାଳାମାନଙ୍କରେ ବୈଜ୍ଞାନିକ ପଣ୍ଡିତମାନେ ବିଜ୍ଞାନର ଗବେଷଣା କରୁଥିଲେ । ଯେଉଁ ରାକ୍ଷସର ଆଶ୍ରୟ ଛାୟା ଭିତରେ ରହି ସେମାନେ ବୁଦ୍ଧିବେଠି ଖଟୁଚନ୍ତି, ସେମାନଙ୍କର ଜ୍ଞାନପ୍ରସୂତ ସତ୍ୟ-ଶିଶୁଟିକୁ ଯେ ପରିଶେଷରେ ସେଇ ରାକ୍ଷସ ହାତକୁ ଟେକିଦେବାକୁ ହେବ, ସେମାନେ ସେକଥା ଭୁଲିଯାଇଥିଲେ । ଶେଷକୁ ଫଳ ହେଲା, ସେମାନଙ୍କର ନିରାସକ୍ତ ବୁଦ୍ଧିପ୍ରଧାନ ମନର ଶ୍ରମଫଳରେ ଯେଉଁ ପରମାଣୁ ଶକ୍ତିର ଆବିଷ୍କାର ହେଲା, ତାହାରିଦ୍ୱାରା ଜାପାନର ଦୁଇଟି ସହରକୁ ନିଶ୍ଚିହ୍ନ କରିଦିଆଗଲା, ଜାପାନୀ ମାଟିର ଜନଶୂନ୍ୟ ଭୂଷୁଡ଼ା ପୃଥିବୀ ଉପରେ ମୃତ୍ୟୁ ଓ କରାଳ ଶେଷର ଛାୟା ଘୂରିବୁଲିଲା । ଇଟାଲିର ସୋରିଷବାଷର ବୋମା, ଜର୍ମାନୀର ରକେଟ ଓ ପଶ୍ଚିମ ସଭ୍ୟତାର ବୈଜ୍ଞାନିକତମ ଉଦ୍‌ଭାବନ ଜୀବାଣୁ ବୋମା,—ଏସବୁ ମଧ୍ୟ ସେହି ନିରୀହ ଓ ନିରାସକ୍ତ ବୁଦ୍ଧିଜୀବୀର ହିଁ ଉଦ୍‌ଭାବନ । ଆପଣା ହାତରେ ଧ୍ୱଂସକାରୀ ଅସ୍ତ୍ରମାନ ତିଆରି କରି ସେ ଅତି ଇଚ୍ଛାକର ଭାବରେ ସେଗୁଡ଼ିକୁ ନରହତ୍ୟାରେ ବିଶ୍ୱାସ ରଖିଥିବା ଶାସକମାନଙ୍କ ହାତକୁ ଟେକିଦେଇଚି, ଏବଂ ନିଜ ଭୁଲର ଧ୍ୱଂସମୟ ପରିଣାମମାନ ଦେଖି ବର୍ତ୍ତମାନ

ସେ ମୁଣ୍ଡ ପିଟି ମରୁଚି । ବୈଜ୍ଞାନିକ, ସାହିତ୍ୟିକ, କଳାକାର ଓ କବିମାନେ ଯଦି ଏହି ପୃଥିବୀରେ ବାସ କରୁଥିବା ମଣିଷକୁ ଭୁଲିଯାଆନ୍ତି, ପ୍ରକୃତି, ଅତିପ୍ରକୃତି ଓ ଅପ୍ରକୃତି ନେଇ ଯଦି ସେମାନେ ଅନ୍ଧଭାବରେ ଖେଳିବାକୁ ଯାଆନ୍ତି, ତେବେ ସେମାନେ ଏହି ସଂସାରର ସଂସ୍କୃତିକୁ ବା ବଢ଼ାଇବେ କିପରି ? ହୁଏତ ଚନ୍ଦ୍ରଲୋକ ବା ସୌରମଣ୍ଡଳ ଭିତରେ ରହିଥିବା ଆଉ କୌଣସି ଏକ ଅନଧ୍ୟୁଷିତ ଗ୍ରହ ସେମାନଙ୍କର ଖେଳଭୂମି ହୋଇପାରେ । କିନ୍ତୁ ଏଠି, ଏହି ପୃଥିବୀରେ ସେମାନଙ୍କୁ ଏପରି ପିଲାଙ୍କ ପରି ଓ ବୋକାଙ୍କ ପରି ଖେଳିବାଲାଗି ପ୍ରଶ୍ରୟ ଦିଆଯାଇ ପାରିବ ନାହିଁ । ଏଠି ମଣିଷ ଅଛନ୍ତି, ସେମାନଙ୍କର ତେଲଲୁଣର ବ୍ୟବସ୍ଥା କରିବା ସକାଶେ ମଧ୍ୟ ଶକ୍ତି ଖରଚ ହୁଏ; ଏଠି ପରିବାର ଅଛି, ସେହି ପରିବାରଗୁଡ଼ିକରେ ସ୍ନେହମମତା ମଧ୍ୟ ରହିଚି । ଯେଉଁ ବୁଦ୍ଧିଜୀବୀ ନିଜର ଅନ୍ଧ ବୁଦ୍ଧିପ୍ରଧାନତା ଦୋଷରୁ ମଣିଷର ତେଲଲୁଣ ଛଡ଼ାଇନିଏ, ପରିବାରର ସ୍ନେହମମତାକୁ ପୋଡ଼ିଜାଳି ଦିଏ, କେତେ ସରାଗ ଓ ସୋହାଗ ବୋଲାହୋଇ କୁସୁମିତ ହୋଇଉଠିଥିବା ଏହି ସଂସାରକୁ ବିଷାକ୍ତ ଧୂଆଁ ଓ ମାରଣ-ଗର୍ଜନରେ ପୂର୍ଣ୍ଣ କରେ, ସିଏ ପୃଥିବୀର ବନ୍ଧୁ, ସଂଗଠକ ଓ ସହଯୋଗୀ ବୋଲାଇ ପାରିବ କିପରି ? ବୈଜ୍ଞାନିକ, କବି, ଦାର୍ଶନିକ ବା କଳାକାର ଯିଏ ହେଉ ପଛକେ ଏହି ସଂସାରରେ ରହିବାକୁ ହେଲେ ତାକୁ ସର୍ବପ୍ରଥମେ ମଣିଷପଣିଆର ଡିଗ୍ରୀ ନେବାକୁ ହେବ । ମଣିଷ ପ୍ରଥମେ ମଣିଷ ହୋଇ ଶିଖିବ, ନଚେତ୍ ତା'ର ଉପାର୍ଜିତ ଗୁଣ ଓ ପ୍ରତିଭାଦ୍ୱାରା ଜଗତ କୌଣସି ଲାଭ ପାଇପାରିବ ନାହିଁ ।

ଶାନ୍ତିନିକେତନରେ ଜ୍ଞାନ, କଳା ଓ ସାହିତ୍ୟର ଚର୍ଚ୍ଚା ହୁଏ, ଏକଥା ସତ । ଜବାହରଲାଲଙ୍କର ଭାଷାରେ ଭାରତୀୟ ରାଜନୀତିର ମରୁପ୍ରାନ୍ତର ଭିତରେ ଶାନ୍ତିନିକେତନ ହେଉଚି ଗୋଟିଏ ମରୂଦ୍ୟାନ ପରି । ମରୂଦ୍ୟାନ ଓ ମରୁଭିତରେ ତଫାତ୍ ଅବଶ୍ୟ ରହିଚି, କିନ୍ତୁ ସର୍ବୋପରି ମରୂଦ୍ୟାନ ମଧ୍ୟ ମରୁର ଗୋଟିଏ ଅଂଶ, ତେଣୁ ମରୁଭୂମିର ପଥିକ ପ୍ରତି ତା'ର ଅନେକ କର୍ତ୍ତବ୍ୟ ରହିଚି । ତୃଷାର୍ତ୍ତ ଓଟସବାରକୁ ଯଦି ମରୂଦ୍ୟାନ ଛାୟା, ଜଳ ଓ ବିଶ୍ରାମ ଦାନ କରୁ ନ ଥାନ୍ତା, ତେବେ ମରୂଦ୍ୟାନର ସ୍ଥାନ ଆଜି କୋଉଠି ଥାଆନ୍ତା ? ଭାରତରୂପୀ ମରୁଭୂମିର ଦୁଃଖକଷ୍ଟ, ଦୈନଦୀନତା, ମୃତ୍ୟୁ ଓ ମଳିନତାର ଆମେ ଯଦି କୌଣସି ଖବର ନ ରଖିବା, ତେବେ ଶାନ୍ତିନିକେତନକୁ ଆମେ ଏକ ଜାତୀୟ ଅନୁଷ୍ଠାନ ବୋଲି ଆଦୌ କହିପାରିବା ନାହିଁ ! କବିର ପରିଚୟ ଦେବାଲାଗି କାଳିଦାସଙ୍କୁ ମଧ୍ୟ ବିକ୍ରମାଦିତ୍ୟଙ୍କର ସଭାକୁ ଆସିବାକୁ ପଡ଼ିଥିଲା । ଦେଶଠାରୁ ସମ୍ମାନ ଓ ଶ୍ରଦ୍ଧା ପାଇବାକୁ ହେଲେ ସେହିପରି ଶାନ୍ତିନିକେତନର ସଂସ୍କୃତିକୁ ଦେଶପାଖକୁ ଯିବାକୁ ପଡ଼ିବ । ଯୁଦ୍ଧକ୍ଷେତ୍ରରେ ଅବଶ୍ୟ ଦୁଇ ପ୍ରକାରର କାର୍ଯ୍ୟ ଥାଏ । ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗଦେବା ହେଉଚି ପ୍ରଥମ କାର୍ଯ୍ୟ ।

ସଂଗ୍ରାମକ୍ଷେତ୍ରର ପଛରେ ରହି ସୈନ୍ୟବାହିନୀକୁ ଶକ୍ତିଶାଳୀ କରି ରଖିବା ହେଉଚି ଦ୍ୱିତୀୟ କାର୍ଯ୍ୟ । ଆମର ଜାତୀୟ ସଂଗ୍ରାମରେ ଶାନ୍ତିନିକେତନର ହାତରେ ଦ୍ୱିତୀୟ କର୍ତ୍ତବ୍ୟଟି ନ୍ୟସ୍ତ ହୋଇ ରହିଚି । କିନ୍ତୁ ଯଦି ଶାନ୍ତିନିକେତନ ଦେଶକୁ ଭୁଲିଯାଏ, ଏଠିକାର ସଂସ୍ତୁତିସେବିତ ମଣିଷ ଯଦି ଦେଶର ପଇସାରେ ସିଗାରେଟ୍ ଖାଇ, ନାଚି, ଗୀତ ଗାଇ ଓ ଶରୀରଶୋଭନ କରି ସାହିତ୍ୟର ନାନା ଚର୍ଚ୍ଚାରେ ଅତି ନିରୀହ ଜୀବଟିଏ ପରି ଭୋଳା ହୋଇ ରହେ, ତେଣୁ ଦନେ ନା ଦିନେ ଜାତି ତା'ଠାରୁ ଏହାର କୈଫିୟତ୍ ମାଗିବାକୁ ଆସିବ । ଜାତି ସହିତ ନିଜକୁ ଏକ ବୋଲି ଅନୁଭବ କରିବା ଖାଲି କହିଦେଲେ ହୋଇଯିବ ନାହିଁ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ, ଘରେ, ବାହାରେ, ନିଜର ରୁଚି ଓ ଦୃଷ୍ଟିଭଙ୍ଗୀରେ ନିଜର ଜାତିତ୍ୱକୁ ବଳବତ୍ତର ରଖିବାକୁ ହେବ । କିନ୍ତୁ ଜ୍ଞାନ ଓ ସୁନ୍ଦର ଜୀବନର ନିଶାରେ ଅଚେତନ ହୋଇଗଲେ ଜାତିର ଅବିଶ୍ୱାସ ଓ ଅଭିଶାପ ଏହି ଆଶ୍ରମର ଅମୃତଭୋଗୀ ଜୀବନରେ ମଧ୍ୟ ବିଷାକ୍ତ ଜୀବାଣୁର ସୃଷ୍ଟି କରିବ । ଘରିଆଡ଼େ ନିଆଁ ଜଳୁଥିବା ସମୟରେ ଏଠି ବୀଣା ବାଜୁଥିବ, ନାଚ ହେଉଥିବ, ଶରୀର ମାର୍ଜନ ଓ ରୂପସଜ୍ଜା ଚାଲିଥିବ, ଜାତି କେବେହେଲେ ଏହାର ମାର୍ଜନା କରିପାରିବ ନାହିଁ ।

୧୧ । ୮ । ୪୬

ରାସ୍ତା ତ ଅନେକ ପଡ଼ିଚି । ସବୁ ରାସ୍ତାର ପଥିକକୁ ଜଗଦୀଶ୍ୱରଙ୍କର ମନ୍ଦିର ଦ୍ୱାର ସବୁବେଳେ ଉନ୍ମୁକ୍ତ ହୋଇ ରହିଚି । ସେହି ରାସ୍ତା ଭିତରୁ ଗୋଟିଏ ବାଛିନେଇ ସେଇଥିରେ ଯିବାକୁ ହେବ । କେବଳ ରାସ୍ତା ବାଛି ବାଛି ଯଦି ସାରା ଜୀବନଟା କଟିଯାଏ, ତେବେ ଖାଲି ଅସନ୍ତୋଷ ଓ ମନସ୍ତାପ ହିଁ ସାର ହୋଇ ରହିବ ।

୧୪ । ୧୦ । ୪୬

ଚାଷୀ, ମୂଲିଆ ଓ ମଜଦୁରମାନଙ୍କର ଯଥାର୍ଥ ଅନୁଷ୍ଠାନ କିଏ ଗଢ଼ିପାରିବ ? ଯିଏ ସେହି ଚାଷୀ, ମୂଲିଆ ଓ ମଜଦୁର ଶ୍ରେଣୀର ଲୋକ ହୋଇଥିବ । ତା' ନ ହେଲେ ସେବକକୁ ଚାଷୀମୂଲିଆଙ୍କର ଜୀବନ ସହିତ ଆପଣାର ଜୀବନକୁ ମିଳାଇ ନେବାକୁ ହେବ । କିନ୍ତୁ ଦୟା ଓ ଦାକ୍ଷିଣ୍ୟ ଦେଖାଇ ମଝିରେ ମଝିରେ ଗରିବର ଜୀବନକୁ ନେଇ ପିଲାଖେଳ କରିବ ଯିଏ, ତାକୁ କୌଣସି ପ୍ରକାରେ ଯୁଗସଂଗଠକ ବୋଲି କହିହେବ ନାହିଁ । ହୁଏତ ରାଜନୀତି ବା ରାଜନୀତିକ ଦଳଭେଦ ଦୃଷ୍ଟିରୁ ନିଜର ଦଳଗତ ବିଷ ପ୍ରଚାର କରିବାପାଇଁ ଅନେକେ ଏପରି କାର୍ଯ୍ୟକୁ ଠିକ୍ ଓ ଫଳପ୍ରଦ ବୋଲି ବିଚାରି ପାରନ୍ତି । ମାତ୍ର ଆମେ ଯଦି ସବୁ ମଣିଷକୁ ଅଶେଷ ସମ୍ଭାବନାର ଅଧିକରଣ ସ୍ଥାନ ବୋଲି ଧରିନେବା, ତେବେ ସେମାନଙ୍କ ସହିତ ଏକପ୍ରାଣତା ଅନୁଭବ ନ କଲା ପର୍ଯ୍ୟନ୍ତ ଆମେ ସେମାନଙ୍କର ପ୍ରକୃତରେ କିଛି କରିପାରିବା ନାହିଁ ।

......ମୁଁ ଦେଖୁଚି, ଜାଣୁଚି, କାହାର କୁହୁକ ସ୍ପର୍ଶକୁ ମୋର ପ୍ରତ୍ୟେକ ଲୋମକୂପ ଦେଇ ଅନୁଭବ କରିପାରୁଛି, ମାତ୍ର ସେଗୁଡ଼ିକୁ ପ୍ରକାଶ କରିପାରୁ ନାହିଁ । ଶାନ୍ତିନିକେତନର କେତେ ସନ୍ଧ୍ୟା ମୁଁ ଏହିକଥା ଭାବି କଟାଇଦେଇଚି । ନିର୍ଜନ ପ୍ରାନ୍ତର ମଝିରେ ତାଳବୀଥି ତଳେ କେଉଁ ଅତିପରିଚିତ ଦେବତା ପାଖରେ ମୋତେ ଆପଣାକୁ ପ୍ରକାଶ କରିବାର ଶକ୍ତି ଦେବାପାଇଁ ବ୍ୟାକୁଳ ପ୍ରାର୍ଥନା କରିଚି । ତଥାପି ଯେପରି ମୁଁ ଆପଣାକୁ ପ୍ରକାଶିତ କରିପାରୁ ନାହିଁ । ମୁଁ ଯାହା ଗ୍ରହଣ କରୁଚି, ତାକୁ ହଜମ କରିପାରୁ ନାହିଁ । ଜଗତର ରୂପରାଗ ଓ ସଙ୍ଗୀତଧାରାକୁ ମୁଁ ଅନବରତ ପିଇଗ୍ଲଲିଚି, ମାତ୍ର ତଜ୍ଜନିତ ଶକ୍ତିଦ୍ୱାରା ପ୍ରାଣସୃଷ୍ଟି କରିବାର କ୍ଷମତା ଯେପରି ମୋ' ପାଖରେ ନାହିଁ ।

୧୫ । ୧୦ । ୪୬

ଆନନ୍ଦ ଖୋଜି ଖୋଜି ମଣିଷ କୀଟଠାରୁ ହୀନ ହୋଇଗଲାଣି । ମଣିଷ ପଇସା ଖରଚ କରୁଚି, ମନ, ଧ୍ୟାନ, ସମୟ ସବୁ ଦେଇ ସିଏ ଖୁସୀ ଖୋଜିବୁଲୁଚି । କିନ୍ତୁ ଦୁର୍ଭାଗ୍ୟ ମଣିଷଲାଗି ଖୁସି କାହିଁ ? କେତେ ପରିଶ୍ରମ କରି ମଣିଷ ନିଜର ଘର ସଜାଉଚି, ପୁରୁଷ ନିଜର ଘର ଓ ଘରଣୀକୁ ସଜାଉଚି, ଖାଲି ସେଇଥିପାଇଁ । ସବୁଠାରୁ ବଡ଼ ଦୁର୍ଭାଗ୍ୟର କଥା ଯେ ଆମ ଦେଶର ଶିକ୍ଷିତ ଯୁବକ ମଧ୍ୟ ଅତିପରିମାଣରେ ଏକ ଆନନ୍ଦଲୋଭୀ କୀଟ ପାଲଟିଯିବାକୁ ମନକରୁଚି । ଜୀବନଟାକୁ ଟିକିଏ ହାଲୁକା କରିବା ସକାଶେ କେତେ ମୂଲ୍ୟବାନ୍ ସମୟକୁ ସେ ବୃଥା ବୁହାଇ ଦେଉଚି, କିନ୍ତୁ ତଥାପି ସେ କେଡ଼େ ମ୍ରିୟମାଣ ଓ ବ୍ୟାକୁଳ ହୋଇ ନ ପଡ଼ୁଚି ?

ସବୁ ମଣିଷ ଏକ ପିତାର ସନ୍ତାନ, ସେହି ବନ୍ଧନ ଆମ ସମସ୍ତଙ୍କୁ ଏକାଠି ବାନ୍ଧିରଖିଚି । ଦୁନିଆର ସମସ୍ତ ଘୃଣା ଓ ବିଦ୍ୱେଷର ପଥର ତରଳାଇ ଏହି ଅମୀୟ ସ୍ନେହର ଧାରା ବହିଗ୍ଲଲିଚି, ଯଦି ସମସ୍ତେ ଏହି କଥାଟି ଅନୁଭବ କରନ୍ତେ ! ଏହି ଘରେ ଆମେ ସମସ୍ତେ ସନ୍ତାନ, ସଭିଙ୍କର ଜୀବନଲୀଳାରେ ଜଗତ ଲୀଳାମୟ ହୋଇ ରହିଚି, ଏହିକଥା ବୁଝି ଯିଏ ନିରତ ସେହି ଲୀଳା-ସ୍ରୋତର ବେଗକୁ ଆପଣା ନୟନଦ୍ୱାରରେ ଅନୁଭବ କରିଚି, ତା'ର ଆଉ ଆନନ୍ଦ ଖୋଜି ବୁଲିବାରେ କି ପ୍ରୟୋଜନ ଅଛି ? ସବୁ ଜୀବନ ପବିତ୍ର, ସବୁ ସେହି ପରମପିତାର ପବିତ୍ର ସୃଷ୍ଟି, ଯିଏ ଏହିକଥା ବୁଝିବ, ତା'ପାଇଁ ପବନ ବାର୍ତ୍ତା ବହିଆଣିବ, ପକ୍ଷୀ ଗୀତ ଗାଇବ, ଫୁଲ ଫଳ, ଗଛ ଘାସ ଓ ନଦୀ ଝରଣା ଆନନ୍ଦର ଉଚ୍ଛ୍ୱାସ ଖେଳାଇ ବୁଲିବ । ସେ ପ୍ରୀତି ଗ୍ରହଣ କରିବ, ପ୍ରୀତି ଦାନ କରିବ । ଜଗତର ନିତ୍ୟନିର୍ମାଣଲୀଳାରେ ଯେଉଁ ମଣିଷ ନିଜର ନିର୍ମାଣଶକ୍ତିକୁ ନିୟୋଗ କରିଦେଇପାରିବ, ସେ ନିଶ୍ଚୟ ଅମର ପ୍ରୀତି ଓ ଆନନ୍ଦର ଅଧିକାରୀ ହୋଇପାରିବ ।

ନିଜ ରଚନାବଳୀର ଅବତରଣିକା ଲେଖିବାକୁ ଯାଇ ଗୁରୁଦେବ ଲେଖିଚନ୍ତି ଯେ "ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍, ତେନ ତ୍ୟକ୍ତେନ ଭୁଞ୍ଜୀଥାଃ"—ଇଶୋପନିଷଦର ଏହି ଆଦ୍ୟଶ୍ଳୋକଟି ହେଉଚି କବି ଓ କଳାକାରର ମୂଳମନ୍ତ୍ର । ପୃଥିବୀ ହେଉଚି ଅପରିମିତ ଆନନ୍ଦର ନିତ୍ୟନର୍ତ୍ତନକ୍ଷେତ୍ର, ମଣିଷ ତାକୁ ଉପଭୋଗ କରିବ; କିନ୍ତୁ ସେଇଠି ସତର୍କବାଣୀ ରହିଚି,—ତେନ ତ୍ୟକ୍ତେନ ଭୁଞ୍ଜୀଥାଃ,—ନିର୍ଲିପ୍ତ ରହି ଭୋଗ କରିବାକୁ ହେବ । ନିଜର ଜୀବନସ୍ପନ୍ଦନକୁ ଅନ୍ୟର ପିଣ୍ଡରେ ଅନୁଭବ କରିବା, ଜଗତର ସହସ୍ର ରୂପାୟନ ଭିତରେ ନିଜକୁ ଚିହ୍ନିନେବା ହେଉଚି ସବୁ ଆନନ୍ଦର ଏକମାତ୍ର ବୀଜ । ଏହି ଉପଲବ୍ଧି ଦ୍ୱାରା ହିଁ କେବଳ ନିର୍ଲିପ୍ତ ଆନନ୍ଦଲାଭ ସମ୍ଭବ ହୋଇପାରେ । କୌଣସି ଲାଳସା ରଖି ଯେଉଁ ଉପଭୋଗ କରାଯାଏ, ତାହାକୁ ଯଥାର୍ଥ ଉପଭୋଗ ବୋଲି କୁହାଯାଇପାରିବ ନାହିଁ ।

୧୯ । ୧୦ । ୪୬

ଯୁଦ୍ଧ ସରିଚି । ଦୀର୍ଘ ଛଅ ସାତବର୍ଷ ପରେ ଶାନ୍ତିଲୋଭୀ ମଣିଷ ସ୍ୱସ୍ତିର ନିଶ୍ୱାସ ପକାଇବାକୁ ସମୟ ପାଇଚି । ସାମରିକ, ଅସାମରିକ, ଆଗ୍ରହୀ, ନିଗ୍ରହୀ ସମସ୍ତେ ସ୍ୱେଚ୍ଛାରେ ବା ଅନିଚ୍ଛାରେ ଏହି ସର୍ବଗ୍ରାସୀ ସମରର ଶିକାରପରି ହୋଇ ରହିଥିଲେ । ଏ ଯୁଗର ଯୁଦ୍ଧରେ ଖାଲି ଯେ ତୋପ, ବନ୍ଧୁକ ଓ ସିପାହୀ-ସବାରର କାରବାର ହେଉଚି ତା' ନୁହେଁ, ପିଲାର ପାଠ, ଚଷାର ଚାଷ, କାରିଗରର ହତିଆର, କାରଖାନାର କଳ ଓ ବୈଜ୍ଞାନିକର ମଥା ମଧ୍ୟ ଏହି ଯୁଦ୍ଧସାମ୍ମୁଖ୍ୟରୁ ନିସ୍ତାର ପାଉ ନାହିଁ ।

ଯୁଦ୍ଧ ସରିଲା । ନାନା ଲୋକସମୂହ ନାନା ଉଦ୍ଦେଶ୍ୟରେ ଏହି ଯୁଦ୍ଧରେ ଯୋଗ ଦେଇଥିଲେ । କିଏ ସ୍ୱାର୍ଥ ଓ ଲାଭ ପାଇଁ, କିଏ ଶାନ୍ତି ପାଇଁ ଆଗଭର ହୋଇ ଯୁଦ୍ଧକୁ ଡେଇଁଥିଲେ, କିଏ କେତେପ୍ରକାରର ଆଶା ଓ ଭରସା ରଖିଥିଲେ । ଯୁଦ୍ଧ ଉଦ୍ଦେଶ୍ୟରେ ଦେଶର ଶକ୍ତି ନିୟୋଗ କରିବାରେ ହୁଏତ ବିଭିନ୍ନ ସରକାର-ଙ୍କର କୌଣସିଖାସ୍ ଖାସ୍ ମତଲବ ଥିଲା । ପୃଥିବୀର ବହୁସଂଖ୍ୟକ ବେସାମରିକ ଲୋକ ଯେ କେବେହେଲେ ଯୁଦ୍ଧ ସ୍ପୃହୁ ନ ଥିଲେ, ଏକଥା ନେଇ କେହି କଦାପି ବିବାଦ କରିବ ନାହିଁ । କିନ୍ତୁ ନାନା ଅନାୟତ୍ତ କାରଣରୁ ଯୁଦ୍ଧ ଆସିଲା । ଶାନ୍ତିକାମୀ ମଣିଷ ପୁଣି ଦୂରଶାନ୍ତିର ଆଶା ରଖି ନିଜର ଯଥାଶକ୍ତି ଯୁଦ୍ଧରେ ସାମିଲ ହୋଇଗଲା ।

ଯୁଦ୍ଧ ସରିଲା । ଛଅବର୍ଷର ଅବ୍ୟବସ୍ଥିତତା ପରେ ପୁଣି ସ୍ଥାୟୀ ପରିକଳ୍ପନାର ବେଳ ଆସିଲା । ଆପଣାର ଦେଶଟିକୁ କିପରି ମନୋମତ ସୁସ୍ୱରୂପେ ଗଢ଼ାଯାଇ ପାରିବ, ଏହିହେଲା ସବୁ ଜାତିର ପ୍ରଧାନ ଚିନ୍ତା । ଆମେ ଦେଖିଲୁ, ସବୁ ଦେଶ ସରକାରୀ ଭାବରେ ନିଜପାଇଁ ଗୋଟାଏ ଗୋଟାଏ ଯୋଜନା

କରି ବସିଲେ । ଯେଉଁ ରାସ୍ତା ଯାହାକୁ ଶସ୍ତା, ସୁବିଧା ଓ ସୁନ୍ଦର ଦେଖାଗଲା, ସିଏ ସେଇ ରାସ୍ତାରେ ଯୋଜନା ବନାଇଲା ।

ଏହି ଯୁଦ୍ଧୋତ୍ତର ଯୁଗ ହେଉଚି ବିପୁଳ ସଂଗଠନର ଯୁଗ । ଯୁଦ୍ଧବେଳେ ଦେଶ ଥିଲା, ମଣିଷ ଥିଲେ, ସବୁଦେଶରେ ସରକାର ଚଳୁଥିଲା । କିନ୍ତୁ ସମସ୍ତେ ପୁଣି ଶାନ୍ତି ପ୍ରତିଷ୍ଠା କରିବାଲାଗି ମତୁଆଲା ହୋଇ ଲାଗିଥିଲେ । ରୋଗ ଭଲ କରିବାର ଔଷଧରେ ଦେହର୍ ବଳ ବଢ଼େ ନାହିଁ । ଜ୍ୱରରୋଗୀକୁ ପ୍ରଥମେ କୁଇନାଇନ୍ ଦେଇ ସୁସ୍ଥ କରାଯାଏ, ତା'ପରେ ଅନ୍ୟାନ୍ୟ ପୁଷ୍ଟିକର ଖାଦ୍ୟ ଦେଇ ତା'ର ଶରୀରକୁ ସବଳ କରାଯାଏ । ଯୁଦ୍ଧଗ୍ରସ୍ତ ପୃଥିବୀ ଠିକ୍ ଏଇ ମେଲେରିଆ ରୋଗୀ ପରି,—ପୃଥିବୀର ସବୁ ଦେଶ ଏହି ମେଲେରିଆ ରୋଗୀକୁ ନାନା କଟୁକଷା ଔଷଧ ଦେଇ ଭଲ କରିବାକୁ ଛଅବର୍ଷ ହେଲା ଉଛନ୍ନ ହୋଇ-ଯାଇଥିଲେ ।

ଯୋଜନା ହେଉଚି ଶାନ୍ତିକାଳର କାମ । ଯେକୌଣସି ସ୍ଥାୟୀ ଯୋଜନା ପାଇଁ ଦେଶରେ ସୁଶାସନ ଓ ଶୃଙ୍ଖଳା ରହିବା ଦରକାର । ସେଥିଲାଗି ଦୁର୍ଦ୍ଦାନ୍ତ ଯୁଦ୍ଧର ଅବସାନ ସଙ୍ଗେ ସଙ୍ଗେ ବର୍ତ୍ତମାନ ଯେଉଁ ଶାନ୍ତିଟିକକ ମିଳିଚି, ବିକଳ ମଣିଷଜାତି ସେହି ଶାନ୍ତିର ସୁଯୋଗ ନେଇ ନିଜପାଇଁ ସ୍ଥାୟୀ ମୂଳଦୁଆଟିଏ ବସାଇବା ଲାଗି ଅସ୍ଥିର ହୋଇପଡ଼ିଚି । ଲକ୍ଷ ଘର ଭାଙ୍ଗିବାପରେ ପୁଣି ଘର ତୋଳିବାର ସ୍ୱପ୍ନ କୋଟି ମଣିଷ ଭିତରେ ଜାଗି ଉଠିଚି ।

ଏଡ଼େ ବଡ଼ ପୃଥିବୀ ଭିତରେ ପରାଧୀନ ଓ ପୀଡ଼ିତ ଭାରତବର୍ଷ, ସେଥିରେ ପୁଣି ଏତେଟିକିଏ ଜାଗା ଆମର ଏଇ ଛୋଟିଆ ଓଡ଼ିଶାଖଣ୍ଡ । ତଥାପି ଏହି ଛୋଟିଆ ପ୍ରଦେଶଟି ଦେହରେ ମଧ୍ୟ ଆଜି ନବରଚନାର ହାଉଆ ଲାଗିଚି । ପୃଥିବୀର ବିରାଟ ହାଟପଦାରେ ନିଜର କରି ଖଣ୍ଡେ ଗୁଳ ତିଆରି କରିବାକୁ ଆମ ନିତି ନୁଆଁଣିଆ ଓଡ଼ିଶା ଓ ଓଡ଼ିଆଜାତି ଭିତରେ ମଧ୍ୟ ବିପୁଳ ଆଶା ଓ ଅଭିଳାଷ ଜାଗ୍ରତ ହୋଇ ଉଠିଲାଣି ।

ଯେତେ ଛୋଟ ହେଉ ପଛକେ, ଯେତେ ପଛରେ ପଡ଼ିଥାଉ ପଛକେ, ଆପଣା ପାଇଁ ଏକ ଉଜ୍ଜ୍ୱଳ ଭବିଷ୍ୟତ-ରଚନାର ଯୋଜନା କରିବାରୁ ଆମକୁ କେହି ବଞ୍ଚିତ କରିପାରିବେ ନାହିଁ । ବିଶ୍ୱବିଧାତାର ଦରବାରରେ ଆମର ଡାକ ପହଞ୍ଚିପାରି ନାହିଁ, ବିଶ୍ୱନିର୍ମାଣର ଟିପାଖାତାରେ ଆମର ନାଆଁ ଆଜିଯାଏ ଉଠି ନାହିଁ, ସେଥିଲାଗି ଆମକୁ ଯେ କେହି ନିର୍ମାଣର କଳ୍ପନା କରିବାରୁ ବାରଣ କରି ରଖିଦେବ, ଏ ଶକ୍ତି କାହାରି ନାହିଁ । ପ୍ରତ୍ୟେକେ ନିଜ ପାଇଁ ଚିନ୍ତା କରିବେ, ନିଜର ସୁବର୍ଣ୍ଣ ଭବିଷ୍ୟତ ଗଢ଼ିବେ; ଏହି ଅଧିକାର ପ୍ରତ୍ୟେକଙ୍କର ରହିଚି ।

ମାତ୍ର ଖାଲି କଳ୍ପନା କରିଦେଲେ ଯଦି ସବୁକଥା ହୋଇଯାଉଥାନ୍ତା ! ଖାଲି ପାଞ୍ଚବର୍ଷିଆ ଯୋଜନାଟାଏ ସିଦ୍ଧ କରି ରଖିଦେଲେ ଯଦି ଦେଶ ନୂତନ ରୂପରେ ହସିଉଠି ପାରୁଥାନ୍ତା !

ଆଜି ପୃଥିବୀର ରଙ୍ଗ ବଦଳୁଚି । ଯାବତୀୟ ଭେକ ଓ ଟେକର ସଙ୍ଜ୍ଞା ପର୍ଯ୍ୟନ୍ତ ବଦଳିବାକୁ ଯାଉଚି । ମନେ ହେଉଚି, ସବୁ ଦେଶ ଯେପରି ନିଦରୁ ଉଠିଚନ୍ତି, ଆଗକୁ ଗୋଡ଼ ପକାଇବା ଲାଗି ଯେପରି ସମସ୍ତେ ତିଆରି ହୋଇ ବାହାରିଚନ୍ତି ! ନୂତନ ଶକ୍ତିର ମାଦକତାରେ ସମସ୍ତେ ବାହାରିଚନ୍ତି ନୂଆକରି ନିଜର ଭାଗ୍ୟ ନିର୍ମାଣ କରିବାକୁ । ଅନ୍ୟ କାହାରି ଅନ୍ୟାୟ ଅଭିଭାବକତ୍ୱ ବା ହସ୍ତକ୍ଷେପ ବରଦାସ୍ତ କରିବାକୁ ଯେପରି ଆଜି କୌଣସି ଦେଶ ପ୍ରସ୍ତୁତ ନୁହନ୍ତି ! ଆମ ଦେଶରେ ମଧ୍ୟ ଏହି ନବଜାଗୃତିର ଢେଉ ବାଜିଚି । ଆମେ ମଧ୍ୟ ଶତଭୀମର ଶକ୍ତି ନେଇ ସ୍ୱାଧୀନତାର ଦ୍ୱାରଦେଶରେ ଆସି ପହଞ୍ଚିଗଲୁଣି । ଦେଶ ଓ ଦେଶର ଗାଦୀରକ୍ଷକମାନେ ବଦଳିଚନ୍ତି, ଦେଶ-ଶାସକର ସ୍ଥାନକୁ ଦେଶସେବକ ଅଧିକାର କରିଚି ।

୨୦ । ୧୦ । ୪୬

ଆମ ଦେଶରେ ମଧ୍ୟ ଏହି ନୂତନ ପରିବର୍ତ୍ତନର ଫଳ ଫଳିଚି । ଏ କାଳର ଭୋଟ୍‌ପ୍ରଥା ଯେତେ ସଙ୍କୁଚିତ ଓ ସୀମିତ ହେଉ ପଛକେ, ଭୋଟ ପା'ଇ ଯେଉଁମାନେ ଆଜି ଶାସନକଳ ଚଳାଇବାକୁ ଯାଇଚନ୍ତି, ସେମାନଙ୍କୁ ଅବଶ୍ୟ ଲୋକପ୍ରତିନିଧି ବୋଲି କହିବାକୁ ହେବ । ଆମ ପ୍ରଦେଶରେ ମଧ୍ୟ ସେହି ଲୋକପ୍ରତିନିଧି ସରକାରର ସ୍ଥାପନା ହୋଇଚି । ଜାତିର ମୁଖପାତ୍ର ରୂପେ ଆଜି ଜାତି ସେହିମାନଙ୍କୁ ଅନାଇଚି; ଜାତିର ଦାବୀ ଓ ଜାତିଲାଗି ଏକ ଉପଯୁକ୍ତ ସ୍ଥାନ ହାସଲ କରିବାର ଦାୟିତ୍ୱ ଜାତି ଆଜି ସେଇମାନଙ୍କୁ ହିଁ ଦେଇଚି ।

ଦାୟିତ୍ୱ ଲଦିଦେବା ଆଉ ଅନେଇ ବସିବା ଦୁଇଟାଯାକ ଖୁବ୍ ସହଜ । ଏଥିଲାଗି କୌଣସି ଯୋଗ୍ୟତା ହାସଲ କରିବା ଦରକାର ହୁଏ ନାହିଁ । ଆଜିଯାଏ ଆମେ ଏହି କାମରେ ଖୁବ୍ ନୈପୁଣ୍ୟ ଦେଖାଇଆସିଚୁ । କିନ୍ତୁ ଅନ୍ୟକୁ ଅନେଇ ବସିବା ଯେତିକି ସହଜ, ନିଜର କାମ ହାସଲ କରିବା ସେତିକି କଷ୍ଟ । ଆମ ପ୍ରଦେଶକୁ ଆଜିଯାଏ ଏହି ଦାୟିତ୍ୱ ଲଦିଦେବାର ନିଶାଟା ଭାରି ଘାରିଥିଲା । ଗୋରା ସରକାର ଓ ନିମକସଜା ରାୟସାହେବମାନଙ୍କ ଉପରେ ଆମ ପ୍ରଦେଶକୁ ଛାଡ଼ି ଦିଆଯାଇଥିଲା । ଏଣେ ଏ ଦେଶରେ ପିଲାଏ ସ୍କୁଲ କଲେଜରେ ପାଠ ପଢ଼ି ଘରକୁ ଉପୁରି ଦି'ପଇସା ଆଣିବାର କୌଶଳ ଶିକ୍ଷା କରୁଥିଲେ । ଯୋଉଠି ସମ୍ଭବ, ସେଠାରେ ଯେକୌଣସିମତେ ପଶିଯାଇ ଆପଣା ଘରକୁ ପଇସା, ଚିନି, କିରାସିନି ଇତ୍ୟାଦି ଆଣି ଆସିବା, ଏହା ହିଁ ଥିଲା ଆମ ଶିକ୍ଷିତ ଛାତ୍ର ଆଗରେ ଶୁକିରିର ମାପକାଠି ।

ସିଏ ଥିଲା ଗୋଟାଏ ଠକାଠକି ବେଳ । ସ୍କୁଲ କଲେଜରେ ଛାତ୍ର ଯାହା ପଢ଼ୁଥିଲା, କେବଳ ଏକ ରୋଜଗାରର ପନ୍ଥା ବ୍ୟତୀତ ସେ ତାକୁ ଅନ୍ୟ କିଛି ବୋଲି ବିଗ୍ଭରିପାରୁ ନ ଥିଲା । ହଁ, ସବୁ ତ ଥିଲା; ସ୍କୁଲ କଲେଜ, ପ୍ରଫେସର, ହାକିମ ଅମଲା, ସିପାହୀ ଓ ଜମାଦାର ସବୁ ଥିଲେ, ଆମେ ଖଜଣା ବି ଦେଇ ଆସୁଥିଲୁ । ଖମାର ଓ ଖମାରେଇ ସବୁ ଠିକ୍ ଥିଲା, ଖମାର ଭର୍ତ୍ତି କରିବାକୁ ଆମେ ପେଟରୁ କାଟି ପଇସା ଗଣୁଥିଲୁ । ତଥାପି ଆମକୁ କାଳିମାଟି ଓ ରେଙ୍ଗୁନରେ କାମ ଖଟି ଯିବାକୁ ପଡ଼ୁଥିଲା, କୁଲି ହେବାପାଇଁ ବିହାରୀ ଓ ବଙ୍ଗାଳିଙ୍କ ସାଙ୍ଗରେ ପ୍ରତିଯୋଗିତା କରିବାକୁ ପଡ଼ୁଥିଲା । ଦେଶର ସମ୍ପଦ ସେତେବେଳେ କୁଆଡ଼ୁ ଆସି କୁଆଡ଼େ ଯାଉଥିଲା, ସେକଥା ଭାବିବାଲାଗି ଆମ ଶିକ୍ଷିତଙ୍କର ମଥା ନ ଥିଲା । ଅଶିକ୍ଷିତଙ୍କର ବା କୁଆଡ଼ୁ ଆସନ୍ତା ? ସମସ୍ତେ ପଇସାର ଉପାୟ କରିବାରେ ବ୍ୟସ୍ତ ଥିଲେ; ବଡ଼ ଗ୍ଭକିରିଆ ଦି'ଟଙ୍କା ପାଇଁ ଯେତିକି ବ୍ୟସ୍ତ ଥିଲା, ଛୋଟ ଗ୍ଭକିରିଆ ଦି' ଅଧଲା ପାଇଁ ବି ସେତିକି ବ୍ୟସ୍ତ ଥିଲା ।

ଏମିତି ହଉଥିଲା, କାରଣ ଆମେ ଖାଲି ଦାୟିତ୍ୱ ଲଦିଦେଇ ଅନେଇ ବସିଥିଲୁ । ଘରର ମାଲିକ ଖାଲି ଖଜଣା ଦେଉଥିଲେ, କିନ୍ତୁ ଭୋଗ କରୁଥିଲେ ଅଜାତିଆ ଅମଲା ମହଲ । ଏହି ଜାତିର ଅମଲାମାନେ ସିନା ଅଫିସ୍ ଫାଇଲ କାରବାର କରୁଥିଲେ, କିନ୍ତୁ କେହି ନିଜକୁ ଜାତିର ସେବକ ବୋଲି ଭାବି ଶିଖି ନ ଥିଲେ । ତେଣୁ ସେମାନଙ୍କୁ ଅଜାତିଆ କହିଲେ ଆମେ କିଛି ପାପ କରି ପକାଇବା ନାହିଁ ।

କିନ୍ତୁ ଏପରି ହବ ନାହିଁ, ଯଦି ଆମେ ଆପଣାର ଦାୟିତ୍ୱକୁ ଅନ୍ୟକୁ ଦେଇ ଅନେଇ ବସିବାର ବଦଖୋଇ ଛାଡ଼ିଦେବା । ଜାତି ବୋଇଲେ ଆମେ ସମସ୍ତେ, ଓଡ଼ିଶା ବୋଇଲେ ଆପାତତଃ ଛଅ ଜିଲ୍ଲା ଓ ଛବିଶ ଗଡ଼ଜାତର ମଇଳା ସଫା ସବୁ ଲୋକ, ଓଡ଼ିଆ ବୋଇଲେ ମଣିଷ ସମାଜର ଏକ ଜୀବନ୍ତ ଅଙ୍ଗ, ଏଇକଥା ପ୍ରାଣେ ପ୍ରାଣେ ଅନୁଭବ କଲେ ଏପରି ଭୋଳ ହୋଇ ବସି ରହିବାର କାରଖାନା ଦିନକଲାଗି ବି ଚଳିପାରିବ ନାହିଁ ।

ଦଶବରଷ ହେଲା ଆମ ପ୍ରଦେଶର କଳେବର ବଦଳିଲାଣି, କିନ୍ତୁ ସେଇ ନୂଆ କଳେବର ଭୋଗ କରୁଥିଲା କିଏ ? ଗଞ୍ଜାମ କୋରାପୁଟର ଯେଉଁ ଭାଇମାନଙ୍କୁ ଓଡ଼ିଆ କହି ଆମେ ପାଖକୁ ଆଣିଲୁ, ଏହି ଦଶବର୍ଷ ହେଲା ଆମେ କେବଳ ସେମାନଙ୍କର ରକ୍ତ ଶୋଷିବାରେ ହିଁ ଲାଗିପଡ଼ିଥିଲୁ । ଯେତେବେଳେ ଅଷ୍ଟ୍ରେଲିଆ ମହାଦେଶର ଆବିଷ୍କାର ହେଲା, ସେତେବେଳେ ବିଲାତର ଶହ ଶହ ଟଙ୍କାଲୋଭୀ ଯଖ ସାଗର ପାରି ହୋଇ ସେଠାକୁ ସମ୍ପଦ ସାଉଁଟିବାକୁ ଦଉଡ଼ିଗଲେ । ଆମେ ପୁରୁଖା ଓଡ଼ିଶା ପ୍ରଦେଶର ଶକ୍ଷତ ସମାଜ ସେହିପରି

ଗଞ୍ଜାମ ଓ କୋରାପୁଟର ଅଟଷା ଅହଣା କଳେବର ବିଦାରି ନିଜଘରକୁ ସମ୍ପଦ ଟାଣବାରେ ଲାଗିପଡ଼ିଲୁ । ଆମର ଭ୍ରାତୃତ୍ୱ, ଆମର ଓଡ଼ିଆ ବୋଲି ଅନୁଭବ କରିବାର ଗୌରବ କେବଳ ଏଇପର୍ଯ୍ୟନ୍ତ ସୀମାବଦ୍ଧ ରହିଥିଲା ।

ଓଡ଼ିଆ ବୋଲି ଢେଙ୍ଗୁରା ପିଟୁଥିଲେ ହେଁ ଆମେ ନିଜକୁ ଯଥାର୍ଥରେ ଓଡ଼ିଆ ବୋଲି ଅନୁଭବ କରି ନ ଥିଲୁ । ଯେତେବେଳ ପର୍ଯ୍ୟନ୍ତ କଳିଆ କରିବା, ପରକୁ ନିନ୍ଦିବା, ପଡ଼ୋଶୀ ସହିତ ବାଦ କରିବା, ଲୁଣ୍ଠିବା ଓ ରାବ କରିବା ଚାଲୁଥିଲା, ସେତେବେଳ ପର୍ଯ୍ୟନ୍ତ ଆମେ ସଭାସମିତିରେ ନିଜକୁ ଓଡ଼ିଆ ବୋଲି କହି ପାଟି କରୁଥିଲୁ, ଓଡ଼ିଆ ଜାତିର ଦୁହାଇ ଦେଇ ଆମେ ଶୂନ୍ୟ ହୁଙ୍କାର ଦେଉଥିଲୁ । ତାହାଛଡ଼ା ଅତୀତକୁ ଝୁରି ଅତୀତର ଗରିମା ବଖାଣି ବାହୁନିବାକୁ ମଧ୍ୟ ଆମେ ଗଣ୍ଡସାର କରି ଧରି ଆସିଥିଲୁ । ଏତିକି ବ୍ୟତୀତ ଆମର ଅନ୍ୟ କୌଣସି ଯୋଗ୍ୟତା ଅଛି ବୋଲି ଜଣାପଡ଼ୁ ନ ଥିଲା ।

କିନ୍ତୁ ପରକୁ ନିନ୍ଦି ଓ ପର ସାଥିରେ କଳିଆ କରି କେହି ବଡ଼ ହୋଇ ନାହିଁ । ଆପଣାର ଜ୍ୟୋତିକୁ ପ୍ରକାଶିତ କରିବାକୁ ଗଲେ ଆପଣାଭିତରେ ହିଁ ଆଲୋକ ରହିଥିବା ଦରକାର । କିନ୍ତୁ ଆମେ ଆଜିଯାଏ ପ୍ରଧାନତଃ କେବଳ ଅନ୍ୟର ଜ୍ୟୋତିକୁ ନିଭାଇବାକୁ ଶିଖି ଆସିଥିଲୁ, ନିଜ ଭିତରର ଜ୍ୟୋତିରେ ନିଜେ ପ୍ରକାଶିତ ହେବାର କଠୋର ବିଦ୍ୟା ହାସଲ କରିବାକୁ ଆମେ ଏକାବେଳେକେ ଭୁଲିଯାଇଥିଲୁ ।

ଜଗତର ବିରାଟ ଦରବାରରେ ଆପଣାର ପରିଚୟ ଦେବାକୁ ହେଲେ ନିଜସ୍ୱ ଗୌରବ ବୋଲି କିଛି ରହିଥିବା ଦରକାର । ବାପଅଜାଙ୍କର ପାଟଶିରିପା ପିନ୍ଧି ଅଯୋଗ୍ୟ ମଣଷ ସମ୍ମାନ ପାଇବାର ଦମ୍ଭ କଲେ ସମସ୍ତେ ହସିବା ସାର ହୁଏ ସିନା, କିନ୍ତୁ ସମ୍ମାନଲାଭ ଚିରଦିନ ଦୂରର ବସ୍ତୁ ହୋଇ ରହିଥାଏ । ବିଶ୍ୱଦାଣ୍ଡରେ ନିଜକୁ ଓଡ଼ିଆ ହିସାବରେ ପ୍ରତିଷ୍ଠିତ କରିବାକୁ ହେଲେ ଆମେ କଦାପି ଏହି ମୌଳିକ ସତ୍ୟଟିକୁ ପାସୋରି ପକାଇବା ନାହିଁ । ପରର ପାଦଚିହ୍ନ ଉପରେ ପାଦ ପକାଇ, ପଡ଼ୋଶୀର କଳହ-କୌଶଳକୁ ଚମତ୍କାର ଭାବେ ଆୟତ୍ତ କରି ଅତୀତର ଫମ୍ପା ବୟାନ କରୁଥିଲେ ଆମକୁ ସମସ୍ତେ ମାଙ୍କଡ଼ ବୋଲି କହିବେ, କିନ୍ତୁ ଓଡ଼ିଆ ବୋଲି ଚିହ୍ନିପାରିବେ ନାହିଁ ।

ଜାତି ବା ଦେଶ ବୋଇଲେ ଖାଲି ନିର୍ଜୀବ ମାଟିଗୋଡ଼ିକୁ ବୁଝାଏ ନାହିଁ । ଭାବପ୍ରବଣ କବି ହୁଏତ ମୃତ ବାଲିମାଟି ଓ ପଥର ଟାଙ୍ଗର ଭିତରେ ଜୀବନର ରକ୍ତପ୍ରବାହ ପ୍ରତ୍ୟକ୍ଷ କରିପାରେ, ମାତ୍ର ତାହା କେବଳ ତାର କଳ୍ପନା ରାଜ୍ୟର ସ୍ୱାତନ୍ତ୍ର୍ୟ ବ୍ୟତୀତ ଆଉ କିଛି ନୁହେଁ । ଜାତି ବା ଦେଶ ଏକ ଜୀବନ୍ତ କଳ୍ପନା,—ଦେଶରେ ବାସ କରୁଥିବା ଲକ୍ଷପ୍ରାଣର ସ୍ପନ୍ଦନ ହେଉଚି

ଜାତିର ଜୀବନର ଚିହ୍ନ । ଦେଶର ମଣିଷକୁ ନେଇ ହିଁ ଦେଶର ନଈନାଳ ଓ ପଥର ପାହାଡ଼ ସୁନ୍ଦର ଦିଶବା ଉଚିତ ।

ଜାତି ବା ଦେଶ ମୃଣ୍ମୟ ନୁହେଁ, ତାହା ଚିନ୍ମୟ । ତେଣୁ ଜାତିର ମହାନ୍ ପରିଚୟକୁ ପ୍ରତିଷ୍ଠିତ କରିବାକୁ ହେଲେ ଏହି ଚିନ୍ମୟତ୍ୱକୁ ହିଁ ଅଧିକ ସୁନ୍ଦର ଓ ସରସ କରିବାକୁ ହେବ । ଏ ଦେଶ ମଣିଷର ମଣିଷପଣିଆ, ତା'ର ପ୍ରବନ୍ଧ ଓ ପ୍ରୟୋଜନକୁ ଠିକ୍‌ଭାବରେ ଚିହ୍ନି କେବଳ ସେଇଠାରେ ହିଁ ଦୃଢ଼ ଉଦ୍ୟମ ଆରମ୍ଭ କଲେ ଯାଇ ଜାତିର ନବନିର୍ମାଣ ହୋଇପାରିବ । ଓଡ଼ିଆ କୁଲି ଓଡ଼ିଆ ଚାଷୀ, ଓଡ଼ିଆ ପିଲା, ଓଡ଼ିଆ ବାବୁ ଓ ଓଡ଼ିଆ ଚାକିରିଆ, ସମସ୍ତଙ୍କର ଭିତରେ ସମାନ ପ୍ରାଣସ୍ପନ୍ଦନର ପରିଚୟ ପାଇ ସେମାନଙ୍କୁ ଏକତାସୂତ୍ରରେ ବାନ୍ଧିବା ହେଉଚି ଓଡ଼ିଆତ୍ୱର ସନ୍ଧାନ ପାଇବା । ଏହି ସମୂହ ଚିନ୍ତା, ସମୂହ ଦୃଷ୍ଟି ଓ ସମୂହ କଲ୍ୟାଣ କାମନା ହେଉଚି ଜାତିର ଜାତିତ୍ୱକୁ ଜାଗ୍ରତ କରାଇବାର ସର୍ବପ୍ରଧାନ ଚାବି । ଓଡ଼ିଆ କୁଲି କର୍ମକୁଶଳ କାରିଗର ହେବ, ଓଡ଼ିଆ ଚାଷୀ ଓଡ଼ିଶା ଭୂଇଁରେ ସୁନାର ଶସ୍ୟ ଖେଳାଇ ଶିଖିବ, ଓଡ଼ିଆ ପିଲା ଏହି ଭୂମିର ଶିକ୍ଷା, ସଭ୍ୟତା, ସଂସ୍କୃତି ଦ୍ୱାରା ସମୃଦ୍ଧ ହୋଇ ସରସ ରୀତିରେ ବଢ଼ିବ, ଓଡ଼ିଆବାବୁ ନିକୃଷ୍ଟ ନକଲଇନବିଶ ଛାଡ଼ି ଜାତିର ସମ୍ମାନିତ ସେବକ ହୋଇ ବାହାରିବେ ଏବଂ ଓଡ଼ିଆ ଚାକିରିଆ ନିଜର ଘରଟିକୁ ନ ବଢ଼ାଇ ଜାତିର ଘର ଓ ସମ୍ପଦକୁ ବଢ଼ାଇବାରେ ଆପଣାର ମନଧ୍ୟାନ ଉତ୍ସର୍ଗ କରିବେ, ଏହାରି ଦ୍ୱାରା ହିଁ ଓଡ଼ିଆ ଜାତିର ଉଦୟ ହେବ । ୧୯୩୬ ଠାରୁ ଆଜିଯାଏ ଯାହା ସମ୍ଭବ ହୋଇ ନାହିଁ, ବର୍ତ୍ତମାନ ତାହା ସମ୍ଭବ ହେବ ।

ଯିଏ ଏଇକଥା ଭାବୁଚି, ଏଇଥିପାଇଁ ପାଠପଢ଼ି ଯିଏ ସଜ ହେଉଚି, ସେଇ ହେଉଚି ଓଡ଼ିଆ । ଏ ଦେଶର ପୁଅ ବୋଲାଇବାକୁ କେବଳ ସେହି ଯଥାର୍ଥ ଅଧିକାର ପାଇପାରିବ । ମାତ୍ର ଯିଏ ଏହି ଦୃଷ୍ଟିରୁ ଚିନ୍ତା କରିବ ନାହିଁ ବୋଲି ରେଣ୍ଡି ଧରି ବସିଚି, ସିଏ ହେଉଚି ଠକ, ଦୁଷ୍ଟବୃତ୍ତ ବାଟଭୁଲା ଭୋଳାନାଥ । ଘରେ ବସି ଯିଏ ପ୍ରତିନିଧି ଉପରେ ପ୍ରଦେଶର ସବୁ ଦାୟିତ୍ୱ ଲଦିଦେବ, ବେଳ ଓ ବାଗ ଉଣ୍ଡି ଯିଏ ସଭାସମିତିରେ ନିର୍ବୋଧପରି ଯାକୁ ତାକୁ ଗାଳି ଦେଇ ମନକୁ ବୋଧ ଦେଉଥିବ, ଜାତିର କଲ୍ୟାଣ ସାଧନରେ ସିଏ କୌଣସି ସାହାଯ୍ୟ କରିପାରିବ ନାହିଁ । ଆମେ ଯାହାକୁ ପ୍ରତିନିଧି କରି ପଠାଇଚୁ, ତା'ଠାରୁ ପୂରା କାମ ଆଦାୟ କରିବାର ଅଧିକାର ଆମର ଅବଶ୍ୟ ଅଛି । କିନ୍ତୁ ଜଣେ ଓଡ଼ିଆ ହିସାବରେ ଆମ ନିଜର ବି ଯାହା କରିବାର ରହିଚି ସେତକ ଭୁଲିଗଲେ ଆଦୌ ଚଳିବ ନାହିଁ ।

୨୧ । ୧୦ । ୪୬

ଓଡ଼ିଶାର ନିଜର ବୋଲି କହିବାକୁ କଣ ଅଛି ? ନା ଧନ, ନା ମନ ନା ସମ୍ମାନ ? ପ୍ରଦେଶରେ ସ୍କୁଲ ବସାଇବାକୁ ପଡ଼ିଲେ, କାରଖାନା ଖୋଲିବାକୁ

ବସିଲେ ବାହାର ବିଶେଷଜ୍ଞମାନଙ୍କର ଚରଣ ଧରିବା ଅତ୍ୟନ୍ତ ଆବଶ୍ୟକ ହୋଇପଡ଼ୁଚି । ଏ ପ୍ରଦେଶର ପୂର୍ଣ୍ଣାଙ୍ଗ ଇତିହାସ ନାହିଁ, ଉନ୍ନତ ଭୂଗୋଳ ଲେଖା ହୋଇ ନାହିଁ, କୋରାପୁଟର କେତେ ପର୍ବତ ଗର୍ଭରେ ହୁଏତ କେତେ ଐଶ୍ୱର୍ଯ୍ୟ ଅଖୋଳା ଓ ଅଲୋଡ଼ା ହୋଇ ରହିଚି । କୋଣାର୍କ, ପୁରୀ ଓ ଭୁବନେଶ୍ୱରକୁ ଆମେ କେବଳ ଗୋଟିଏ ଗୋଟିଏ ଯାତ୍ରୀପାବକ ତୀର୍ଥସ୍ଥାନରେ ପରିଣତ କରି ରଖିଚୁ । ସଭାସମିତିର ଓଡ଼ିଆ ଓ ଓଡ଼ିଶାର ନାମ ନେଇ ଆମେ ବାହୁନୁଚୁ, ପଡ଼ୋଶୀ ପରଦେଶୀକୁ ଗାଳି ଦେଉଚୁ । ଏହି ଗାଳିଗୁଲଜ ଦେଇ ଜୀର୍ଣ୍ଣ ଅତୀତକୁ ଆବୋରି ବସିବାରେ ଓଡ଼ିଆ ଯେତେଦିନଯାଏ ଗୌରବବୋଧ କରୁଚି, ସେତେଦିନଯାଏ କିପରି ତା'ର ଉନ୍ନତି ହୋଇପାରିବ ?

କିନ୍ତୁ ଆଜି ପରିବର୍ତ୍ତନ ଲାଗି ଏପରି ଗୋଟାଏ ବେଳ ଆସି ପହଞ୍ଚିଚି, ଏତେବେଳେ ଯିଏ ଖାଲି ମୁହଁ ମାଡ଼ି 'ଦେଲେ ନାହିଁ' 'ଦେଲେ ନାହିଁ' କାନ୍ଦୁଥିବ, ତାକୁ କେହି ପଗ୍ଭରିବେ ନାହିଁ । ବ୍ୟକ୍ତିତ୍ୱ ଉଧାର କରାଯାଏ ନାହିଁ, ଆପଣା ଭିତରେ ଏହାର କର୍ଷଣ କରି ଏହାକୁ ଅନୁଭବ କରିବାକୁ ହୁଏ । ଏହି ବ୍ୟକ୍ତିତ୍ୱ ଏହି ଗୌରବବୋଧ ଯେଉଁ ଜନଗଣର ନାହିଁ, ତା'ଲାଗି ହଜାରଟା କଲେଜ ଖୋଲିଗଲେ ମଧ୍ୟ ତା'ର କୌଣସି ମଙ୍ଗଳ ହେବ ନାହିଁ । ଏହି ଯୁଗଭଙ୍ଗା ପବନର ପ୍ରତିଘାତରେ ସେ କୁଆଡ଼େ ନଷ୍ଟ ଓ ଲୀନ ହୋଇଯିବ । ଆପଣାର ବୈଶିଷ୍ଟ୍ୟକୁ ବଜାୟ ରଖି ବିଶ୍ୱସଭ୍ୟତା ଲାଗି ଗୌରବ ପାଇବାଭଳି କିଛି ଦାନ କରି ପାରିବାର ମହାନ କଳ୍ପନା ହେଉଚି ଏକ କଠୋର ଜୀବନବ୍ରତ । ଏହି ଜୀବନବ୍ରତଟି ଗ୍ରହଣ କରିପାରିଲେ ଯାଇ ଓଡ଼ିଆ ତାହାର ପରିପୂର୍ଣ୍ଣ ପରିଚୟ ଦେଇପାରିବ ।

ଦେଶରେ ଭଲ ଗ୍ଭଷ ହେବ, ଶିଳ୍ପର ଉନ୍ନତି ହେବ, ମଣିଷ ହେବାଲାଗି ପିଲାଏ ପାଠ ପଢ଼ିବେ,—ଏସବୁ କାମକୁ ଖାଲି ପ୍ରତିନିଧିମାନଙ୍କ ଉପରେ ଲଦିଦେଲେ କିପରି ହେବ ? ସେମାନେ ଆଇନ୍ ପାସ କରିଦେଇ କିପରି ଜାତିକୁ ଯୋଗ୍ୟ କରିପାରିବେ ? ସେମାନେ ହେଉଚନ୍ତି ଦ୍ୱାରପାଳ ପରି, ଏହି ଜାତିର ସେବକ ହେବାର ମହାଭାଗ୍ୟ ସେମାନେ ପାଇଚନ୍ତି । ସେମାନେ କ୍ଷେତ୍ର ପ୍ରସ୍ତୁତ କରିବେ, ଜାତିର ମାନସମ୍ମାନ ଓ ବ୍ୟକ୍ତିତ୍ୱର ବିକାଶ ପଥରେ ଯେତେ ଯେଉଁଠି ବାଧା ରହିଚି, ଯେତେ ଯେଉଁଠି ଅଯଥା ହସ୍ତକ୍ଷେପ ହେଉଚି, ତାକୁ ଦୂର କରିବା ହେଉଚି ସେମାନଙ୍କର କାମ । ସେମାନେ ଜାତିକୁ ସୁସ୍ଥ, ସୁନ୍ଦର ଓ ଶିକ୍ଷିତ କରାଇବେ, କିନ୍ତୁ ସେହି ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ ଓ ଶିକ୍ଷାର ସୁଯୋଗ ନେଇ ଉଚ୍ଚ ଓ ଉନ୍ନତ ହେବାର ଗୁରୁଦାୟିତ୍ୱ ପ୍ରତ୍ୟେକ ଯୁବକର, ପ୍ରତ୍ୟେକ ଛାତ୍ରର, ଆହୁରି ପ୍ରଶସ୍ତ କରି କହିବାକୁ ଗଲେ ପ୍ରତ୍ୟେକ ଓଡ଼ିଆର ।

ଜାତିର ଜ୍ୟୋତି ପ୍ରକାଶ କରିପାରିବ କେବଳ ପ୍ରତ୍ୟେକ ବ୍ୟକ୍ତିର କର୍ମକୁଶଳତା ଓ ପ୍ରତିଭା ଭିତରଦେଇ ।

'ବିଦେଶୀ'କୁ ଶଇତାନ କହି ଆମେ ଏପର୍ଯ୍ୟନ୍ତ ତାହାରି ଉପରେ ସବୁ ଦୋଷ ଅଜାଡ଼ିଦେଇ ଆସିଚୁ । ଖୁବ୍ ଭଲ କଥା, କିନ୍ତୁ ଯେଉଁ କାରଣରୁ ହେଉ, ପୀଡ଼ିତ ଜାତିର କ୍ଷୁବ୍ଧ ନିଶ୍ୱାସ କଠୋର ପ୍ରତିରୋଧ ବାଣ ହୋଇ ବିଦେଶୀ ଉପରେ ପଡ଼ିଚି ଓ ଅଚିରେ ଆମରି ପ୍ରତିନିଧିମାନଙ୍କ ହାତକୁ ଦେଶର ଶାସନ ଆସୁଚି । ଏତେଦିନଯାଏ ବାଳି ଗୁମ୍ଫା ଭିତରେ ବନ୍ଦ ହୋଇ ରହିଥିଲା । ଗୁମ୍ଫାର ପଥର ଭାଙ୍ଗି ସେ ଆଜି ମୁକ୍ତବାୟୁର ସ୍ପର୍ଶ ଲାଭ କରିଚି । ଏଥର ଆଉ ବିଦେଶୀକୁ ଦୋଷ ଦେଇ ହେବ ନାହିଁ । ଏହି ସ୍ୱାଧୀନତାର ସୁଯୋଗ ନେଇ ନିଜକୁ ସଭ୍ୟ ଓ ଶକ୍ତକରି ଗଢ଼ି ନ ପାରିଲେ ଏଥର ଆମରି ଅପାରଗତାଟା ହିଁ ଧରାପଡ଼ିଯିବ । ଏହି ପୃଥିବୀରେ ଆମେ ନିତି ନ୍ୟୂନ ହୋଇ ରହିଯିବା ।

ସ୍ୱାଧୀନତାର ଅର୍ଥ ହେଉଚି ଯାତ୍ରାର ଆରମ୍ଭ । ରାତି ପାହିଲା, ଏଥର ସଚେତ ଓ ସଜାଗ ହୋଇ ବାଟ ଚାଲିବାକୁ ହେବ, ବିଶ୍ୱବିଧାତା ଆମ ଲାଗି ନିୟତ କରିଦେଇଥିବା ମହାପଥରେ ଆମରି ଦକ୍ଷତା ଓ ସୃଜନ ପ୍ରତିଭାର ମାଇଲପଥର ପୋତିବାକୁ ହେବ । ପୁରୁଣା ଦୁର୍ଗ ଭାଙ୍ଗିଲା, ଏଥର ନୂତନ କରି ରଚନା କରିବାର ବିରାଟ ଗଠନପର୍ବରେ ଆମ ସମସ୍ତଙ୍କୁ ତତ୍ପର ହେବାକୁ ପଡ଼ିବ ।

କିନ୍ତୁ ନବରଚନାର ମୂଳଦୁଆ ପଡ଼ିବା ଆଗରୁ ଭୂଇଁ ସମତଳ କରିବାକୁ ପଡ଼ିବ । ଓଡ଼ିଶାର ଦୁଃଖ, ଓଡ଼ିଶାର ଦାରିଦ୍ର୍ୟ, ଓଡ଼ିଶାର ରୋଗ, ବନ୍ୟା ଓ ଦୁର୍ଭିକ୍ଷ ଆଦି କଣ୍ଟା ଓ ପଥରକୁ ଗୁଣ୍ଡା କରି ଉର୍ବର ମାଟିରେ ମିଶାଇ ଦେବାକୁ ହେବ । ଆଉ ଏ କାମ ଖାଲି ମନ୍ତ୍ରୀମାନଙ୍କର ନୁହେଁ, ଆମ ସମସ୍ତଙ୍କର । ଯିଏ ପାଠ ପଢ଼ୁଚି, ଯିଏ ଟଙ୍କା ଖରଚ କରୁଚି, ଦେଶର ପଇସାରେ ଯିଏ ମଣିଷ ହେଉଚି, ତାକୁ ଦିନେ ନା ଦିନେ ଏହି ଦାୟିତ୍ୱ ତୁଲାଇବାର କୈଫିୟତ୍ ଦେବାକୁ ପଡ଼ିବ । ଓଡ଼ିଶାର ସବୁ ପାହାଡ଼ ଓ ଉପତ୍ୟକାକୁ ଉଖାଡ଼ି ତାହାର ଗର୍ଭରୁ ସୁନାସମ୍ପଦ ବାହାର କରିବାକୁ ହେବ, ସବୁ ଅଳସ ମଥାରେ ଶିକ୍ଷା ଓ ସଭ୍ୟତାକାଙ୍କ୍ଷାର ଜୀବନ-ବେଗ ସୃଷ୍ଟି କରି ତାକୁ ଜୀବନ୍ତ ଓ ବର୍ଦ୍ଧନ୍ତ କରିବାକୁ ହେବ । ଏଥିପାଇଁ ନା ଦରକାର ରାଜନୀତି, ନା ଦରକାର ଦଳଫଟାଫଟି ବାଜନୀତି । ଏଥିଲାଗି ନିଜେ ଶିକ୍ଷା ପାଇ ଅନ୍ୟ ସମସ୍ତଙ୍କୁ ଶିକ୍ଷିତ ଓ ସୁନ୍ଦର କରାଇବାର ସାଧନା ଆବଶ୍ୟକ, ମଣିଷ ହୋଇ ମଣିଷ ତିଆରି କରିବାର ତପସ୍ୟା ଆବଶ୍ୟକ ।

ଆଗରୁ ସ୍କୁଲ କଲେଜ ଥିଲା, ପିଲାଏ ପାଠ ପଢ଼ୁଥିଲେ, ପଇସା ଖର୍ଚ୍ଚ କରୁଥିଲେ । କିନ୍ତୁ ଗୋଟାଏ ଉଚ୍ଚ ଉଦ୍ଦେଶ୍ୟ ରଖି ପାଠ ପଢ଼ିବା ସମ୍ପୂର୍ଣ୍ଣ ଭିନ୍ନ

କଥା । ମୁଁ କେଉଁ କ୍ଷେତ୍ରରେ ରହି ଜାତିର ସବୁଠାରୁ ଅଧିକ କଲ୍ୟାଣ ସାଧନ କରିପାରିବି, ପାଠପଢ଼ିବା ସଙ୍ଗେ ସଙ୍ଗେ ସେଥିଲାଗି ପ୍ରସ୍ତୁତ ହେବା କେବଳ ପାଠ ପଢ଼ିବାଠାରୁ ଯୋଜନ ଯୋଜନ ଦୂର । ଏହା ଏକ ତପସ୍ୟା । କାରଣ ପ୍ରତ୍ୟେକ ଦିନର ଶିକ୍ଷାକୁ ଜୀବନର ସାର ଧନ କରି ତାହାକୁ କୌଣସି ସାର୍ଥକ ସେବାରେ ନିୟୋଜିତ କରିବାର ମହାମନ୍ତ୍ର ଏଥିରେ ନିହିତ ହୋଇ ରହିଚି । ବିଶେଷ କୌଣସି ଲକ୍ଷ୍ୟ ରଖି ତାହାର ପୂର୍ତ୍ତି ସକାଶେ ବିଶେଷଜ୍ଞ ହେବା ପ୍ରକୃତରେ ଏକ ତପସ୍ୟା । ମଣିଷ ଆଉ ଶୁଆସାରୀଙ୍କର ପାଠପଢ଼ାରେ ଏଇଠି ତଫାତ୍ ରହିଚି । ଶୁଆ ଯାହା ଶିଖେ, କେବଳ ତାହାକୁ ହିଁ ବାନ୍ତି କରେ । କିନ୍ତୁ ମଣିଷ ଯାହା ଗ୍ରହଣ କରେ, ସେ ତାକୁ ସିଦ୍ଧି କରେ ଓ ସେଇଥିରୁ ନୂତନ ସୃଷ୍ଟି କରେ । ଏଇଦୃଷ୍ଟିରୁ ଦେଖିଲେ ସ୍କୁଲରେ ପାଠ ପଢ଼ିବା, ମାଟିର ବାସନ ତିଆରି କରିବା, ନାଆ ଚଳାଇବା, ସାହିତ୍ୟ ଲେଖିବା, ସବୁ ଗୋଟିଏ ଗୋଟିଏ ତପସ୍ୟା । ଆମ ଜାତି ଶିକ୍ଷାକୁ ଯେଉଁଦିନ ତପସ୍ୟାର ତୁଙ୍ଗ ସ୍ତରକୁ ଉଠାଇନେଇ ପାରିବ, ସେହିଦିନ ହିଁ ତା'ର ପୁନର୍ଜନ୍ମ ହେବ ।

ଏହି ଯୁଗ ହେଉଚି ତପସ୍ୟାର ଯୁଗ । ଆପଣାର ଦାୟିତ୍ୱକୁ ଆଖି ଆଗରେ ରଖି ପ୍ରତ୍ୟେକ ଓଡ଼ିଆ ଯୁବକକୁ ଆଜି ଏହି ତପସ୍ୟାର ବ୍ରତ ଗ୍ରହଣ କରିବାକୁ ପଡ଼ିବ । ଏହି ଦାୟିତ୍ୱ ହେଉଚି ଜାତିର ଦାୟିତ୍ୱ, ଏହାକୁ ମୁଣ୍ଡାଇବାକୁ ହେବ । ପରିବର୍ତ୍ତନ-ଯୁଗର ସୁଯୋଗ ନେଇ ନିଜକୁ ତଥା ନିଜ ଭିତରଦେଇ ଜାତିକୁ ଉନ୍ନତ ଓ ସମୃଦ୍ଧ ଭାବରେ ନିର୍ମାଣ କରିବାକୁ ହେବ । ଏହି ବାଟରେ ହିଁ ଓଡ଼ିଆର ପ୍ରଶସ୍ତ ସମ୍ଭାବନା ରହିଚି, ଏଇ ହେଉଚି ତାହାର ମୁକ୍ତିଫାଟକ ।

୧୦ । ୧୧ । ୪୬

ଛୁଟୀପରେ ଶାନ୍ତିନିକେତନ ଆସିଲି । ଆସିବାର ପରେ ପରେ ପୁଣି ଜରରେ ପଡ଼ିଗଲି । ଦିନେ କୁଆଡ଼େ ଅଚେତା ହୋଇ ପ୍ରଳାପ କରୁଥିଲି, କିଏ ଯେପରି ବଇଁଶୀ ବଜାଉଚି ମୋ' ଅନ୍ତରାଳରେ ରହିରହି । ମିକ୍ସର୍ ଆଉ ମାପାକ୍ରିନ୍ ଖାଇବାକୁ ପଡ଼ିଲା । ତଥାପି ଦୁଧ ପିଇବା ବିଷୟରେ ମୋର ବୈରାଗ୍ୟର ବିକଳ ଅଭିଯୋଗ କରିବାରୁ ଦୟାଶୀଳ ଡାକ୍ତରବାବୁ ରୋଜ୍ ଦୁଇ-ଗଲାସ କରି ଦହିର ବରାଦ କରିଗଲେ । ଜ୍ୱରର ତିକ୍ତସାଗର ଭିତରେ ତାହା ହିଁ ମୋତେ କ୍ଷୀରସମୁଦ୍ର ପରି ଲାଗୁଥିଲା । ତେଣେ ଅନତିଦୂରରେ ସିଂହସଦନ ଉପରେ ଉଠିବା ଘଣ୍ଟା, ବୈତାଳିକରଘଣ୍ଟା, ଖେଳିବା ଘଣ୍ଟା ରୀତିମତ ବାଜୁଥାଏ । ମୁଁ ସବୁ ଶୁଣୁଥାଏ । ବାହାରକୁ ଯିବାର ଗୋଟାଏ ଅଥୟ ପାଗଳାମି ଆସେ, କିନ୍ତୁ ତକିଆତଳୁ କାହାର ତପ୍ତ ହାତୁଡ଼ି ଯେପରି ମୋତେ ଛାଡ଼ିବାକୁ ନାରାଜ ! ରେଳଗାଡ଼ିରୁ ଧୂଆଁ ବାହାରିଲା ପରି କାନପାଖରେ ରହି କିଏ ଯେପରି ଫାସ୍କୁଫାସ୍କୁ କରିବାରେ ଲାଗିଥାଏ । ଖାଲି ସକାଳେ ଯାହା ଟିକିଏ ଭଲ ଲାଗେ । ପାଇଖାନାରୁ

ଫେରିଲାବେଳେ ସିନ୍ଦୂରା ଫାଟେ, ମୁଁ ଏକଲଘରେ ଗୁହିଁ ରହିଥାଏ । କଅଁଳ ନାଲିସୂର୍ଯ୍ୟ ବାହାରିଆସେ ସୁନାରଙ୍ଗର ମେଘମଣ୍ଡଳ ଭିତରୁ । କେବଳ ସେତିକି ଯେପରି ବାହାର ଦୁନିଆ ବା ଅତୀନ୍ଦ୍ରିୟ ଦୁନିଆ ସହିତ ମୋର ବନ୍ଧାବନ୍ଧି । ତା'ପରେ ଭିତରୁ ଡାଡିଅସୁର ଆସି ମାଡ଼ିବସେ, ବିରାଟ ଶୂନ୍ୟବାଦ ଭିତରେ ମୋତେ ଶୂନ୍ୟ କରିପକାଏ, ଦେହ ଓ ଆତ୍ମାର ଦ୍ୱୈତମଳନ ତୁଟିଯାଏ । ଫୁଲ, ପବନ, ପକ୍ଷୀ ଆଉ ମଣିଷ ଛାଡ଼ି ମୁଁ ଲେମ୍ବୁ, ପାଣି, କମ୍ବଳ ଓ ରେଜେଇର ସଂସାରକୁ ଆଦରି ରହେ । କେତେଥର ଚେତା ଆସିଲେ ବାହାରକୁ ଯିବାକୁ ମନ ହୁଏ, କିନ୍ତୁ କିଏ ବୁଝେ ?

କିନ୍ତୁ ଆଜି ସକାଳୁ ଜ୍ୱରଦେବତାଙ୍କର ତିରୋଧାନ-ଉତ୍ସବଟି ଶତ ତିରସ୍କାର ସହିତ ପାଳନ କରି ମୋ' ନିଜ ମନରୁଚିର ଗୀତ ଗାଇ କଣ୍ଠମୂଳରେ ଗତ ଗ୍ଧରି ପାଞ୍ଚଦିନର ଅମ୍ଳାନଗ୍ଳାନିକୁ ପୂରାପୂରି ମେଣ୍ଟାଇଦେଲି । ସୂତା କାଟିଲି । କିନ୍ତୁ ହଠାତ୍ ଦେଖିବାକୁ ପାଇଲି ସେହି ଅବରେଣ୍ୟ ଦେବତାଙ୍କର ଅଗତ୍ୟାଗ୍ରାହ୍ୟ ସ୍ମୃତି ମୋ'ର ଶରୀର ଉପରେ ତଥାପି ଲାଖି ରହିଚି । ଚମଟା ଠିକ୍ କଞ୍ଚନଫୁଲ ପରି ଧଳା ଓ ହଳଦୀମିଶା ଦେଖାଯାଉଚି ।

ପାଇଖାନାକୁ ଯାଇ ଦେଖିଲି ଗୋଟାଏ ଖଣ୍ଡିଆ ବିଡ଼ି ପଡ଼ିଚି । ରାଗ ଆସିଲା; ନିଜର ରୁଚି ବିଲକୁଲ ରୁଷିବସିଲା । ଅଶେଷ ବିକ୍ରମରେ ବାଲ୍‌ଟି ବାଲ୍‌ଟି ପାଣି ଢାଳି ସେଇଟାକୁ ସେପ୍‌ଟିକ୍ ଟ୍ୟାଙ୍କ୍ ଭିତରକୁ ଅଦୃଶ୍ୟ କରି-ଦେବାକୁ ଚେଷ୍ଟା କଲି । ତଥାପି ବିଡ଼ିଟା'ର କେଡ଼େ ଜିଦ୍, ଗୋଟାଏ କୋଣରେ ଯାଇ ବଡ଼ ନିଶ୍ଚିନ୍ତରେ ଆଶ୍ରୟ ନେଲା । ଜୋର୍ ଖଟାଉ ଖଟାଉ ଏଣେ ମୁଣ୍ଡ କ'ଣ ହୋଇଗଲା । ତେଣୁ ବାଧ୍ୟ ହୋଇ ସେଥିରୁ ନିରସ୍ତ ହେଲି ।

ସଞ୍ଜବେଳେ ଖାଇବା ଘରେ ଏକୁଟିଆ କଣିଆ ହୋଇ ବସି ଜଳଖିଆ ଖାଉଚି, ରବିଦାଙ୍କୁ (ସେ ହେଉଚନ୍ତି ଖାଦ୍ୟଭବନର ପରିଗ୍ଧଳକ) ଦେଖିଲି ଜଣେ ଲୋକର ହାତରେ କ'ଣ ଗୋଟାଏ କାଳିଆ ପଦାର୍ଥ ନେଇ ଗୁଞ୍ଜି ଦେଉଚନ୍ତି । ତଲାସ କରି ବୁଝିଲି ଚେମେରୀ ଛୁଆଟାଏ । ସେ କହୁଥାନ୍ତି "ଘରଭିତରେ ଖସି ପଡ଼ିଲା, ପିଲାଏ ଦେଖିଲେ ଅତି ସ୍ନେହରେ ଓ ଅତି ଉତ୍ସୁକତାରେ ଜୀବହତ୍ୟା କରି ପକାଇବେ । ନେଇଯା, କୋଉଠି ନିଭୃତ ଏକ ସ୍ଥାନରେ ଛାଡ଼ିଦେଇ ଆସିବୁ ।" ଗୁରୁଦେବଙ୍କର କୌଣସି ଉକ୍ତିରେ ପଢ଼ିଥିଲି, ପ୍ରକୃତି ସହିତ ପରିପୂର୍ଣ୍ଣ ଆତ୍ମୀୟତା ଓ ଜୀବଜଗତ ପ୍ରତି ସସ୍ନେହ ଆତ୍ମବୋଧ,—ଏହି ଦୁଇଟି ଗୁଣର ବିକାଶ ଲାଗି ଶାନ୍ତିନିକେତନର ମୂଳପ୍ରତିଷ୍ଠା ହୋଇଚି ।

ରାତିରେ ପେଟେ ଖାଇଲି, ଗ୍ଧରିଦିନ ଅକାରଣ ଅର୍ଦ୍ଧାଶନର ପ୍ରତିଶୋଧ ନେଲି । ତା'ପରେ ଜହ୍ନରାତିର ପ୍ରାନ୍ତର ଭିତରେ ଆସିଲା ଜଣେ ବନ୍ଧୁର ଜନ୍ମଦିନ-ନିମନ୍ତ୍ରଣ । ବିନା ଆପତ୍ତିରେ ବାହାରି ପଡ଼ିଲି । ସେଠି ମଧ୍ୟ

ଏକାବେଳକେ ବେକପର୍ଯ୍ୟନ୍ତ ଖାଇ ବନ୍ଧୁମେଳରେ ମୋର 'ପେଟେ ଖାଏ' ଆଖ୍ୟାଟା ବଜାୟ ରଖିଛି । ତା'ପରେ ଦେଖିଲି, ଦକ୍ଷିଣ ଦିଗ୍‌ବଳୟର ଘର ଓ ଗଛଧାଡ଼ି ଉପରେ ଅର୍ଦ୍ଧଦିଗବ୍ୟାପୀ ଗୋଟାଏ ନିଖୁଣ କଳା ସରଳରେଖା, —ନୀଳ ଆକାଶର ନିଭୃତ ନଗ୍ନତାକୁ ସତେ ଅବା ଦୁଇଗୁଣ କରିପକାଉଚି । ଆହୁରି ନିରୀକ୍ଷଣ କରି ଦେଖିଲି, ସେଇଟା ହେଉଚି ସୁନୀଳ ପ୍ରଚ୍ଛଦ ଉପରେ କଳାମେଘର ଗୋଟାଏ ଲମ୍ବା ଗାର । ଭୂଗୋଳରେ ପଢ଼ିଚି, ମରୁମାଟିକୁ ସିକ୍ତଶ୍ୟାମଳ କରିବାପାଇଁ ମେଘ ଓ ମୌସୁମୀର ସୃଷ୍ଟି ହୋଇଚି । ସେଇ ମେଘ ତିଆରି କଳା ତିଳକରେଖାକୁ ଦେଖି ମନେହେଲା, ନା—ମେଘର ମଧ୍ୟ କେଉଁ ଅଦୃଶ୍ୟ ଖେଳରତ ପୁରୁଷର ଖେଳନା ହେବାର ସକ୍ ରହଚି । ଗୁରୁଦେବ ଗୋଟାଏ ଜାଗାରେ କହିଚନ୍ତି : The Creator is the eternal waster, ଅର୍ଥାତ୍ ଭାଙ୍ଗି ଗଢ଼ିବା, ପୁଣି ଭାଙ୍ଗି ପୁଣି ଗଢ଼ିବାର ଚପଳ ଧୂଳିଖେଳ ଖେଳିବା ସୃଷ୍ଟିକର୍ତ୍ତାଙ୍କ ସ୍ୱଭାବ ଭିତରେ ବି ରହିଚି ।

...ତା'ପରେ ଦେଶର ରାଜନୀତି । ମୁଁ ଭାବିପାରିଲି ନାହିଁ ଯେ କାଲିକାର ସେବକ ଆଜି ଏଡ଼େ ସହଜରେ ବନ୍ଧୁକଧାରୀ ଶାସକ ହୋଇପାରିବ । ପ୍ରାଣହୀନ ଏହି ଦେଶର ଶୁଷ୍କ ଭୂମି ଉପରେ ବନ୍ଧୁକ ଧରି ରାଜତ୍ୱ କରିବାର ଏହି ହଠାତ୍ ଆମୋଦ ଆସିଲା କାହିଁକି ? ବିହାରରେ ସାମ୍ପ୍ରଦାୟିକ ଦଙ୍ଗା ହେଉଚି, ସଂଖ୍ୟାଗରିଷ୍ଠ ହିନ୍ଦୁ ନିଜର ତାମସିକ ପ୍ରକରଣରେ ମୁସଲମାନକୁ ଛୁରା ମାରି ଓ ତା'ର ସଂସାର ଉଚ୍ଛନ୍ନ କରି ନୋଆଖାଲି ଓ ତ୍ରିପୁରାର ପ୍ରତିଶୋଧ ନେଉଚି; ଏବଂ ସେଥିଲାଗି ଅର୍ଦ୍ଧଜାତୀୟ ଓ ଅସ୍ଥାୟୀ ସରକାରର ସର୍ବପ୍ରଧାନ ସଚୀବ ପଣ୍ଡିତ ଜବାହରଲାଲ ବିହାରର କେତେ ଗାଁରେ ଗୁଳିକାଣ୍ଡର ଆଦେଶ ଦେଇ ଦେଶରେ ଶାନ୍ତି ଆଣୁଚନ୍ତି । ମଣିଷ ମାରି ମଣିଷ ପାଇଁ ପ୍ରାସାଦ ଗଢ଼ିବାର ମୂଢ଼ କଳ୍ପନା, କମଳ ଘୋଡ଼ାଇ ଅଣ୍ଡିନିଆଁକୁ ଲୁଗ୍ଏଇ ରଖିବାର ଏ ସେହି ପୁରୁଣା ଫିସାଦି । ଠିକ୍ ଦୁଇଦିନ ଆଗରୁ ଗାନ୍ଧିଜୀ ଜନସାଧାରଣଙ୍କୁ ସତର୍କ କରିଦେଇଥିଲେ ଯେ ସେମାନେ ଯଦି 'ସଚୀବୋତ୍ତମ'ଙ୍କୁ ଏହି ଲଙ୍କାପୋଡ଼ିରେ ହନୁମାନ ବନିବାର ପ୍ରଶୟ ଦିଅନ୍ତି, ତେବେ ଗୋରା ରାଜତ୍ୱ ଏ ଦେଶରେ ଆହୁରି ମଜଭୁତ ହୋଇ ବସିବ । ଗୋରା ଶୋଷଣର ଶେଷ କରିବାକୁ ହେଲେ ଗୋରା ଉପାୟ ଯେ କଦାପି ଫଳ ଦେବ ନାହିଁ, ଏହି ସତ୍ୟଟାର ଜଳଜଳ ପ୍ରମାଣ ଗତ ପଚିଶ ବର୍ଷ ଜାତୀୟ ଇତିହାସରୁ ମିଳିଚି । ସେଥିଲାଗି ଇଂରେଜୀ କ୍ରମଓଏଲ୍ ଓ ଦକ୍ଷିଣ-ମାର୍କିନୀ ବଲିଭରଙ୍କ ଜାଗାରେ ଭାରତଭୂମିରେ ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କର ଆବିର୍ଭାବ ହୋଇଚି ।

ଦେଶରେ ଏପରି ଗୋଟାଏ ସମୟ ଆସି ପହଞ୍ଚିଚି, ଯେତେବେଳେ ପ୍ରତ୍ୟେକ ପରିବାରକୁ କାହିଁକି, ପ୍ରତ୍ୟେକ ବ୍ୟକ୍ତିକୁ ମଧ୍ୟ ଗୋଟିଏ ଗୋଟିଏ ଦୁର୍ଗପରି ଅଭେଦ୍ୟ ଭାବରେ ତିଆରି ହେବାକୁ ପଡ଼ିବ । ଏହି ବ୍ୟକ୍ତିତ୍ୱବୋଧ

ନ ଆସିଲେ ଏ ଯୁଗର ମନ୍ଥନ ଭିତରୁ ଭାରତର ଉଦ୍ଧାର ହୋଇପାରିବ ନାହିଁ । କୌଣସି ରାଜନୈତିକ ଦଳ, ତାହା ଯେତେ ନିଷ୍ଠାପର କିମ୍ବା ବାକ୍‌ନିଷ୍ଠ ହୋଇଥାଉ ପଛକେ, ତାହା ପ୍ରତ୍ୟେକ ମଣିଷକୁ କଦାପି ବାଟ ଦେଖାଇ ପାରିବ ନାହିଁ । ଏହି ଦେଶରେ ରାଜନୀତିକ ଦଳଗୁଡ଼ିକର ସଂଖ୍ୟା ବଢ଼ିବାର ଅର୍ଥ ଜନଗଣର ମନ ଜାତିଗଠନ ଓ ଆତ୍ମନିର୍ମାଣର ଆହ୍ୱାନ ଭୁଲି ଦିଲ୍ଲୀ-ଭବନରୁ ହେଉଥିବା ନାଲିଫିତାର ବରାଦ ଉପରେ ଅଧିକ ନିର୍ଭର କରି ବସିବା । ‘ଦିଲ୍ଲୀ ଚଲୋ’ର ଅଭିନୟ ପରେ ପ୍ରତ୍ୟେକ ଦେଶଭକ୍ତକୁ ନିଜର ବ୍ୟକ୍ତିଗତ ଜୀବନକୁ ଗଢ଼ି ତୋଳିବାକୁ ହେବ । କୁରୁକ୍ଷେତ୍ର ପରେ ଆଉ ଉଦ୍‌ଯୋଗ ପର୍ବର କି ଆବଶ୍ୟକତା ଅଛି ?

୧୧ । ୧୧ । ୪୬

ଆଜି ସକାଳେ କ୍ଲାସରେ ବସିଚି—ମେଘ ଘୋରାଘୋରା କରିଥାଏ, ହଠାତ୍ ସମସ୍ତ ଜଗତଯାତ୍ରାକୁ ଆଲୋକିତ କରି ସୂର୍ଯ୍ୟଦେବ ବାହାରି ପଡ଼ିଲେ । ଆଗରୁ ଯାହା ଦେଖାଯାଉ ନ ଥିଲା, ଆଲୋକର ଦର୍ପଣରେ ସେସବୁ ସୁସ୍ପଷ୍ଟ ହୋଇଗଲା । ଗଛର ଦୁଇ ଶାଖା ଭିତରେ କୋଉଠି ଅଳନ୍ଧୁର ଜାଲ ମାଡ଼ିଯାଇଚି, ବୁଢ଼ୀଆଣୀ କିପରି ଗଛକୁ ଗଛ ତାର ଖଞ୍ଜିଚି ସବୁ ଦେଖିପାରିଲି । ପତରଗୁଡ଼ାକ ସକାଳ ପବନରେ ସିରିସିରି କରୁଥାଏ । ଗୋଟାଏ ଅତି ସୂକ୍ଷ୍ମ ଫୁସ୍‌ଫୁସ୍ ଶବ୍ଦ ମଧ୍ୟ ଶୁଭୁଥାଏ,—ଗଛ ଗଛ ଭିତରେ ଆଉ କ’ଣ କେଉଁ ଅବ୍ୟକ୍ତ ଓ ବିଚିତ୍ର ଭାଷାରେ ବାକ୍‌ବିନିମୟ ଚାଲିଥାଏ କି ?

Comparative Religion କ୍ଲାସଟି ମହର୍ଷି ଦେବେନ୍ଦ୍ରନାଥଙ୍କର ତପସ୍ୟାସ୍ଥାନ ସପ୍ତପର୍ଣ୍ଣିର ମଣ୍ଡପଟି ଉପରେ ହେଉଚି । ଅଁଳା ଓ ଶାଳଗଛର ଛାଇ ମୋଟା ହୋଇ ପଡ଼ିଚି । ମଝିରେ ରହିଥିବା ଛତିଆନା ଗଛଦୁଇଟି ଆଶ୍ରମର ବୟୋବୃଦ୍ଧ ବୃକ୍ଷ, ସେଥିଲାଗି ପବିତ୍ର । ସେଥିରେ ପୁଣି କୋଉକାଳର ମାଳତି ଲତାଟିଏ ଆପଣାର ଫୁଲପତର ଗହଳି ନେଇ ଝୁଲିପଡ଼ିଚି । ଛୋଟ ପିଲାଙ୍କର ଦୋଳି ଖେଳିବାର ବଡ଼ ଆଡ୍‌ଡ଼ା ଏଇ ଜାଗାଟା । କ୍ଲାସ ନ ଥିଲେ ପିଲାଙ୍କର ଝୁଲଣା—ଜମାଏତ୍ ଏଇଠାରେ ଜମିଯାଏ ।

୧୨ । ୧୧ । ୪୬

କିଛିଗୋଟାଏ ନୀତିକଥା କହିଲେ ଅନେକେ କହନ୍ତି ମୁଁ କୁଆଡ଼େ ଗାନ୍ଧୀବାଦୀ ପାଲଟିଯାଉଚି । ମୁଁ ସୂତା କାଟେ, ଏଇ ହେଉଚି ସେମାନଙ୍କର ଏକମାତ୍ର ପ୍ରମାଣ । ମୁଁ ଅନ୍ଧ ଗାନ୍ଧୀବାଦୀ ତ କେବେହେଲେ ନୁହେଁ । କିନ୍ତୁ ଗାନ୍ଧୀକଥାରେ ଯାହାକିଛି ସତ୍ୟସମ୍ପଦ ରହିଚି, ସେଗୁଡ଼ିକ କେବଳ ମୋର କାହିଁକି, ବିବେକ ଥିବା ପ୍ରତ୍ୟେକ ମଣିଷର ଆରାଧନୀୟ । ଗାନ୍ଧୀବାଦ ଓ

ଅନ୍ୟାନ୍ୟ 'ବାଦ' ଭିତରେ ମୁଁ ଗୋଟାଏ ମୌଳିକ ପାର୍ଥକ୍ୟ ରହିଥିବାର ଦେଖିବାକୁ ପାଏ । ସଚ୍ଚା ଗାନ୍ଧୀବାଦୀ ନିଜର ରାସ୍ତାକୁ ଚିହ୍ନେ, ନୀରବରେ ଆପଣା କାମ କରିଯାଏ; ଇତରର ବାଦ ବା ଚିନ୍ତାଧାରାର ଭୁଲ୍‌ଠିକ୍ ବିଗ୍ଭର କରିବାକୁ ସେ କେବେହେଲେ ଯାଏ ନାହିଁ । କିନ୍ତୁ ଅନ୍ୟାନ୍ୟ 'ବାଦ'ର ଅନେକ ବ୍ୟକ୍ତିଙ୍କୁ ମୁଁ ଦେଖିଚି, ସେମାନେ କେବଳ ଅନ୍ୟ ବିରୁଦ୍ଧ ମତବାଦଗୁଡ଼ିକୁ ଖଣ୍ଡନ କରିବାରେ ହିଁ ଅଧିକ ଧୁରନ୍ଧରତା ଦେଖାଇଥାନ୍ତି । ସେମାନଙ୍କର ଖବରକାଗଜ, ପତ୍ରପତ୍ରିକା, ପୁସ୍ତକ ଓ ପ୍ରଗ୍ଭରପତ୍ରରେ ପ୍ରଧାନତଃ ଅନ୍ୟର ଭୁଲ୍‌ଗୁଡ଼ାକୁ ଦେଖାଇ ତାହାରିଦ୍ୱାରା ଆପଣାର ଅସ୍ତିତ୍ୱ ପ୍ରମାଣ କରିବାର କଳାଗ୍ଭେରି ଉପାୟ ଅବଲମ୍ବନ କରାଯାଉ ଥିବାର ଦେଖାଯାଏ । ଅନ୍ୟର ଶୁଭ୍ରତାକୁ ଧୂସର କରି ସେମାନେ ଆପଣାର ଗ୍ଲାନି ଓ ମଳିନତାଗୁଡ଼ାକୁ ସିଦ୍ଧ କରିଦେବାକୁ ଗ୍ଭହାନ୍ତି । କିନ୍ତୁ ଗାନ୍ଧୀବାଦୀ ଜାଣେ ଯେ ଗୌରୀଶଙ୍କର ତା'ର ନିଜର ପ୍ରତିଭା ଓ ପ୍ରଶାନ୍ତତାରେ ହିଁ ବଡ଼, ଶୂନ୍ୟ ହିଁ ତା'ର ଭୂଷଣ ।

ମଣିଷର Conscious ଓ Unconscious ଭିତରେ ଯଦି କୌଣସି ବିରୋଧ ନ ଥାନ୍ତା, ତେବେ ତା'ର ଜୀବନ ନିଷ୍ଚୟ ଅଧିକ ପରିପୂର୍ଣ୍ଣ ହୋଇଥାନ୍ତା । ଯୋଗୀମାନଙ୍କର ବୋଧହୁଏ ସେଇଆ ହୁଏ । ଆମେରିକାରେ ଥିଲାବେଳେ ସ୍ୱାମୀ ବିବେକାନନ୍ଦ ସ୍ୱପ୍ନାବସ୍ଥାରେ ମଧ୍ୟ ଭାରତର ବିକଳ ଦାରିଦ୍ର୍ୟରୂପ ସ୍ମରଣ କରି ପ୍ରଳାପ କରି ଉଠୁଥିଲେ ।

୧୩ । ୧୧ । ୪୬

ଦେଶର ଅନ୍ୟତମ ଆଗ୍ଭର୍ଯ୍ୟ କୁଳବୃଦ୍ଧ ମଦନମୋହନ ମାଲବ୍ୟ କାଲି ସ୍ୱର୍ଗଧାମକୁ ପ୍ରୟାଣ କଲେ । ଭାରତୀୟ ଜାତୀୟ ଇତିହାସର ମଧ୍ୟଯୁଗର ସେ ସମ୍ଭବତଃ ଶେଷ ପ୍ରତିନିଧି ଥିଲେ । ହିନ୍ଦୁଧର୍ମ ଓ ହିନ୍ଦୁଜାତିର ପ୍ରାଣକୁ ସେ ଠିକ୍‌ଭାବରେ ଚିହ୍ନିପାରିଥିଲେ । ହିନ୍ଦୁଜାତିର ସେବାଲାଗି ସେ ନିଜର ଜୀବନ ଉତ୍ସର୍ଗ କରିଦେଇଥିଲେ । ଭାରତୀୟ ସଂସ୍କୃତିର ଏକ ଆଦର୍ଶ ପୀଠ ବନାରସ ବିଶ୍ୱବିଦ୍ୟାଳୟ ତାଙ୍କରି କୀର୍ତ୍ତି । ହିନ୍ଦୁର ପବିତ୍ର ମନୁଷ୍ୟତାବୋଧ ଫେରିଆସୁ, ହିନ୍ଦୁ ତା'ର ଦେଶ, ତା'ର ଗୌରବମୟ ଇତିହାସ ଓ ତା'ର ସନାତନ ସଂସ୍କୃତିରେ ଗୌରବାନ୍ୱିତ ଅନୁଭବ କରୁ, ଏହା ହିଁ ତାଙ୍କର ଅଭିଳାଷ ଥିଲା । ନୋଆଖାଲିର ଅମାନୁଷିକ ହତ୍ୟାକାଣ୍ଡ ତାଙ୍କୁ କେତେଥର କନ୍ଦାଇଥିଲା; ବୋଧହୁଏ ସେହି ଦାରୁଣ ଦୁଃଖଦାଗ ତାଙ୍କର ମୃତ୍ୟୁକୁ ନିକଟତର ବି କରିଦେଲା । 'ମହାତ୍ମାଗାନ୍ଧୀ' ଓ 'ଜବାହରଲାଲ'—ଏହା ହିଁ ତାଙ୍କର ମୃତ୍ୟୁକାଳୀନ ଶେଷ ମର୍ମବାଣୀ ଥିଲା ।

୧୪ । ୧୧ । ୪୬

ଏ ଯୁଗଟା ଖାଲି ଅବିଶ୍ୱାସର ଯୁଗ । ଖାଲି ଅବିଶ୍ୱାସ ଓ ଯୁଦ୍ଧ ଜିତିବା ଉପରେ ହିଁ ପ୍ରତ୍ୟେକ ରାଜନୀତିକ ଦଳ ତିଷ୍ଠି ରହିଚି । ତେଣୁ କୌଣସି ପାର୍ଟିର

ଅଚଳାୟତନ ଭିତରେ ମୋ'ପରି ଗୋଟାଏ ଫୁଙ୍ଗୁଳା ଓ ଖାପଛଡ଼ା ମଣିଷର ଅନଧିକାର ପ୍ରବେଶ ଆଦୌ ଶୋଭନୀୟ ହେବ ନାହିଁ । ତଥାପି ମୋର ଦୃଢ଼ ବିଶ୍ୱାସ ଯେ ଆମେ ହିଂସାରେ ବେଶୀଦୂର ଆଗେଇ ପାରିବା ନାହିଁ । ଭାଙ୍ଗିବା ସଙ୍ଗେସଙ୍ଗେ ଗଢ଼ିବାର ତପସ୍ୟା ନ ଥିଲେ ସବୁ କେବଳ ମାଙ୍କଡ଼ ଖେଳ ପରି ହାସ୍ୟାସ୍ପଦ ହୋଇପଡ଼େ । ସମସ୍ତେ କହୁଚନ୍ତି, ଆମେ ସ୍ୱାଧୀନତା ହାସଲ କରି ସାରିଲୁଣି । ମୁଁ କହିବି, ଅସଲ ସ୍ୱାଧୀନତାର ଉଦ୍‌ଯୋଗ କରିବା ପାଇଁ ଆମେ ଏବେ ପ୍ରଥମ କ୍ଷେତ୍ରଟି ହିଁ ପାଇଚୁ । ଏହି କ୍ଷେତ୍ରଟି ଉପରେ ନିଜର ଚିରକଳ୍ପିତ ରୁଚିର ଭାରତର ଛବିଟି ଆଙ୍କିବାକୁ ହେବ । ଏଠି ପ୍ରତ୍ୟେକ ମଣିଷଲାଗି ତା'ର ମନୁଷ୍ୟତାବୋଧ ଫେରାଇ ଆଣିବାକୁ ହେବ । ଏଠି ନେତାର ହସ୍ତକ୍ଷେପ ବା ରାଜନୀତିର ଗ୍ଲାନ୍‌ଖେଳ ଆଦୌ ସୁନ୍ଦର ନୁହେଁ । ଭାରତୀୟ ସ୍ୱାଧୀନତା ପଛରେ ସେହି ଆତ୍ମା ଓ ମନୁଷ୍ୟତାର ଉଦ୍‌ବୋଧନ ରହିଚି । ଗାନ୍ଧୀ, ରବୀନ୍ଦ୍ରନାଥ ଓ ଅରବିନ୍ଦ ଏଇମାନେ ହେଉଚନ୍ତି ଏହି ଦେଶର ଯଥାର୍ଥ ବାଣୀ । 'ଈଶାବାସ୍ୟମିଦଂ' ମନ୍ତ୍ରଟି ହେଉଚି ଏ ଦେଶର ରାଜଯୋଗ । ଗୋଟାଏ ଗାନ୍ଧୀ ଆଜି ଭଳୁଆ ପରି ସେହି ଆତ୍ମସନ୍ଧାନର ଆହ୍ୱାନ ଦେଇ ଭୁକି ହେଉଚି, କିନ୍ତୁ କିଏ ବୁଝୁଚି ? ତା'ର ଅହିଂସା ଓ ସଦାଶୟତା ତ ସବୁ ଚୂଲୀକୁ ଯିବାକୁ ବସିଲାଣି ।

ଗାନ୍ଧୀକଥାରେ 'ଜୟ ହିନ୍ଦ୍'ର ଜ୍ୱଳନ ବା ଝଞ୍ଜାଳ ନାହିଁ । କାରଣ ସେ ଜୀବନର ସାର ନାଡ଼ୀଟିକୁ ଚିହ୍ନିଚି । ସେଇଥିଲାଗି ସେ ଜୀବନ ଉତ୍ସର୍ଗ କରି ବାହାରିଚି । ଭଗବାନଙ୍କର ବାଣୀବହନ କାର୍ଯ୍ୟରେ ସେ ଏହି ସ୍ୱାଧୀନତା-ଯୁଦ୍ଧକୁ ସାଧନ କରି ଧରିଚି । କିନ୍ତୁ ସମସ୍ତେ ଯେ Democracy ଓ Total Mobilisation ନେଇ ବ୍ୟସ୍ତ, ତା'ର ରାମରାଜ୍ୟର ଖବର ବୁଝୁଚି କିଏ ? ମାତ୍ର ଗାନ୍ଧୀକୁ ଛାଡ଼ି, ଆମେ ଧନ, ସୁଖ ଓ ସୁନାମ ପାଇବା ସିନା, କିନ୍ତୁ ଭାରତର ଅସଲ ପ୍ରାଣବସ୍ତୁଟିକୁ ହରାଇ ବସିବା । ଆମ ଭାଗ୍ୟରେ କ'ଣ ଅଛି କେଜାଣି ? ମଣିଷକୁ ମେଣ୍ଢା କରିବାର ଏହି ଷଡ଼ଯନ୍ତ୍ର ଆମକୁ କୁଆଡ଼କୁ ନେବ କେଜାଣି ?

କର୍ମୀ ଯେଉଁ ଆଦର୍ଶ ସମାଜର କଳ୍ପନା କରୁଚି, ସିଏ ନିଜେ ସେହି ସମାଜର ନାଗରିକ ଭାବରେ ନିଜକୁ ପ୍ରସ୍ତୁତ କଲାଣି କି ? ତେବେ ଲୋକର ଆଦର୍ଶ ହେବ କିଏ ? କାରିଗରର ଆନ୍ତରିକତା ଉପରେ ହିଁ ମୂର୍ତ୍ତିର ଶ୍ରୀମନ୍ତତା ନିର୍ଭର କରେ । ଯିଏ ହରିଜନ-କର୍ମୀ, ସେ ନିଜେ ମଧ୍ୟ ହରିଜନ ରହି ଉପରର କୃପାଜନିତ ଅବଶେଷଟିକକ ପାଇବାକୁ ବ୍ୟାକୁଳ, ତେବେ ହରିଜନକୁ ମଣିଷ କରିବ କିଏ ? ଖାଲି ରାଜନୀତି ଓ ମେଣ୍ଢା ଅଡ଼ାଇବାର ଦୃଷ୍ଟାଗ୍ରହ ହେତୁ ଲୁଷିଆର ମଣିଷ ଆଜି କଳକବ୍‌ଜା ସହିତ ସମାନ ହୋଇ ବସିଚି । ସେଇଠି ଭାରତର ବାଣୀ,—Apparent ଭିତରେ Immanentକୁ ଚିହ୍ନିରଖିବା ହେଉଚି, ଭାରତବର୍ଷର ସାଧନା । ଏହି ସନ୍ଦେଶଟି ବିଶ୍ୱଦାଣ୍ଡରେ ଦେଇପାରିବାଲାଗି

ଆମର ମୁକ୍ତି-ଆନ୍ଦୋଳନ, ଆମର ମଣିଷ ହେବାର ପ୍ରୟାସ । ଜେଲର ସେହି ପୁନର୍ଜନ୍ମକୁ ମୁଁ ଛାଡ଼ିପାରୁ ନାହିଁ, ସେହି ସ୍ୱ-ଆବିଷ୍କୃତ ଧର୍ମକୁ ଛାଡ଼ି ମୁଁ ଉଚ୍ଛନ୍ନ ହେବାକୁ ଚାହୁଁ ନାହିଁ ।

୧୫ । ୧୧ । ୪୬

ଉଠିବାକୁ ଡେରି ହୋଇଯାଉଚି । ତଥାପି ମୁଁ ଗାଧୋଇସାରି ସବୁଦିନ ସୂର୍ଯ୍ୟୋଦୟ ଦେଖିବାକୁ ପାଉଚି । ଅନ୍ଧାର ଭିତରେ ହଠାତ୍ ଏକ ସୁନେଲି ସମୁଦ୍ର ଭିତରୁ ଲୋହିତ ଗୋଲାପ ପରି ଦିନମଣି ବାହାରି ଆସୁଚନ୍ତି । ସେଇ କିରଣରେଖାଜାଲର ପ୍ରଥମ କିଏ ବା ଶେଷ କିଏ, ସେକଥା ନିର୍ଣ୍ଣୟ କରିବାର ଅବସର ନ ଥାଏ । ଖାଲି ଆଖି ଝଲସିଯାଏ, ମନ ପଘା ଛିଡ଼ାଇ ସେଇ ଦୂରକୁ ଦଉଡ଼ିଯାଏ, ଯେଉଁ ଅଳକାପୁରୀର ବାସର ମଞ୍ଚରେ ଏହି ଲୀଳା ପର୍ବ ଚାଲିଚି । ସବୁଦିନ ମୁଁ ଘଡ଼ିଏକାଳ ଖାଲି ନିଷ୍ପନ୍ଦ ବିସ୍ମୟରେ ଅନାଇରହେ, ଦେଖେ କିପରି ଅନ୍ଧାର ଓ ଅସ୍ପଷ୍ଟତା ଭିତରେ ବିରାଟର ପ୍ରତ୍ୟକ୍ଷ କରାଇ ଆଲୋକର ବନ୍ୟା ସମସ୍ତ ଜଗତ ଭସାଇଦିଏ । ସେହି ନୂତନ ସାକ୍ଷାତର ସ୍ପର୍ଶରେ ସମସ୍ତ ଶରୀର କମ୍ପିଉଠିଲା ପରି ଲାଗେ । କିଏ ସେହି ଉତ୍ସବର ଦାଣ୍ଡରେ ରହି ଖେଳୁଥାଏ, କିଏ ସେହି କ୍ରୀଡ଼ାରତ ବାଳକ, ନିତି ଉଦୟାସ୍ତର ପାଲା ଭିଆଇ ତଥାପି କ'ଣ ତା'ର ଖେଳିବାର ସାଧ ମେଣ୍ଟୁ ନାହି ? ଆଲୋକ ତ ଆସୁଥାନ୍ତା, ରାତି ଯାଉଥାନ୍ତା । କିନ୍ତୁ ସବୁଦିନେ ଏପରି ରଙ୍ଗର ଉତ୍ସବ ସୃଷ୍ଟି କରିବାରେ ତା'ର କି ରସିକତା ରହିଚି ? ସେଇ ଆଲୋକର ଆଗମନୀ ଜଣାଇ ପକ୍ଷୀ କାହିଁକି ଡାକେ, ସକାଳର ପବନ ଏପରି ଶିର୍ ଶିର୍ କରି ଆପଣା ଜୀବନର ସକଳ କ୍ଷେତ୍ରକୁ ଏପରି ଜଗାଇ ଦେଇଯାଏ କାହିଁକି ? କାହାପାଇଁ ? ଖାଲି ସଂସାରଟାକୁ ନେଇ କ'ଣ ଏ ମଣିଷ ଚଳିପାରନ୍ତା ନାହିଁ ? ତା'ଲାଗି କ'ଣ ଏହି ରଙ୍ଗରାଗର ନିୟତ ରୂପାୟନ ଅତ୍ୟାବଶ୍ୟକ ? ମୁଁ କିଛି ବୁଝିପାରେ ନାହିଁ ।

ମୁଁ ଖାଲି ଭାବୁଥାଏ, ଜଗତର ଏତେ ଅନ୍ଧାରକାଳିମାକୁ ଫୁଟାଇ ପାରୁଚି ଯେଉଁ ଆଲୋଡ଼ନ ଓ ଯେଉଁ ଆଲୋକ, ତାକୁ କିପରି ମୋର ହୃଦୟ ଉପରକୁ ମୁହାଁଇ ଦେଇପାରନ୍ତି କି ! ଜୀବନର ସବୁ ଗ୍ଲାନି, ସମସ୍ତ କଳୁଷ ଧୋଇ ହୋଇଯାଆନ୍ତା । ଆଲୋକର ଦର୍ପଣ ଉପରେ ମୁଁ ଆପଣାର ପରିଚୟ ପାଆନ୍ତି, ନିଜର ନଗ୍ନ ଓ ନିରାଭରଣ ସୌନ୍ଦର୍ଯ୍ୟରେ ଗୌରବାନ୍ୱିତ ହୋଇପାରନ୍ତି !

୧୮ । ୧୧ । ୪୬

ତଥାପି ଛାଡ଼ିପାରୁ ନାହିଁ, ତଥାପି ଏହି ଜଗତରୁ ନିର୍ଲିପ୍ତ ରହିପାରୁ ନାହିଁ । କୋଉଠିକାର ଏତେ ଟିକିଏ ସ୍ନେହ, କୋଉଠି ଗୋଟାଏ ମୁହୂର୍ତ୍ତର

ମଧୁର ସ୍ମୃତି ଓ ମୁଗ୍ଧ ମାୟା ଯେପରି ମୋତେ ଅଗାଧ ଭାବରସରେ ବୁଡ଼ାଇ ରଖୁଚି, ସେହିସବୁର ଚିହ୍ନ ଦେଖାଇ କିଏ ଯେପରି ମୋତେ ପଛରୁ ଟାଣୁଚି । ମଣିଷର ଚମମାଂସ ଭିତରେ ସ୍ନେହ ଓ ଶ୍ରଦ୍ଧାରେ ନୁଆଁଇଦେଇ ପାରିବାର ଏହି ଅଦ୍ଭୁତ ଶକ୍ତି କୋଉଠି ଲୁଚି ରହିଚି କେଜାଣି ? ଜଗତ ସ୍ନେହମୟ, ସୁଖମୟ ଓ ସ୍ମୃତିବହୁଳ; ସେହି ସ୍ନେହ, ସୁଖ ଓ ସ୍ମୃତିର ମଣ୍ଡନ ପିନ୍ଧି ଜଗତରେ ବାଟ ଚାଲିବାକୁ ହେବ, ଆପଣା ମାୟାମମତାର ଚେରକୁ ମାଟି ଭିତରେ ବିସ୍ତୃତ କରି ରଖିବାକୁ ହେବ । କିନ୍ତୁ ମାଟି ଯେପରି ନିଜର, ଆକାଶକୁ ମଧ୍ୟ ସେହିପରି ନିଜର କରିବାକୁ ହେବ । ମାଟିର ମୋହରେ ଯଦି ଗଛ ଆକାଶକୁ ଭୁଲିଯାଏ, ବା ଆକାଶ ଭିତରକୁ ମସ୍ତକ ପ୍ରସାରି ରଖିବାର ବ୍ୟାକୁଳତାରେ ଯଦି ସେ ମାଟିକୁ ଭୁଲିଯାଏ, ତେବେ ତାହା ଅତି ଏକପାଖିଆ ହୋଇଯିବ । ଏହିକଥା ମୋତେ କେହିଜଣେ ସବୁବେଳେ ମନେପକାଇ ଦିଅନ୍ତା କି ?

ନା,—ଆଉ ଭାବିବି ନାହିଁ । ସବୁବେଳେ ସବୁ କଥାର ଭଲମନ୍ଦ ବିଚାରି ନିଜକୁ ଜଗତ ପାଖରେ ଆଉ ଅଛୁଆଁ କରି ରଖିବି ନାହିଁ । ମୋ ନିଜର କାମ ମୁଁ କରିଯିବି । ତାହା ହିଁ ମୋର ଶିକ୍ଷାକ୍ଷେତ୍ର, ସେଇଥିରେ ହିଁ ମୋର ଆନନ୍ଦ ।

୧୯ । ୧୧ । ୪୬

ଶୀତଦିନର ସକାଳ ଯେମିତି, ସଞ୍ଜ ମଧ୍ୟ ସେମିତି । ସକାଳ ଓ ସଞ୍ଜର ଏତେଦୂର ସ୍ପଷ୍ଟ ସ୍ଫୁଟନ ମୁଁ ଆଗରୁ କେବେହେଲେ ଦେଖି ନ ଥିଲି । ଏଠି ଦିଗ୍‌ବଳୟଟି ପ୍ରାୟ ଗୋଟିଏ ନିଖୁଣ ସରଳରେଖା ପରି । ସେଇଥିପାଇଁ ଅସ୍ତଗାମୀ ସୂର୍ଯ୍ୟଙ୍କର ବିଦାୟ ଉତ୍ସବଟି ଏଠି ଖୁବ୍ ଭଲଭାବରେ ଦେଖିବାକୁ ମିଳେ । ଆତ୍ମହରା ହେଲାପରି ଏକୁଟିଆ ପଡ଼ିଆ ଭିତରେ ମୁଁ ଅନାଇ ରହିଥାଏ, ପଲକ ମାତ୍ରକେ ଏତେ ଆଲୁଅକୁ କୁଆଡ଼େ ଅପସରାଇ ନେଇ ଅନ୍ଧାର ମାଡ଼ିଆସେ । କୁଆଡ଼େ ଯାଏ ସେ ରକ୍ତତରଙ୍ଗ, କୁଆଡ଼େ ଯାଏ ସେ ଲାଲ ଟହଟହ ସୂର୍ଯ୍ୟ । ବିଦାୟ ବେଳର ତା'ର ସେ କି ଆନନ୍ଦ, କି ସ୍ନେହଆନତ ଦୃଷ୍ଟି ! ଖେଳ ଶେଷରେ ଏହିପରି ପ୍ରସନ୍ନମନରେ ବିଦାୟ ନେବା, ଏଇଟା ହେଉଚି ପ୍ରକୃତିର ନିଜସ୍ୱ ।

ତା'ର ସଙ୍ଗୀତ ଓ ତା'ର କଣ୍ଠର ଧ୍ୱନି ଶୁଣିବାକୁ ପାଇଲେ ମୁଁ ପାଗଳ ହୋଇଯାଉଚି, ପୁଣି ତା'ର ନୀରବତା ମଧ୍ୟ ମୋତେ ପାଗଳ କରୁଚି । ଏହି ଅନନ୍ତ ଶୂନ୍ୟ ଭିତରେ ଯେତେବେଳେ ସବୁ ନିସ୍ପନ୍ଦ ହୋଇଯାଉଚି, ସେତେବେଳେ ମୋର ପିଞ୍ଜରା ତଳେ ଶତ ଆଘାତ ଦେଇ ସେ ମୋତେ ଜଗାଇ ରଖୁଚି । କେଡ଼େ ଆକୁଳତା, କେଡ଼େ ଆନ୍ତରିକତା ସେହି ଆଘାତ ଭିତରେ ! ମୁଖର ବା ନୀରବ, ନୃତ୍ୟରତ ବା ନିଶ୍ଚଳ, ଯେତେବେଳେ ହେଉ-ପଛକେ, ତା'ର ସେହି ଆହ୍ୱାନ ନିତ୍ୟ-ଅବାରିତ, ତା'ର ଉଦ୍‌ବୋଧନ ଚିରନ୍ତନ ।

ମଣିଷ ତା'ର କେଡ଼େ ଆପଣାର, ମଣିଷକୁ ସେ କେଡ଼େ ଭଲପାଏ ! ପୁଣି ଯିଏ ତାକୁ ଚିହ୍ନି ନେଇପାରେ, ଆପଣାର ଶରୀର ଭିତରେ ତାହାରି ଶିହରଣର ଅନୁଭୂତି ପାଏ, ସିଏ ନିରାକାର ବା ସାକାର ନେଇ କଳ୍ପିଆ କରିବସେ ନାହିଁ, ସିଏ ଖାଲି ଆତ୍ମହରା ହୁଏ, ତା'ରି ସିଂହାସନ ପାଖରେ ଯାଇ ହାଜର ହେବାକୁ ସେ ଉଚ୍ଛନ୍ନ ହୋଇଉଠେ । ଆଜିର ଏହି ଶୂନ୍ୟତା ଓ ନୀରବତା ବି ମୋତେ ଚହଲାଇ ଦେଉଚି, ଜୀବନକର୍ମର ଧର୍ମକ୍ଷେତ୍ରରେ ଆପଣା ପ୍ରବାହଟିକୁ ଅଜାଡ଼ି ଦେବାଲାଗି ଯେପରି ସେ ମୋ ଭିତରେ କେତେ ଉତ୍ସାହ ଓ ଅନୁରାଗ ଭରିଦେଇ ଯାଉଚି । ଶାଶ୍ୱତ ଶୋଭାର ଏହି ସହସ୍ର ଆଧାର ଯେପରି ସମସ୍ତେ ତାହାରି ଚିଠି, ତାହାରି ଚିଟାଉ ନେଇ ମୋ ପାଖକୁ ଆସିଚନ୍ତି । ମୋ'ଭିତରର ମଣିଷକୁ ନିଖିଳ ଭୁବନ ଭିତରେ ଜଗାଇଦେଇ ଯାଇଚନ୍ତି ।

୨୩ । ୧୧ । ୪୬

ଆରବର ଜଣେ ଦାର୍ଶନିକ କବି ଗୋଟିଏ କବିତାରେ ଲେଖିଚନ୍ତି ଯେ ସ୍ୱର୍ଗ ହେଉଚି ନଅଟି । ଆଠୋଟି ହେଉଚି ବହିର୍ଜଗତରେ, କିନ୍ତୁ ନବମ ସ୍ୱର୍ଗଟି ହେଉଚି ମଣିଷର ମନସାମ୍ରାଜ୍ୟ ଭିତରେ । ଯିଏ ଏହି ନବମ ସ୍ୱର୍ଗଟିକୁ ପାଇଚି, ଅର୍ଥାତ୍ ନିଜକୁ ଯିଏ ବିଶ୍ୱପ୍ରାଣର ଅଂଶରୂପେ ଚିହ୍ନିନେଇ ପାରିଚି, କେବଳ ସେହି ଅନ୍ୟ ଆଠୋଟିଯାକ ସ୍ୱର୍ଗର ସୁଧା ଲାଭ କରିପାରିବ ।

ଜଗତରେ Real କିଏ ଆଉ Unreal କିଏ, ଏହି ଦ୍ୱନ୍ଦ୍ୱଭିତରେ ମୁଁ ପଡ଼ିଯାଇଚି । ପ୍ରତ୍ୟେକ ବସ୍ତୁ ଓ ପ୍ରତ୍ୟେକ ପ୍ରାଣରେ ମୁଁ Reality ର ସ୍ପନ୍ଦନ ପାଇଚି, ସମସ୍ତଙ୍କୁ ସେହି ସତ୍ୟର (ସେଇ ଶିବ ଓ ସେଇ ମଧ୍ୟ ସୁନ୍ଦର) ଗୋଟିଏ ଗୋଟିଏ ଅଗ୍ନିରେଣୁ ପରି ଅନୁଭବ କରିଚି । ଏଇ ଗଛ, ଏଇ ଫୁଲ, ଏହି ପବନ ଓ ରାତ୍ରିଆକାଶର ଏହି ଧ୍ୟାନରତ ତପସ୍ୱିମଣ୍ଡଳ,—ଏମାନେ ସମସ୍ତେ ମୋ'ର ପ୍ରାଣଭିତରେ ରହିଥିବା Reality ର ପ୍ରବାହକୁ ଚଞ୍ଚଳ କରି ପକାଉଚନ୍ତି । ଆଉ ମଣିଷ,—ଏଇ ମଣିଷସମାଜ ମଧ୍ୟ ସ୍ୱର୍ଗୀୟ ଜୀବନର ଏକ ପ୍ରତୀକ । ଏତେ ଚେତନା, ଏତେ ସୌନ୍ଦର୍ଯ୍ୟ ଓ ଏତେ ରସ ଆଉ ଅନ୍ୟ କେଉଁ ସାମ୍ରାଜ୍ୟରେ ରହିଥିବ ବୋଲି ମୁଁ କଳ୍ପନା କରିପାରୁ ନାହିଁ ।

...ମୋର ରୁଗ୍ଣତା ଯଦି ମୋର ଚିରସାଥୀ ହୋଇ ରହିବାକୁ ଚାହେଁ, ତେବେ ସେଇ ଦେହକୁ ନେଇ ସେ ପଡ଼ିରହୁ । ମୋର ମନ, ମୋର ଆତ୍ମା ଓ ବିଶ୍ୱମିଳନ ଲାଗି ମୋର ବାସନା ସହିତ ମୁଁ ତା'ର କୌଣସି ସମ୍ପର୍କ କରାଇଦେବି ନାହିଁ । ଆଉ ସେକଥାକୁ ମନରେ ପୂରାଇବି ନାହିଁ । ମନର ଦୁର୍ବଳକ୍ଷେତ୍ର ନ ପାଇଲେ ସେ ଆଉ କେତେଦିନ ମୋର ଦେହକୁ କବଳିତ କରି ରଖିପାରିବ ? ଦିନେ ତାକୁ ନିରାଶ ହୋଇ ଫେରିଯିବାକୁ ପଡ଼ିବ ।

...ମୁଁ କେବଳ ମୋ'ରି ବିଷୟରେ ଭାବୁଚି । ମୋ'ରି ଶାନ୍ତି, ମୋ'ରି ବିକାଶ ମୋର ଏକମାତ୍ର ଚିନ୍ତାସାମଗ୍ରୀ ହୋଇ ରହିଚି । ସେଥିପାଇଁ ଏ ଅଶାନ୍ତି, ଅସନ୍ତୋଷ ଓ ଚଞ୍ଚଳତା । ମୁଁ ତା'ରି କାମ କରୁଚି, ତା'ରି ସନ୍ଦେଶ ବହନ କରୁଚି,—ଏଇ ହେଉଚି ସବୁ ଶାନ୍ତି ଓ କର୍ମସନ୍ତୋଷର ଗ୍ଵବି । ଫଳାଫଳ ନେଇ ଆଉ ସମୟକୁ ବୁହାଇ ଦେବି ନାହିଁ, ଫୁଲଟି ପରି ମୁଁ ଆପଣା ରୀତିରେ ଫୁଟି ଉଠିବି ।

୨୫ । ୧୧ । ୪୬

ମୁଣ୍ଡବଥାଟା ଗତ କେତେଦିନ ହେଲା ସତେଅବା ଚିରସ୍ଥାୟୀ ହୋଇ ରହିଲାଣି । ମୋର ଜୀବନ ଉପରେ ଏହି ଖେଳ ଖେଳିବାକୁ ଯଦି କାହାର ଆଗ୍ରହ ହୋଇଚି, ତେବେ ମୋତେ ମୋର ଦୈନନ୍ଦିନ କାର୍ଯ୍ୟ କରିବାକୁ ଛାଡ଼ିଦେଇ ସେ ତା'ର ଖେଳ ଖେଳିବ ନାହିଁ କାହିଁକି ?

ଶୀତ ସକାଳ ଏଡ଼େ ମଧୁମୟ ବୋଲି ମୁଁ ଆଗରୁ କେବେ ଅନୁଭବ କରି ନ ଥିଲି ! ରାତ୍ରି ଶେଷର ବିରାଟ ତପସ୍ୱୀ ସେହି ପୂର୍ବଗଗନକୁ ଭେଦ କରି କେତେ କଥା ଓ କେତେ ଆଲୁଅ ଏକାବେଳେକେ ଉକୁଟି ଉଠୁଚି । ମୁଁ କେବଳ ମୁଗ୍ଧ ହୋଇ ଗ୍ୱହିଁ ରହୁଚି । ଆମର ଏତେ ନିକଟରେ ଏତେ ରତ୍ନ, ଏଡ଼େ ସୁନ୍ଦର ଏହି ସୃଷ୍ଟି ରହିଚି, ଅଥଚ ତାକୁ ଆମର ଜ୍ଞାନ ଓ ଅନୁଭବର ଅନ୍ତରାଳରେ କିଏ ରଖିଦେଇଚି କେଜାଣି ? ଏଥିଲାଗି ଦୋଷୀ କିଏ ? ବୋଧହୁଏ ଆମର ମନ, ଆମର ଚିନ୍ତାଧାରା, ଯାହାକି ନିଜର ଯୁକ୍ତି ଓ ହିତାହିତର ବାଡ଼ବତା ଦେଇ ଭିତରର ଆତ୍ମା, ଭିତରର ସାରଟିକୁ ଘ୍ୱପିକରି ରଖୁଚି । ସେହି ନକ୍ଷତ୍ରକୁ କିଏ ବିଜ୍ଞାନସିଦ୍ଧ ଯନ୍ତ୍ରବତ୍ ଗୋଲକ ବ୍ୟତୀତ ଆଉକିଛି ହୋଇଥିବ ବୋଲି ଭାବିପାରୁ ନାହିଁ, ପୁଣି କିଏ ତାକୁ ଅନନ୍ତ ସୃଷ୍ଟିର ଆଲୋକମାଳା ବୋଲି ଅନୁଭବ କରୁଚି । ପ୍ରକୃତି ରହିଚି, କିନ୍ତୁ କାହାର ଆଖି କାଦୁଅ ଉପରେ ଓ ପୁଣି ଆଉ କାହାର ଆଖି ଆକାଶର ନକ୍ଷତ୍ର ଉପରେ ଯାଇ ପଡ଼ୁଚି । ଏସବୁ କେବଳ ମନ ଓ ମଣିଷର ବୈଚିତ୍ର୍ୟ ଲାଗି ନୁହେଁ ତ ଆଉ କ'ଣ ? ମାଇମସଲା ଅସରନ୍ତି ପଡ଼ିଚି, ଅସଲ କାରିଗର ହିଁ ତା'ର ଯଥାର୍ଥ ଉପଯୋଗ କରିପାରୁଚି ।

୨୬ । ୧୧ । ୪୬

Waldo Emerson କହିଚନ୍ତି : God comes without a bell,— ଭଗବାନ ଜୀବକୁ, ଅର୍ଥାତ୍ ତାଙ୍କର ସୃଷ୍ଟିକୁ ଭଲ ପାଆନ୍ତି । ଆପଣାର ସୃଷ୍ଟି ଭିତରଦେଇ ସେ ଆପଣାର ପରିଚୟ ପାଇବାକୁ ଆସନ୍ତି । ଗୋପନପ୍ରଣୟୀ ପରି ଆସନ୍ତି ପ୍ରଣୟିନୀର ଅଶ୍ରୁ ଓ ଅପେକ୍ଷାକୁ ସାର୍ଥକ କରି; ତାଙ୍କର ଆଗମନପଥରେ କୌଣସି ଘଣ୍ଟା ବାଜେ ନାହିଁ । ଯିଏ ନିଜକୁ ଅନୁକୂଳ କରି ରଖିବ, ସେହି

ତାଙ୍କର ପ୍ରତିଷ୍ଠାରେ ପୁରୋଧା ହୋଇପାରିବ । ପ୍ରଣୟିନୀ ସାଜିଲେ ପ୍ରଣୟୀକୁ ଆସିବାକୁ ହିଁ ପଡ଼ିବ, ତାକୁ ଏଡ଼ିଦେଇ ସେ କଦାପି ଚାଲିଯିବ ନାହିଁ । ତେଣୁ ଦୁଆର ସବୁବେଳେ ଖୋଲା ରହିଥିବା ଉଚିତ ।

୧୦ । ୧୨ । ୪୬

ମୁଁ ହାତରେ ଧରି ରଖିବାକୁ ଚାହେ ନା । ଚକ୍ଷୁ, ଶ୍ରୁତି ଓ ସ୍ପର୍ଶ ଭିତରେ ତୁମକୁ ମୁଁ ବାନ୍ଧିରଖିବାକୁ ଚାହେ ନା । ସାନ୍ତ୍ୱନା, ଶାନ୍ତି, ସମ୍ପଦଲାଭ ଓ ସର୍ଗଗୌରବର ଅଭିମାନ, ସେ ମୋର ନୁହେଁ । ମୋତେ ଖାଲି ଏତିକି ବଳ ଦିଅ; ତୁମେ ଯେ ଅଛ, ମୁଁ ସବୁବେଳେ ଏହି କଥାଟି ଅନୁଭବ କରିପାରେ । ସକାଳର ସୂର୍ଯ୍ୟ, ଦିନମାନର ଜୀବନବହୁଳ ଚଞ୍ଚଳତା, ସନ୍ଧ୍ୟାର ରଙ୍ଗଝଲମଲ ଛବି, ଏସବୁ ମୋତେ ନିରନ୍ତର କହି ଦେଉଥାଉ ଯେ ଏଠି ମୁଁ ଏକା ନୁହେଁ, ସମସ୍ତ ଜଗତ ମୋ' ସହିତ ସବୁବେଳେ ରହିଚି ।

ପ୍ରତ୍ୟେକ ଦିନ ସୂର୍ଯ୍ୟାଗମନ ଓ ସୂର୍ଯ୍ୟବିଦାୟର ସଭାରେ ସେହି ଅସରନ୍ତିର ସୋପାନତଳେ ମୁଁ ନିତି ଏହି ପ୍ରାର୍ଥନା କରୁଚି : 'ବିରାଟ ବିଶ୍ୱର ହେ କ୍ରୀଡ଼ାରତ ବାଳକ, ମୋତେ ବି ତୁମର ଖେଳସାଥୀ କର । ଆହୁରି ଭାଙ୍ଗି ଆହୁରି ଗଢ଼ିବାର ଅଶେଷ କ୍ଷୁଧା ତୁମେ ମୋର ଅନ୍ତର ଭିତରେ ନିତି ଜାଳି ରଖ । କିଏ ଚାଲିଗଲା, କିଏ ନଷ୍ଟ ହୋଇଗଲା, ଏହିପରି ନାନା ଚିନ୍ତାରେ ଯେପରି ମୁଁ ମୋର ମୁହୂର୍ତ୍ତଗୁଡ଼ିକୁ ବ୍ୟର୍ଥ କରି ନ ଦିଏ । ଆହୁରି ଆସୁଚି, ଫୁଲର ପାଖୁଡ଼ା ଝରିପଡ଼ି ପୁଣି ଆଗାମୀ ଫୁଲର ଆୟୋଜନ କରୁଚି, ଫଳ ଫାଟି ବନାନିର ସୃଷ୍ଟି ହେଉଚି, ତୁମେ ମୋତେ ଏହି ବୋଧ ଦେଇଯାଅ, ତୁମରି ଅଭିଯାନରେ ମୋତେ ବି ସୁମାରି କରିନିଅ । ଏତିକି ମୋର ମର୍ମକଥା, ମୋର ଆକୁଳ ପ୍ରାଣର ପ୍ରାର୍ଥନା ।'

୧୩ । ୧୨ । ୪୬

ଟିକିଏ ପାଖରେ ପାଇଲେ ମୁଁ ହାତରେ ଜାବୁଡ଼ି ରଖିବାକୁ ଏଡ଼େ ଉଚ୍ଛନ୍ନ ହୋଇପଡୁଚି କାହିଁକି ? ହୁଏତ ତାର ଅସଲ କାରଣ ହେଉଚି ଯେ ମୁଁ ପରିପୂର୍ଣ୍ଣ କରି ପାଇ ନାହିଁ ।

କାଲି ରାତିରେ କଣ ସ୍ୱପ୍ନ ଦେଖିଲି କେଜାଣି ? ହଠାତ୍ ଦେଖିଲି କିଏ ଯେପରି ମୋତେ ଘର ଭିତରର କୋଳାହଳ ଭିତରୁ ନିଭୃତ ଜ୍ୟୋତ୍ସ୍ନା-ତଳକୁ ଡାକି ନେଇଗଲା । ସେଇଠି ଅତି ଆପଣାର ଲୋକ ପରି ସେ ମୋତେ କଅଣ ସବୁ କହିଲା । ସେହି କଥାତକ ମୁଁ ଆଦୌ ମନେରଖିପାରିଲି ନାହିଁ । କିନ୍ତୁ ଯେତେବେଳେ ହଠାତ୍ ନିଦ ଭାଙ୍ଗିଗଲା, ସେତେବେଳେ ଶରୀର ବଡ଼ ଭାରହୀନ ଲାଗୁଥିଲା, ଚିର ପ୍ରସନ୍ନ ଓ ପ୍ରଫୁଲ୍ଲ ରହିଥିଲା । ଆଖି ଦୁଇଟା ବଡ଼

ସଚେଜ ଓ ସତୃଷ୍ଣ ମନେ ହେଉଥିଲା । ମନେ ହେଉଥିଲା, ହୃଦୟ ଯେପରି ଆହୁରି ଦେଖିବାକୁ ଚାହେ, ସ୍ୱପ୍ନବିମୁଗ୍ଧ ରହି ଆହୁରି କେତେ କ'ଣ ଶୁଣିବାକୁ ଚାହେ । ପୁଣି ଥରେ ଶୋଇ ସେହି ମଧୁର ସ୍ୱପ୍ନାବିଷ୍ଟତାକୁ ଫେରାଇ ଆଣିବାକୁ ଚେଷ୍ଟା କଲି, ମାତ୍ର ସମୟ କ'ଣ ଖାଲି ଇଚ୍ଛା କଲେ ଆସେ ?

୧୪ । ୧୨ । ୪୬

ଟଙ୍କାପଇସାର ହିସାବ କରି ଯଦି ସମସ୍ତ ଦିନ ଯାଏ, କାଗଜର ନଥିରୁ ଲାଭକ୍ଷତି ମିଳାଇ ଯଦି ଅଫିସ ଭିତରେ ହିଁ ରାତିଟା କଟିଯାଏ, ତେବେ ମଣିଷ ଏହି ପୃଥିବୀରେ ଦେଖିବ କ'ଣ, ଚିହ୍ନିବ ବି କ'ଣ ? କିନ୍ତୁ ସେତିକ ନ କଲେ ଯାହାର ଜୀବନଧାରଣ ହିଁ ଅସମ୍ଭବ ହୋଇପଡ଼ିବ, ସେ ପୁଣି କରିବ କ'ଣ ? ଭିକାରୀ ଭିକ ମାଗି ଚାରିଅଣା ପାଉଚି, ସେଇଥିରେ ସେ ଦିନ ଗୁଜରେଇ ଦେଉଚି । ମୂଲିଆ ମୂଲ ଲାଗି ଆଠଅଣା ପାଉଚି, ସେଇଥିରେ ତା'ର ପିଲାକୁଟୁମ୍ବ, ଅଫିମ ଓ ପାନଖୋରାକୀ ସବୁ ଚଳୁଚି । କିନ୍ତୁ ଭିକାରୀର ଚାରିଅଣା ବା ମୂଲିଆର ଆଠଅଣାଟା ହୁଏତ ଦୁର୍ଭାଗ୍ୟବଶତଃ ଯେଉଁଦିନ ଦୁଇଅଣା ବା ଚାରିଅଣା ହୋଇଯିବ, ସେଦିନ ଯଦି ତା'ପାଖରେ ଆଗରୁ କିଛି ପଇସା ସଞ୍ଚିତ ହୋଇ ନ ଥାଏ, ତେବେ ସେ ବଞ୍ଚିବ କିପରି ? ତେଣୁ ପ୍ରତ୍ୟେକ ପାଦରେ ସେ ପ୍ରତ୍ୟେକ ପଇସାକୁ ଅଙ୍କ କଷିକଷି ଖରଚ କରିବ । ଯାହାର ଜୀବନ ବିକାଶ ଓ କଳାବିଳାସ ଲାଗି ହୁଏତ ବରଷ ବରଷର ଧନ ଜମାହୋଇ ରହିଚି, ଚାହା, ବିଡ଼ି ଓ ଅନ୍ୟାନ୍ୟ ନାନା ସ୍ୱଭାବବିକାର ଲାଗି ଯାହାର ଅଜସ୍ର ପଇସା ଖଞ୍ଜା ହୋଇଚି, ସେ ହୁଏତ ଟିକିନିଖି ହିସାବ କରିବାଟାକୁ ଅନାବଶ୍ୟକ ଭାବି ବାଦ ଦେଇପାରେ, କିନ୍ତୁ ନିତି-ମଜୁରିଆ ଓ ନିତି-ଭିକାରୀମାନଙ୍କ ଆଗରେ ଏହି ଅଧଲାପାହୁଲା ଓ ଛଦାମ ଛଟାଙ୍କିର ହିସାବଶାସ୍ତ୍ର ହେଉଚି ସବୁଠାରୁ ବଡ଼ ଶାସ୍ତ୍ର ।

'ମଣିଷର ଧର୍ମ', 'ମଣିଷର ସ୍ୱପ୍ନ' ଓ 'ମଣିଷର ତପସ୍ୟା' ବିଷୟରେ ମୁଁ ଅନେକ କଥା ଜାଣୁଚି । ଅନେକ ସମୟରେ କିଏ ଯେପରି ମୋତେ କୋଉ ଉପରକୁ ଉଡ଼ାଇ ନେଇଯାଉଚି । କେଉଁ ବିରାଟ ଓ ଅଶେଷ ଶୂନ୍ୟ ଭିତରେ ଯେପରି ମୁଁ ଆଉ କିଛି ଭାବିବାକୁ ସମୟ ହିଁ ପାଉ ନାହିଁ । କିନ୍ତୁ ତା'ପରେ ଏହି ସନ୍ଦେହ ମଣିଷ ମଣିଷ ଭିତରେ ରହିଥିବା ଏହି ବ୍ୟବଧାନ, ମୋତେ ବିଷମ ଧନ୍ଦାରେ ପକାଇ ଦେଉଚି । ଗୋଟାଏ ପଇସାକୁ ଯିଏ ପାଞ୍ଚଭାଗ କରି ଖରଚ କରୁଚି, ତା'ପାଇଁ କ'ଣ କୌଣସି ଧର୍ମ ନାହିଁ ? ତା'ର କ'ଣ କୌଣସି ସ୍ୱପ୍ନ ବା ତପସ୍ୟା ନାହିଁ ? ତେବେ ଏହି ଅର୍ଥନୀତି ଓ ଏହି ଟଙ୍କାପଇସାକୁ କ'ଣ ଆମେ ସକଳ ଧର୍ମ, ସକଳ ସ୍ୱପ୍ନ ଓ ସକଳ ତପସ୍ୟାର ଏକ ମୂଳ ସର୍ତ୍ତରୂପେ ଗ୍ରହଣ କରିବା ? ମୁଁ ବୁଝିପାରେ ନାହିଁ । ଗଛପତର

ଫୁଲଫଳ, ପକ୍ଷୀ ଓ ପଶୁ ସହିତ ଏକତ୍ୱ ଅନୁଭବ କରେ, କିନ୍ତୁ ମଣିଷ ସହିତ ଏକତ୍ୱ ଅନୁଭବ କରିପାରେ ନାହିଁ। ଆଲୋକକୁ ଆବୋରି ପକାଇ କଳାମେଘ ଚତୁର୍ଦ୍ଦିଗ ଅନ୍ଧକାର କରିଦେଲେ ମନ ଭିତରେ ଯେପରି କିଏ ସମଦରଦୀ ପରି ଚହଲିପଡ଼େ, କିନ୍ତୁ ରାସ୍ତାର ଭିକାରୀ ବା ଶୀତଦୁର୍ଗତି ସହୁଥିବା କୁଲିମଜୁରିଆଙ୍କ ପୁଅଝିଅଙ୍କୁ ଦେଖିଲେ କାହିଁକି ହୃଦୟ ତ ନଇଁଆସେ ନାହି, ନିଜର ଭାତତାଟିଆକୁ ଦୁଇଭାଗ କରିବାକୁ ଭିତରୁ ତ କେହି ଚୁଞ୍ଚି ଫୋଡ଼ିଦିଏ ନାହିଁ ! ନିଜର ସଯତ୍ନ ବେଶମଣ୍ଡିତ ଭଦ୍ରସଜ୍ଜା ପାଖରେ ମଳିନ ଓ ଓ ନିଷ୍ପ୍ରଭ ପଙ୍କଭିତରର ମଣିଷକୁ ଦେଖିଲେ ମନରେ ଗୋଟାଏ ଉଦାସ ଦରଦ ଆସେ ସତ, ମାତ୍ର ସେଇଟା ଅସଲ ଦରଦ ନୁହେଁ। ସେହି ଦରଦ ବହୁ କ୍ଷଣସ୍ଥାୟୀ। ଆମେ ନିତିନିତି କେତେ ଦୁଃଖ, ଦୈନ୍ୟ ଓ ବିପତ୍ତି ଦେଖୁ, ହୁଏତ ମନ ଭିତରୁ କିଏ ଆହା ବୋଲି କହି ବି ପକାଏ, ମାତ୍ର ଆମେ ଆମ ବାଟରେ ନିରାସକ୍ତ ମନରେ ଗ୍ଲଲିଯାଉ ଆମ ବିଳାସବିପଣିର ନାନା ଆୟୋଜନରେ। ବାଟରେ ସେଇ ଧୂଳି ଉପରେ ଧୂଳିର ମଣିଷ ପଡ଼ିରହେ। ଏହି ଉଦାସୀନତାର କାରଣ କ'ଣ ? ଅନେକ ଲୋକ ବିଲେଇ, କୁକୁର, ମୂଷା ବା ଠେକୁଆଙ୍କୁ ଭଲ ପାଆନ୍ତି, ଅଥଚ ମଣିଷକୁ ସେମାନେ ସ୍ନେହ ଆଖିରେ ଦେଖିପାରନ୍ତି ନାହିଁ। ତେବେ ମଣିଷର ମନଟା କି ଧାତୁରେ ଗଢ଼ା ହୋଇଚି ? ମୋତେ ଆହୁରି ଦେଖିବାକୁ ହେବ, ଆହୁରି ବୁଝିବାକୁ ହେବ, ଆହୁରି ଗଭୀରକୁ ଯିବାକୁ ହେବ।

୧୫ । ୧୨ । ୪୬

ସକାଳର ସୂର୍ଯ୍ୟ,—ତାକୁ ନିତି ଦେଖିଦେଖି ମଧ୍ୟ ଖରାପ ଲାଗୁ ନାହିଁ। କି ରଙ୍ଗ, କି ବିସ୍ମୟ ଓ କି ଜୀବନ୍ତତା ସେଥିରେ ଭରିରହିଚି କେଜାଣି ? ତାକୁ ଖାଲି ନାଲିରଙ୍ଗ ବୋଲି କହିହେବ ନାହିଁ, ସେହି କିରଣକୁ ଖାଲି ନାଲିକିରଣ ବୋଲି କହିହେବ ନାହିଁ ବା ବୈଜ୍ଞାନିକର ଓଜନକରା ସିଦ୍ଧାନ୍ତ ଅନୁସାରେ ତାକୁ କେବଳ ପହିଲି ସୂର୍ଯ୍ୟର ପ୍ରତିଫଳିତ ରଶ୍ମି ବୋଲି କହିହେବ ନାହିଁ। ଆଜି ବଡ଼ିଭୋରୁ ମୁଁ ପୂର୍ବଦିଗକୁ ଗ୍ଲହିଁ ରହିଥିଲି। ଗ୍ଲରିଆଡ଼େ ଅନ୍ଧାର ହୋଇ ରହିଥିଲା। ଅନେକ ଦୂରରେ, ଅଥଚ ଖୁବ୍ ସ୍ପଷ୍ଟକରି ଯେପରି କିଏ ଶୂନ୍ୟ ଭରାଇ ଗୁଣୁଗୁଣୁ କରି କେଉଁ ଅନାଗତ ଦେବତାର ଆଗମନୀ ଗାଉଚି ! ହଠାତ୍ ସମସ୍ତ ପୂର୍ବଦିଗର ଆକାଶ ନାଲି ହୋଇଗଲା ଓ ତାହାରି ଭିତରୁ ରକ୍ତଗୋଲାପ ବାହାରି ଆସିଲା। ସେହି ବାହାରି ଆସିବାଟା କେଡ଼େ ସହଜ, ପ୍ରତିଦିନର ଅଭ୍ୟାସ ଫଳରେ ସ୍ୱତେଅବା ସେ ସେଥିରେ ଭାରି ନିପୁଣ ହୋଇ-ଯାଇଚି ! ସେହି ରଙ୍ଗର ଉଦୟ ସଙ୍ଗେ ସଙ୍ଗେ ସମସ୍ତ ବିଶ୍ୱଭବନରେ ଜାଗରଣ ଓ ଜୀବନ ଭରିଉଠିଲା। ରବୀନ୍ଦ୍ରନାଥ ବିଶ୍ୱଦେବତାଙ୍କୁ ପ୍ରଧାନତଃ ଆନନ୍ଦମୟ କରି ଦେଖିଚନ୍ତି। ତେଣୁ ସୂର୍ଯ୍ୟକୁ ସେ 'ସତ୍ୟର ଆନନ୍ଦରୂପ' ବୋଲି ବର୍ଣ୍ଣନା କରିଚନ୍ତି।

ମୁଁ ଘୃଣା କରୁଚି, ଭୁଲଠିକ୍ ନେଇ ସଭିଙ୍କ ସହିତ ତର୍କ କରୁଚି, ନିଜର ମତ ଓ ସିଦ୍ଧାନ୍ତର ଅଯଥା ଅଭିମାନ କରୁଚି । ନିଜକୁ ଓ ନିଜର ଭଗବାନଙ୍କୁ ଅପ୍ରଶସ୍ତ ଆୟତନ ଭିତରକୁ ଟାଣିଆଣି ମୁଁ ସାଧନାର କେତେ ବଡ଼ାଇ କରୁଚି । କିଏ ଜାଣେ, ହୁଏତ ବିଶ୍ୱଦେବତା ମୋର ଏଇ ନିର୍ବୋଧତାର ପ୍ରତିଶୋଧ ନେବାପାଇଁ ବି ମୋର ପଛେ ପଛେ ରହି ତିଆର ହେଉଚି ! ଆପଣାର ଭକ୍ତି-ଅଭିଯାନ ନେଇ ମୁଁ ବିଶ୍ୱଦେବତାର ଦୁଆରରେ ଯାଇ ପହଞ୍ଚିବି, ସେଦିନ ହୁଏତ ଦେଖିବି ଯେ ମୋ'ର ଆଗରୁ ଆହୁରି ଅନେକ ପଥିକ ଯାଇ ସେଠାରେ ପହଞ୍ଚି ସାରିଚନ୍ତି । ମୋ'ପାଇଁ ସେହି ଉଦାର ଦୁଆର ଯେପରି ଖୋଲିଗଲା, ଠିକ୍ ସେମିତି ମୋ' ପଛରେ ମଧ୍ୟ ଆହୁରି ଶତ ଶତ ଭକ୍ତଙ୍କ ଲାଗି ସେହି ଦୁଆର ଖୋଲି-ଯାଉଥିବ, ଆଉ ମୁଁ ଅବାକ୍ ବିସ୍ମୟରେ ଗ୍ୱହିଁ ରହିଥିବି । ଯେଉଁମାନଙ୍କୁ ମୂର୍ଖ ଓ ଭ୍ରାନ୍ତ ବୋଲି କହି ମୁଁ ପଛରେ ପକାଇ ଆସିଥିଲି, ଯେଉଁମାନଙ୍କର ନିର୍ମଳ ଆନ୍ତରିକତାକୁ ମୋର ବୌଦ୍ଧିକ ଯୁକ୍ତିର କୁହୁଡ଼ି ଭିତରଦେଇ ମୁଁ ଚିହ୍ନିପାରି ନ ଥିଲି, ସେମାନେ ମଧ୍ୟ ଠିକ୍ ମୋ'ରି ପରି ନିଜନିଜର ସ୍ୱନିର୍ବାଚିତ ଓ ସହଜ ପଥଦେଇ ଠିକ୍ ଜାଗାରେ ପହଞ୍ଚି ପାରିଚନ୍ତି । ସେଇଦିନ ମୋର ସବୁ ଦମ୍ଭ, ସବୁ ବଡ଼ିମା ଓ ସବୁ ସଙ୍କୀର୍ଣତା କୁଆଡ଼େ ଉଭେଇଯିବ । କାହାର ଉଦାର ଆଶୀର୍ବାଦର ସ୍ପର୍ଶ ପାଇ ମୋର ଭକ୍ତିଦମ୍ଭ ସେଦିନ ଆପେ ଅବନତ ହୋଇ-ପଡ଼ିବ । ପ୍ରତ୍ୟେକ ମଣିଷର ଜୀବନ ଭିତରେ ମୁଁ ସେଦିନ ଝୁଣ୍ଟିପଡ଼ି ଆଗକୁ ଯିବାର ଅଭିଜ୍ଞ ସାଧନାକୁ ଅବଶ୍ୟ ସ୍ୱୀକାର କରିନେବି । ସେଦିନ ସେଇଠି ସବୁ ସନ୍ଦେହର ଶେଷ ହେବ, ନ ବୁଝିବା ଓ ନ ଚିହ୍ନିବାର ସବୁ ସଙ୍କୋଚ ଦୂର ହୋଇଯିବ । ସେଦିନ ମୁଁ ନୂତନ ରୂପରେ ପରମପିତାଙ୍କୁ ଚିହ୍ନିବି; ସମସ୍ତଙ୍କୁ ଭଲ ପାଇବାର ମହାନ୍ ଶିକ୍ଷା ଲାଭ କରିବି ।

୧୬ । ୧୨ । ୪୬

ଆଜି ଜୀବନର ସେଇ ବଡ଼ ଦିନ, ଯାହାର ସ୍ମରଣ କରି ମୁଁ ପ୍ରତ୍ୟେକ ଦିନର ପ୍ରାର୍ଥନାଲାଗି ଶକ୍ତି ଆହରଣ କରେ । ସେହି ଦିନଟା ଆଜି ଏତେ ନିଜର ହୋଇଗଲାଣି ଯେ ତା'ବିଷୟରେ କିଛି ଲେଖିବାକୁ ବି ସଙ୍କୋଚ ଲାଗୁଚି । ଯାହାକୁ କେନ୍ଦ୍ର କରି ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ହସକାନ୍ଦ ଓ ଉଠାପଡ଼ାର ମହୋତ୍ସବ ଗ୍ୱଲିଚି, ତା'ବିଷୟରେ ବନେଇଚୁନେଇ ମୁଁ କି ପ୍ରବନ୍ଧ ଲେଖିବି ?

ସତ୍, ଚିତ୍ ଓ ଆନନ୍ଦ ଏହି ତିନୋଟି 'ଚରମ'କୁ ନେଇ ଦାର୍ଶନିକ-ମାନଙ୍କ ଭିତରେ ବୌଦ୍ଧିକ ଲଢ଼େଇ ଲାଗେ । ନିଜର ଲକ୍ଷ୍ୟ ସହିତ ଗୋଟାଏ ଗୋଟାଏ ବିଶେଷ ନାମ ଯୋଡ଼ିଦେଇ ଆପଣା ଭିତରେ ଅକାରଣ ମତଯୁଦ୍ଧ କରିବା ଆଜିକାଲି ନାନା ସ୍ଥାନରେ ଦେଖାଯାଏ । ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କର ଦୃଷ୍ଟିସମୀକ୍ଷା କରିବାକୁ ଯାଇ ଅନେକ ପଣ୍ଡିତ କହିଥାନ୍ତି ଯେ ଗାନ୍ଧିଜୀ ସତ୍ୟକୁ

ଜୀବନର 'ଚରମ' ବୋଲି ମନେକରନ୍ତି । କିନ୍ତୁ ଗୁରୁଦେବଙ୍କ ଆଖିରେ ପୃଥିବୀରେ ଯାହା ଆନନ୍ଦଦାୟକ, ସେଇ ହେଉଚି ସତ୍ୟ । ଏହି ପ୍ରକୃତି ମଧ୍ୟ ସତ୍ୟର ଆନନ୍ଦରୂପୀ ପ୍ରକାଶ । ମୁଁ ଏହି ଯୁକ୍ତିର ଭୁଲଠିକ୍ ମାପିବାକୁ ଯାଉ ନାହିଁ, କେବେ ଯିବି ବି ନାହିଁ । ଏପରି ସମାଲୋଚନା ମୋ ଦ୍ୱାରା କଦାପି ହୋଇ-ପାରିବ ନାହିଁ । ନିକଷପଥର ପରି ଟାଣ ହୋଇ ମୁଁ ସୁନାର ପରୀକ୍ଷା କରିପାରିବି ନାହିଁ । ପାତ୍ରର ଧାତୁମୂଲ୍ୟ ପରଖିବା ଅପେକ୍ଷା ପାତ୍ରସ୍ଥିତ ଅମୃତକୁ ଉପଭୋଗ କରିବାରେ ମୁଁ ସବୁଠାରୁ ଅଧିକ ଆନନ୍ଦ ପାଇବି ।

ସତ୍, ଚିତ୍ ଓ ଆନନ୍ଦ ଭିତରେ ମୁଁ କୌଣସି ତାରତମ୍ୟ ଦେଖିପାରେ ନାହିଁ । ଆପଣାର ମନକୁ ପୋଥି ଓ ପୋଥିସୂତ୍ରର ପ୍ରଲୋଭନ ଭିତରେ ଆବଦ୍ଧ କରି ରଖିଥିଲା ପର୍ଯ୍ୟନ୍ତ ହୁଏତ କେହି ଏ ବିଷୟରେ ଯୁକ୍ତି କରିପାରେ । କିନ୍ତୁ ଏହି ତିନୋଟି ଭିତରୁ କୌଣସି ଗୋଟିକୁ ନିଜ ଜୀବନର 'ଚରମ' କରି ଗ୍ରହଣ କରି ପୂର୍ଣ୍ଣ ନିଷ୍ଠାରେ ତାହାରି ପୂର୍ଣ୍ଣ ପ୍ରତ୍ୟକ୍ଷ କରିବାର ସାଧନା ଆରମ୍ଭ କଲେ ମାନସିକ ଦ୍ୱିଧାଗୁଡ଼ାକ କ୍ରମେ ଅପସରିଯିବ । ମୋ' ଜୀବନର ନାନା ମୂଲ୍ୟବାନ୍ ଅନୁଭୂତି ଭିତରେ ମୁଁ ସତ୍ୟ, ଚିତ୍ ଓ ଆନନ୍ଦ ଭିତରେ କୌଣସି ତାରତମ୍ୟ ଏପର୍ଯ୍ୟନ୍ତ ଦେଖିପାରିଲି ନାହିଁ । ଯେଉଁଠି ସତ୍ୟର ପ୍ରକାଶ, ସେଇଠାରେ ଚିତ୍ ଓ ଆନନ୍ଦର ପ୍ରକାଶ । ଫୁଲ ଏକ, ସେହି ଏକ ପରମପିତାର ଆତ୍ମପ୍ରକାଶ । ସେହି ଫୁଲ ଭିତରେ ସତ୍ୟ, ଚେତନା ଓ ଆନନ୍ଦର ଅନୁପାତ ଠିକ୍ କରିବା କଦାପି ସମ୍ଭବ ହେବ ନାହିଁ । ମୁଁ ଭାବୁଚି, ନିଜ ଜୀବନର ସାଧନା ଦେଇ ଏହି ମୂଲ୍ୟଗୁଡ଼ିକୁ ଚିହ୍ନିଲେ ଏହି ଜଗତର ଅନେକ ସନ୍ଦେହ ଓ ଦ୍ୱନ୍ଦ୍ୱ ଦୂର ହୋଇଯିବ । ଏହି ଜୀବନ ଓ ଏହି ଜଗତଭରି ସକଳ ଅଭିବ୍ୟକ୍ତି ଗୋଟିଏ ସମନ୍ୱିତ ସମଗ୍ର ଭିତରେ ଅନୁଭୂତ ହୋଇପାରିବ ।

୨୮ । ୧ । ୪୭

ଅନେକ ଦିନ ପରେ, ତଥାପି ଆଜି ଅଦିନଟାରେ ଏହି ଖାତାଟାର ମାୟା ମୋତେ ଛାଡ଼ିପାରୁ ନାହି । ସେଥିପାଇଁ ସଞ୍ଜବେଳେ ବୁଲିବାକୁ ନ ଯାଇ ମୁଁ ଏହି ଖାତାରେ କିଛି ଲେଖିବି ବୋଲି ଏଠି ବସିଚି । ମୁଁ କାହାପାଇଁ ଲେଖେ ? ଏହି ଲେଖାକୁ ମୁଁ ଯେଉଁପରି ମୂଲ୍ୟ ଦିଏ, ଅନ୍ୟ ଜଣେ କ'ଣ ତାକୁ ସେହିପରି ମୂଲ୍ୟ ଦେବ ? ନା—ଏପରି ମୂଲ୍ୟ ନିର୍ଣ୍ଣୟ କରିବାରେ ମୁଁ ଆଉ ମୁଣ୍ଡ ଖରଚ କରିବି ନାହିଁ । ମୁଁ ଲେଖୁଚି, ମୁଁ ପଢ଼ୁଚି, ମୁଁ ଶିଖୁଚି, ଏହା ହିଁ ମୋର ସବୁ; ଏଇଥିରେ ମୋତେ ସମ୍ଭକସ୍ୱାଦରୁ ଅଧିକ ମିଳିଯାଉଚି । ଜୀବନର ନୀରସ ଧନ୍ଦାବେଳେ ଏହି ଖାତାର ପୃଷ୍ଠାଗୁଡ଼ିକରୁ ମୁଁ ଯେ କି ପ୍ରାଣମୟ ଉଦ୍‌ବୋଧନ ପାଏ, ଏହି ଲେଖାଗୁଡ଼ିକ ଯେ ମୋତେ କିପରି ଭଗବଦ୍‌ବାଣୀ ପରି ଲାଗେ, ସେକଥା କେବଳ ମୁହିଁ ଜାଣେ ।

...ଆଜି ସକାଳେ ଯେପରି ମନ ଭିତରର ଦୁଆର ଖୋଲିଗଲା ! କେତେଦିନରୁ ବଡ଼ ଅଡୁଆ ଲାଗୁଥିଲା, କେତେକ'ଣ ମୋ ଭିତରେ କିଳିହୋଇ ରହିଥିବା ପରି ମୋତେ ଅସ୍ତବ୍ୟସ୍ତ କରି ଦେଉଥିଲା । ଆଜି ହଠାତ୍ ଯେପରି ସବୁ ଦୁଆର ଖୋଲିଗଲା । ଆଜି ଆଖି ଆଗରେ ମୁଁ କି ସ୍ୱଚ୍ଛତା ଅନୁଭବ ନ କରୁଚି ? ଏପରି ହେଲା କିପରି ? ମୋର ନୀତିବାଦ ଓ ମୋର ଯୁକ୍ତି ଦେଇ ମୁଁ ଆଜିଯାଏ ଯେଉଁ କଥା ବୁଝିପାରୁ ନ ଥିଲି, ହଠାତ୍ ଆଜି ନିମିଷକରେ ସବୁ ସ୍ୱଚ୍ଛ ହୋଇଗଲା କିପରି ? କାହାର ଖେଳ ମୁଁ ଖେଳୁଚି ? ମୋତେ ଖେଳାଇ କିଏ ଏପରି ଆନନ୍ଦ ପାଉଚି ?

... ମୁଁ କେତେ କ'ଣ ଭାବୁଚି, ନିଜକୁ ଚମକାଇ ଦେଇ ଆଗ୍ନେୟଗିରି ପରି କେତେ କ'ଣ ଉଦ୍‌ଗାର କରିଯାଉଚି; କିଏ ଶୁଣିବ, ତାକୁ କିଏ ଗ୍ରହଣ କରିବ, କିଏ ସେଥିରୁ ଆନନ୍ଦ ପାଇବ ? ମୁଁ ଯେ ଏମିତି ନିତି କୁହୁଳୁଥିଲି, ନିତି ଅସ୍ଥିର ହେଉଥିଲି, ନିତି ବ୍ୟାକୁଳ ହେଉଥିଲି, ଏ କଥା କିଏ ଜାଣିବ ? କିଏ ବୁଝିବ ? ମଣିଷର ମନକୁ ପଢି ପାରିବାର ଶକ୍ତି ମୁଁ ଆଜିଯାଏ ହାସଲ କରି-ପାରି ନାହିଁ । ତଥାପି ଆପଣାର ମନ ବିଷୟରେ ମୋର ଯେତିକି ଜ୍ଞାନ ଅଛି, ସେଇଥିରୁ ମୁଁ ଅନୁମାନ କରୁଚି ଯେ ପ୍ରତ୍ୟେକ ମଣିଷ ମଧ୍ୟ ଗୋଟିଏ ଗୋଟିଏ ଆଗ୍ନେୟଗିରି । ସବୁରି ମନରେ ସେଇ ଅସ୍ଥିରତା ଓ ଖୋଜି ପାଇବାର ସେଇ ଆକୁଳତା ଲାଗିରହିଚି । ନାନା ଗନ୍ଧ ଓ ନାନା ଛନ୍ଦ ଭିତର ଦେଇ ମଣିଷ ଖାଲି ଆହୁରି ଅଧିକ ପରିପୂର୍ଣ୍ଣ ପରିଚୟ ପାଇଁ ଧାଉଁଚି, ଠିକ୍ ମୁଁ ଯେପରି ଧାଉଁଚି । ସେହି ଅନୁମାନରୁ ମୁଁ ଏ କଥା ବି ଜାଣୁଚି ଯେ ସବୁ ମଣିଷ ମୋତେ ମଧ୍ୟ ତାଙ୍କରି ପରି ଠିକ୍ ଗୋଟିଏ ମଣିଷ ବୋଲି ଚିହ୍ନିବେ, ନିତ୍ୟ ସଂଗ୍ରାମ କରୁଥିବା ଜଣେ ମଣିଷ ଭାବରେ ମୋତେ ଗ୍ରହଣ କରିବେ । ସେଇ ମୋର ଯଥାର୍ଥ ପରିଚୟ । ଏହି ପରିଚୟରୁ ଅଧିକ କରି ମୁଁ କାହାପାଇଁ କିଛି ରଖିଯିବାକୁ ଚାହୁଁ ନାହିଁ । ମୁଁ ଆକୁଳ ହେଉଚି, ମୁଁ ଧାଉଁଚି, ମୁଁ ଝୁଣ୍ଟୁଚି, ମୁଁ ଆଭାସ ପାଉଚି, ପୁଣି ହରାଇ ବସୁଚି,—ଜୀବନପଥର ଏହି ମୁକ୍ତାଗୁଡ଼ିକ ମୋର ନିଜସ୍ୱ, ମୋର ରଙ୍କନିଧି, ତାକୁ ମୁଁ ବଜାରରେ ମୂଲ କରିବାକୁ ଚାହେଁନା, ବଣିଆଘରେ ପରଖିବାକୁ ବି ଚାହେଁନା ।

ଏହା ଭିତରେ ମୁଁ ଦାଢ଼ି କାଟିଦେଇଚି, ପାଇଜାମା ପିନ୍ଧିବାରେ ଅଭ୍ୟସ୍ତ ହୋଇଗଲିଣି, ଅନେକେ କହୁଚନ୍ତି ଯେ ମୁଁ ବଦଳିଗଲିଣି । ମୋର ସବୁ ନୀତି ଚୂଲୀକି ଗଲାଣି ବୋଲି ସେମାନଙ୍କର ମତ । ମୁଁ ଏହାର କି ଉତ୍ତର ଦେବି ? ଗୋଟାଏ ଦୃଷ୍ଟିରୁ ଦେଖିଲେ ମୁଁ ନିତି ବଦଳୁଚି, ନୂତନ ରୂପରେ ବଦଳିବା ପାଇଁ ମୁଁ ନିତି ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଚି । ଯେଉଁଦିନ ମୋର ଏହି ବଦଳିବା ବନ୍ଦ ହୋଇଯିବ, ସେଇଦିନ ମୋର ମୃତ୍ୟୁ ହେବ।

ମାତ୍ର ଆଉ ଗୋଟିଏ ଦୃଷ୍ଟିରୁ ଦେଖିଲେ, କାହିଁ ? ମୁଁ କେଉଁଠି ବଦଳିଛି ? ମୁଁ ମୋ ନିଜକୁ ଭଲ କରି ଚିହ୍ନେ, ମୋର ବାଟକୁ ମୁଁ ଭଲକରି ଜାଣେ । ମୋ' ଭିତରେ ପଙ୍କ କାଦୁଅ କେଉଁଠି ଅଛି, ମୁଁ ସେକଥା ଭଲକରି ଜାଣେ । ତାକୁ ଚିହ୍ନି ତାହାରି ଶୋଧନ ଲାଗି ମୁଁ ସବୁଦିନେ ସଂଗ୍ରାମ କରି ଆସୁଚି । ମୋର ଗୋଡ଼ ପଙ୍କ ଭିତରେ ବୁଡ଼ି ରହିଥିଲେ ମଧ୍ୟ ମୋର ଆଖି ଲାଖିରହିଚି, ସୁଦୂରର ସେହି ପୁଣ୍ୟମୟ ପରମପିତାଙ୍କର ପଦପ୍ରାନ୍ତରେ । ମୋ' ନିଜ ଭିତରର ଦ୍ୱନ୍ଦ୍ୱ ଓ ସଫଳବିଫଳତାର ସାମ୍ବାଦିକ କେବଳ ମୁଇଁ ହୋଇପାରିବି । ଆଉ ଦୁନିଆ,– ବାହାରର ପଦବଦଳା ଦେଖି ସେ କେତେ କ'ଣ କଳ୍ପନା କରିଯିବ । ମୋତେ ଦେଖି ସେ କେତେ ନିରାଶ ହେବ, ପୁଣି କେତେ ଆଶା କରିବସିବ । ମୋର ଦାଢ଼ି ଯେତେବେଳେ ଥିଲା, ସେତେବେଳେ ମୋ ପଛରେ କର୍ମଯୋଗୀ, ବାବାଜୀ ଓ ସନ୍ନ୍ୟାସୀ ପ୍ରଭୃତି କେତେ ବିଶେଷଣ ଲାଗୁଥିଲା ! କିନ୍ତୁ ମୁଁ କେବଳ ଜାଣିଥିଲି, ବାହାରର ସେହି ବୈରାଗ୍ୟ ଆବରଣ ତଳେ ଗୋଟାଏ ଭଣ୍ଡସନ୍ନ୍ୟାସୀ କେଉଁଠି ଲୁଚିରହି ମୋତେ ଓ ଜଗତକୁ କିପରି ବିଦ୍ରୂପ କରୁଥିଲା । ସେହି ଖସଡ଼ା ବାଟର ମର୍ମ କେବଳ ମୁଇଁ ଅନୁଭବ କରିଚି । ଆଜି ବି ମୁଁ ତାକୁ ଭୁଲି ନାହିଁ । ଆଜି ବି ସେହି ଦ୍ୱନ୍ଦ୍ୱ, ସେଇ ଯୁଦ୍ଧ, ସେଇ ସଙ୍କୋଚ ଓ ବିକାଶ ଭିତରେ ମନ ଭିତରେ ସେହି ଶତ୍ରୁତା ଲାଗିରହିଚି । ବାହାରର ବେଶ ପରିବର୍ତ୍ତନକୁ କ'ଣ ସେହି ଯୁଦ୍ଧ ଟିକିଏ ହେଲେ ଖାତିର କରୁଚି ?

ମୋତେ ନାନା ଖୋଳ ଓ ନାନା ପଟ ଭିତର ଦେଇ ଗତି କରିବାକୁ ହେବ । ନାନା ତୁଠରେ ହୃଦୟର ମଇଳାଗୁଡ଼ାକୁ ଟିକିଏ ଟିକିଏ କରି ଧୋଇବାକୁ ହେବ । ପଥରପାହାଚର ଶିଉଳିରେ ହୁଏତ ଅନେକ ଥର ମୋର ଗୋଡ଼ ଖସିଯିବ, ମୁଁ ପଡ଼ିଯିବି; ତଥାପି ସେଥିପାଇଁ ମୋର ଚିନ୍ତା ନାହିଁ । ମୁଁ ଜାଣେ ଯେ ମୁଁ ଅନେକ ସମୟରେ ବଡ଼ ଉଦଣ୍ଡ ଓ ବଡ଼ ଭୟଙ୍କର ହୋଇ-ପଡ଼ୁଚି, ଏକ ନିକୃଷ୍ଟ କୀଟ ପରି ଉପଭୋଗର ଆଧାର ଉପରେ ମୁଁ ଅଠାପରି ଲାଗିରହୁଚି, ଲୋଭୀ କୁକୁର ପରି ମୁଁ ସବୁ ଆବୋରି ଧରିବାକୁ ଉଚ୍ଛନ୍ନ ହୋଇ-ପଡ଼ୁଚି; ତଥାପି ଏଇ ସାମୟିକ ମୃତ୍ୟୁ ପରେ ମୋର ଜୀବନଦେବତା ମୋତେ ପୁଣି ନିଖିଳ ଜୀବନ ସହିତ ପରିଚିତ କରାଇ ଦେଉଚି, ପୁଣି ନୂଆ ଜୀବନ ପାଇଲା ପରି ମୁଁ ପୁଲକିତ ହୋଇଉଠୁଚି, ଘନ ଅନ୍ଧାରର ନିର୍ମମ ଭୀମଶୂନ୍ୟ ଭିତରେ ପୁଣି ଆଲୋକର ସାକ୍ଷାତ ହେଉଚି ।

ଏଇ ଗଛ, ଏଇ ଫୁଲପତର, ଏଇ ମଣିଷ, ଆଲୁଅ ଆଉ ପବନ– ବେଳେବେଳେ ନୀରସ ଓ ପୁଣି ବେଳେବେଳେ ଏଡ଼େ ସରସ ଲାଗେ କାହିଁକି ? ଅନେକ ସମୟରେ ମୁଁ ମୋର ଛୋଟିଆ ଜୀବନଟିକୁ ନେଇ ପଡ଼ିରହିଥାଏ, ନିଜର ଲାଭକ୍ଷତି ଓ କ୍ଷୁଦ୍ର ଭବିଷ୍ୟତର ହିସାବ କରିବାରେ ବ୍ୟସ୍ତ ଥାଏ । ସେତେବେଳେ ଆଖିରେ ସବୁ ଦେଖୁଥିଲେ ସୁଦ୍ଧା ମୁଁ କିଛି ଦେଖିପାରେ ନାହିଁ । କିନ୍ତୁ ସେହି ମଗ୍ନ

ନିର୍ବୋଧତା ଭିତରେ ହଠାତ୍ କେଉଁଠୁ ଯେପରି ଏକ ପ୍ରାଣମୟ ସ୍ରୋତର ଆବେଗ ଆସେ, ସବୁ ଜୀବନ୍ତ ହୋଇଉଠେ । ଗଛପତରର କଥା ଶୁଭେ, ଆଲୁଅର ହସକୁ ବୁଝିହୁଏ, ମଣିଷର ଆଖି ଓ ଓଠ ଉପରେ କାହା ଆଶୀର୍ବାଦର ଆଙ୍ଗୁଳି ପରଶ ମିଳେ । ସମସ୍ତ ଶରୀର ଦେଇ ଏକ ଅଦ୍ଭୁତ ଶିହରଣ ଆସେ । ସବୁ ଭୁଲି ମୁଁ ସେତେବେଳେ ଖାଲି ମଗ୍ନ ଓ ନୀରବ ହୋଇ ରହେ । ହୃଦୟର କ୍ଷୁଦ୍ରତା ସବେ ଅବା କେଉଁ ବିରାଟର ପରିଧି ଭିତରେ ନିଜର ଠାବ କରିନିଏ । କାହିଁକି ଏପରି ହୁଏ ? ଏହି ରୋମାଞ୍ଚ ଏପରି କ୍ଷଣେ କ୍ଷଣେ ଆସି ତା'ପରେ ପୁଣି ହାତଛଡ଼ା ହୋଇଯାଏ କାହିଁକି ?

କାଲି ଠିକ୍ ସକାଳେ, ହଠାତ୍ ମୁଁ ସତେ ଯେପରି ଗ୍ରରିଆଡ଼େ ନିଜର ଛାଇ ଦେଖିବାକୁ ପାଇଲି । ସବୁଠି ନିଜ ହୃଦୟର ସ୍ପନ୍ଦନ ଶୁଣିବାକୁ ପାଇଲି । କେଡ଼େ ସ୍ନେହରେ ଗୋଟାଏ ବରଗଛର ଗଣ୍ଡି ଉପରେ ଆଉଜିପଡ଼ି, କେତେକ୍ଷଣ ପର୍ଯ୍ୟନ୍ତ ସବୁରି ସହିତ ଲାଗି ରହିଥିବା ମୋର ଡୋରଟିକୁ ଅନୁଭବ କରିବାରେ ଲାଗିଥିଲି । ତା'ପରେ ଏକମୁହାଁ ହୋଇ ବିଲ, ତୋଟା ଓ ପୋଖରୀ ଉପରେ ପ୍ରାୟ ପାଞ୍ଚ ଛଅ ମାଇଲ ଏକା ଏକା ବୁଲି ବାହାରିଗଲି । ଏହି ସଂସାରର ହାଟ ବଜାର ଓ ହସକାନ୍ଦରୁ କେତେ ଦୂରକୁ ଗ୍ରଲିଯାଇଥିଲି କେଜାଣି ? ମାତ୍ର ସେହି ପାଗଳ ପରି ବୁଲିବାରେ ମୁଁ କେଡ଼େ ଆନନ୍ଦ ପାଉ ନ ଥିଲି ! ପ୍ରତ୍ୟେକ ବଡ଼ ଗଛ ଓ ପ୍ରତ୍ୟେକ ପୋଖରୀ ପାଖରେ କ୍ଷଣେ ଠିଆହୋଇ ମୁଁ କାହାର ସମ୍ଭାଷଣ ଶୁଣୁଥିଲି ? ଏଇ କ'ଣ କେବଳ ପାଗଳାମି ?

୩୧ । ୧ । ୪୭

ମୁଁ ଅନେକ ବକି ଶିଖିଚି, ସ୍ଥାନ ଓ ସ୍ଥାନାନ୍ତରର ବିଗ୍ରର ନ ରଖି ଅନେକ ବିଜ୍ଞାପନ କରି ଶିଖିଚି, ମାତ୍ର ନୀରବ ହେବାର କଠିନ ଶାସ୍ତ୍ରକୁ ମୁଁ ଆୟତ୍ତ କରି-ପାରି ନାହିଁ । ଏହି ବିପୁଳ ପୃଥିବୀ ସହିତ ପରିଚୟ ବଢ଼ିବା ସଙ୍ଗେ ସଙ୍ଗେ ମୁଁ ଅଧିକରୁ ଅଧିକ ବିସ୍ମିତ, ମୁଗ୍ଧ ଓ ଅବାକ୍ ହୋଇଯାଉଚି । ପିଲାଦିନରୁ ଆଜିଯାଏ ମୁଁ ଏତେ ଗଛ ପତର, ସଞ୍ଜ ସକାଳ ଓ ମଣିଷ ଦେଖି ଆସିଚି, କିନ୍ତୁ ଆଗରୁ କେବେହେଲେ ଏପରି ମୁଗ୍ଧ ହୋଇ ନ ଥିଲି । ବାହାର ଜଗତକୁ ଏପରି ନିଜର କରି କେବେହେଲେ ଅନୁଭବ କରି ନ ଥିଲି । ଆଜିପର୍ଯ୍ୟନ୍ତ ତ ସବୁ ରହିଥିଲା, ସୂର୍ଯ୍ୟ ଉଠୁଥିଲା, ମଣିଷ କଥା କହୁଥିଲା, ଗଛରେ ପତର କଅଁଳୁଥିଲା, କିନ୍ତୁ କେବେ ତ ମୋର ଏପରି କିଛି ହୋଇ ନ ଥିଲା ! ମୁଁ କିଛି ବୁଝିପାରୁ ନାହିଁ । ହଠାତ୍ ସୂର୍ଯ୍ୟୋଦୟ, ହଠାତ୍ ରଙ୍ଗର ଚମକ ଦେଖି ହୃଦୟ ଏପରି ଶାନ୍ତ ଓ ମୌନ ହୋଇ ରହିବାକୁ ଗ୍ରହୁଚି କାହିଁକି ? ସବୁ ରଙ୍ଗ, ସବୁ ଆଲୁଅ ଓ ସବୁ ଆକୃତିସଜ୍ଜାକୁ ସିଏ ଏପରି ଆପଣା ଭିତରକୁ ଟାଣି ନେବାଲାଗି ଏପରି ବ୍ୟଗ୍ର ହୋଇପଡୁଚି କାହିଁକି ?

୬ । ୨ । ୪୭

ଆଗରୁ କେବେ ଏତେ ପାଗଳ ହୋଇ ନ ଥିଲି । ଆଜି ଶ୍ରୀନିକେତନର ବାର୍ଷିକୋତ୍ସବ ଦେଖିସାରି ମୁଁ ଏକୁଟିଆ ଗାଆଁ ବୁଲି ବାହାରିଗଲି । ଫାର୍ମରୁ ଟମାଟୋ, ଗୁଡ଼ ଓ ଅଧପାଚିଲା ଅମୃତଭଣ୍ଡା ଖାଇ ଦିନକଲାଗି ପେଟ ଭର୍ତ୍ତି କରିନେଲି । ତା'ପରେ ସେହି ଖରାରେ ଚାଲିବାକୁ ଆରମ୍ଭ କଲି । ବୀରଭୂମ୍ ଜିଲ୍ଲାର ଧୂଳିରାସ୍ତା,—ନିର୍ମମ ଟାଙ୍ଗରର ବନ୍ଧ ଉପରଦେଇ ଆଖିର ଅଭେଦ ଦିଗନ୍ତକୁ ଚାଲିଯାଇଚି । ଦୂରଦୂରାନ୍ତର ଗାଆଁଗଣ୍ଡା ଓ ଗଛପତର ଖରାରେ ନୀଳ ସମୁଦ୍ର ପରି ଚକଚକ କରୁଚି । ବାଟରେ କେତେ ବଣବୁଦା ଅତିକ୍ରମ କରି ଚାଲିଗଲି । ଯାଇଥିଲି ଗାଆଁବୁଲି, ମାତ୍ର ରାସ୍ତାର ମାୟା ଛାଡ଼ିପାରିଲି ନାହିଁ; ରାସ୍ତାରୁ ବାଟ ନ ଭାଙ୍ଗି ଖାଲି ସିଧା ସିଧା ଚାଲିଯାଉଥିଲି । ମନରେ ନିଶ୍ଚୟ ନାନା କଥା ଭାବି ଚାଲିଥିଲି, କିନ୍ତୁ କଣ ଯେ ଭାବୁଥିଲି, ସେ କଥା ଶତାଂଶରେ ସୁଦ୍ଧା ମନେ ନାହିଁ । କେବଳ ଏତିକି ମନେଅଛି, ଚାଲିବା ବାଟରେ ଯାହା ସବୁ ଦେଖୁଥିଲି, ଯେଉଁଠି ଆଖି ପକାଉଥିଲି, ସବୁ ଯେପରି ମୋତେ ଭାରି ପ୍ରାଣବନ୍ତ ବୋଧ ହେଉଥିଲା, ମୋର ଛାତି ଭିତରେ ମୁଁ ସେହିସବୁ ସାକ୍ଷାତର ସ୍ପନ୍ଦନ ଅନୁଭବ କରୁଥିଲି । ଖରାତଳେ ଘଣ୍ଟାଏ କାଳ ବାଟ ଚାଲିବା ପରେ ହଠାତ୍ ଧାଡ଼ିଏ ଆମ୍ବଗଛ ଦେଖିବାକୁ ପାଇଲି । ହଠାତ୍ ଖିଆଲ ହେଲା, ଏଇ ଗଛ ଉପରେ ବିଶ୍ରାମ ନେବି । ଗୋଟାଏ ଗଛ ଉପରେ ଚଢ଼ି ପ୍ରାୟ ଘଣ୍ଟାଏକାଳ ଘାଲେଇ ପଡ଼ିଲି । ମନକୁମନ ଆଖି ବୁଜି ହୋଇଗଲା, ମନ ଭିତରର ସହସ୍ର ଆଖିଆଗରେ ଖାଲି ଚିତ୍ର ପରେ ଚିତ୍ର ଭାସିଯିବାକୁ ଲାଗିଲା । ସେତେବେଳେ ମୁଁ କ'ଣ ସବୁ ଭାବିଲି, ସେଥିରୁ କେତେଦୂର ଉପକୃତ ହେଲି ? ମୋର କିଛି ମନେ ନାହିଁ । ଆପଣାର ଜୀବନକୁ ମୁଁ ସେତେବେଳେ କେଉଁ ଅନନ୍ତ ଲୀଳା ଭିତରେ ହଜାଇ ଦେଇଥିଲି କେଜାଣି ? ମନେହେଉଥିଲା, ସେହି ବିରାଟ ତରୁର ଶାଖାରାଶି ଭିତରେ ସତେ ଅବା ମୁଁ ବି ଗୋଟିଏ ଶାଖା ପରି ଲମ୍ବି ରହିଥିଲି । ପ୍ରାୟ ସେହି କଥା ହିଁ ହୋଇଥିଲା; ଯେତେ ମଣିଷ ତଳେ ସେହି ବାଟଦେଇ ଯାଇଚନ୍ତି, କେହି ମୋ ଆଡ଼କୁ ଆଖି ପକାଇ ନାହାନ୍ତି ।

ଇଏ କି ଖିଆଲ ? ଇଏ କି ବ୍ୟାକୁଳତା ? କାହାକୁ ପାଇବା ପାଇଁ, କା'ର ଅନନ୍ତ ଦେହରେ ଆପଣାର ଦେହକୁ ମିଶାଇ ଦେବାପାଇଁ ଏହି ବାସନା ? ମୁଁ କିଛି ବୁଝିପାରୁ ନାହିଁ । ମନ ଆଗରେ ଶତ ଶତ ଚିତ୍ର ଭାସିଯାଉଚି, ଯେପରିକି ଏକ ବିସ୍ତୃତ ରୂପସମୁଦ୍ର ଭିତରେ ଯାଇ ପଶିଚି, ବୁଡ଼ିବାକୁ ଯାଉଚି । ମୋ' ଆଗରେ ସେହି ସମୁଦ୍ରର ଲହରୀଗୁଡ଼ାକ ଗର୍ଜନ କରି ଉଠୁଚନ୍ତି, ଅଥଚ ମୁଁ ସେହି ଲହରୀ ସହିତ ଏକ ହୋଇପାରୁ ନାହିଁ । ପ୍ରାଣ ଭିତରୁ ଯେପରି କେହି ଖାଲି ଏଡ଼େ ପାଟିରେ ଡାକି ଉଠୁଚି ମୋତେ ସେହି ତରଙ୍ଗକୋଳ ଭିତରକୁ ଡେଇଁପଡ଼ିବା ପାଇଁ । କିନ୍ତୁ ମୋର ମନ ଯେତେବେଳେ ଏହି ରୂପ

ଚିତ୍ରଣ ଓ ଅବଗାହନରେ ମାତିଚି, ସେତେବେଳେ ମୋର ଭାଷା ସ୍ଫୁରୁ ନାହିଁ କାହିଁକି ? ଅଶେଷର ସେହି ମୁଗ୍‌ଧକାରୀ ହାତ ଯେପରି ମୋର ମୁହଁକୁ ବନ୍ଦ କରି ରଖୁଚି, ମୋର ଭାଷା ପ୍ରକାଶକାରୀ ତନ୍ତ୍ରୀକୁ ଭାବମୁଗ୍‌ଧ କରି ରଖୁଚି । ପଦେହେଲେ କଥା କହିପାରୁ ନାହିଁ କି ପଦେହେଲେ ଲେଖିପାରୁ ନାହିଁ । ମୋର ଅଭିଜ୍ଞତାକୁ କବିତା ଆକାରରେ ଲେଖି ବସିବାକୁ ମନକଲେ ଭିତରୁ କିଏ ଯେପରି ଉପହାସ କରି ଉଠୁଚି । ମୋର ଆତ୍ମପ୍ରକାଶ କରିବାର ସବୁ ଶକ୍ତି ଯେପରି କେହି ଅପହରଣ କରିନେଇଚି । ମୁଁ ପାନ କରି ଗ୍ଲଲିଚି, ନୀରବ ବିସ୍ମୟରେ କାହାର ଧାରାକୁ ନିଜର ସରୋବରଟି ଭିତରକୁ ମୁହାଁଇ ଦେଇ ଗ୍ଲଲିଚି । ମୋର ବିସ୍ମୟକୁ ଲିପିବଦ୍ଧ କରିବାକୁ ଚେଷ୍ଟା କଲେ କିଏ ଅମଙ୍ଗ ହୋଇ ଉଠୁଚି । ରୂପସମୁଦ୍ରର ସୁଧାପାନ ପରିପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ କେବଳ ନୀରବରେ ପାନ କରିଯିବାକୁ ହିଁ ଯେପରି ଗୁରୁଜନ ପରି କିଏ ମୋତେ ସାବଧାନ କରିଦେଇ ଯାଉଚି ।

ଅନେକ ସମୟ ପର୍ଯ୍ୟନ୍ତ ସେଇ ଆମ୍ବଗଛ ଉପରେ ଘାଲେଇ ପଡ଼ିରହିଲା ପରେ ହାତରେ କାଗଜ କଲମ ଧରି ଭାବିବସିଲି । ଯାହାରି ଖେଳରେ ଘଣ୍ଟାଏ କାଳ ମଜ୍ଜି ରହିଥିଲି, କଲମର ଗାରରେ ତାକୁ ରୂପ ଦେବାକୁ ଇଚ୍ଛା ହେଲା । କିନ୍ତୁ କିଛି ମନେପଡ଼ିଲା ନାହିଁ । ମନ କହିଲା, ମୁଁ କିଛି ଜାଣେ ନାହିଁ; ହୃଦୟ କହିଲା, 'ମୁଁ କିଛି ପାଇ ନାହିଁ, ମୋତେ ବର୍ତ୍ତମାନ ବିଚଳିତ କରନା ।' ବାଧ୍ୟ ହୋଇ ନିରସ୍ତ ହେଲି, ହାର ମାନିଲି । କାଗଜ କଲମକୁ ପକେଟରେ ରଖିଦେଲି ।

ମୁଁ କାହା ପଛରେ ଧାଇଁଚି ? ପ୍ରକୃତିର ରଙ୍ଗସଜ୍ଜା ଦେଖିବାରେ ମଣିଷ ସହିତ ବନ୍ଧୁତା ସ୍ଥାପନ କରିବାରେ ମୁଁ କାହାକୁ ଏପରି ପରିପୂର୍ଣ୍ଣ ଭାବରେ ଦେଖିବାକୁ ପାଉଚି, ଅଥଚ ଦେଖିପାରୁ ନାହିଁ ? ଏବଂ ସେହି ଖୋଜି ବୁଲିବାବେଳେ, ମଗ୍ନ ହୋଇ କାହାର ମନ୍ଦ୍ର ବୀଣାଧ୍ୱନି ଶୁଣିଲାବେଳେ ମୁଁ ଯେପରି ନିର୍ବୋଧ ଶିଶୁଟି ପରି ହୋଇଯାଉଚି, କେଉଁ ପରମ ଶାସକର ଦୁଇହାତ ଆସି ମୋତେ ଯେପରି ବଶ କରିଦେଇ ଯାଉଚି । ମୁଁ ସବୁ ଜାଣୁଚି, ସବୁ ବୁଝୁଚି, ସବୁ ଅନୁଭବ କରୁଚି, ମନ ଆଗରେ ଜଳଜଳ ଦେଖିବାକୁ ପାଉଚି, ଅଥଚ କିଛି ବୁଝିପାରୁ ନାହିଁ, ସେହି ଆଲେଖ୍ୟଲୀଳା ଭିତରେ ନିଜକୁ ଚିହ୍ନି ନେଇପାରୁ ନାହିଁ ।

ସବୁରି ଜୀବନରେ କଣ ଏହିପରି ଖାଲି ମୁଗ୍‌ଧ ହୋଇଯିବାର ସମୟ ଆସେ ? ସମସ୍ତେ କଣ ଏଇପରି ଏକ ନୀରବ ଶିଶୁଟି ପରି ସେହି ଅଦୃଶ୍ୟ କର୍ତ୍ତାର ଶାସନ ମାନିନେଇ ଚୁପ୍ ହୋଇଯାଆନ୍ତି ?

୭ । ୨ । ୪୭

ଖାଇସାରି ଛାତ୍ରାବାସକୁ ଫେରିବାବେଳେ ହଠାତ୍ ଉପରକୁ ଗ୍ଣହିଁ ଦେଖିଲି ଶାଳବୀଥିର ପତରସବୁ ଯା'ଭିତରେ ହଳଦିଆ ହୋଇଯାଇଚି । ମନ ଆନନ୍ଦରେ ନାଚି ଉଠିଲା । ପୁଣି ନୂଆ ପତ୍ର କଅଁଳିବ, ନୂଆ ବଉଳ ହେବ । ଏହି ସମୟଟା ଶାନ୍ତିନିକେତନରେ ଭାରି ଭଲଲାଗେ । ରାସ୍ତାଟାଯାକ ପାଚିଲା ପତରରେ ଭରିଯାଏ । ନାନାପ୍ରକାର ଫୁଲ ଫୁଟିବାକୁ ଆରମ୍ଭ କରେ ।

୮ । ୨ ୪୭

ଜୀବନରେ ଏଡ଼େ ନିଷ୍କାର ସହିତ କେବେହେଲେ ସମୟ ନଷ୍ଟ କରି ନ ଥିଲି । ଜାଣୁଚି, ମୁଁ ସମୟ ନଷ୍ଟ କରୁଚି, ବହିର ପୃଷ୍ଠାଗୁଡ଼ାକୁ ଗିଳିପାରୁ ନାହିଁ; କିନ୍ତୁ ତଥାପି ଅନୁଭବ କରୁଚି ଯେପରି ଏହି ନିଷର୍ମ ମୁହୂର୍ତ୍ତଗୁଡ଼ାକରୁ ମଧ୍ୟ ମୁଁ ଅଶେଷ ରତ୍ନ ଲାଭକରୁଚି । ପୁଣି ବେଳେବେଳେ ମନେହେଉଚି, ମୋର ବହିପଢ଼ା, ଯୁକ୍ତିତର୍କ ଓ ଜ୍ଞାନବିତଣ୍ଡାରୁ ମୁଁ ଯେତେ ଉପକାର ଓ ସନ୍ତୋଷ ପାଇ ନ ଥିଲି । ଏହି ନୀରବ ଧାବମାନତା ମୋତେ ତା'ଠାରୁ ବେଶୀ ଉପକାର ଓ ସନ୍ତୋଷ ଦେଇପାରୁଚି । ପ୍ରତ୍ୟେକ ପାତ୍ରରେ ଅମୃତ ଭରି ରହିଥିଲା ପରି ମନେହେଉଚି । ତେଣୁ କୌଣସି ପାତ୍ରକୁ ମୁଁ ଉପେକ୍ଷା କରି-ପାରୁ ନାହିଁ । ସମୟ ଯେ କେତେବେଳେ କିପରି ନଷ୍ଟ ହୁଏ, ସେକଥା ମୁଁ ଭାବିପାରୁ ନାହିଁ । ଏକୁଟିଆ ମନକୁ ମନ ନିଜର ଚେତନ ଗହୀରରେ ଖଣ୍ଡିଆ ଖାବରା ହୋଇ ଧାଇଁଥିବା ସମୟରେ ଯଦି ପ୍ରକୃତରେ ସମୟ ନଷ୍ଟ ହେଉଥାନ୍ତା, ତେବେ ଏହି କେତେଦିନର ନିଷ୍କର୍ମତା ଭିତରୁ ମୁଁ ଏପରି ପରିପୂର୍ଣ୍ଣ ସନ୍ତୋଷ ପାଉଥାନ୍ତି କିପରି ? ନା—ମୋର ହୃଦୟ ଓ ମୋର ପ୍ରାଣର ଠାକୁରକୁ ମୁଁ ଅବିଶ୍ୱାସ କରିପାରିବି ନାହିଁ । ବାହାର ଜଗତର ଜ୍ଞାନସାଗର ଅପେକ୍ଷା ଭିତରର ସେହି ପ୍ରଜ୍ଞାକଣା ଟିକକ ମୋ'ଲାଗି ଅଧିକ ଆଦରଣୀୟ, ଅଧିକ ଆନନ୍ଦଦାୟକ ।

ଏହି ପ୍ରକୃତି, ଏହି ସୂର୍ଯ୍ୟ, ଚନ୍ଦ୍ର, ଆକାଶ ଓ ମଣିଷ ଏମାନଙ୍କୁ ଏତେ ସୁନ୍ଦର ଓ ଏତେ ଅନାବିଳ ଭାବରେ ତ ଆଗରୁ କେବେ ଦେଖି ନ ଥିଲି ! ଆଗେ ବିରୁଦ୍ଧମତ ଶୁଣିଲେ ଗର୍ଜନ କରି ଉଠୁଥିଲି, ବିରୁଦ୍ଧ ରୁଚି ଦେଖିଲେ ସହି ନ ପାରି ଲୁଚି ପଳାଉଥିଲି; କିନ୍ତୁ ଆଜି ସମସ୍ତେ ଏକାଧାରରେ ମୋତେ ଏପରି ଆନନ୍ଦ ଦେଉଚନ୍ତି କିପରି ? ଦୁନିଆର ପତର, ଫୁଲ, ଆଲୁଅ ଓ ମଣିଷ ଶିଶୁକୁ ଦେଖିଲେ ମନ ଓ ଦେହଟାସାରା ଏପରି ନାଚି ଉଠୁଚି କାହିଁକି ?

ଆଗେ ଘର ଭିତରେ ବନ୍ଦ ହୋଇ ବସି ବହି ପଢ଼ୁଥିଲି, ନୋଟ୍ ଲେଖି ଖାତାର ପୃଷ୍ଠା ପୂର୍ଣ୍ଣ କରୁଥିଲି; କିନ୍ତୁ ଆଜି ବହି ପଢ଼ିଲାବେଳେ ଘର ଭିତରକୁ ଗୋଟିଏ ମାତ୍ର ଘରଚଟିଆ ଚଢ଼େଇ ପଶିଆସିଲେ ମୋର ସବୁ

ଗାମ୍ଭୀର୍ଯ୍ୟ ଏପରି ମିଳେଇଯାଉଚି କାହିଁକି ? ବେଳେବେଳେ କହିହୋଇ ଯାଉଚି 'ମୋର ବହିପଢ଼ା ବନ୍ଦ ରହିଲା, ମୁଁ ତୋତେ କିଛି ବାଧାଦେବି ନାହିଁ, ତୁ ଏଇ ଘର ଭିତରେ ଉଡ଼ିବୁଲୁଥା !' ଏକଥା ତ ଆଗରୁ କେବେ ସମ୍ଭବ ହେଉ ନ ଥିଲା ।

ଆଗେ ମୋର ଜୀବନ ଦେବତା ପାଖରେ ଅନେକବାର ପ୍ରାର୍ଥନା କରୁଥିଲି ସଂସାରର ପ୍ରାଣ ସହିତ ମୋତେ ଏକପ୍ରାଣ କରିଦେବାକୁ । କିନ୍ତୁ ସେତେବେଳେ ମୋର ଅଭିମାନ ଥିଲା, ଦମ୍ଭ ଥିଲା, ଅନେକ ଗୁଡ଼ାଏ ଜ'ଣିଚି ବୋଲି ଗାରିମା ଥିଲା । କିନ୍ତୁ ବର୍ତ୍ତମାନ ମୁଁ ସେହି ଦମ୍ଭ ଓ ଅଭିମାନକୁ କୁଆଡ଼େ କେଉଁ ରାସ୍ତାର ଧୂଳି ଉପରେ ପକାଇଦେଇ ଆସିଚି । ଯେତେବେଳେ ମନ ଦମ୍ଭ କରିବାର ପ୍ରବୃତ୍ତି ଦେଖାଉଚି, ହୃଦୟ ତାକୁ ଉପହାସ କରୁଚି । ଜଗତ ସହିତ ଏକପ୍ରାଣ ହେବାଲାଗି ଏହା କ'ଣ ଏକ ପ୍ରଥମ ସୋପାନ କି ?

କିଏ କହେ ମୁଁ ମୋର କର୍ତ୍ତବ୍ୟ ଭୁଲିଚି ? ମୋର ଗାମ୍ଭୀର୍ଯ୍ୟ ଭାଙ୍ଗିଚି ସତ, ମାତ୍ର ଜୀବନପଥ ବଦଳିଯିବ କାହିଁକି ? ମୁଁ ଯେଉଁ ଲକ୍ଷ୍ୟକୁ ଆଜିଯାଏ ଏକ ପ୍ରକାଣ୍ଡ ରୂପ ଦେଇ ଚିହ୍ନିଥିଲି, ତାକୁ ଆଜି ସହଜ ପ୍ରେମ ଦେଇ ଚିହ୍ନିବାର Experiment କରୁଚି । ଯିଏ ଦିନେ କେବଳ ଦୂରର ଆଦର୍ଶ ଓ କେବଳ କଳ୍ପନାର କଳ୍ପଲତା ହୋଇ ଅନ୍ଧାରର ଅସ୍ପଷ୍ଟତା ଭିତରେ ରହିଥିଲା, ସହଜ ଜୀବନଯାତ୍ରାର ପ୍ରତିପଳିତ ଆଲୋକ ଭିତରେ ମୁଁ ଆଜି ବଡ଼ ସ୍ପଷ୍ଟ କରି ତାହାରି ରୂପ ଦେଖିବାକୁ ପାଉଚି । ମୁଁ ଖସି ପଡ଼ି ନାହିଁ, ମୁଁ ବାଟ ଭୁଲି ନାହିଁ । ମୁଁ ନୂତନ ଆଖି ପାଇଚି ।

୧୦ । ୨ । ୪୭

ଦିନେ ହୁଏତ କିଛି ଜାଣି ନ ଥିଲି, ବିରାଟ ବିଶ୍ୱକୁ ବିରାଟ ବୋଲି ସ୍ୱୀକାର କରି ନ ଥିଲି । ତା'ପରେ ଯେତେବେଳେ ମୋ' ଭିତରେ ବିଶ୍ୱବିଜ୍ଞାନର ପ୍ରଥମ ଉନ୍ମେଷ ହେଲା, ସେତେବେଳେ ମହାନ୍ ସୃଷ୍ଟିର ବୈଚିତ୍ର୍ୟ ଦେଖି ମୁଁ ବିହ୍ୱଳ ହୋଇଗଲି,—କିଶୋର ବାଳକର ପ୍ରଥମ ସମୁଦ୍ରଦର୍ଶନ ପରି ମୋର ସକଳ ଅଙ୍ଗପ୍ରତ୍ୟଙ୍ଗ କଥା କହି ଓ ଗୀତ ଗାଇ ଉଠିଲା । ଜେଲ୍ ଭିତରେ ସେଇ ସେତିକ ଦିନର ଅଭିଜ୍ଞତା ମୋର ଆଜିଯାଏ ମନେଅଛି । ଖାଲି ଲେଖି-ଯିବାକୁ, ଖାଲି ଗାଇଯିବାକୁ ଓ ଖାଲି ନାଚିଯିବାକୁ ସେତେବେଳେ ଏଡ଼େ ଭଲ ଲାଗୁଥିଲା କାହିଁକି କେଜାଣି ? ଆଜି ବିଶ୍ୱର ସେହି ବିରାଟତ୍ୱ ମୋତେ ନୀରବ ଓ ଅବାକ୍ କରିଦେଇଚି । ମୁଁ ତାହାରି ଦ୍ୱାରଦେଶରେ ଠିଆହୋଇଚି, ଅଥଚ ଲମ୍ଫ ଦେବାର ସେହି ବିହ୍ୱଳତା ଆଜି ନାହିଁ, ତାହାର ସୌମ୍ୟ ଶାନ୍ତ ସନ୍ନିକର୍ଷରେ ଯେପରି ମୁଁ ମୁଗ୍ଧ ଓ ଯୋଡ଼ହାତ ହୋଇ ଠିଆହୋଇଚି । ଏତେବଡ଼ ଏହି ସମ୍ପଦ ଯେ ମୋର ଏତେ ନିକଟରେ ସମସ୍ତ ଭୁବନ ଭରି ଅବସ୍ଥିତ ରହିଥିଲା,

ଓ ତାହାରି ଭିତରେ ରହି ମଧ୍ୟ ଯେ ମୁଁ ତାକୁ ଅନୁଭବ କରିପାରୁ ନ ଥିଲି, ଏହି ବୋଧ ମୋତେ ଆଜି ବିସ୍ମିତ କରିପକାଇଚି । ମାତ୍ର ଏହି ବିସ୍ମୟ, ଏହି ବାକ୍ୟରୋଧ କଣ ସବୁଦିନ ପାଇଁ ରହିଥିବ ?

ବେଳେବେଳେ ଭୁଲିଯାଉଚି, ବିଶ୍ୱସହିତ ଯୋଗସୂତ୍ର ଛିଣ୍ଡିଯାଉଚି । ଆଖିଆଗରେ ଥିବା ଏହି ଗଛପତର, ମାଟିଗୋଡ଼ି କେବଳ ଜଡ଼ ଓ ଅନ୍ତରଶୂନ୍ୟ ମନେହେଉଚି । ଏବଂ ସେହି କେତେଟା ମୁହୂର୍ତ୍ତ ଯେପରି ଜଗତର ସମସ୍ତ ଅଶାନ୍ତି ଓ ଆପନ୍ନତା ଆସି ମୋତେ ଗ୍ରାସ କରି ପକାଉଚି । କିନ୍ତୁ ତା'ପରେ ହୁଏତ ପଦେ ଗୀତ, ମୁହୂର୍ତ୍ତକର ଆଲୋକବନ୍ୟା ବା କୌଣସି ଚଢ଼େଇର କଣ୍ଠସ୍ୱର ମୋତେ ପୁଣି ସେହି ବିରାଟ ଭିତରକୁ ଫେରାଇ ନେଉଚି । ହଜିଲା ସୂତାଖିଅ ହାତକୁ ଆସୁଚି, ପୁଣି ସମସ୍ତ ଶରୀର ଅକାରଣରେ ରୋମାଞ୍ଚିତ ହୋଇ ଉଠୁଚି । ବର୍ଷବର୍ଷର ସବୁ ପରିପୂର୍ଣ୍ଣତା ଓ ସବୁ ସଙ୍ଗସୁଖ ମୁଁ ସେତିକିବେଳେ ଅନୁଭବ କରିପାରୁଚି । ମୋର ମନ ଓ ମୋର ହୃଦୟ ସମସ୍ତେ ଯେପରି ଏକାବେଳେକେ କହି କହିଉଠୁଚନ୍ତି, "ଦେଖା ମିଳିଲାଣି, ଆଉ ବେଶୀ ଦୂର ନାହିଁ, ତୁ ଚାଲ !"

୧୧ । ୨ । ୪୭

ଆପଣାକୁ ଓଡ଼ିଆ କହିବାକୁ ମୋତେ ଲାଜ ଲାଗେ । କାରଣ ପ୍ରକୃତରେ ଦେଖିବାକୁ ଗଲେ ମୋ'ଭିତରେ କୌଣସି ଓଡ଼ିଆତ୍ୱ ନାହିଁ । ଓଡ଼ିଆର ଜୀବନ, ସମାଜ, ସାହିତ୍ୟ ଓ କଳା ସମ୍ବନ୍ଧରେ ମୋର ଖୁବ୍ କମ୍ ଜ୍ଞାନ ଅଛି । କେବଳ ଏତିକି, ମୁଁ ଓଡ଼ିଶାରେ ଜନ୍ମ ହୋଇଚି ଏବଂ ମୋ'ର ବୋଉଠାରୁ ମୁଁ ପ୍ରଥମେ ଓଡ଼ିଆ କଥା ହିଁ ଶୁଣିବାକୁ ପାଇଥିଲି । କିନ୍ତୁ ଭୂଗୋଳ ବା ଭାଷା ଜାତିତ୍ୱର ଯଥାର୍ଥ ପରିଚୟଜ୍ଞାପକ କଦାପି ହୋଇ ନ ପାରେ । ଯେଉଁ ବିଶେଷ ବାଣୀ ଓ ବିଶେଷ ସନ୍ଦେଶ ନେଇ ଓଡ଼ିଆ ବା ଉତ୍କଳର ଐତିହ୍ୟ ସୃଷ୍ଟି ହୋଇଚି ଯଦି ମୁଁ ତା'ର ପ୍ରତିନିଧିତ୍ୱ କରି ନ ପାରିଲି, ତେବେ ମୋତେ ଖାଣ୍ଟି ଓଡ଼ିଆ ବୋଲି କୁହାଯିବ କିପରି ? ଓଡ଼ିଶା ବୋଇଲେ ଗୋଟିଏ ଦରିଦ୍ର ପ୍ରଦେଶକୁ ବୁଝାଏ, ଓଡ଼ିଆ ବୋଇଲେ ଧରାତଳେ କୁଡ଼ିଆ କରି ରହିଥିବା କେତେ ଲକ୍ଷ ଗରିବ ମଣିଷଙ୍କୁ ମଧ୍ୟ ବୁଝାଏ । ମାତ୍ର ମୋ'ଭିତରେ ସେହି ଓଡ଼ିଶା ବା ଓଡ଼ିଆର କି ସତ୍ତକ ରହିଚି ? ମୁଁ ସଭ୍ୟ, ଓଡ଼ିଶାର ଧନରେ ମୁଁ ମୋର ଜୀବନର ମାନକୁ ଉନ୍ନତ କରିଚି; ମୁଁ ଶିକ୍ଷିତ, ଓଡ଼ିଶାର ମଜୁରିଆ ନିଜ ପେଟକୁ ଅଧା ରଖି ମୋତେ ପାଠ ପଢ଼ାଇଚି । କିନ୍ତୁ ସମସ୍ତ ଦିନ ଭିତରେ ମୁଁ ତା'ପାଇଁ କେତେଥର ଭାବେ ? ମୋର ଭବିଷ୍ୟତର ଚିନ୍ତା କଲାବେଳେ କେତେଦୂର ମୁଁ ସେହି ଦରିଦ୍ର ଭୂମିକୁ ମୋର କର୍ତ୍ତବ୍ୟ ଭୂମିର ପୁରୋଭାଗରେ ରଖିଥାଏ ? ମୁଁ ପେଟପୂରା ଖାଏ, ଖୁସୀ ହୋଇ ଚିନ୍ତା କରେ, କଳା,

କୌତୁକ ଓ କାରିଗରିର ପ୍ରଶଂସା କରେ, ମାତ୍ର ଯିଏ ମୋତେ ନିଶ୍ୱାସ ଦେଇ ମଣିଷ କରିଚି, ତା'କଥା ମୁଁ କେତେଥର ଚିନ୍ତା କରେ ? ମୁଁ ଓଡ଼ିଆ ନୁହେଁ; ମୁଁ ଏ ଯୁଗର ସେହି ଶିକ୍ଷିତ ଯୁବକ, ଯାହାର ନିଜର ବୋଲି କହିବାକୁ କୌଣସି ଦେଶ, କୌଣସି ଜାତି ବା ଝାଳବୁହା କୌଣସି ଦୌଲତ ନାହିଁ, ଅଥଚ ଯିଏ ଆଜି ଏହିସବୁଯାକକୁ ନିଜର ବୋଲି ଦାବୀ କରି ଆବୋରି ବସିଚି, ଜବରଦସ୍ତି ନିଜକୁ ଦେଶର ପ୍ରତିନିଧି ବୋଲାଇ ଯିଏ ମୁକୁଟ ଦେଖୁଚି । ପ୍ରକୃତ ଓଡ଼ିଆ ବୋଲି କହିବାକୁ ଗଲେ ଆହୁରି ଅନେକ ପ୍ରସ୍ତୁତ ହେବାକୁ ପଡ଼ିବ । ପ୍ରତ୍ୟେକ ଓଡ଼ିଆ ସହିତ ଯଥାର୍ଥରେ ଏକ ଆତ୍ମବୋଧ ନ ଆସିବା ପର୍ଯ୍ୟନ୍ତ ମୁଁ କେବେହେଲେ ଆପଣାକୁ ଓଡ଼ିଆ ବୋଲି କହିବାର ଦୁଃସାହସ କରିବି ନାହିଁ ।

ଆଜିଯାଏ ମୁଁ ଭବିଷ୍ୟତକୁ ନେଇ କେବଳ ସ୍ୱପ୍ନ ଦେଖି ଆସିଥିଲି, କେବଳ ଆନନ୍ଦରେ ରୋମାଞ୍ଚିତ ହୋଇ ଉଠୁଥିଲି । ମାତ୍ର ଆଜି ମନରେ କି ଦୁର୍ବଳତା ପଶିଚି କେଜାଣି, ଭବିଷ୍ୟତଟା ଗୋଟାଏ ସମସ୍ୟା ପରି ମନେ-ହେଉଚି । ସେଇଥିପାଇଁ ସ୍ୱତାଖିଅ ପରଖିଲା ପରି ମୁଁ ଆଜି ଭବିଷ୍ୟତକୁ ପରଖି ବସିଚି । ମୋର ଭବିଷ୍ୟତ କେବଳ ମୋର ବ୍ୟକ୍ତିଗତ ନୁହେଁ, ନିଜକୁ ଅତି ବିଚ୍ଛିନ୍ନ ଭାବରେ ବିଗ୍ଭର କରି ମୁଁ ଆଜିଯାଏ କୌଣସି କଳ୍ପନା କରି ନାହିଁ । ମୋର ପ୍ରତ୍ୟେକ ଲକ୍ଷ୍ୟ ଓ ପ୍ରତ୍ୟେକ ବାସନାକୁ ମୁଁ ସମଗ୍ର ମଣିଷ ସମାଜର ସ୍ୱାର୍ଥ ସହିତ ତଉଲି କରି ଦେଖିବାକୁ ଚେଷ୍ଟା କରିଆସିଚି ।

୧୨ । ୨ । ୪୭

ଶାନ୍ତିନିକେତନ ଆସିବା ପୂର୍ବରୁ କଲିକତାର ଗୁଜରାଟି ବନ୍ଧୁଙ୍କ ଘରେ ରବୀନ୍ଦ୍ରନାଥଙ୍କ 'ଗୀତବିତାନ'ର କେତୋଟି ପୃଷ୍ଠା ପଢିଥିଲି । କିନ୍ତୁ ସେଥର ସେହି ଗୀତଗୁଡ଼ିକର ସମ୍ପୂର୍ଣ୍ଣ ରସ ପାଇ ନ ଥିଲି । ରସଦାତାର ନିକଟବର୍ତ୍ତୀ ହୋଇପାରି ନ ଥିଲି । କାରଣ ରସାସ୍ୱାଦନ କରିବାର ବାତାବରଣ ମଧ୍ୟ ସେତେବେଳେ ନ ଥିଲା । ଧଳା କାଗଜ ଉପରେ ମେସିନ୍ ଦ୍ୱାରା ଛପା ହୋଇଥିବା ଅକ୍ଷର, ପଇସା ଦେଇ କିଣା ହୋଇଥିବା ସେଲ୍‌ଫର ବହି, ସେଥିରୁ ପୂର୍ଣ୍ଣରସ କିପରି ବା ମିଳିଥାଆନ୍ତା ? କିନ୍ତୁ ଏଠାକୁ ଆସିବା ପରେ ପ୍ରତ୍ୟେକଟି ଗୀତ ମୋତେ ପାଗଳ କରିଦେଉଚି, କେଉଁଟି ଯେ କାହାଠାରୁ ବେଶୀ ଭଲ ସେକଥା ମୁଁ ବିଗ୍ଭର କରିପାରୁ ନାହିଁ । ତା'ର କାରଣ ରବୀନ୍ଦ୍ରସଙ୍ଗୀତକୁ ମୁଁ ଏଠାରେ ଗାୟକ ଗାୟିକା, ଆରାଧକ ଓ ଆରାଧିକାମାନଙ୍କ ମୁଖରୁ ଶୁଣିବାକୁ ପାଉଚି । ସଙ୍ଗୀତର ଶବ୍ଦକଳେବରରେ ଯେତେବେଳେ ସ୍ୱରର ସ୍ପର୍ଶ ଲାଗେ, ସେତେବେଳେ ତାହା ସଞ୍ଜୀବିତ ହୋଇଉଠେ, ସେଥିଲାଗି ଗୀତ ଶୁଣୁଥିବା ସଙ୍ଗେ ସଙ୍ଗେ କବି ମନର ସମସ୍ତ ବାସନା ଓ ବେଦନାର ନିବେଦନକୁ ଠିକ

କରି ବୁଝିହୁଏ । ସଙ୍ଗୀତଦ୍ୱାରା କବିର ମନ ସହିତ ଆମେ ଏକତ୍ୱ ଅନୁଭବ କରୁ । ଆଜି 'ମନ୍ଦିରରେ ଗୋଟିଏ ଗୀତ ଶୁଣି ଠିକ୍ ସେହିପରି ଲାଗିଲା । କାଲି ରାତିରେ ପ୍ରାୟ ସାଢ଼େତିନିଟା ସମୟରେ ନିଦ ଭାଙ୍ଗିଗଲା, ତା'ପରେ ପୁଣି ଶୋଇପଡ଼ିଲି । ଏତିକ ସମୟ ଭିତରେ କି ସ୍ୱପ୍ନ ଦେଖିଲି କେଜାଣି, ଉଠିଲା-ବେଳକୁ ମନଟା ସତେ ଅବା ଏକ ଅପୂର୍ବ ଆନନ୍ଦରେ ଫାଟି ପଡ଼ିବା ପରି ମନେହେଲା । ଭାବିଲି, ଜାଗ୍ରତ ଅବସ୍ଥାରେ ଯାହାପାଇଁ ଅନ୍ତର କାନ୍ଦି ମରୁଚି, ଯାହାର ପ୍ରାର୍ଥନା ଲାଗି ମୁଁ ଭାଷା ଖୋଜି ମରୁଚି, ସେଇ ଯେପରି ଆପଣାଛାଏଁ ଆସି ତା'ର ସଙ୍ଗସ୍ପର୍ଶ ଦେଇଗଲା । ସେହି ସ୍ପର୍ଶ ମୋତେ ଏହିପରି ବାରବାର ଆସି ମୁଗ୍ଧ କରି ଯାଉଥିବ । ଆଉ ମୁଁ କଣ ଚିରକାଳ ଏହିପରି ଶୋଇ ରହିଥିବି ? ଏହି ଗାଢ଼ ନିଦ କ'ଣ କେବେହେଲେ ଭାଙ୍ଗିବ ନାହିଁ ?

...କାଲି Mystics and Society ବିଷୟରେ ବକ୍ତୃତାଟିଏ ଶୁଣିବାକୁ ଯାଇଥିଲି । ବକ୍ତୃତାଟି ବେଶ୍ ହୃଦୟଗ୍ରାହୀ ହୋଇଥିଲା, କିନ୍ତୁ Mysticismକୁ ସମାଜର ଉପଯୋଗୀ ବୋଲି ପ୍ରମାଣ କରିବାର ଏହି ବୁଦ୍ଧିପ୍ରଧାନ ଯୁକ୍ତି ମୋତେ ଭଲ ଲାଗିଲା ନାହିଁ । ଯେଉଁ Mysticism ମୁଗ୍ଧ କରି ରଖେ, ପରିଚିତ କରାଇଦିଏ ତାକୁ ଶବ୍ଦାଡ଼ମ୍ବରପୂର୍ଣ୍ଣ ଯୁକ୍ତିଦ୍ୱାରା ଅଧିକ ଜଟିଳ କରାଯାଏ କାହିଁକି ? Mysticism ଅନ୍ୟର ସମର୍ଥନ ଦରକାର କରେ ନାହିଁ, ତାହା ଆପଣା ସାଧନାରେ ମୁଗ୍ଧ ହୋଇ ରହିବାକୁ କାନ୍ଦିମରେ । ତାହାକୁ ଯୁକ୍ତିର ଶସ୍ତା ପ୍ରମାଣ ଦେବାର ମତଲବ କ'ଣ ?

୧୩ । ୨ । ୪୭

ମନର ଏହି ଅସନ୍ତୋଷ କ'ଣ ଯିବ ନାହିଁ ? ମୁଁ ଯେପରି ଏକାବେଳକେ ମୁଗ୍ଧ ଓ ଅସନ୍ତୋଷ ଉଭୟ ହୋଇ ରହିଚି । ସେହି ମୋହ ଭାଙ୍ଗି ଫେରି ଆସିବାକୁ ବା ସେହି ନିରତ ଅସନ୍ତୋଷ ପ୍ରତି ବିରକ୍ତ ହେବାକୁ ମନ ଯାଉ ନାହିଁ । ଭିତରୁ କିଏ ଯେପରି କହି ଉଠୁଚି, "ଏଇ ମୋହସାଗରର ସାତତଳେ ମୋର ହଜାଧନ ଲୁଚି ରହିଚି, ଏହି ଅସନ୍ତୋଷ ଓ କ୍ରନ୍ଦନ ତଳେ ତୋର ଆପଣା ମୁକ୍ତିର ସଡ଼କ ତିଆରି ହେଉଚି ।" କାଲି ମହର୍ଷି ଦେବେନ୍ଦ୍ର-ନାଥଙ୍କ ଆତ୍ମଜୀବନୀ ପଢ଼ୁଥିଲି । ନିଜ ମନର କଥାଗୁଡ଼ାକୁ ହିଁ ଯେପରି କିଏ ସେଥିରେ ଲେଖିଦେଇ ଯାଇଚି ! ଏହି ବହିଟି ମୋତେ ଅକୂଳରେ କୂଳ ଦେଖାଇଦେଲାପରି ମନେହେଲା ।

କେତେବେଳେ ମୁଁ ମୁଗ୍ଧ ହୋଇ ଅନାଇ ରହିଚି, କେତେବେଳେ ମନକୁ ମନ ଓଠ ଉପରେ ହସ ଓ କାନ୍ଦର ଉଚ୍ଛ୍ୱାସ ଉଛୁଳି ଉଠୁଚି; ମୁଁ କିଛି କାରଣ ପାଉ ନାହିଁ । ମନ ଓ ଜୀବନର ଖିଅ ଯେପରି କେଉଁ ପରମଦେବତାର ହାତରେ ନେଇ ଧରାଇ ଦେଲାପରି ଲାଗୁଚି । ଜୀବନ ସେଇ ଚଳାଉ, ତାହାରି

କଲ୍ୟାଣ ଲାଗି ମୋତେ ସେଇ ପ୍ରେରଣ କରୁ । ଏଇ ଚମମାଂସ ଓ ଆଶା ହତାଶାର ଶରୀର ଭିତରୁ ସେଇ ଆପଣା ଛାଞ୍ଚରେ 'ମଣିଷର କଳେବର ତିଆରି କରୁ । ମୁଁ ତାକୁ କୌଣସି ବାଧାଦେବି ନାହିଁ ।

ଏ କଣ କେଉଁ ପରମ ମିଳନର ପୂର୍ବରାଗ ? ନିଜକୁ କାହାର ଅନନ୍ତ ଅସୀମରେ ହଜାଇ ଦେବାପାଇଁ, କାହାର ରଥଧୂଳି ବୋଲିହୋଇ ନିଜକୁ ଧନ୍ୟ କରିବାପାଇଁ ସେହି ପ୍ରଥମ ସଜ ସଜାଡ଼ିବାରେ ବ୍ୟସ୍ତହେବା ଲକ୍ଷଣ ? ମୁଁ କିଛି ବୁଝିପାରୁ ନାହିଁ । ମୁଁ କିଏ, କଣ, କାହିଁକି ଏକ ପରିଚୟ ନେଇ ଏଠାକୁ ଆସିଥିଲି, ଜଗତର ସ୍ନେହଆଦର ନେଇ ଏତେ ଫୁଲି ଉଠିଥିଲି କାହିଁକି ? କାହିଁକି ଏତେ ମୁଗ୍ଧ ହୋଇଥିଲି, ନିଜକୁ କାହା ସହିତ ମିଳାଇ ଦେବାଲାଗି ମୁଁ ଏତେ ବ୍ୟଗ୍ର ହୋଇପଡ଼ିଚି ? କିଏ ମୋତେ ଏପରି ପାଗଳ କରୁଚି, କିଏ ମୋତେ ଏପରି ନଗ୍ଚାଇବାରେ ଲାଗିଚି ?

ମୁଁ କ'ଣ ତାହାରି ଇଙ୍ଗିତରେ ନାଚିବି ? ତାହାରି ତାଳରେ ଗୀତ ଗାଇବି ? କିଏ ମୋତେ ଉତ୍ତର ଦେବ, କିଏ ମୋତେ ଏକଥା ବୁଝାଇଦେବ ? ତା'ର ଇଛା ଯାହା, ଇଙ୍ଗିତ ଦେଇ ସେ କହିଦେଉନି କାହିଁକି ?

ଆଜିଯାଏ ମନ, ହୃଦୟ ଓ ଜୀବନର ସ୍ୱତନ୍ତ୍ରତା ନେଇ ମୁଁ ଖୁବ୍ ଭାବିଥିଲି, ଖୁବ୍ ଉଦ୍‌ଗାର କରିଥିଲି, ତେବେ ଆଜି ଗୋଟାଏ ଅଜଣା ହାତର ବନ୍ଧନରେ ବାନ୍ଧି ହୋଇଯିବାକୁ ମନ ଏପରି ବ୍ୟାକୁଳ ହେଉଚି କାହିଁକି ? ଏହି ବିରାଟ ଆଲିଙ୍ଗନର ମୋହମୟ ଡୋରରେ ପଡ଼ିବାକୁ କ'ଣ ମଣିଷ ଏତେ ଖାଲ, ଢିପ, ପିଞ୍ଜରା ଓ ପହରା ଅତିକ୍ରମ କରି ଆସିଥାଏ ? ତା'ର ସବୁ ବିଦ୍ରୋହ, ବିପ୍ଳବ, ଗର୍ଜନ ଓ ଆତ୍ମବିକାଶ କ'ଣ କେବଳ ଏହି ସାଗର ସଙ୍ଗମ ସକାଶେ ? ଜୀବନ ଅବବାହିକାର ସମସ୍ତ ମାଟିଗୋଡ଼ି, ମଇଳା ଓ ଆବର୍ଜନାକୁ ଏକ ବିରାଟ ସାଗରରେ ମିଶାଇ ଦେଇ କଣ ମଣିଷ ଶାନ୍ତି ପାଏ ? ଜୀବନର ସବୁ-ପ୍ରକାର ଦୁଃଖ ଓ ଦୈନ୍ୟ, ଅସ୍ୱସ୍ତି ଓ ଅସନ୍ତୋଷର ଅନ୍ଧଦଉଡ଼ା କ'ଣ କେବଳ ଏହି ପରମ ବନ୍ଧନର ଯୋଗ୍ୟ ହେବା ପାଇଁ ? ମୁଁ କିଛି ବୁଝିପାରୁ ନାହିଁ ।

୧୪ । ୨ । ୪୭

କାଲି ରାତିର ଗାଢ଼ ଅନ୍ଧାର ଅପସରାଇ ଦେଇ ଆଜି ଦିନର ସକାଳ ଆସିଲା, ତଥାପି କାହିଁ, ମନ ଭିତରର ଏହି ଅନ୍ଧାର ତ ଘୁଞ୍ଚିଲା ନାହିଁ ! ଉଦୟମାନ ସୂର୍ଯ୍ୟର ଆଲୋକପାତରେ ଯେତେବେଳେ ନିଜକୁ ସ୍ପଷ୍ଟ କରି ଦେଖିବାକୁ ପାଇଲି, ସେତେବେଳେ ଆଲୋକଭୀରୁ ମନ ମନ ସତେ ଅବା ଲୁଚି ପଳାଇବାକୁ କନକନ ହେଲା । କି ଆବର୍ଜନା, କି ଅଳିଆଗଦାରେ ପୂର୍ଣ୍ଣ ଏହି ଜୀବନଟା ! କେତେ ଦ୍ୱେଷ, କପଟ, ମିଥ୍ୟା ଓ ଅଭିମାନ ଏକାଠି ଜମାଟ ବାନ୍ଧି

ଜୀବନର ପ୍ରେମଶଯ୍ୟାଟିକୁ ଘୋଡ଼ାଇ ରଖିଚି । ଜଗତରେ ବଡ଼ ହେବାକୁ, ଲୋକହାଟରୁ ମାନ ପାଇବାକୁ ମଣିଷ ଆପଣାର ଚାରିପାଖରେ କେତେ ବାଡ଼ ଘେରାଇ ଆପଣାକୁ କେଡ଼େ ସଙ୍କୁଚିତ କରି ନ ପକାଇଚି । ମୋ'ଭିତରେ ଯେଉଁ ଜ୍ୟୋତି ଟିକକ ରହିଚି, ଉଦାର ଭାବରେ ତାକୁ ପ୍ରତିଫଳିତ କରିବାଲାଗି ମୁଁ ଏଡ଼େ କାତର କାହିଁକି ? ସେହି ଜ୍ୟୋତି କଣ ଏଡ଼େ କ୍ଷୀଣ ? ମୋଭିତରେ ନବଗଠନର ଯେଉଁ କାଠି ରହିଚି, ତାକୁ ମୁଁ ସିନ୍ଦୂକ ଭିତରେ ବନ୍ଦ କରି ରଖିଚି କାହିଁକି ? ସେହି କାଠି କଣ ଏଡ଼େ ଭଙ୍ଗୁର ? ଜଗତଠାରୁ ଓ ଜୀବନତୀର୍ଥରୁ ଲୁଚି ବୁଲିବାର ଏହି ଶୋଚନୀୟ କାତରତା କେଉଁଦିନ ଯିବ କେଜାଣି ?

ସେଇ ଅସନ୍ତୋଷ, ଆନନ୍ଦ ଆହୁରି ଅନେକ ଦୂରରେ । ଆଜିଯାଏ ଯେଉଁଟାକୁ ଆନନ୍ଦ ବୋଲି ଭାବି ଆସିଥିଲି, ତାହା ମୋତେ କେବଳ ମୁଗ୍ଧ କରି ରଖିଥିଲା । ମୁଁ ଆଜି ସେହି ଆନନ୍ଦଟିକୁ ଉପଲବ୍ଧି କରିବାକୁ ଚାହେଁ । ମଣିଷ ଜୀବନର ହସକାନ୍ଦ, ଉତ୍‌ଥାନ ପତନ ଓ ଭଙ୍ଗାଗଢ଼ା ଭିତର ଦେଇ ଆନନ୍ଦରୂପୀ ଯେଉଁ କାରିଗର ନିତ୍ୟ ଖେଳ ଲଗାଇଚି, ମୁଁ ତାହାରି ହାତର କୁହୁକକାଠି ଦେଖିବାକୁ ଚାହେଁ । ମୁଁ ତାହାରି ମନ୍ତ୍ରତାନ ଶୁଣିବାକୁ ଚାହେଁ । ଆହୁରି ନିରୀକ୍ଷଣ କରିବାକୁ ହେବ, ଆହୁରି ଗଭୀରକୁ ଯିବାକୁ ହେବ, ଆହୁରି ଦୂରକୁ ଅଧିଗମିବାକୁ ହେବ ।

ନିତି ସୂର୍ଯ୍ୟ ଉଠୁଚି, ଫୁଲ ଫୁଟୁଚି, ମଣିଷ ଓ ଜୀବନଜଗତର ଲୀଳା ଲାଗି ରହିଚି, କିଏ ଯେପରି ଏକ ଅନନ୍ତ ରୁଟିନ୍ ଅନୁସାରେ ଆପଣାର କାର୍ଯ୍ୟ କରି ଚାଲିଚି । ତଥାପି ତାହାର କ୍ଳାନ୍ତି ବା ଅବସାଦ ନାହିଁ । କାରଣ ତା'ର ପ୍ରତ୍ୟେକ କାର୍ଯ୍ୟରେ ଆନନ୍ଦ ଭରି ରହିଚି । ଆପଣାର ସୃଷ୍ଟି ସାମଗ୍ରୀ ନେଇ ସେ ଅହରହ ଆନନ୍ଦ ରୂପର ନୂଆ ନୂଆ Experiment କରିବାରେ ଲାଗିଚି । ସେହି ପ୍ରାଣଭରା ଛନ୍ଦ ଓ ସେହି ସୃଷ୍ଟିଖିଅ କଣ ମୁଁ ପାଇପାରିବି ନାହିଁ ? ତାକୁ କଣ ମୁଁ ଆପଣା ତାରରେ ସାଧି ପାରିବି ନାହିଁ ?

କିଏ କେତେ ଦୂରରେ ରହି ମୋତେ ଏପରି ଭୁଲାଇ ରଖିଚି ! ମୁଁ ତ ଏପରି ନ ଥିଲି । ଆପଣାର ବୁଦ୍ଧି ଓ ବିଚାର ଦେଇ ଏକ ବ୍ୟକ୍ତିତ୍ୱବିଶିଷ୍ଟ ଜୀବ ପରି ମୁଁ ସବୁକଥା କରିଯାଉଥିଲି । ଆଜି ମୋର ସମସ୍ତ ଅହଙ୍କାର ନାଶ କରି ମୋତେ କିଏ ଏପରି ଫାନ୍ଦରେ ପକାଇ ଦେଲା ? ଗଛର ଫୁଲ ଓ ପକ୍ଷୀର କଣ୍ଠସ୍ୱର ଭିତରେ ଏଡ଼େ ଆକୁଳ ହୋଇ ମୁଁ କି ରତ୍ନ ଖୋଜି ବୁଲୁଚି । ଦିନର ଆଲୁଅ ଓ ରାତିର ଅନ୍ଧାରଗଭୀରରେ ମୁଁ କାହାର ପରିଚୟ ମାଗୁଚି ?

୧୫ । ୨ । ୪୭

କାଲି ଶୋଇବାକୁ ଗଲି ସାଢେଦଶଟା ବେଳେ । ମଝିରେ କିଛି ଜାଣି ନାହିଁ, ଉଠିଲି ସକାଳ ସାଢ଼େଚାରିଟାବେଳେ । ହଠାତ୍ ମନେହେଲା ।

ଯେପରି ମାତ୍ର କେତେ ମିନିଟ୍‌ର କଥା । ଉଠିଲା ବେଳକୁ ମନ ଭିତରେ ଏକ ପ୍ରଫୁଲ୍ଲ ଶାନ୍ତି ଅନୁଭବ କରୁଥିଲି, ରାତିର ସବୁ ମନ୍ଦତା କୁଆଡ଼େ ପୋଛିହୋଇ ଯାଇଥିଲା । ସକାଳେ ନୂତନ ଆନନ୍ଦର ଆଗମନୀ ପାଇଁ ମୋର ମନକୁ ଯେପରି କିଏ ପ୍ରସ୍ତୁତ କରି ରଖିଥିଲା ।

...ଅନ୍ତତଃ ଦଶଜଣ ଯୁବକ—ସକଳପ୍ରକାର ନିଷ୍ଠା ଓ ଯୋଗ୍ୟତା ନେଇ ସେମାନେ ମଣିଷର ସେବାଲାଗି ତିଆରି ହୋଇ ଆସିବେ । ଆମ ପାଖରେ ଯଥେଷ୍ଟ ଜ୍ଞାନ ରହିଚି, ମାତ୍ର ଅସଲ ନିଷ୍ଠା ଓ ଆତ୍ମସମର୍ପଣ ଟିକକ ନାହିଁ ବୋଲି ଆମ ରାଷ୍ଟ୍ରୀୟ କ୍ଷେତ୍ରରେ ଯାବତ ଆବିଳତା ଦେଖାଯାଉଚି । ଏହାରି ଯୋଗୁଁ ରାଷ୍ଟ୍ର ଓ ସ୍ୱାର୍ଥ ମଧ୍ୟରେ ସଂଘାତ ସୃଷ୍ଟି ହେଉଚି । ଆମେ ସମସ୍ତେ ପଛରେ ପଡ଼ିରହିଚୁ ।

ଓଡ଼ିଶା ଗରିବ, ଓଡ଼ିଶା ସମସ୍ତଙ୍କ ପଛରେ, ଓଡ଼ିଆର ବ୍ୟକ୍ତିତ୍ୱବୋଧ ହଜିଯାଇଚି, କେବଳ କର୍ମୀର ନିଷ୍ଠା ଓ ଜୀବନବ୍ରତ ହିଁ ଏହି ମଲାମାଟିକୁ ସଜୀବ କରିପାରିବ । ରାଜନୀତି, ସମାଜଗଠନ, ସାହିତ୍ୟ, ଧର୍ମ ଓ ଲୋକାଗ୍ରର ସକଳ କ୍ଷେତ୍ରକୁ ଏକତ୍ର ଓ ସମଗ୍ର ଭାବରେ ଦେଖିବାକୁ ହେବ । ଦେଶଗଠନ କେବଳ ରାଜନୀତି ନୁହେଁ, ପ୍ରତ୍ୟେକ କ୍ଷେତ୍ରରେ ସେହି ଏକମୁଖୀ ଦୃଷ୍ଟି ରଖି ଆମେ ସବୁକ୍ଷେତ୍ରକୁ ଦୂଷିତ କରି ପକାଇଚୁ । ଆଜି ଦେଶକୁ ଏକ ସମୂହ ଓ ଓ ଜୀବନ୍ତ ଦୃଷ୍ଟିରୁ ଦେଖିବାକୁ ହେବ । ପ୍ରତ୍ୟେକେ ନିଜନିଜର ନିର୍ଦ୍ଦିଷ୍ଟ କ୍ଷେତ୍ରରେ କାମ କରିବେ, କିନ୍ତୁ ସମସ୍ତେ ଗୋଟିଏ ଦୃଷ୍ଟିରେ କାମ କରିବେ । ତେବେଯାଇ ଦେଶର ଗାଡ଼ି ସହଜ ଭାବରେ ବିକାଶ ପଥରେ ଗ୍ଭଲିପାରିବ । ବୈଜ୍ଞାନିକ, ସାହିତ୍ୟିକ, ଧର୍ମତତ୍ତ୍ୱବାଦୀ, ହିତବାଦୀ ଓ ରାଜନୀତିଜ୍ଞ ଭିତରେ ଆଉ ଦ୍ୱନ୍ଦ୍ୱ ଲାଗିବାର ଅବସର ନ ଥିବ ।

ଆମର ନିଷ୍ଠା ନାହିଁ । ଆମେ ଯେଉଁ ଉଦ୍ଦେଶ୍ୟରେ କାମ କରୁଚୁ, ତାହାକୁ ଭଲକରି ବୁଝିବାଲାଗି ଆମେ ଯଥେଷ୍ଟ ଚେଷ୍ଟା କରୁ ନାହୁଁ । ସେଥିଲାଗି ରାସ୍ତାମଝିରେ ଏକ ତୀର୍ଥର ଅଜ୍ଞାନ ଯାତ୍ରୀଙ୍କପରି ଆମ ଭିତରେ କଳହ ଲାଗୁଚି । ଫଳରେ ଅନ୍ୟକୁ ପଛକୁ ଟାଣିବାର ହୀନ ପ୍ରଚେଷ୍ଟା କରି ଆମେ ଆପେ ମଧ୍ୟ ସ୍ଥାଣୁ ହୋଇ ପଡ଼ିରହିଚୁ । ମାତ୍ର ଯାହାଭିତରେ ଯଥାର୍ଥ ନିଷ୍ଠା ରହିଚି, ପ୍ରତ୍ୟେକ ବାଟୋଇକୁ ଯିଏ ସେହି ଏକ ବଟୀଘରର ହରକରା ରୂପେ ଚିହ୍ନିଚି, ସିଏ କେବେହେଲେ ଏହି ଦ୍ୱନ୍ଦ୍ୱ ବା ଏହି ବିଦ୍ୱେଷ ଭିତରେ ପଡ଼ିବ ନାହିଁ ।

ଦେଶରେ ଏହି ନିଷ୍ଠାପର ଲୋକଙ୍କର ଆବଶ୍ୟକତା ରହିଚି । କୌଣସି ନୂଆ ଦଳ ତିଆରି କରି ଅନ୍ୟଠାରୁ ଅଲଗ ହୋଇ ରହିଲେ ଆମେ ଆଗେଇ ପାରିବା ନାହିଁ । ସମୂହ ଦୃଷ୍ଟି ଓ ସହଯୋଗୀ ପ୍ରଚେଷ୍ଟା ଦ୍ୱାରା ଆମେ ଆମ

ଦେଶକୁ ସୁନ୍ଦର କରି ଗଢ଼ିପାରିବା । ଏଥିଲାଗି ଜ୍ଞାନ, ପାଣ୍ଡିତ୍ୟ ଓ ବଚସା-ଶକ୍ତିର ଯେତେ ଆବଶ୍ୟକତା ନାହିଁ, ପ୍ରେମ, ନିଷ୍ଠା, ପାରସ୍ପରିକ ବିଶ୍ୱାସ ଓ ନିସ୍ୱାର୍ଥ ଆତ୍ମସମର୍ପଣର ତା'ଠାରୁ ଅଧିକ ଆବଶ୍ୟକତା ରହିଛି ।

୧୬ । ୨ । ୪୭

ଆଜି ଏହି ପବିତ୍ର ଦିବସଟିର ସୁଯୋଗ ନେଇ ମୁଁ ପୁଣିଥରେ ଆପଣା ଜୀବନର ଦେବତା ପାଖରେ ମୁଣ୍ଡ ନୁଆଁଉଛି । ଅତୀତରେ ଏହିପରି ଗୋଟିଏ ଷୋଳ ତାରିଖ ମୋତେ ଏକ ମହତ୍ତର ଜୀବନର ପରିଚୟ ଦେଇଥିଲା । ଜଗତର ଆଭାସ ଓ ବାହ୍ୟାଡ଼ମ୍ବରରୁ ମୋତେ ଅନ୍ତର ଓ ଆତ୍ମା ଭିତରକୁ ନେଇ ଯାଇଥିଲା ।

ସଂସାରକୁ ମୁଁ କଅଣ ଦେଇପାରିବି ? ମୁଁ ଏହି ସଂସାର ଭିତରର ଜଣେ ମଣିଷ, ତେବେ ସଂସାର ବାହାରେ କୌଣସି ଉପର ପାହାଚକୁ ଉଠିଯିବାର ସମ୍ଭା ଦମ୍ଭ କରୁଛି କାହିଁକି ? ମୁଁ ଅନେକ ଭୁଲ କରୁଛି, ଅନେକ ସମୟରେ ଉପଭୋଗ ଭିତରେ ବୁଡ଼ିରହୁଛି, ସଂସାରକୁ ଚିହ୍ନିପାରୁ ନାହିଁ । ଆଶା, ଦୁରାଶା ଓ ପାଇବା, ନେବାର ପ୍ରଲୋଭନ ଭିତରେ ପଡ଼ି ମୁଁ ଅନେକ ସମୟରେ ଜୀବନର ଜ୍ୟୋତି ହରାଇ ବସୁଛି । ମୁଁ ଜଗତକୁ କ'ଣ ଦେଇପାରିବି ? ଏପର୍ଯ୍ୟନ୍ତ ମୁଁ ମୋର ମନ, ମୋର ଭାବନା ଓ ମୋର ଚିନ୍ତାଧାରାକୁ କୌଣସି ନିର୍ଦ୍ଦିଷ୍ଟ ପଥରେ ପକାଇ ପାରି ନାହିଁ । ମୁଁ ଜଗତକୁ କ'ଣ ଦେଇପାରିବି ?

ନିତି ନିତି ସେଇ ପୁରାତନ ଲୋଭ, ମୋହ ଓ ମାୟା ମୋତେ ବାନ୍ଧି ରଖୁଛି, ମୋତେ ଦିନରାତି ଛଟପଟ କରୁଛି । ଜଳର ଗଭୀରକୁ ନ ଯାଇ ସୁଖଲୋଭୀ କୀଟ ପରି ମୁଁ ଜଳଧାରର ପଙ୍କଭିତରେ ଲଟପଟ ହେଉଛି । ପାଇବାର ଦୁରାକାଙ୍କ୍ଷା ମୋତେ ବଡ଼ ବିକଳ କରି ପକାଉଛି । ଯେତେବେଳେ କାହାକୁ ଖୋଜୁଛି, ସେତେବେଳେ କାତର କୋହରେ ମୁଁ ମୋର ଦୈନନ୍ଦିନ ଶାନ୍ତିକୁ ନାରଖାର କରିଦେଉଛି । ପୁଣି ତାହାର ସଙ୍ଗଲାଭ କଲାବେଳେ ତାକୁ ନିଜର ହାତମୁଠା ଭିତରେ ଚିପି ରଖିବାକୁ, ତାକୁ କେବଳ 'ମୋର' କରି ରଖିବାକୁ ଏକ ନିର୍ଲଜ୍ଜ ଅଭିମାନ ବି କରୁଛି । ମୁଁ ଜଗତକୁ କ'ଣ ଦେଇପାରିବି ?

ମୁଁ କ'ଣ ଏହି ଜଗତକୁ ଯଥାର୍ଥରେ ଭଲ ପାଇପାରିଛି ? ତେବେ ମଝିରେ ମଝିରେ ହରାଇ ବସିବାର ଦୁରନ୍ତ କଳ୍ପନାରେ ମୁଁ ନିଜ ମନକୁ ଏପରି ଶୋଚନୀୟ କରି ପକାଉଛି କାହିଁକି ? ସବୁ ପ୍ରେମର ଉତ୍ସ ଓ ସବୁ ବନ୍ଧନର ନିଦାନକୁ ମୁଁ କ'ଣ ଅନ୍ତର ଭିତରେ ଅନୁଭବ କରିପାରିଲିଣି ? ତାହାରି ସ୍ନେହରେ ଆପଣାକୁ ଅନୁସିକ୍ତ କରି ରଖି ଜଗତର ରୂପଲୀଳା ଭିତରେ ସେହି ସ୍ନେହର ପ୍ରତିବିମ୍ବ ଦେଖିପାରିଲିଣି ? ତେବେ ଅନେକ ସମୟରେ ମୁଁ ଜଗତ

ଓ ମଣିଷକୁ ଅବିଶ୍ୱାସ କରୁଚି କାହିଁକି ? କ୍ଷତି, ଗ୍ଲାନି ଓ ଅପମାନର ଦୁଃକ୍ଷଣ-ଗୁଡ଼ିକରେ ମୁଁ ଘୃଣା ଓ ବିଦ୍ୱେଷରେ ଏପରି ସଙ୍କୁଚିତ ହୋଇପଡ଼ୁଚି କାହିଁକି ?

ମୁଁ ବଞ୍ଚିବି, ନିରାଶାବାଦ ମୋର ଧର୍ମ ନୁହେଁ । ମୁଁ ବଞ୍ଚିବି, ଆପଣା ବାଟରେ ଚାଲି ଶିଖିବି । ମୁଁ ଝୁଣ୍ଟି ପଡ଼ିବି, ତଳକୁ ଖସିବି, ସେଥିଲାଗି ମୋର ଭୟ ନାହିଁ । ମୁଁ ଭୁଲରୁ ଶିଖିବି, ଆହୁରି ଭୁଲକରି ଶିଖିବାଲାଗି ଆଗକୁ ଧାଇଁବି, ଆହୁରି ଗଭୀରକୁ ଯିବାକୁ ଚେଷ୍ଟା କରିବି, ଏହା ହିଁ ମୋର ଜୀବନ । ମଣିଷ ଭିତରେ ଜଣେ ମଣିଷ ହୋଇ ମୁଁ ମୋର ସ୍ୱକୀୟ ପଥରେ ଚାଲିବାକୁ ଚେଷ୍ଟା କରିବି । ମୁଁ ଯେଉଁଦିନ ଏଠାରୁ ବିଦାୟ ନେଇ ଯିବି, ସେଦିନ ଝୁଣ୍ଟାପଡ଼ା, ଖଣ୍ଡିଆଖାବରା ଓ ରକ୍ତବୋଳା ଏକ ବିଜୟୀ ଜୀବନର ଉଜ୍ଜ୍ୱଳ ଓ ଆନନ୍ଦମୟ ସ୍ମୃତିଟିକକ ମୁଁ ଜଗତ ଦୁଆରେ ଅଜାଡ଼ି ଦେଇ ଚାଲିଯିବି ।

୧୭ । ୨ । ୪୭

ହଠାତ୍ 'ଯୋଗ' ଉପରକୁ ଭାରି ଝୁଙ୍କ ଉଠିଚି । ଯୋଗଦର୍ଶନର ନାନା ବହି ପଢ଼ିବାକୁ ବଡ଼ ଭଲ ଲାଗୁଚି । ମନଟା ଯେ କି ପଦାର୍ଥରେ ତିଆରି, କେତେ ଲକ୍ଷ ବୋମାର ଶକ୍ତି ଯେ ତା'ଭିତରେ କାର୍ଯ୍ୟ କରୁଚି, ଯେଉଁଦିନ ବିଜ୍ଞାନ ଏହିକଥା ଖୋଜି ବାହାର କରିପାରିବ, ସେଇଦିନ ହିଁ ତାହାର ସାଧନା ପରିପୂର୍ଣ୍ଣ ହେବ ।

ସେତେବେଳେ ମୁଁ ଖୁବ୍ ପିଲା ଥିଲି, ସେଥିପାଇଁ କଥାଗୁଡ଼ାକ ମୋର ଠିକ୍ ମନେ ନାହିଁ । କିନ୍ତୁ ବୋଉଠାରୁ ଅନେକଥର ଶୁଣିଚି, ଯେ ଖୋର୍ଦ୍ଧାର ଜଣେ ମଠ ମାଲିକ ବାବାଜୀ ଥରେ ମୋତେ ତାଙ୍କର ଚେଲା କରିନେବାର ପ୍ରସ୍ତାବ ବାପାଙ୍କ ଆଗରେ କରିଥିଲେ । ବାପା ଓ ଘରର ଅନ୍ୟମାନେ ରାଜି ନହେବାରୁ ମୋର ଚେଲା ହୋଇ ଯିବାର ଦୁର୍ଭାଗ୍ୟ ଘଟିଲା ନାହିଁ ।

ଆଜି ସେହି କଥାଟା ହଠାତ୍ ମନେପଡ଼ିଗଲା, କାରଣ ମନ ଭିତରେ ଗୋଟାଏ 'ସନ୍ନ୍ୟାସୀ' ଭାବ କାହିଁକି ଆସି ସ୍ଥାନ ପାଇଚି । Mysticism ବିଷୟରେ ବହି ପଢିବାକୁ ଇଚ୍ଛା ହେଉଚି, କୌଣସି ଦାର୍ଶନିକର ବିଚାର ଅପେକ୍ଷା ତାଙ୍କର ଜୀବନୀ ପଢିବାକୁ ବେଶୀ ଆଗ୍ରହ ଲାଗୁଚି, ଇଶୋପନିଷଦର ଶ୍ଳୋକଗୁଡ଼ିକ ମୁଖସ୍ଥ କରି ସାରିଲିଣି । ଜୀବନଟା କେବଳ ସୃଷ୍ଟି, ପ୍ରତ୍ୟେକ ମୁହୂର୍ତ୍ତରେ ଅଭିନବ ସୃଜନ କରି ସେ ସବୁଠାରୁ ବେଶୀ ଆନନ୍ଦ ପାଏ । ଯେଉଁଠି ଏହି ସୃଜନ ବନ୍ଦ ହୋଇଯାଏ, ସେଠି ଜୀବନର ମୃତ୍ୟୁ ହୁଏ ।

୧୮ । ୨ । ୪୭

ଦାର୍ଶନିକ ଏମାନୁଏଲ୍ କାଣ୍ଟଙ୍କର ଜୀବନୀ ପଢ଼ୁଚି । କାଣ୍ଟ୍ ମଧ୍ୟ ଜୀବନସାରା ବିଦ୍ରୋହ କରି ହିଁ ନିଜକୁ ଗଢ଼ିଥିଲେ । ସେକଥା ଜାଣି ମୋର

ଆଖି ଖୋଲିଯାଉଚି । ତାଙ୍କର ବାଲ୍ୟ ଓ ଅଧ୍ୟାପନା—ଜୀବନ ମୋତେ ଅଦ୍ଭୁତ ପ୍ରେରଣା ଦେଇଚି । ତାଙ୍କ ବିଷୟରେ ଆହୁରି ବେଶୀ ଜାଣିବାକୁ ଆଗ୍ରହ ହେଉଚି । ଏପରିକି ତାଙ୍କର ଗୂଢ଼ ଦର୍ଶନପଦ୍ଧତି ପ୍ରତି ମଧ୍ୟ ମୋର ଅନୁରାଗ ଖୁବ୍ ବଢ଼ିଯାଇଚି । ପଢ଼ିବାକୁ ସହଜ ଲାଗୁଚି । ଏହି ଆଗ୍ରହ ଓ ଅନୁରାଗ ସମସ୍ତ ଶିକ୍ଷାର ଆଦିସାର ପରି । ଯାହାପ୍ରତି ଅନୁରାଗ ହୁଏ, ତାକୁ ଅତି ସହଜରେ ବୁଝିହୁଏ । ବିଷୟପ୍ରତି ଛାତ୍ରର ଆଗ୍ରହ ଓ ଅନୁରାଗ ସୃଷ୍ଟି କରିବା ହେଉଚି ଶିକ୍ଷକର ସର୍ବପ୍ରଧାନ କାମ । ଆଗ୍ରହ ଜନ୍ମିଲେ ଛାତ୍ର ଆପଣା ଛାଏଁ ବିଷୟ ଭିତରେ ପ୍ରବେଶ କରିବ ଓ ତାହାର ତତ୍ତ୍ୱସାର ଆହରଣ କରିପାରିବ ।

ପୁଣି ସେଇ ପଢ଼ିବାର mania, ପୁଣି ସେଇ ଅସନ୍ତୋଷ । ହଠାତ୍ ମନେହେଉଚି, ଯେପରି ମୁଁ କିଛି ଜାଣିପାରିଲି ନାହିଁ । ଏତେ ବୁଡ଼ିବୁଡ଼ି ଯେପରି ତଥାପି ଜଳର ଗଭୀର ତଳକୁ ସ୍ପର୍ଶ କରିପାରିଲି ନାହିଁ । ଅଗାଧ ଜ୍ଞାନସମୁଦ୍ର ଭିତରେ ନିଜର ଗୋଡ଼ ରଖିପାରିବା ସକାଶେ ଯେପରି ନିଜର ଜାଗା ଖଣ୍ଡିଏ ବି ମୁଁ ତିଆରି କରିପାରିଲି ନାହିଁ । ଅଥଳରେ ଏଇ ଥଳ ପାଇବା, ଦମ୍ଭ କରି କୌଣସି ଜାଗାରେ ଗୋଡ଼ ରଖିପାରିବା, ଏସବୁ କେତେ ଜନ୍ମର ସାଧନା କେଜାଣି ? ବିଜ୍ଞାନ, ଧର୍ମ, ସମାଜନୀତି ଏପର୍ଯ୍ୟନ୍ତ ଅନେକାଂଶରେ ପ୍ରଧାନତଃ Speculation କରିଆସିଚି । ଆଭାସକୁ ଅନ୍ତରସାର ମନେକରି ଶେଷରେ ଧକ୍କା ଖାଇ ଫେରିଆସିଚି । ମଣିଷ କେବେ ସତ୍ୟର ପରିଚୟ ପାଇବ କେଜାଣି ?

ସତ୍ୟ ଯେ ରହିଚି, ଏଥିରେ ସନ୍ଦେହ ନାହିଁ । ସତ୍ୟ ନ ଥିଲେ ତାହାର ଅନ୍ୱେଷଣ କରିବାଲାଗି ମଣିଷ ଆପଣା ଭିତରେ କୌଣସି ପ୍ରବଳ ବାସନା ଅନୁଭବ କରୁ ନ ଥାନ୍ତା । ଇତିହାସରୁ ପ୍ରମାଣ ମିଳୁଚି ଯେ କେବଳ appearance ବା ଆଭାସ—ପ୍ରତିଭାସ ମଣିଷକୁ ସନ୍ତୁଷ୍ଟ କରିପାରିବ ନାହିଁ । କାରଣ ଏହି ଆଭାସଠାରୁ ମଣିଷ ଅନେକ ବଡ଼ ।

୧୯ । ୨ । ୪୭

ମୋ' ଅନ୍ତରର ପ୍ରେମକୁ ମୁଁ ସବଳ କରିବି । ପ୍ରେମ ଦୁର୍ବଳ ହେଲେ ତାକୁ ସବୁଠାରୁ ଅପମାନିତ ହେବାକୁ ପଡ଼େ । କୌଣସି ପ୍ରକାରେ ଗୁଡ଼ାଇ ହୋଇ ନ ଯାଇ ନିଖିଳର ସୃଷ୍ଟି ଭଣ୍ଡାରରେ ନିଜର ସକଳ ପ୍ରେମକୁ ଢାଳିଦେବା ହେଉଚି ଶକ୍ତିମାନ ମଣିଷର କାର୍ଯ୍ୟ ।

କପଟ ଏତେଦୂରକୁ ଯାଇ ସାରିଲାଣି । ପ୍ରତ୍ୟେକର ଜୀବନ ଭିତରେ ଦୁଇଟା personality କାମ କରୁଚି । ମଣିଷ ତା'ର ଭିତରକୁ ନ ସଜାଡ଼ି ବାହାରେ ସଂସାରକ କାରିଗର ହେବାର ଭଣ୍ଡାମି କରୁଚି । ସାହିତ୍ୟ କ୍ଷେତ୍ରରେ

Upton Sinclair ଓ ରାଜନୀତି କ୍ଷେତ୍ରରେ Bernard Shawଙ୍କ ପରି ମନୀଷୀ-ମାନଙ୍କର ଯେପରି ଆଜି ଭାରି ଆବଶ୍ୟକତା ହେଉଚି ! ପ୍ରତ୍ୟେକ ପାଦର ଖାଲି କପଟତା, ଏହି ମଣିଷ ଯାହା ଭାବୁଚି, ତାକୁ ପ୍ରକାଶ କରୁ ନାହିଁ; ପୁଣି ଯାହା ପ୍ରକାଶ କରୁଚି, ତାହାକୁ କାର୍ଯ୍ୟରେ ଅମଳ କରିପାରୁ ନାହିଁ । ମଣିଷର ଜୀବନ ଭିତରେ ସେହି ନିଆଁ କାହିଁ ? କେଉଁ ଶୀତଳ ଗାଡ଼ ଭିତରେ ତାକୁ ଏପରି କିଏ ବନ୍ଦ କରି ରଖିଚି ?

ଛାତ୍ର ଜୀବନର ସବୁ ଆଶା, ସବୁ ଚିତ୍ରପୁରୀ ଆଜି ଭାଙ୍ଗି ଭୁଷୁଡ଼ି ପଡ଼ିଲା ପରି ଲାଗୁଚି । ଯେଉଁଠି, ଅର୍ଥାତ୍ ଯେଉଁ ଭୂଇଁରେ ରବୀନ୍ଦ୍ରନାଥଙ୍କର କବିତା ଉଚ୍ଛୁଳିପାରେ, ସେଠି ମଣିଷ ନୋଆଖାଲିର ନରକଲୀଳା ବି ଲଗାଇ ଦେଇପାରେ । ଏହି ଦେଶର ପ୍ରକୃତରେ କି ଅଭାବ ରହିଚି ? ଆପଣା ଆଦର୍ଶକୁ ଆପଣା ଜୀବନରେ ପ୍ରମାଣ କରି ନ ପାରିଲେ ଆମ ଧର୍ମ, ଆମ ସନାତନ ସଂସ୍କୃତି ଓ ଆମ ଜନ୍ମଗତ ସ୍ୱାଧୀନତାର ବଡ଼େଇ କରିବାରେ ଆଉ କି ମୂଲ୍ୟ ରହିବ ?

ଆଜି ଦେଶ ଗଢ଼ିବାର ନାନା କଳ୍ପନା ହେଉଚି । ଦିଲ୍ଲୀର ମନ୍ତ୍ରଣା-ସଭାରେ ଦେଶର ମନଯନ୍ତ୍ର ପାଇଁ ଆହାରର ବ୍ୟବସ୍ଥା ହେଉଚି । ରେଳଭଡ଼ା ବଢ଼ାଇ ଯାତାୟତର ସୁବିଧା କରାହେଉଚି, ଦଳ ଦଳ ଭିତରେ ଦୂଷିତ ବ୍ୟକ୍ତିଗତ କ୍ଷେତ୍ରରେ ବାଦ ଓ ବିଗ୍ରହ ନେଇ ଘଣ୍ଟାଚକଟା ଚାଲିଚି । ସେଥିରେ କେଉଁ ଲାଭ ହେଉଚି, କାହାର ଲାଭ ହେଉଚି ? ଅଥଚ ଏହି ଦେଶରେ ଗରିବ ଗରିବ ହୋଇ ପଡ଼ି ରହିଚି, ଅସହାୟ ମଲ୍ଲୁ ଅବହେଳିତ ଭାବରେ ମରୁଚି । ମାତ୍ର ତେଣେ ସମ୍ମିଳନୀ ଓ ବକ୍ତୃତା ସବୁ ଚାଲୁଚି, ସହରରେ ଗୁଞ୍ଜାଇ୍ୟ ଓ ଆଡ଼ମ୍ବର, ଭୋଜୀ, ମେଳା ଓ ମଉଛବର କୌଣସି ଅଭାବ ନାହିଁ ।

ପ୍ରତ୍ୟେକ ମଣିଷ ଆପଣାକୁ ଚିହ୍ନିବ, ନିଜ ଭିତରର ଅମିତ ଶକ୍ତିକୁ ବୁଝି ତାହାକୁ ଯେପରି ବିରାଟ ଜୀବନ ଗଠନରେ ଲଗାଇ ପାରିବ, ସେହି ଦୃଷ୍ଟିରୁ ଚେଷ୍ଟା ହେଉ ନାହିଁ କାହିଁକି ? ବଡ଼ ଧରଣର ସରକାରୀ ସଂସାର ଓ official ଅଭିନୟ ଭିତରୁ ବାହାରି ଆସି ଏହି ମଣିଷ ତିଆରି କରିବାର ସାଧନାକୁ ଜୀବନର ସାଧନାରୂପେ ବରିନେବାକୁ କେହି ଜଣେହେଲେ ବାହାରୁ ନାହାନ୍ତି କାହିଁକି ?

ସରକାର ସବୁ ଦେବ, ସରକାର ଆରାମ ଓ ସୁଖର ବ୍ୟବସ୍ଥା କରିଦେବ । କିନ୍ତୁ ମଣିଷ ତା'ର ନିଜ ଚେଷ୍ଟାରେ ହିଁ ମଣିଷ ହେବ । ଔଷଧ ବଟିକା ଖୁଆଇ କୌଣସି ସରକାର ମଣିଷ ଗଢ଼ି ପାରିବ ନାହିଁ । ଏହି ଦେଶର ଯୁବକ କ'ଣ ଏତିକି କଥା ବୁଝିପାରୁ ନାହିଁ ?

ଦେଶର ନୂଆ ସବିଧାନ ଗଢ଼ିବାଲାଗି ଯେଉଁ ବଚସାବିପ୍ଲବ ଲାଗିଚି, ତଦ୍ୱାରା ବେଶୀକିଛି ମିଳିପାରିବ ନାହିଁ । ଅସଲ ବିପ୍ଳବ ସେଇଦିନ ଆସିବ, ଯେଉଁଦିନ ମଣିଷ ଭିତରର ନିଆଁ ନିଜ ଶକ୍ତିରେ ବାହାରକୁ ବାହାରି ଆସିବାକୁ ଗ୍ଭହିବ, ସବୁ ପ୍ରକାରର କବାଟମୁଦ ଭାଙ୍ଗି ପ୍ରକାଶିତ ହେବାକୁ ଗ୍ଭହିବ ।

୧ । ୩ । ୪୭

ଦୁଇଦିନ ସବୁ ପାଉଚି, ପୁଣି ଦୁଇଦିନ ହରାଇ ବସୁଚି । ଏ ଖେଳ ଆଉ କେତେଦିନ ଗ୍ଭଲିବ ? କିଏ କି ଉଦ୍ଦେଶ୍ୟରେ ମୋର ଜୀବନକୁ ନେଇ ଏପରି ଖେଳିବାରେ ଆନନ୍ଦ ପାଉଚି ? ଦୁଇ ତିନିଦିନ ତା'ର ସନ୍ନିଧାନ ପାଉଚି, ପ୍ରତ୍ୟେକ ଜୀବନକଣାରେ ତାହାରି ସତ୍ତା ଅନୁଭବ କରି ପ୍ରାଣପାତ୍ର ଯେପରି ପରିପୂର୍ଣ୍ଣ ହୋଇଉଠୁଚି ।

ତା'ପରେ ପୁଣି ଦୁଇଦିନର ଦୁର୍ଦ୍ଦିନ ଆସି ଜୀବନର ସବୁ ନୀଡ଼ ଭାଙ୍ଗିଦେଇ ଯାଉଚି । ଗତି ନାହିଁ, ବେଗ ନାହିଁ, ପ୍ରାଣ ନାହିଁ, ପୁଲକ ନାହିଁ ବା ଆଲୋକ ନାହିଁ । ସବୁ ଖାଲି ପଥର ପରି ନିଶ୍ଚଳ ଓ ନିଷ୍ପ୍ରାଣ । ଏହି ସଂସାରରେ ଯେପରି ମୁଁ ଏକା ରହିଚି, ସମସ୍ତେ ଯେପରି ଆଉ କୁଆଡ଼େ କେଉଁ ଦେଶାନ୍ତରକୁ ଗ୍ଭଲିଯାଇଚନ୍ତି । ସେତେବେଳେ ଜୀବନଟା ଗୋଟାଏ ବୋଝପରି ଲାଗୁଚି । ମୁଁ ଅନାଇ ରହୁଚି, ଅଥଚ ଦେଖିପାରୁ ନାହିଁ । ଆଲୁଅ ଆଉ ପବନର ସ୍ପର୍ଶ ପାଉଚି, ଅଥଚ ପ୍ରାଣ ଭରି ଉଠୁ ନାହିଁ । ମୁଁ ଖୋଜୁଚି, ଅଥଚ ମନେହେଉଚି କିଏ ଯେପରି ଅତି ଦୂରକୁ, ଆହୁରି ଦୂରକୁ ଅପସରିଯିବାରେ ଲାଗିଚି । ମୁଁ କିଛି ବୁଝିପାରୁ ନାହିଁ । ଇଏ କ'ଣ ସେଇ ଜଣକର ଲୀଳା,—ଆଲୋକ ଓ ଛାୟାର ଯାଦୁଖେଳ ଖେଳି ସେ କ'ଣ ମୋତେ ପରୀକ୍ଷା କରୁଚି କି ? ତଥାପି ସନ୍ଦେହ ହେଉଚି, ବିଶ୍ୱାସ ତୁଟିଯିବାକୁ ବସୁଚି । ସବୁ ଯେ ସେଇ, ଏକଥା ହୃଦୟ କେବେ ବିଶ୍ୱାସ କରିବ କେଜାଣି ?

ମୋର ଯେପରି ଅନେକ କିଛି କହିବାର ଥିଲା, ଲେଖିବାର ଥିଲା; ଅଥଚ ମୁଁ ଲେଖିପାରୁ ନାହିଁ ବା କହିପାରୁ ନାହିଁ । ମନେହେଉଚି, ବେଳ ବହିଯାଉଚି, ଅଥଚ ମୁଁ କିଛି କରିପାରୁ ନାହିଁ । ମାତ୍ର ହୃଦୟ କ'ଣ ରତ୍ନ ପାଇଚି କେଜାଣି, ସେ କୃପଣ ପରି କୌଣସି କଥା କହିବାକୁ ହିଁ ନାରାଜ ହୋଇ ବସିଚି ।

ହୁଏତ ମୁଁ କିଛି ପାଇ ନାହିଁ, ସେଥିପାଇଁ ହୃଦୟ କିଛି ଦେବାର ଯୋଗ୍ୟ ହୋଇପାରି ନାହିଁ । ମୁଁ ଆହୁରି ପରିପୂର୍ଣ୍ଣ ହେବି । ଆଜି ଅତି ଲୋଭରେ ଯାହାସବୁ ଅନ୍ତର କଣରେ ଲୁଗ୍ଭଇ ରଖୁଚି, ଜୀବନର ପ୍ରତ୍ୟେକ ଲୋମକୂପ ଦେଇ ପ୍ରକାଶ କରିବାର ଶକ୍ତି ମୁଁ ହାସଲ କରିବି । ସେଦିନ ଆଉ କେତେ ଡେରି ?

୨ । ୩ । ୪୭

ବେଳେବେଳେ ଖିଅଗୁଡ଼ାକ ଏପରି ଛିଡ଼ିଯାଉଚି ଯେ ମୁଁ କୁଆଡ଼େ କିଛି ଅନୁଭବ କରିପାରୁ ନାହିଁ । ଚତୁର୍ଦ୍ଦିଗ ଖାଲି ବିରସ ଓ ବୀତଶବ୍ଦ ହୋଇ-ଗଲାପରି ମନେହେଉଚି । ଏପରିକି ଏହି ଖାତାରେ ମଧ୍ୟ ଦୁଇପଦ ଲେଖିବା ପାଇଁ ଶବ୍ଦ ଜୁଟୁ ନାହିଁ । ସବୁ ହରାଇ ବସିବାର ଏ ମାନସିକ ଦୈନ୍ୟ କେଉଁଦିନ ଦୂର ହେବ କେଜାଣି ?

କାଲିଠାରୁ ପୁଣି କି ଆନନ୍ଦ,—ସବୁଠି ସେଇ ଅତି ଆପଣାର ସ୍ପର୍ଶ, ସେଇ ହସ, ସେଇ ଇଙ୍ଗିତ । ମୋତେ ମନ୍ତ୍ରମୁଗ୍ଧ କରି କୁଆଡ଼େ ଭସାଇନେଇ ଚାଲିଯାଉଚି । ନିଜର ଶରୀରଟା ମଧ୍ୟ ବେଳେବେଳେ ବିଦେଶ ପରି ମନେ-ହେଉଚି । ମନେହେଉଚି, ମୁଁ ଯେପରି ମାଟିରେ ଗଢ଼ା ହୋଇ ନାହିଁ । ଫୁଲର ଗନ୍ଧ ଓ ପବନର ତରଙ୍ଗ ସହିତ ନାନା ଅଜ୍ଞାତ ଦୂରକୁ ଉଡ଼ିଯିବା ଲାଗି ମୋ' ଭିତରେ ବେଳେବେଳେ କିଏ ଏପରି ବ୍ୟାକୁଳ ହୋଇପଡ଼ୁଚି ?

କାଲି ସଞ୍ଜବେଳେ,—ରେଲଲାଇନ୍ ପାରି ହୋଇ ସିଧା ପଳେଇଗଲି ଗହୀର ଭିତରର ସେହି ପକ୍‌କା କୂଅପାଖକୁ । ସେଠାରେ ଏକା ବସିବାକୁ ଏଡ଼େ ଭଲ ଲାଗିଲା କାହିଁକି ? ଦୂରର ଗ୍ରାମ, ଘର, ତାଳଗଛ ଓ ପାଣିଦହ ସମସ୍ତେ ମିଶି ମୋତେ ଏକ ଅପୂର୍ବ ସାନ୍ନିଧ୍ୟ ଦେଉଥିଲେ, ଆଉ ମୁଁ ଖାଲି ଅବାକ୍ ବିସ୍ମୟରେ ଅନାଇ ରହିଥିଲି । ସେହି ପରମ ମୁକ୍ତିର ଅନନ୍ତ କ୍ଷଣରେ କାହାର ବାହୁବନ୍ଧନରେ ସତେଅବା ଗୋଟିଏ ନିରୀହ ବାଳକ ପରି ବାନ୍ଧିହୋଇ ରହିବାକୁ ଭାରି ଭଲ ଲାଗୁଥିଲା ।

୮ । ୩ । ୪୭

ଯେତେଦିନଯାଏ ଗରିବ ନିଜର ଗରିବ ଦଶାରେ ସନ୍ତୁଷ୍ଟ ହୋଇ ରହିଥିବ, ସେତେଦିନଯାଏ ତା'ର ଜୀବନର ଦୈନ୍ୟ ଘୁଞ୍ଚିପାରିବ ନାହିଁ । ଜୀବନଭରା ଦୁଃଖ, ଯାତନା ଓ ଅପମାନ ଭୋଗ କରି କ'ଣ ତଥାପି ସେ ଅସ୍ଥିର ଆଘାତ ଅନୁଭବ କରିପାରୁ ନାହିଁ ? କାହିଁକି ? ସେ ତ ମଣିଷ, ତଥାପି ମଣିଷ ହୋଇ ମଥା ଟେକି ବଞ୍ଚିରହିବାର ସ୍ୱାଭାବିକ ବାସନା ତା'ଭିତରେ ଏପରି ମରିଯାଇଚି କାହିଁକି ?

ଆର୍ଥିକ ଦାରିଦ୍ର୍ୟଠାରୁ ବିକଳ ମନର ଏହି ଦାରିଦ୍ର୍ୟ ଅଧିକ କଠୋର, ଦୈନ୍ୟର ଏହି ଦାରୁଣ ମୋହଟା ମଣିଷକୁ ସହଜରେ ଛାଡ଼ିଯାଇପାରେ ନାହିଁ ।

୧୪ । ୩ । ୬୭

ଆଜି ଏଇ ସଞ୍ଜବେଳେ,—ମୁଁ ବୁଲିବାକୁ ନ ଯାଇ ହଠାତ୍ ଏକୁଟିଆ ଏଇ ଘରଭିତରେ ବସିଚି, ନିଜେ ନିଜକୁ ଓଜନ କରିବି ବୋଲି । କେତେଦୂର ପାରିବି, ତାହା ମୁଁ ନିଜେ ଜାଣେ ନାହିଁ ।

ଅନାଇଦେଲା ବେଳକୁ ଶୈଶବର ସେହି ଦୂରବିସ୍ମୃତ ଦିନଗୁଡ଼ିକର ଚିତ୍ର ଆଗ ଆଖିଆଗକୁ ଆସିଯାଉଚି । ଅସ୍ଥିର ହୋଇ ମନ କହୁଚି, କେଉଁ ମହିମାମୟୀର କୃପାରୁ ମୁଁ ପୁଣି ସେହି ଦିନଗୁଡ଼ିକ ଫେରିପାଆନ୍ତି କି ! ଆଉଥରେ ଉର୍ଦ୍ଧ୍ୱମୁଖୀ ହୋଇ ବଢ଼ନ୍ତି, ଅକୂଳ ସମୁଦ୍ରରେ ଆଉଥରେ ଲମ୍ଫ ଦିଅନ୍ତି, ଆଉଥରେ ଅଚିହ୍ନା ପାହାଡ଼ର ଉପରକୁ ଉଠିବାଲାଗି ବୋଉର କୁହା ନ ମାନି ପଳାଇଯାଆନ୍ତି କି !

ଦିନ ପରେ ଦିନ ଓ ମାସ ପରେ ମାସ ହୋଇ ମୋର ଶୈଶବ କଟିଯାଇଚି, ଆଜି ଦୂରରୁ ଅନାଇଲା ବେଳକୁ ଯେପରି ସେହି ଦିନଗୁଡ଼ାକ ବଡ଼ ବୈଶିଷ୍ଟ୍ୟହୀନ ପରି ମନେହେଉଚି । ମୁଁ ଖୁବ୍ ଭଲ ପଢ଼ୁଥିଲି, କିନ୍ତୁ କେବଳ ସେତିକିକୁ ଛାଡ଼ିଦେଲେ ଆଉ ସକଳ ବିଷୟକୁ ଯେପରି କିଏ ମୋ'ଠାରୁ ଲୁଗ୍ଭଇ ରଖିଥିଲା ! ସାତ ରକମର ଭୟ ଓ ବଡ଼ଲୋକ ହେବାର ଏକ ଅନ୍ଧ ଅଭିଳାଷ ଭିତରେ ଗୋଟାଏ ଧରାବନ୍ଧା ଛାଞ୍ଚ ଭିତରେ ମୁଁ ଭଲପିଲା ପରି ବଢ଼ୁଥିଲି । ମୋ' ପାଠପଢ଼ାର ବାହାରେ ଯେ ଅନେକ ନଦୀ, ପର୍ବତ, ଅରଣ୍ୟ ଓ ଲୋକବସତିର ଅଗାଧ ଶାସ୍ତ୍ର ପଡ଼ିରହିଚି, ସେତେବେଳେ ମୁଁ ସେକଥା ଅନୁଭବ କରି ନ ଥିଲି । ନାନା ରକମର ଆଦେଶ ଓ କଟକଣା ମୋତେ ଆପଣା ବିକାଶଜନିତ ସ୍ୱାଭାବିକ ଆନନ୍ଦରୁ ନାନାଭାବେ ବଞ୍ଚିତ କରି ରଖିଥିଲା । ସେଇଥିପାଇଁ ମୁଁ ବାହାରେ ଭଲପିଲା ହେଲି, ଭଲ ପଢ଼ିଲି ଓ ସାବାସ୍ ପାଇଲି ସିନା, କିନ୍ତୁ ମୋ' ହୃଦୟତଳର ସେହି ଆବଦ୍ଧ ହୋଇ ରହିଥିବା ଅଗ୍ନି ଭବିଷ୍ୟତର ରାକ୍ଷସ ହିସାବରେ ବଢ଼ିବାରେ ଲାଗିଥିଲା । ନାନା ଅପରିତୃପ୍ତ ଆକାଂକ୍ଷା ଓ ଅପୂର୍ଣ୍ଣ ବାସନାର ପ୍ରଶ୍ରୟ ପାଇ ମୋ'ରି ହୃଦୟ ଭିତରେ କିଏ ଯେପରି କେଉଁ ଷଡ଼ଯନ୍ତ୍ର କରିବାରେ ଲାଗିଥିଲା ।

ପିଲାଦିନ କେଉଁଦିନ ଯେ ମୁଁ ସୂର୍ଯ୍ୟର ଉଦୟଛଟା ଦେଖି ପାଗଳ ହୋଇଚି, କେଉଁଦିନ ଯେ ଗହୀର ବିଲରେ ଏକାଏକା ଘୂରିବୁଲିଚି, ଅବାଧ ଓ ଅବାରିତ ସ୍ୱାଧୀନତା ସହିତ କେଉଁଦିନ ଯେ କିଛି କରିପାରିଚି, ଆଜି ମୋର କିଛି ମନେପଡ଼ୁ ନାହିଁ । ସେତେବେଳର ଭକ୍ତିକୁ ମୁଁ ପ୍ରଧାନତଃ ଭୟଜନିତ ଏକ ଆତ୍ମସମର୍ପଣ ବୋଲି କହିବି, ସେତେବେଳର ଧର୍ମଶ୍ରଦ୍ଧାକୁ ପ୍ରଧାନତଃ ଅନ୍ଧବିଶ୍ୱାସ ବୋଲି କହିବି ଓ ସେତେବେଳର ବନ୍ଧୁମେଳକୁ ରୁଦ୍ଧ ମନୋବାସନାଗୁଡ଼ାକ ଲାଗି ଆତ୍ମପ୍ରକାଶ କରିବାର ପ୍ରଧାନତଃ ଏକ ସୁଯୋଗ ବୋଲି କହିବି । ମୋଟ ଉପରେ ଦେଖିଲେ ଏହିପରି ପ୍ରଧାନତଃ ଅର୍ଥହୀନ ଭାବରେ ହିଁ ମୋ' ଜୀବନର ଅଧିକ ଅର୍ଥପୂର୍ଣ୍ଣ ଓ ସମ୍ଭାବନାପୂର୍ଣ୍ଣ ସମୟ ଅତିବାହିତ ହୋଇଯାଇଚି ।

ଅତୀତର ସେହି ଦିନଗୁଡ଼ିକ ପ୍ରତି ଆଜି ଦୃଷ୍ଟିପାତ କରି ଦେଖୁଚି, ନାନାବିଧ ଅପଗ୍ଭର ଫଳରେ ଜୀବନ ଯେପରି ବଡ଼ ମ୍ରିୟମାଣ ଓ କୀଟଦଷ୍ଟ

ହୋଇପଡ଼ିଚି, ଏକାଧିକବାର ଅନୁତାପ ଓ ଆତ୍ମଭର୍ତ୍ସନା କରିକରି ଜୀବନର ସ୍ୱାଭାବିକ ଧାରାଟି ଯେପରି ବଡ଼ ବାଧାପ୍ରାପ୍ତ ରହିଚି, ହୃଦୟ ଭିତରର ରାକ୍ଷସଶତ୍ରୁ ଯେପରି ଏଥିରୁ ଅନେକ ଖାଦ୍ୟ ପାଇଆସିଚି । ସ୍ୱାଭାବିକ ହସ, ଆନନ୍ଦ ଓ ଜୀବନମେଳରୁ ମୁଁ ଯେତେଥର ଯେତିକି ଯେତିକି ଆପଣାକୁ ଜବରଦସ୍ତି ବିଛିନ୍ନ କରିରଖିଚି, ଭିତରର କେଉଁ ମୁଦେଇ ଯେପରି ସେତିକି ସେତିକି ନାନା କୁତ୍ସିତ ଉପାୟରେ ସେହିସବୁ ବାସନାର Catharsis କରିଚି ଓ ଜବରଦସ୍ତିର ପ୍ରତିଶୋଧ ନେଇଚି ।

ଶୈଶବର କୌଣସି ସୁଯୋଗ ନେଇପାରି ନାହିଁ । ସେଥିଲାଗି ଶୈଶବକୁ ଫେରିଯିବା ପାଇଁ ଆଜି ମୁଁ ଏପରି ଅସ୍ଥିରତା ଅନୁଭବ କରୁଚି । ଆମର ସମାଜ, ପରିବାର, ଗୁରୁଜନମେଳ ଓ ଆର୍ଥିକ ପରିସ୍ଥିତି ସମସ୍ତେ ମିଶି ମୋର ସ୍ୱତଃସ୍ଫୂର୍ତ୍ତ ବିକାଶକୁ ନାନାଭାବେ ଅଟକି ରହିବାରେ ସାହାଯ୍ୟ କରିଚନ୍ତି ।

ଜୀବନରେ ନାନା ଗର୍ହିତ କାମ କରିଚି, ଜୀବନଦେବତାର ଅନେକ ଅପମାନ କରିଚି, ଜୀବନକୋଷାଗାରର ଅନେକ ସୁନାକୁ ମାଟିଗୋଡ଼ି ପରି ବ୍ୟବହାର ଦେଖାଇ ମୁଁ ନିଜର ନିର୍ବୋଧତା ଦେଖାଇଚି । ମୁଁ ଯେଉଁପରି ସମାଜ ଓ ସାମାଜିକ ବାତାବରଣରେ ଜନ୍ମିଥିଲି, ଅନେକଥର ତାହାରି ଶିକାର ହିଁ ହୋଇଆସିଚି । ତେଣୁ ସେସବୁ ସ୍ୱୀକାର କରିବାରେ ମୁଁ କୌଣସି ସଙ୍କୋଚ ବା ଅନିଚ୍ଛୁକତା ଅନୁଭବ କରୁ ନାହିଁ । କାରଣ ମୁଁ ଜାଣେ ଯେ ମୋ' ଜୀବନର ବିକାଶ ସଙ୍ଗେସଙ୍ଗେ ଭିତରେ ଭିତରେ ଯେପରି ଗୋଟାଏ ଦୁଷ୍ଟ 'ମୁଁ', ଗୋଟାଏ ରାକ୍ଷସ 'ମୁଁ' ମଧ୍ୟ ବଢ଼ି ଗ୍ଲଲିଚି ଓ ସୁବିଧା ଦେଖି ମୋ' ଉପରେ ଦାଉସାଧୁଚି । ଅନେକ ସମୟରେ ସେ ଅତି ବନ୍ଧୁପରି ମୋ'ସହିତ ମିଶିଯାଇଚି, ଲକ୍ଷ୍ୟ ଓ ଲକ୍ଷ୍ୟହୀନତାକୁ ମୁଁ ସେହି ସମୟରେ ଏକପର୍ଯ୍ୟାୟୀ କରିପାରିଚି । ଆନନ୍ଦଲୋଭୀ ଦୈତ୍ୟର ସଙ୍ଗକୁ ମୁଁ ଆନନ୍ଦ ବୋଲି ଧରିନେଇଚି । ମୋର ଗୋଡ଼ ଖସିଯାଇଚି ।

ଆଜି ଠିକ୍ ତୀର ମାରିଲାପରି ଜୀବନର ସେହି ନଷ୍ଟ ଦିନଗୁଡ଼ିକ ମୋ' ଆଖିଆଗରେ ଦ୍ରୁତଗତିରେ ଗ୍ଲଲିଯାଉଚନ୍ତି । ମୁଁ ଅବାକ୍ ହୋଇ ଗ୍ଲହିଁରହିଚି । ସେହି ରୁଦ୍ଧ ବାସନା ଓ ଅତୃପ୍ତିଗୁଡ଼ାକର ବୋଧହୁଏ ପୂର୍ଣ୍ଣ ନିର୍ଗମନ ହୋଇ ନାହିଁ । ସେଥିପାଇଁ ମୁଁ ମଝିରେ ମଝିରେ ପୁଣି ରାସ୍ତା ଭୁଲୁଚି, ଜୀବନରୁ ହୁଡ଼ିଯାଉଚି । କିନ୍ତୁ ତଥାପି ମୋ' ଭିତରର ଦେବତା ଓ ରାକ୍ଷସ ଉଭୟକୁ ମୁଁ ଚିହ୍ନିବାର ସାମର୍ଥ୍ୟ ଅର୍ଜନ କରିପାରିଚି । ଏହି ଚିହ୍ନା ଚିହ୍ନିବାକୁ ମୋତେ ଅନେକ ମାନସିକ ଦ୍ୱନ୍ଦ୍ୱ ଭିତରଦେଇ ଯିବାକୁ ପଡ଼ିଚି, ଅନେକ ଦିନ ଓ ଅନେକ ରାତି ଏହି ଚିନ୍ତାରେ ଅତିବାହିତ ହୋଇଯାଇଚି । କୌଣସି ଶାସ୍ତ୍ର ପଢ଼ି ନୁହେଁ, କାହାରି ଉପଦେଶରେ ନୁହେଁ, ମାତ୍ର ନିଜେ ସେହି ରାକ୍ଷସର ଆଘାତ ପାଇ, ବଦ୍ଧ ବାସନାର ରୁଦ୍ର ନାଚରେ ନିଜେ ବିକଳ ହୋଇ ଓ ଜୀବନଯୁଦ୍ଧରେ ନିଜକୁ

ଅନେକବାର ରକ୍ତାକ୍ତ କରି ମୁଁ ଦେବତା ଓ ରାକ୍ଷସକୁ ଅଲଗା କରି ଚିହ୍ନିବାର ସାମର୍ଥ୍ୟ ପାଇଚି । ମୋର ଜୀବନ ପାଖରେ ମୁଁ ସବୁଦିନ ଋଣୀ ରହିଥିବି ।

କେବଳ ରାକ୍ଷସର ମାନଦଣ୍ଡଦ୍ୱାରା ମୁଁ ନିଜକୁ ମାପିବାକୁ ପ୍ରସ୍ତୁତ ନୁହେଁ । ସେହି ରାକ୍ଷସ ମୋତେ ଅନେକ ଭୋଗାଇଚି, ମୋତେ ଅନେକ ପ୍ରକାରେ ଅସହାୟ କରି ପକାଇଚି । ମାତ୍ର ତଥାପି ମୁଁ ଆଜି ସମ୍ପୂର୍ଣ୍ଣ ବିଶ୍ୱାସର ସହିତ କହିବି ଯେ ଏଇଟା ମୋର ପ୍ରକୃତ 'ମୁଁ' ନୁହେଁ, ଏଇଟା ହେଉଚି 'ମୁଁ'ର ରାକ୍ଷସ, ପ୍ରେତ; ଆଉ କେତେଦିନର Catharsis ପରେ ସିଏ ଆପେ ବିଲୁପ୍ତ ହୋଇଯିବ । କାରଣ ମୁଁ ଦେବତାକୁ ବି ଚିହ୍ନିଚି, ତାହାର ସ୍ପର୍ଶ ପାଇଚି, ନାନା ରୂପର ନାନା କ୍ଷୁଦ୍ରତା ଭିତରୁ ମୋର ଆଖି ସେହି ବିରାଟ ରୂପାତୀତକୁ ଅତି ଆପଣାର କରି ଚିହ୍ନିନେଇଚି । ମୋ' ଭିତରର ଦେବତାଟିକକୁ ମୁଁ ମୋର ପ୍ରକୃତ 'ମୁଁ' ବୋଲି ମାନିନେଇଚି । ସେଇ ମୋତେ ଚଳାଇବ, ସେହି ମୋତେ ପ୍ରେରିତ କରାଉଥିବ ।

ନାନା ସାମୟିକ ପୋକଜୀବନ ତଳେ ମୋ' ଭିତରେ ଯେ ଏକ ପର୍ବତବିପୁଳ ବିରାଟ ସମ୍ଭାବନାର ଦେବତ୍ୱ ଲୁଚିରହିଚି, ତାହା ମୁଁ କଦାପି ଅସ୍ୱୀକାର କରିପାରିବି ନାହିଁ । ଯେଉଁସବୁ ମୁହୂର୍ତ୍ତରେ ମୁଁ ସକଳ ଜଗତକୁ ମୋର ସହଯାତ୍ରୀ ରୂପେ ଅନୁଭବ କରିଚି, ସକାଳ ଓ ସନ୍ଧ୍ୟାର ସ୍ୱାଗତ ଭିତରେ ଯେତେବେଳେ ମୁଁ କେଉଁ ପରମବନ୍ଧୁର ଆହ୍ୱାନ ଶୁଣିବାକୁ ପାଇଚି, ସେହିସବୁ ମୁହୂର୍ତ୍ତରେ ହିଁ ମୁଁ ଯଥାର୍ଥଭାବେ ଆପଣାକୁ ପ୍ରକାଶ କରିପାରିଚି । କ୍ଷଣକପାଇଁ ହେଲେ ମଧ୍ୟ ସେଇ ହେଉଚି ମୋର ଯଥାର୍ଥ ଓ ଶ୍ରେଷ୍ଠ ପରିଚୟ ।

ରାକ୍ଷସ ଓ ଦେବତା ଭିତରେ ଦେବତାଟା ଯେ ସତ୍ୟ, ଶେଷରେ ମୋ'ଭିତରେ ସେହି ଦେବତାର ଯେ ଜୟ ହେବ, ମୋର ଏହି ଦୃଢ଼ ବିଶ୍ୱାସ ରହିଚି । ତେଣୁ ଭର୍ତ୍ସନା, ଅନୁତାପ ଓ ଆତ୍ମବିଦାରଣର ନେଗେଟିଭ୍ ରାସ୍ତା ଛାଡ଼ି ମୋ'ର ଶୁଭତର ବାସନାଗୁଡ଼ିକୁ ଅଧିକ ଆପଣାର କରି ରଖିବାର ମାର୍ଗକୁ ମୁଁ ମୋ' ଜୀବନର ବିକାଶମାର୍ଗ କରି ରଖିଚି । ଯାହା ଯାଇଚି, ସେଥିରେ ମୁଁ କାନ୍ଦୁନାହିଁ । ମୁଁ ଯାହା ହେବି, ସେଇଥିଲାଗି ହିଁ ମୋର ସମସ୍ତ ଦିନ ଓ ସମସ୍ତ ରାତିକୁ ଉତ୍ସର୍ଗ କରି ରଖିବାକୁ ମୁଁ ଶପଥ ନେଇଚି । ଜୀବନରେ ରାକ୍ଷସଟା ହିଁ ଯଦି ସତ୍ୟ ଓ ସାର ହୋଇଥାନ୍ତା, ତେବେ ସଂସାରରେ ସମାଜ ଓ ପରିବାରର ସୃଷ୍ଟି ହୋଇ ନ ଥାନ୍ତା, ସକାଳ ଓ ସନ୍ଧ୍ୟାର ଆବେଦନ ଭିତରେ ଏତେ ମହିମା ପୂରି ରହି ନ ଥାନ୍ତା । ଜୀବନେ ଯତ ପୂଜା ହ'ଲନା ସାରା, ଜାନି ହେ ଜାନି ତାଓ ହୟନି ହାରା,—ଗୁରୁଦେବଙ୍କର ଏହି କବିତାଟିକୁ ମୁଁ ଜୀବନମନ୍ତ୍ର କରି ରଖିଚି ।

ମୋର ଅବଚେତନ ମୋର ଶତ୍ରୁପରି କାର୍ଯ୍ୟ କରୁଚି, ମୋର ଦୁର୍ବଳତାର ସୁଯୋଗ ନେଇ ସେ ଅନେକ ସମୟରେ ରାକ୍ଷସରାଜତ୍ୱର

ଅରାଜକତା ସୃଷ୍ଟି କରିବସୁଚି, ମୋର ଜୀବନକୁ ବଡ଼ ଶୋଚନୀୟ କରିପକାଉଚି । ସେଥିପାଇଁ ବଡ଼ ସଚେତ ଭାବରେ ମୁଁ ଏହି ଅବଚେତନକୁ ପୋଷ ମନାଇବାକୁ ଚେଷ୍ଟା କରୁଚି । କିନ୍ତୁ ମୋର ଅବଚେତନ ମୋର ଶତ୍ରୁ ନୁହେଁ, ତାକୁ ମୁଁ କେବେହେଲେ ନାରଖାର କରିଦେବି ନାହିଁ । ମୁଁ ତାକୁ କିଣିନେବି, ଆପଣାର କରିନେବି । ପ୍ରାର୍ଥନା, ଆତ୍ମସମୀକ୍ଷଣ ଓ ଆତ୍ମପରିଚୟ ଦ୍ୱାରା ମୁଁ ମୋ' ଅବଚେତନର ସେହି ଅଗାଧ ରାଜ୍ୟକୁ ବୁଝିଶିଖିବି । କାରଣ ମୁଁ ଭାରି ଭଲକରି ଜାଣେ ଯେ ଏହି ଅବଚେତନ ଭିତରେ ଅମିତ କ୍ଷମତା ଲୁଚିରହିଚି । ମୋ' ଜୀବନର ଅନେକ ସମ୍ଭାବନା ଏଇଠି ଗ୍ୟପାଖାଇ ଅବରୁଦ୍ଧ ହୋଇ ରହିଚି । ମୁଁ ତାକୁ ମୁକ୍ତ କରିବାକୁ ଚେଷ୍ଟା କରିବି, ଅବଚେତନକୁ ମୁଁ ଚେତନ ଜୀବନର ସହଯୋଗୀ କରି ରଖିବାକୁ ଚେଷ୍ଟା କରିବି । ଦେବତାକୁ ଯେତିକି ଯେତିକି ଚିହ୍ନୁଥିବି, ଯେତିକି ଯେତିକି ଆପଣା ଜୀବନର ଆସ୍ଥାନଟିକୁ ମଧ୍ୟ ଯଥାର୍ଥତର ଭାବରେ ଚିହ୍ନିନେଇ ପାରୁଥିବି, ମୁଁ ମୋ' ଅବଚେତନର ପର୍ବତଶକ୍ତିକୁ ମଧ୍ୟ ସେତିକି ସେତିକି ଯଥାର୍ଥ ମାର୍ଗରେ ମୁହାଁଇଦେଇ ପାରୁଥିବି । ସେହି ଦେବତାକୁ ଚିହ୍ନିବା ହେଉଚି ମୋର ଜୀବନର ଲକ୍ଷ୍ୟ । ପଡ଼ି, ଉଠି, ଝୁଣ୍ଟି ଓ ରକ୍ତାକ୍ତ ହୋଇ ମୁଁ ତାହାରି ପଦପ୍ରାନ୍ତକୁ ଫେରିଯିବି । ତାହାରି ଜୟ ହେଉ ।

୧୫ । ୩ । ୪୭

କାଲି ଏତେଗୁଡ଼ାଏ କଥା ଲେଖିପକାଇଲି, ସେଥିରେ ମୋର ଲାଭ ହେଲା ନା କ୍ଷତି ହେଲା ? ମୋ' ଜୀବନର ଯାବତୀୟ ଘାତପ୍ରତିଘାତର ଛାପ ନେଇ ଏହି ଖାତାର ଲେଖା ଦିନକୁଦିନ ମୋଟା ହୋଇ ଗ୍ଲଲିଚି, କାହା ପାଇଁ ? ମୋ'ରି ହତାଶ ଓ ମୋ'ରି ବିପର୍ଯ୍ୟୟ ଦିନେ ମୋ'ରି ଆଶା ଓ ମୋ'ରି ବିଭବର ଉଦ୍ଦୀପକ ହେବ ବୋଲି । ଏଇ ଖାତାରେ ଅନ୍ତରର ପଦେ ସତକଥା ଲେଖିବାକୁ ମୁଁ ଆଗପଛ ହେବି କାହିଁକି ?

ପ୍ରତ୍ୟେକ ମଣିଷ ଭିତରେ ଦେବତା ଯେମିତି ରହିଚି, ରାକ୍ଷସ ବି ସେମିତି ରହିଚି । କିନ୍ତୁ କୌଣସି ମଣିଷ ସଚେତ ଭାବରେ ରାକ୍ଷସର ବିଜ୍ଞାପନ କରି ବୁଲେ ନାହିଁ । କାରଣ ରାକ୍ଷସ ଅଂଶଟା ତା'ର ସତ୍ୟ ପରିଚୟ ନୁହେଁ । ରାକ୍ଷସଟାକୁ ମଣ କରିବା ସଙ୍ଗେ ସଙ୍ଗେ ସେ ଜୀବନଦେବତାକୁ ଆପଣାର କରି ଚିହ୍ନିନିଏ ' ତାହା ହିଁ ତା'ର ଯଥାର୍ଥ ପରିଚୟ ।

ମୋ' ଭିତରର ରାକ୍ଷସକୁ ବି ମୁଁ ମଣ କରିବାକୁ ଗ୍ଲହେ ! ତାହାର ଅମିତ ଶକ୍ତିକୁ ମୁଁ ଦେବତାର ପ୍ରତିଷ୍ଠାଲାଗି ନିୟୋଜିତ କରିବାକୁ ଗ୍ଲହେ । ସଚେତ ଜୀବନ ପରି ଏହି ଅବଚେତନ ମଧ୍ୟ ମୋ'ରି ଜୀବନଭୂମିର ଅନ୍ତର୍ଗତ । ଏହାରି ଅଖୋଦିତ ଗର୍ଭରେ ଅନେକ ସମ୍ଭାବନା ଲୁଚି ରହିଚି । ଏହି ଅବଚେତନରୁ ହିଁ ମୁଁ ମୋର ଅନ୍ତର୍ନିହିତ ଅନେକତର ପ୍ରବୃତ୍ତି ଓ

ଭାବପ୍ରବାହର ପରିଚୟ ପାଇଚି । ଏହି ଅବଚେତନର ପ୍ରେରଣାରୁ ହିଁ ମୁଁ ସଚେତ ଜୀବନର ନାନା ବାଧା ଓ ବାଡ଼ ଭୁଲି ଅଭିଭୂତ ଓ ମୁଗ୍ଧ ଶିଶୁଟି ପରି ସୁନ୍ଦର ଓ ଶକ୍ତିମାନର ଶାଶ୍ୱତ ରାଜ୍ୟ ଭିତରକୁ ଡେଇଁପଡ଼ିଚି । ଅନ୍ୟ ଜୀବନର ସଂସ୍ପର୍ଶରେ ଆସି ମୋର ଆପଣା ଜୀବନ ରୋମାଞ୍ଚିତ ହୋଇଚି, ବିଶ୍ୱଆଖିର ଆଲୋକରେ ମୋର ନିଜର ଆଖି ମୁଗ୍ଧ ଓ ସ୍ୱପ୍ନାବିଷ୍ଟ ହୋଇଚି, ପ୍ରଧାନତଃ ସେହି ଅବଚେତନର କୃପାରୁ ।

୧୯ । ୩ । ୪୭

କାଲି ରାତିରେ ଶୋଇଲା ପରେ କଣସବୁ ଘଟିଚି, ମୁଁ କିଛି ମନେରଖି ପାରି ନାହିଁ । ସକାଳୁ ଉଠି ଦେଖିଲି, ଶରୀରର ପ୍ରତ୍ୟେକ ଲୋମକୂପ ଯେପରି ପରିପୂର୍ଣ୍ଣ ହୋଇ ରହିଚି, ହୃଦୟର ପ୍ରତ୍ୟେକ ତନ୍ତ୍ରୀ ଯେପରି ଗୀତ ଗାଇ ଉଠୁଚି ! କିଏ ଆସି ସତେଅବା ମୋର ଶରୀର ଉପରେ କେତେ ରକମର ଖେଳ ଖେଳୁଥିଲା ପରି ମନେହେଉଚି । କିଏ ଏପରି ଘଡ଼ିକପାଇଁ ଜଗାଇଦେଇ ଓ ମତାଇଦେଇ ଯାଏ ? ଆଜି ବାହାରର ପ୍ରତ୍ୟେକ ପ୍ରତ୍ୟକ୍ଷ ବସ୍ତୁ ଭିତରେ ମୁଁ ସେହି ଅରୂପ କାରଣେଶ୍ୱରକୁ ଯେପରି ବଡ଼ ସ୍ପଷ୍ଟକରି ଦେଖିବାକୁ ପାଉଚି !

ଆଜିର ଏ ଦିନଟି କାହାର ? ବସନ୍ତ ଓ ବର୍ଷା ଯେପରି ଦୁହେଁଯାକ ଏହି ଦିନଟିକୁ ନିଜସ୍ୱ କରି ନେଇଚନ୍ତି ଓ ଏହାକୁ ସର୍ବଶୋଭାରେ ମଣ୍ଡିତ କରି ରଖିଚନ୍ତି । ସକାଳୁ ମେଘ ଘୋରାଘୋରା କରୁଚି, ଚଗଲା ମେଘ ମଝିରେ ମଝିରେ ଟପର ଟପର କରିଦେଇ ପୁଣି କେଉଁ ଦୂରକୁ ଉଡ଼ିଯାଉଚି । ନିତ୍ୟ-ଯୌବନର ଉନ୍ମାଦନା ଓ ନିତ୍ୟାଭିଭୂତିର ପ୍ରଶାନ୍ତି ଦେଇ ଖରତର ଦକ୍ଷିଣାପବନ ବହି ଗ୍ଲଲିଚି । ଏହି ପବନ ଓ ଏହି ମେଘ ସହିତ ଆପଣାର ମନଟା ମଧ୍ୟ ଅବିରାମ କୁଆଡ଼କୁ ଧାଇଁ ପଳାଉଚି ।

ସମସ୍ତ ଶରୀରଟା ଆଜି ବଡ଼ ହାଲୁକା ଲାଗୁଚି । ମନେହେଉଚି ଏହି ଚମତ୍କାର ଖୋଳତଳେ ଯେପରି କୋଉଠିଃହେଲେ କିଛି ନାହିଁ, କେବଳ ଗୋଟିଏ ଦୀପ ହିଁ କାହା ଉଦ୍ଦେଶ୍ୟରେ ଆପଣାର ନିବେଦନ ଶିଖାଟିକୁ ଉତ୍ତୋଳିନ କରି-ରଖି ନିଶିଦିନ ଜଳିବାରେ ଲାଗିଚି, ଏବଂ ନିଜ ଭିତରେ କାହା ଦୃଷ୍ଟିପାତର ପୁଲକସ୍ପର୍ଶ ଅନୁଭବ କରି ସେହି ଶିଖାଟି ଅନବରତ କମ୍ପିଉଠୁଚି ।

ଏତେ ଶତାବ୍ଦୀର ଜ୍ଞାନଚର୍ଯ୍ୟା ପରେ ମଣିଷ କ'ଣ ଜାଣିଚି, ଜିଜ୍ଞାସାର ପରଖକାଠିରେ ଆଜିଯାଏ ସେ କ'ଣ ପରୀକ୍ଷା କରି ପୂର୍ଣ୍ଣ ସନ୍ତୋଷ ପାଇପାରିଚି ? ଯାବତୀୟ ବୁଦ୍ଧିଭିଆଣ ଓ ବୁଦ୍ଧିବଖାଣରେ ପରାସ୍ତ ହୋଇ ପ୍ରତ୍ୟେକ ଦାର୍ଶନିକ କେବଳ କେତେକ Postulate ବା Category ର ଆଶ୍ରୟ ନେଇଚନ୍ତି । କିନ୍ତୁ ଯିଏ ଝାସ ଦେଇଚି, ଅଙ୍କ କଷି ପାଣିର ଗଭୀରତାକୁ ଠିକ୍ କରିବା ପୂର୍ବରୁ ଯିଏ

ଅତଳ ଉଦ୍ଦେଶ୍ୟରେ ପାଣିକୁ ଡେଇଁପଡ଼ିଚି, ସେଇ କ'ଣ ସବୁ ଜାଣିଚି, ସବୁ ପାଇଚି ? ବିରାଟ ଓ ପ୍ରକାଣ୍ଡ ଆଗରେ ଯିଏ ନିଜକୁ ନିବେଦନ କରିଦେଇଚି, କେବଳ ସେଇ କ'ଣ ଦର୍ଶନ ଲାଭ କରିଚି ?

୨୨ । ୩ । ୪୭

ସବୁ ଲେଖା ଓ ସବୁ ଦର୍ଶନ ପୋଡ଼ିପକାଇ, ସବୁ ମାନସମ୍ମାନ ଓ ଜ୍ଞାନଗରିମାକୁ ଭାଙ୍ଗି ଚୂରମାର କରିଦେଇ ଖାଲି ବିଦ୍ରୋହ କରିବି ସେହି ରାକ୍ଷସ ବିରୁଦ୍ଧରେ, ଯିଏ ମୋ'ରି ଭିତରେ ରହି ମୋତେ ପଛକୁ ଟାଣିଧରୁଚି । ମୋର ଜ୍ଞାନଚର୍ଚ୍ଚା ଓ ମାନସମ୍ମାନର ରୋଜଗାର ବରଂ ପରଜନ୍ମକୁ ପଡ଼ି ରହିଥାଉ, ଏହି ରାକ୍ଷସକୁ ମଣ କରିବାରେ ହିଁ ଏଇ ଜନ୍ମଟା କଟିଯାଉ ।

ଭିତରେ ଏହି ସପତ୍ନୀର ବିଦ୍ୱେଷ ଓ ଷଡ଼ଯନ୍ତ୍ର ଦେଖି ଆଜି ବଡ଼ ନିରାଶ ଲାଗୁଚି । ମୋର ସବୁ ଆଦର୍ଶ ଓ ସବୁ ଅଭିଳାଷକୁ କଳା କରି କିଏ ଯେପରି ଦଣ୍ଡକ ଭିତରେ ମୋତେ କେଉଁ ଅତଳ ରସାତଳକୁ ବୁଡ଼ାଇନେଇ ଗୁଳିଯାଉଚି । ଏହି ସଂସାରରେ କେବଳ ମୋ'ରି ଭିତରେ କ'ଣ ଏ ଦ୍ୱନ୍ଦ୍ୱ, ଏହି ଅଶାନ୍ତି ? କେବଳ ମୁଁ କ'ଣ ଏହି ଦାରିଦ୍ର୍ୟ ଓ ଦୈନ୍ୟରେ ଦଗ୍ଧ ହୋଇ ମରୁଚି ? ଆଉ ସମସ୍ତେ କ'ଣ ଏ ସବୁଥିରୁ ମୁକ୍ତ ରହିଚନ୍ତି ?

ଯଦି ଜଗତଯାକର ସଭ୍ୟତାଡ଼ମ୍ବର ତଳେ ସବୁରି ମନରେ ଏହିପରି ଅଶେଷ ଦ୍ୱନ୍ଦ୍ୱ ଓ ଅଶେଷ ପତନପର୍ବ ଲାଗିରହିଚି, ତେବେ ସେହି ପତନଟା କ'ଣ ଅସଲ ସତ୍ୟ ? ଏହି ଦ୍ୱନ୍ଦ୍ୱଟା କ'ଣ ଅସଲ ଜୀବନ ? ଏ ମହା ସନ୍ଦେହରୁ ନିସ୍ତାର ପାଇବାର ପଥ କାହିଁ ?

୨୬ । ୩ । ୪୭

ଆଜି ବଡ଼ିସକାଳୁ ଗାଧୋଇପାଧୋଇ ଆରସିରେ ଆପଣାର ମୁହଁ ଦେଖୁଥିଲି । ମନ ଭିତରେ କିଏ ଯେପରି ଏକ ଅପୂର୍ବ ଚମକ ଲଗାଇ ଦେଇଗଲା । ମୋର ପ୍ରତ୍ୟେକ ମାଂସପେଶୀ ଓ ଲୋମକୂପ ଉପରେ ମୁଁ ଯେପରି କାହାର ସର୍ବାଙ୍ଗାଦି ପୁଲକ ଅନୁଭବ କରିପାରିଲି । ମୁଖର ଏହି ସୌନ୍ଦର୍ଯ୍ୟ ଓ ଏହି ଜ୍ୟୋତି ଯେପରି କେବଳ ମୋ'ର ନୁହେଁ, ମୋ'ରି ଭିତରେ ଯେପରି କେଉଁ ସୌନ୍ଦର୍ଯ୍ୟମୟ ଓ ଜ୍ୟୋତିର୍ମୟ ପୁରୁଷ ରହି ଆପଣାକୁ ପ୍ରକାଶିତ କରୁଚି ! ସେ କି ଆନନ୍ଦ ? ଆପଣାକୁ ତାହାରି ପ୍ରକାଶର ଆନନ୍ଦ ରୂପେ ଅନୁଭବ କରିବାରେ କି ସନ୍ତୋଷ ?

କାଲି ରାତିରେ ଯାହା ଦେଖିଲି, ମନେହେଲା ସିଏ ତ ସ୍ୱପ୍ନ ଆଦୌ ନୁହେଁ ! ମୋର ଅବିକଳ ମନେଅଛି, କାହାର ଦୁଇପଦ କଥା ଶୁଣି ମୋର ଅନ୍ତର ପରିପୂର୍ଣ୍ଣ ହୋଇ ଉଠିଲା ! ସତେଅବା ଅତ୍ୟନ୍ତ ସଚେତ ଭାବରେ

ସେହିକଥା ଶୁଣିଲି, ମନେମନେ ତାହାରି ସମୀକ୍ଷା କରିବାକୁ ଲାଗିଲି ଓ ଆହୁରି କିଛି ଶୁଣିବାଲାଗି ଯେପରି କାନ ଡେରି ବିଛଣା ଉପରେ ପଡ଼ି ରହିଥିଲି ! ଉଠିଲାବେଳକୁ କଥାର ଭାଷାଗୁଡ଼ିକ ଆଦୌ ମନେ ନ ଥିଲା । ମନେହେଲା, ଯେପରି ଚିତ୍ତର ଭଣ୍ଡାର ଭରାଇ ମୁଁ କେତେ କ'ଣ ସମ୍ପଦ ପାଇଚି । କିନ୍ତୁ କ'ଣ ପାଇଚି ସେକଥା ମୁଁ ନିଜେ ଜାଣେ ନାହିଁ ।

୨୮ । ୩ । ୪୭

"ଆମାର ଗୌରବ ଯବେ, ତୋମାର ଗୌରବ ହବେ"–ରବୀନ୍ଦ୍ର କବିତାର ଏହି ଧାଡ଼ିଟି ଯେପରି ମୋ' ଭିତରେ କେଉଁ ବନ୍ଦ ଦୁଆରକୁ ଉନ୍ମୁକ୍ତ କରି ଦେଇଗଲା ! ଯେତେବେଳେ ମୋର ଯଶଖ୍ୟାତି, ନାମଗୁଣ ଓ ସୁଖସମୃଦ୍ଧି ସବୁ ସେହି ପରମକର୍ତ୍ତା ଓ ତାହାରି ପ୍ରକାଶମୟ ଏହି ମାନବସମାଜର ଯଶଖ୍ୟାତି ଓ ସୁଖସମୃଦ୍ଧିର ପରିପୂରକ ହୋଇପାରିବ, ସେତିକିବେଳେ ଯାଇ ଆଜିର ଏହି ସାଧନା ଓ ଅଧ୍ୟାପଥର ଏହି ସନ୍ତୋଷ ଅସନ୍ତୋଷ ଚଞ୍ଚଳ ଯାତ୍ରା ସାର୍ଥକ ହେବ ।

କେବେ ମୋ' ଜୀବନରେ ସେହି ପୁଣ୍ୟ ପ୍ରଭାତର ଉଦୟ ହେବ, ମୁଁ କେଉଁଦିନ ମୋର ଜୀବନକ୍ଷେତ୍ରକୁ ବିଶ୍ୱଜଗତର ସ୍ନେହଗର୍ବିତ କ୍ଷେତ୍ରରେ ପରିଣତ କରିପାରିବି ? ସବୁ ସ୍ୱାର୍ଥ, ଅହଙ୍କାର ଓ ଅସୂୟାକୁ ମୁଁ କେଉଁଦିନ ବିସର୍ଜନ ଦେଇ କେବଳ ତାହାରି ପରମଗୌରବ ଭିତରେ ନିଜକୁ ଧନ୍ୟ ଓ ଗୌରବାନ୍ୱିତ କରିପାରିବି ?

ଏହିସବୁ ସାମୟିକ ପତନ, ସାମୟିକ ମାୟା ଓ ସାମୟିକ ଫାନ୍ଦ ଭିତରଦେଇ ମୋର ଜୀବନ କ'ଣ ସେହି ବିରାଟ ପ୍ରଶସ୍ତତା ଭିତରକୁ ଗତି କରୁନାହିଁ କି ? ନା,–ଆଜିର ପତନକୁ ମୁଁ କାଲିର ପତ୍ତନରୂପେ ତିଆରି କରିବି, ଆଜିର ଅନ୍ଧାରକୁ ଭେଦକରି ମୁଁ ତାହାରି ଗଭୀରରେ ରହିଥିବା ଆଲୋକଉତ୍ସର ସନ୍ଧାନ କରି ବାହାରିବି ।

୫ । ୪ । ୪୭

ଆହୁରି ଅନେକ କାନ୍ଦିବାକୁ ପଡ଼ିବ, ଆତ୍ମଭୁଲା ମନ ସାଇତି ରଖିଥିବା ଅନେକ ବ୍ୟର୍ଥ ଆବର୍ଜନାକୁ ଅଶ୍ରୁଜଳରେ ଧୋଇବାକୁ ପଡ଼ିବ ।

କେତେକେତେ ଦିନ ମୁଁ ଯେପରି ଆଗକୁ କିଛି ଦେଖିପାରୁ ନାହିଁ । ମୋର ଆଖି ଆଗରେ ଯେପରି କିଏ ଆଶାବଚ୍ଛିନ୍ନ କୁଜ୍‌ଝଟିକାର ଜାଲ ବୁଣି ମୋତେ ଧନ୍ଦାରେ ପକାଇ ଦେଉଚି । ମାତ୍ର ତା'ପରେ ପୁଣି କିଏ ଆପଣା ମନକୁ ଜାଲ କାଢ଼ିନେଉଚି, ନିଜର ପ୍ରତିଫଳିତ ଆଲୋକରେ ମୋର ଚକ୍ଷୁ ଉଦ୍‌ଭାସିତ ହୋଇଉଠୁଚି ।

ମନଭିତରେ ଯାହା ଭାବୁଚି, ତାହାର ଛବିପଣ ବି ଭାଷାରେ ପ୍ରକାଶ କରିପାରୁ ନାହିଁ । ଜୀବନ ଗୋଟିଏ ସ୍ୱର ପରି, ତାହାକୁ ଯଥାର୍ଥ ଶବ୍ଦର ରୂପ ଦେବାକୁ ହେଲେ ସେଇ ସ୍ୱରଟିର ସାଧନା କରିବାକୁ ହେବ । ସେହି ସ୍ୱର, ସେଇ ସୂତାଖିଅଟି ନ ପାଇଲା ପର୍ଯ୍ୟନ୍ତ ମୁଁ କିଛି ପ୍ରକାଶ କରିପାରିବି ନାହିଁ ।

୨୪ । ୪ । ୪୭

"ସେଦିନେ ଆପଦ ଆମାର ଯାବେ କେଟେ,
ପୁଲକେ ହୃଦୟ ଯେଦିନ ଉଠ୍‌ବେ ଫେଟେ ।।"

ଏହି ଦୁଃଖ, ଅବସାଦ ଓ ବିରକ୍ତିକୁ ମଗ୍ନକରି ଯେଉଁଦିନ କେବଳ ପୁଲକର ଧାରା ଜୀବନଭରି ପ୍ରବାହିତ ହୋଇପାରିବ, ସେଦିନ ଯାଇ ଜୀବନର ସମସ୍ତ ଆପଦ ତୁଟିଯିବ । ଏହି ସଂସାରର ଏତେବଡ଼ ଆକାଶତଳେ ମୁଁ ରହିଚି, ତଥାପି କେତେ ଭୟ, କେତେ କୁଣ୍ଠା ଓ କେତେ ବିବେକଗ୍ଲାନି ମୋର ଜୀବନକୁ ଅବଶ କରି ନ ପକାଉଚି ? ବ୍ୟକ୍ତିଗତ ଜୀବନ, ବ୍ୟକ୍ତିଗତ ବନ୍ଧୁତା ଓ ବ୍ୟକ୍ତିଗତ ଯଶଖ୍ୟାତିର ପଛେପଛେ କିଏ ଯେପରି ଭୀରୁପରି ଅନ୍ଧାର ଭିତରେ ଲୁଚିବୁଲୁଚି, ଆଲୁଅ ଭିତରକୁ ଆସି ଆପଣାର ପରିଚୟ ଦେବାଲାଗି ଯେପରି ସେ ଅମଙ୍ଗ ହୋଇ ବସିଚି ! ଏହାହିଁ କଣ ଜୀବନ ? ସବୁ କଥା ଓ ସବୁ କାମରେ ଦୁଇଟା ବ୍ୟକ୍ତିତ୍ୱ (Persona)ର ମିଶାଣ ଫେଡ଼ାଣ ହିସାବ ଛଡ଼ା କଣ ଏ ଜୀବନରେ ଆଉ କିଛିହେଲେ କରିବାକୁ ବା ହେବାକୁ ନାହିଁ ?

ଜଗତର ସକଳ ଦ୍ୱନ୍ଦ୍ୱ ଓ ପ୍ରତିଦ୍ୱନ୍ଦ୍ୱକୁ ମିଳାଇ ଯେଉଁ ପୁଲକର ଧାରା ବହିଗ୍ଲଲିଚି, ତାହାସହିତ କ'ଣ ଏ ଜୀବନର କୌଣସି ସମ୍ପର୍କ ନାହିଁ ? ମଣିଷ ମରୁଚି, ମଣିଷ ଦୁଃଖ ଭୋଗକରୁଚି, କାହାର ଆଲୋକଝଇସିତ ଆଖିଢ଼ୋଳା ପରି ବିଶ୍ୱର ବିପୁଳ ବିଭାସ ଆଗରେ ବ୍ୟକ୍ତିର କ୍ଷୁଦ୍ର ଜୀବନ ଆକୁଞ୍ଚିତ ଓ ପ୍ରସାରିତ ହୋଇ ଗ୍ଲଲିଚି । କିନ୍ତୁ ପୁଲକର ଧାରାରେ କଦାପି ବିରାମ ନାହିଁ । ନିଜ ଜୀବନକୁ ମୁଁ ସେହି ସୁଅର ସୂତା ସାଙ୍ଗରେ ଯେଉଁଦିନ ଗଅଁଠାଇ ଦେଇ-ପାରିବି, ସେଦିନ ସମସ୍ତ ଆପଦ ତୁଟିଯିବ ।

ଆଜି ଅନେକଦିନ ପରେ ଏହି ନିର୍ଜନ ଦି'ପହରେ ମୁଁ ମୋ' ନିଜକଥା ଲେଖିବସିଚି । ପରୀକ୍ଷା ଶେଷ ହୋଇଯାଇଚି । ମୁଣ୍ଡରେ ଆଉ ସେ ବିଷୟରେ କୌଣସି ଉଦ୍‌ବିଗ୍ନତା ନାହିଁ ।

କ'ଣ ଲେଖିବି ? ପ୍ରତ୍ୟେକଦିନର ପତନ ଓ ପଥଭୁଲା, ଅନୁଭୂତି ଓ ଉପଲବ୍‌ଧି କ'ଣ ଜୀବନ ଉପରେ ଅସରନ୍ତି କଥା ଲେଖିଦେଇ ଯାଉନାହିଁ ?

ଆଜି ରାତିରେ ନେପାଳ ଉଦ୍ଦେଶ୍ୟରେ ବାହାରିବା କଥା । ସେଥିଲାଗି ମନଟା ବି ସଜବାଜ ହେବାକୁ ଆରମ୍ଭ କଲାଣି । ଏପରି ସମୟରେ ଦୁଆର

ଖୋଲି ତା'ର ସଞ୍ଚିତ ଧନକୁ ପରଖି ଦେଖିବାକୁ ସେ ଆଉ କୌଣସିମତେ ରାଜି ହେଉ ନାହିଁ ।

୧୫ । ୮ । ୪୭

## ମୁଁ କଣ କରିବ ?

ମୋର ବିଶ୍ୱାସ :

(୧) ମୋର ଲକ୍ଷ୍ୟ ମହତ । ସେଇଥିଲାଗି କାମ କରିବାକୁ ମୁଁ ଦୁନିଆକୁ ଆସିଚି । ଯେତେ ବିପଦ ଆସିବ, ସେସବୁ କେବଳ ମୋ' ଶକ୍ତିର ପରୀକ୍ଷା । ମୁଁ ମୂହୂର୍ତ୍ତକଲାଗି ସୁଦ୍ଧା ମୋର ଲକ୍ଷ୍ୟକୁ ଭୁଲିବି ନାହିଁ ।

(୨) ଉପଭୋଗ ଜୀବନ ନୁହେଁ । ସଂଗ୍ରାମ ଓ ଅଭିଜ୍ଞତାରେ ପ୍ରକୃତ ଜୀବନ ରହିଚି । ସେଥିପାଇଁ ପ୍ରତ୍ୟେକ ମୂହୂର୍ତ୍ତରେ ଓ ପ୍ରତ୍ୟେକ କାର୍ଯ୍ୟରେ ମୁଁ ନୂଆ ନୂଆ ଅଭିଜ୍ଞତା ପାଇବାକୁ ଚେଷ୍ଟା କରିବି । ପୃଥିବୀରେ ଯେଉଁଠି ଯେତେ ସତ୍ୟ ଲୁଚିରହିଚି, ସେସବୁର ଉପଲବ୍ଧି ଲାଗି ମୁଁ ସତତ ବ୍ୟାକୁଳ ହୋଇ ରହିଥିବି ।

(୩) ମୋର ଲକ୍ଷ୍ୟ ମହାନ୍ । ବିପଦ ବା ପ୍ରତିକୂଳ ଅବସ୍ଥା ଯେତେବେଳେ ଆସି ମୋତେ ଭୁଲରେ ପକାଇଦେବାକୁ ଚେଷ୍ଟା କରିବ, ମୋ' ଲକ୍ଷ୍ୟଉପରେ ମୋର ବିଶ୍ୱାସ ହିଁ ସେତେବେଳେ ମୋତେ ପର୍ବତପରି ବଳ ଦେବ ।

(୪) ସଂସାରରେ ସବୁ ଜାଗାରେ ମୁଁ ଭଲ ଜିନିଷତକ ଗ୍ରହଣ କରିବି । ବାହ୍ୟ ଆବରଣରେ ନ ଭୁଲି ତା'ଭିତରେ ଥିବା ପ୍ରକୃତ ସତ୍ୟର ଅନୁସନ୍ଧାନ କରିବି । ସତ୍ୟର ଅନୁସନ୍ଧାନରେ ଯେକୌଣସି କଠିନ ଦାୟିତ୍ୱ ମୁଣ୍ଡାଇବାକୁ ପଛେଇବି ନାହିଁ ।

(୫) ହଠାତ୍ କୌଣସି କଥାରେ ଭାସି ଯିବି ନାହିଁ । ନିଜର ବିଗ୍ଭର ଓ ନିଜର କର୍ତ୍ତବ୍ୟବୋଧ ମୋର ଏକମାତ୍ର ଦେବତା । ବିବେକର ଆହ୍ୱାନ ମୋର ଏକମାତ୍ର ଗୁରୁ ।

(୬) କାହାର ଶିକାର ବା ହାତବାରିସି ହେବା ଉଚିତ ନୁହେଁ । ନିଜ ଗୋଡ଼ରେ ଠିଆ ହୋଇପାରିବା ଜୀବନର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ।

(୭) ଗୋଟିଏ ବଡ଼ ଶ୍ରେଣୀକୁ ଯେପର୍ଯ୍ୟନ୍ତ ସବୁଦ୍ଦିଗରୁ ସହାୟହୀନ କରି ରଖାଯାଇଚି, ମୁଁ ସେପର୍ଯ୍ୟନ୍ତ କୌଣସି ଶ୍ରେଣୀ ଜାଣେ ନାହିଁ । ସେଥିପାଇଁ ଜଗତର ସବୁ ସ୍ଥାନରେ ଓ ସବୁ କ୍ଷେତ୍ରରେ ମୋର କର୍ତ୍ତବ୍ୟ ରହିଚି ।

(୮) ଜୀବନର ମୂଲ୍ୟକୁ ଚିହ୍ନିବା ଯଦି ହିନ୍ଦୁଧର୍ମ ହୋଇଥାଏ, ତା'ହେଲେ ମୁଁ ହିନ୍ଦୁ । ଯେକୌଣସି ଧର୍ମରେ ଯଦି ଏହି ମହାନ୍ ନୀତି ପ୍ରଧାନ ପ୍ରେରଣା

ହୋଇ ରହିଥାଏ, ତା'ହେଲେ ମୁଁ ସେହି ଧର୍ମାବଲମ୍ବୀ । ତାହା ନ ହେଲେ ମୁଁ ଜଣେ ଜାଗ୍ରତ ମନୁଷ୍ୟ । ପ୍ରତ୍ୟେକ ଜଡ଼ ପ୍ରାଣକୁ ମୁଁ ଜାଗ୍ରତ ଓ ଚଞ୍ଚଳ କରିଦେବାକୁ ଚାହେ ।

(୯) ମୋର ବିଶ୍ୱାସ, ପ୍ରତ୍ୟେକ ମଣିଷଭିତରେ ହିମାଳୟ ପରି ଶକ୍ତି ରହିଚି । ସେହି ଶକ୍ତି ଅନେକ ସମୟରେ ହୁଏତ ଆତ୍ମପ୍ରକାଶ କରିବାର ବାଟ ପାଉ ନାହିଁ । ଯେକୌଣସି ମଣିଷକୁ ମୁଁ ଯଥାର୍ଥ ସମ୍ମାନ ଦେଖାଇବି । ଯେଉଁଠି ନାନା ଦାରୁଣ ଚାପରେ ମଣିଷର ମଣିଷପଣିଆ ମରିଯାଇଚି, ସେଠାରେ ବିକାଶଲାଗି ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରିବା ମୋର କର୍ତ୍ତବ୍ୟ । ଅପମାନିତ ମଣିଷକୁ ଗୌରବାନ୍ୱିତ କରିବାପାଇଁ ଯେଉଁ ବିପ୍ଳବ ହେବ, ସେହି ବିପ୍ଳବରେ ସଂଗ୍ରାମ କରି ଜୀବନ ଦେବାରେ ମୋର ଆନନ୍ଦ । ମଣିଷକୁ ମୁଁ କେବେହେଲେ ଛୋଟ ମନେକରିବି ନାହିଁ ।

(୧୦) ଦୁନିଆଠାରୁ ଶିଖିବା ଓ ଦୁନିଆକୁ ଶିଖାଇବା—ଏ ଦୁଇଟି ମୋର ନିୟମ । ଗାଆଁର ଅନ୍ଧ ଓ ବଞ୍ଚିତ ମଣିଷକୁ ନୂଆ ଯୁଗର କଥା ଶୁଣାଇବା ସଙ୍ଗେ ସଙ୍ଗେ ତା'ଠାରୁ ମୋର ଯଥେଷ୍ଟ ଶିଖିବାର ମଧ୍ୟ ରହିଚି ।

(୧୧) ମୋ' ଦେଶକୁ ସକଳପ୍ରକାର ଜଞ୍ଜିରରୁ ମୁକ୍ତ କରିବା ମୋର ପ୍ରଥମ କାମ । ଅନ୍ୟ ଲୋକଙ୍କୁ ବା ଅନ୍ୟ କୌଣସି ଦେଶକୁ ଗୋଲାମ କରିବା ମୋର ଲକ୍ଷ୍ୟ ନୁହେଁ । ନିଜେ ମୁକ୍ତ ହୋଇ ସମସ୍ତଙ୍କୁ ମୁକ୍ତ କରିବାଲାଗି ମୁଁ କାର୍ଯ୍ୟ କରିବି ।

ମୋର କାର୍ଯ୍ୟକ୍ରମ :

ପ୍ରାର୍ଥନା—ନିଜ ଜୀବନକୁ ଏକ ମହାନ୍ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ରଖିବାର ସଂକଳ୍ପ କରିବା ଛଡ଼ା ମୁଁ ଅନ୍ୟ ପ୍ରାର୍ଥନା ଜାଣେନା । ଯେଉଁ ପ୍ରାର୍ଥନା ମୋତେ ଭୀରୁ ଓ ପରନିର୍ଭରଶୀଳ କରିଦିଏ, ସେହି ପ୍ରାର୍ଥନା ମୁଁ ଜାଣେନା । ମୁଁ ଶକ୍ତିମାନ୍ ହେବି । ହସିହସି ବିପଦକୁ ବରଣ କରିବି । ବିନା ସଙ୍କୋଚରେ ଦାୟିତ୍ୱ ମୁଣ୍ଡାଇବି । ଭୁଲରୁ ମଧ୍ୟ ଶିଖିବି । କାହାରିକୁ ଘୃଣା ନ କରି ସମସ୍ତଙ୍କର ମୁକ୍ତି ପାଇଁ ମୁଁ ସଂଗ୍ରାମ କରିବି । ଏହା ମୋର ପ୍ରାର୍ଥନା ।

ସଂସାର ପାଇଁ କାମ କରିବି, ମାତ୍ର ସଂସାର ଭିତରେ ବୁଡ଼ି ରହିବି ନାହିଁ । ସ୍ୱାର୍ଥ, ସମ୍ପଦ ଓ ସଂସାରର ବନ୍ଧନରୁ ନିଜକୁ ମୁକ୍ତ କରି ଜଣେ ବିନୀତ ସେବକ ହେବାଲାଗି ମୁଁ ହୃଦୟକୁ ଉଦ୍‌ବୋଧନ ଦେବି ।

ସକାଳେ ମୁଁ ଉଠିବି ମଣିଷର ସେବା ପାଇଁ । ରାତ୍ରିରେ ବିଶ୍ରାମ କରିବି, ପୁଣି ସେବା କରିବାକୁ ଉତ୍ସାହ ପାଇବା ପାଇଁ । ମଣିଷର ମୁକ୍ତି ପାଇଁ ଲଢ଼ିବାରେ ହିଁ ମୋ' ଜୀବନର ସାର୍ଥକତା ରହିଚି ।

ବଡ଼ ବଡ଼ ମହାତ୍ମାମାନଙ୍କର ଉପଦେଶ ମୋତେ ବଳୀୟାନ୍ କରିବ । ସେମାନେ ଯେଉଁ କଷ୍ଟସବୁ ସହ୍ୟ କରିଚନ୍ତି, ସେସବୁର ଦୃଷ୍ଟାନ୍ତ ମୋ'ଭିତରେ ନୂଆ ଉତ୍ସାହ ଓ ସାହସ ଦେବ ।

କାମ ସହିତ ଯେଉଁ ଧର୍ମର କୌଣସି ସମ୍ପର୍କ ନାହିଁ, ତାହାକୁ ମୁଁ ଧର୍ମ ବୋଲି କହିବି ନାହିଁ । ସେପରି ଧର୍ମର ମୋହଜାଲରୁ ମୁଁ ନିଜକୁ ସର୍ବଦା ବଞ୍ଚାଇ ରଖିବି ।

ପ୍ରତିଦିନ କିଛି ସମୟ ପର୍ଯ୍ୟନ୍ତ ଏକାକୀ ବସି ମୁଁ ଆପଣାକୁ ଓଜନ କରି ଦେଖିବି (କେତେ ପାଉଣ୍ଡ ବୋଲି ନୁହେଁ) । ଭୁଲପାଇଁ ଅନୁତାପ କରିବି, ମାତ୍ର କାତର ହୋଇପଡ଼ିବି ନାହିଁ । ମୋର ସଫଳତା ମୋତେ ଆହୁରି ଭଲକାମ କରିବାଲାଗି ଉତ୍ସାହ ଦେବ । ଭୁଲରୁ ଭୁଲକୁ ଜୟ କରିବାର ଶକ୍ତି ମୁଁ ଅର୍ଜନ କରି ଶିଖିବି । ଶାନ୍ତ ଓ ନୀରବ ବାୟୁମଣ୍ଡଳ ଭିତରେ ହୃଦୟ ଭିତରୁ ଯେଉଁ ପ୍ରାର୍ଥନା ଆସେ, ତାହା ହେଉଚି ଶ୍ରେଷ୍ଠ ପ୍ରାର୍ଥନା ।

ଖାଦ୍ୟ—ଖାଇବାପାଇଁ ମୁଁ ବଞ୍ଚି ନାହିଁ, ବଞ୍ଚିବା ପାଇଁ ଖାଉଚି । ଦୁନିଆର କାମରେ ଲାଗିବାକୁ ମୋତେ ଜୀବନଧାରଣ କରିବାକୁ ହେବ । ଯେତେବେଳେ ଯାହା ମିଳିବ, ମୁଁ ତାହାକୁ ଆନନ୍ଦରେ ଖାଇବି । ଖାଇବା ବିଷୟରେ ମୋର କୌଣସି ଲାଳସା ରହିବ ନାହିଁ । ମୁଁ ଶାନ୍ତ ଓ ସ୍ଥିରଭାବରେ ଖାଇବି । ଖାଇବା ପୂର୍ବରୁ ମୋର ମନଭିତରେ ଅନୁକୂଳ ଅବସ୍ଥା ସୃଷ୍ଟି କରିବି ।

ଆନନ୍ଦ—ଆନନ୍ଦ ପାଇବା ପାଇଁ ଯଦି ମୁଁ ଦୁନିଆସାରା ଖୋଜିବୁଲେ, ତେବେ ଆନନ୍ଦର ମୋହରେ ମୁଁ ବାଟବଣା ହୋଇଯିବି । ତଥାପି ଶାନ୍ତି ପାଇବି ନାହିଁ । ମୁଁ ସର୍ବଦା ନିଜକୁ ମୋ'ର ଲକ୍ଷ୍ୟ ସାଧନରେ ନିଯୁକ୍ତ କରି ରଖିବି । କର୍ମଜନିତ ସେହି ଆନନ୍ଦ ହେଉଚି ମୋର ପ୍ରକୃତ ଆନନ୍ଦ । ପାଇବାର କୌଣସି ଆଶା ନରଖି ସେବା କରିବାରେ ଯେଉଁ ଐଶ୍ୱରିକ ଆନନ୍ଦ ମିଳେ, ସେହି ଆନନ୍ଦକୁ ବୁଝି ପାରିବାଲାଗି ମୁଁ ନିଜକୁ ଯୋଗ୍ୟ କରିବି । ଯେଉଁ ଆନନ୍ଦ ପ୍ରକୃତ ଜୀବନର ସୃଷ୍ଟି କରିପାରେ, ଯେଉଁ ଆନନ୍ଦ ପଛରେ ପ୍ରକୃତିର ଉଦାର ଆନନ୍ଦର ମୂଳଦୁଆ ପଡ଼ିଚି, ମୁଁ ନିଜକୁ ସେହିପରି ଆନନ୍ଦରେ ଭସାଇଦେବି । ଅନ୍ୟସବୁ ଆନନ୍ଦ ଆନନ୍ଦ ନୁହେଁ । ଦୁନିଆର ମଣିଷ ପାଇଁ ସେସବୁ ଗୋଟିଏ ଗୋଟିଏ ସତର୍କଖିଆ ।

ପଢ଼ାପଢ଼ି—ପ୍ରତି ସପ୍ତାହରେ ଖଣ୍ଡେ ଲେଖାଏଁ ବହି ପଢ଼ିବି । ପ୍ରତିମାସରେ ଅନ୍ତତଃ ଖଣ୍ଡେ ଉପାଦେୟ ପୁସ୍ତକ ପଢ଼ିବି । ତା'ର ଟୀକା ଲେଖିବି । ସେସବୁ ବିଷୟରେ ମୋର ମତାମତ ଲେଖିରଖିବି । ତା'ପରେ ନିଜେ ସେହି ବିଷୟରେ ଗଭୀର ଭାବରେ ଭାବିବି । ତା'ପରେ ଯେଉଁ ସତ୍ୟ ପାଇବି, ତାହାକୁ ସ୍ଥାୟୀଭାବରେ ନିଜର କରି ରଖିବି ।

ପ୍ରତିଦିନର କାର୍ଯ୍ୟକଳାପ ଓ ବିଗ୍ଭରଗୁଡ଼ିକୁ ଲେଖିରଖିବି । ସଂସାରରୁ ମୁଁ କି ନୂଆ କଥା ଶିଖିଲି ବା କି ନୂଆ ତଥ୍ୟ ଜାଣିଲି ଓ ମୋ'ର ଲକ୍ଷ୍ୟଦୃଷ୍ଟିରୁ ସେସବୁର କେତେଦୂର ଗୁରୁତ୍ୱ ରହିଚି, ସେଥିରେ ଏହିସବୁ କଥା ଲିପିବଦ୍ଧ ହୋଇ ରହିବ ।

ଯାହାଠାରେ ଯେଉଁ ବିଶେଷ ଗୁଣ ଦେଖିବି, ତାହାକୁ ଶିଖିବି । ସବୁଦିନେ ଖବରକାଗଜ ପଢ଼ିବି । ଅଧଘଣ୍ଟାଏ ସୂତା କାଟିବି । ଯେଉଁଠାରେ ମୋ'ର ଜୀବନଲାଗି କୌଣସି ସାହାଯ୍ୟ ମିଳିପାରିବ ବୋଲି ମୁଁ ଜାଣିବି, ସେଠାକୁ ଯିବାକୁ ଲଜ୍ଜା ଅନୁଭବ କରିବି ନାହିଁ ।

୧୭ । ୧୧ । ୪୭

ଶୀତଦିନର ସକାଳ ଆରମ୍ଭ ହୋଇଚି । ଶୀତଦିନର ସୂର୍ଯ୍ୟୋଦୟ କେଡ଼େ ଚମତ୍କାର ! ସବୁଦିନେ ସକାଳେ ଏହି ସୂର୍ଯ୍ୟୋଦୟର ଅପରୂପ ଛବି ମୋର ମନକୁ ଯେପରି କେତେକେତେ ଦୂରକୁ ଉଡ଼ାଇ ନେଇଯାଉଚି । ଶାନ୍ତିନିକେତନର ଜୀବନ ସଙ୍ଗେ ଏହି ଶୀତକାଳୀନ ସକାଳର ସ୍ମୃତି ମୋ' ଜୀବନପୃଷ୍ଠାରେ ସବୁଦିନ ଲେଖାହୋଇ ରହିଥିବ ।

ଆର ଖାତାଟା ସରିବାପରେ ଏଇ ନୂଆ ଖାତା ଆରମ୍ଭ କରିବାକୁ ପ୍ରାୟ ଛଅମାସ ସମୟ ଗ୍ଭଲିଯାଇଚି । ଏହାଭିତରେ ଅନେକ କଥା ଘଟିଚି, ମନର ପ୍ରତିକ୍ରିୟା ଗୁଡ଼ାକୁ ଏଇ ଖାତାରେ ଲେଖିରଖିବି ବୋଲି ମୁଁ ବେଳେବେଳେ ବଡ଼ ଅସ୍ଥିର ହୋଇପଡ଼ିଚି, ତଥାପି ଲେଖିପାରି ନାହିଁ । ଏପରି ଏକ ଅବହେଳା କରି ମୁଁ ଭୁଲ୍ କରିଚି କି ଠିକ୍ କରିଚି, ସେକଥା ଠିକ୍ କହି ପାରୁ ନାହିଁ । କାରଣ ମୋର ଭୁଲ୍‌ଠିକ୍‌ଗୁଡ଼ାକ ହୁଏତ ଜୀବନବିଧାୟକର ଭୁଲ୍ ଓ ଠିକ୍ ସହିତ ତାଳ ଖାଇ ନ ପାରେ । ତେଣୁ ମୋର ସଂକୀର୍ଣ୍ଣ ବିବେଚନାର ବାଡ଼ ଦେଇ ମୁଁ ଜୀବନର ସ୍ୱାଭାବିକ ବିକାଶକୁ ଜାଣିଶୁଣି ଉଗାଳି ରଖି ନାହିଁ ।

ଏହା ଭିତରେ ଅନେକ ଘଟଣା ଘଟିଯାଇଚି, ଅନେକ ଆନ୍ଦୋଳନ ଗ୍ଭଲିଚି;—ବାହାର ଦୁନିଆରେ ଓ ସର୍ବୋପରି ନିଜର ମନଭିତରେ । ଯୁଦ୍ଧ ସରିଚି, ଭାରତ ସ୍ୱାଧୀନ ହୋଇଚି, କୋଟିମନର ଆଶା ନେଇ ଗୋଟାଏ ନୂଆ ଯୁଗ ଆରମ୍ଭ ହେବାକୁ ଯାଉଚି । କିନ୍ତୁ ମନଭିତରେ ନାନା ତୁମୁଳ ଆନ୍ଦୋଳନ ଗ୍ଭଲିଚି, ଏହିସବୁ ସମସ୍ୟାର ବିଗ୍ଭର କରିବାକୁ ଯାଇ ମୋର ମନ କେତେକୁଆଡ଼େ ଲଟେଇଯାଇଚି । ନାନାପ୍ରକାର ଭାବ ନାନା ସମୟରେ ମନରାଜ୍ୟକୁ ଅଧିକାର କରି ବସିଚି । ଅନେକସମୟରେ ସବୁକିଛି ବିଦାରି ଭାଙ୍ଗିଦେବାକୁ ଇଚ୍ଛା ହେଉଚି, ପୁଣି କେତେବେଳେ ଉପସ୍ଥିତ ଅବସ୍ଥାକୁ ହିଁ ମାନିନେବାକୁ ମନ ଆପେଆପେ ନମ୍ର ହୋଇଆସିଚି । ଦେଶରେ ହାଣକାଟ ହୋଇଚି, ଧର୍ମର ଦ୍ୱାହି

ଦେଇ ଭାରତବର୍ଷ ଦୁଇଖଣ୍ଡ ହୋଇଚି, ଧର୍ମରକ୍ଷାର ଦ୍ୱାହି ଦେଇ ମଣିଷ ମଣିଷକୁ ମାରିଚି, ପୁରୁଷ ନାରୀଧର୍ଷଣ କରିଚି । ଏପର୍ଯ୍ୟନ୍ତ ବି କରୁଚି । କିଶୋର-ଜୀବନର କେତେ ସ୍ୱପ୍ନ ଓ ଆକାଙ୍‌କ୍ଷା, କଳ୍ପନାପୁଲକିତ ମନର କେତେ ଉଜ୍ଜ୍ୱଳ କଳ୍ପନାର ସୌଧସବୁ ଯେପରି ବେଳେବେଳେ ଧୂଳିସାତ୍ ହୋଇ ଯାଇଥିବା ପରି ମନେହେଉଚି । ମଣିଷର ଶିକ୍ଷା, ସଂସ୍କୃତି, ସମାଜ ଓ ଦେଶଉପରେ ବେଳେବେଳେ ବଡ଼ ଘୃଣା ଆସିଚି । ମନଭିତରୁ କିଏ ଗର୍ଜନ କଲାପରି କହିଉଠିଚି : "ନିଜର ବୋଲି କହିବାକୁ ଜଗତରେ କିଛି ନାହିଁ । ଦେଶ, ଜାତି ଓ ଧର୍ମ, ଏସବୁ ଛୋଟ ମଣିଷକୁ ଭୁଲାଇ ରଖିବାଲାଗି ବଡ଼ ମଣିଷର କାରସାଦି । ତୁ ନିଜେ ମଣିଷ ହୋଇ ବଞ୍ଚି ରହ, ସେଇ ତୋ'ର ଧର୍ମ, ସେଇ ତୋ'ର ପବିତ୍ର ଦେଶ !"

ଦେଶର ସ୍ୱାଧୀନତା-ସଂଗ୍ରାମରେ ଯୋଗ ଦେବି ବୋଲି ଦିନେ ମୁଁ ପାଠ ଛାଡ଼ି ଜେଲ ଯାଇଥିଲି । ସେତେବେଳେ ଯାହା କରିଥିଲି, ତାହାର ମହତ୍ତ୍ୱକୁ କିଞ୍ଚିତ୍ ପରିମାଣରେ ବୁଝିଥିଲି, ହୁଏତ ଅନେକ ପରିମାଣରେ ବୁଝି ନ ଥିଲି । ତଥାପି ସେହି ସରଳ ବୟସର ତ୍ୟାଗନିଷ୍ଠାକୁ ମୁଁ ଆଜିପର୍ଯ୍ୟନ୍ତ ଶ୍ରଦ୍ଧାର ଦୃଷ୍ଟିରେ ଦେଖିଆସିଚି । ସେହି ସରଳ ନିଷ୍ଠାର ଗୁବିରେ ହିଁ ମୁଁ ମୋ ଜୀବନ-ବିକାଶର ପ୍ରଥମ ଦ୍ୱାରଟିକୁ ଖୋଲି ଦେଇଥିଲି । ଏହାଭିତରେ ମୁଁ ଅଧିକ ଅଭିଜ୍ଞତା ଓ ଅଧିକ ଜ୍ଞାନ ଅର୍ଜନ କରିଚି । ନିଜଭିତରେ ଅନେକ ଭୁଲକୁ ସୁଧାରିଚି, ମଣିଷ ଓ ଜଗତକୁ ଅଧିକ ଗଭୀର ଭାବରେ ଚିହ୍ନିଚି । ତଥାପି ଜୀବନକଳିର ସେହି ପ୍ରଥମ ଉନ୍ମୋଚନକୁ ମୁଁ କେବେହେଲେ ଉଣାଚକ୍ଷୁରେ ଦେଖିବାକୁ ଯିବି ନାହିଁ ।

ଏହାରି ଭିତରେ ନୋଆଖାଲି, ବିହାର ଓ ପଞ୍ଜାବରେ ହଜାର ହଜାର ମଣିଷ ମରିଚନ୍ତି । ନିରୀହ ଓ ନିର୍ଦ୍ଦୋଷ ମଣିଷର ରକ୍ତ ଢଳାହୋଇ ରାଜ-ନୀତିଜ୍ଞର ରାଜନୀତିକ ମତଲବଗୁଡ଼ାକୁ ସଫଳ କରାଇବାର ପ୍ରୟାସ ହୋଇଚି । ଦେଶରେ ଏହି ହଣାକଟା ଦେଖି ମୋର ଆଖି ଜଳକା ହୋଇଯାଇଚି । କୌଣସି ଦୃଶ୍ୟର ପ୍ରତିଫଳନକୁ ଅନୁଭବ କରିବାର ଶକ୍ତି ହରାଇ ବସିଥିବାପରି ଲାଗୁଚି । ଏହିସବୁ ଘଟଣାର ଐତିହାସିକ ଆବଶ୍ୟକତାକୁ ବୁଝିବା ଆଗରୁ ନିତି ନିତି ଅଗତ୍ୟା ସବୁ ଦେଖିବାକୁ ବା ସବୁ ଶୁଣିବାକୁ ହୋଇଚି । ପରାଧୀନ ଭାରତବର୍ଷର ମୁକ୍ତିପିପାସା ଆଉ ସ୍ୱାଧୀନ ଭାରତର ଏହି କଳଙ୍କିତ ସ୍ୱରୂପ ପ୍ରକାଶ ! ମୁକ୍ତି-ସଂଗ୍ରାମରେ ଶତଶତ ଶହୀଦଙ୍କର ଆତ୍ମବଳି ଓ ସ୍ୱାଧୀନ ଭାରତର ସାମ୍ପ୍ରଦାୟିକ ହତ୍ୟାରେ ତାହାର ପ୍ରତ୍ୟୁତ୍ତର ! ଏସବୁ ଦେଖି ଭବିଷ୍ୟକଳ୍ପନାର ସମସ୍ତ ସ୍ତମ୍ଭ ଯେପରି ଭୁଷୁଡ଼ି ପଡ଼ିବାରେ ଲାଗୁଚି ! ଦେଶର ଯେଉଁ ମଣିଷକୁ ନେଇ ଦିନେ ମୁଁ ଅନେକ କଥା ଭାବିଥିଲି, ତାକୁ ଆଜି ରାକ୍ଷସ ରୂପରେ ଦେଖି ମୁଁ ଅନେକ ସମୟରେ ନିଜର ଅନୁଭୂତି ଓ ନିଜର ଆଦର୍ଶଗୁଡ଼ାକୁ ମଧ୍ୟ ସନ୍ଦେହ

କରିବାକୁ ଆରମ୍ଭ କରିଚି । ଜଗତରେ ଯଦି ସବୁ ସମ୍ଭବ ହୋଇପାରେ, ତେବେ ଜୀବନରେ ଏକ ସ୍ଥାୟୀ ଆଦର୍ଶର ସ୍ଥାନ ବା ଆଉ କେଉଁଠି ରହିଲା ? ପାପ ପୁଣ୍ୟ, ଉଚିତ ଅନୁଚିତ, ଧର୍ମ ଓ ଅଧର୍ମର ପରିମାପ ଦେଇ ମୁଁ ଜଗତ ଓ ଜଗତର ମଣିଷକୁ ମାପିବାକୁ ଯିବି ଆଉ କୋଉ ନିର୍ଲଜ୍ଜ ମନରେ ? ନା,—ମୁଁ ନିଜେ ବଞ୍ଚିବି, ନିଜର ସ୍ବାଭାବିକ ପ୍ରବୃତ୍ତିଗୁଡ଼ିକୁ ମୁଁ ଆପଣା ମାର୍ଗରେ ବିକଶିତ କରିବାକୁ ଚେଷ୍ଟା କରିବି, ନିଜକୁ ପରିପୂର୍ଣ୍ଣ କରିବି,—ଏହାଛଡ଼ା ବୋଧହୁଏ ଅନ୍ୟ କୌଣସି ଧର୍ମ ବା ଆଦର୍ଶ ହିଁ ନାହିଁ ।

ଏଇ କେତେମାସ ଭିତରେ ମନଭିତରେ ଯେତେବେଳେ ଯେଉଁସବୁ ଭାବନା ଓ ଭାବର ପ୍ରବାହ ବହି ଚାଲିଯାଇଚି, ସେସବୁକୁ ଠିକେଠିକେ ମନେପକାଇ ବର୍ତ୍ତମାନ ଲେଖିବା ଆଦୌ ସମ୍ଭବ ନୁହେଁ । ଆଦର୍ଶପ୍ରତି ଅବିଶ୍ୱାସ, ମଣିଷ ଓ ମଣିଷର ସାଧନାପ୍ରତି ଅବିଶ୍ୱାସ, କୌଣସି ସତ୍ୟର ସ୍ଥାୟିତ୍ୱପ୍ରତି ଅବିଶ୍ୱାସ, ଏହିପରି ଗୋଟାଏ ଅତି ସଂଶୟବାଦୀ ମନ ନେଇ ମୁଁ ଏହି ଖାତାରେ କିଛି ଲେଖିପାରି ନାହିଁ । ମୋର ସବୁ ସତ୍ୟ ଭୁଷୁଡ଼ିଗଲା, ସବୁ ବିଶ୍ୱାସ ଏଡ଼େ ସହଜରେ ମଣିଷର ହାଟରେ ଧୂଳି ହୋଇଗଲା, ତେବେ ମୁଁ କ'ଣ ଜାଣିଲି ବା କି ସତ୍ୟ ପାଇଲି ଯେ ତାହାକୁ ଲିପିବଦ୍ଧ କରିବାକୁ ଯାଇ ସମୟ ନଷ୍ଟ କରିବି ? ମୁଁ ଜାଣେନା, ଏହି କେତୋଟି ମାସ ଭିତରେ ମୁଁ ଆଗେଇଚି ନା ପଛେଇଚି ? ଏପରି ବିଚାର କରି ବସିବାଲାଗି ମୋର କୌଣସି ଧୃଷ୍ଟତା ନାହିଁ । ତଥାପି ଏତିକି ମନେଅଛି ଯେ ଏଇ ସମୟତକ ମୁଁ ସବୁଠାରୁ ଅଧିକ ଭାବିଚି, ପ୍ରତ୍ୟେକ ବିଷୟକୁ ନାନାଦୃଷ୍ଟିରୁ ତଟସ୍ଥ ହୋଇ ବିଚାର କରିଚି । ସମୟ ସମୟରେ ନାନା ସମସ୍ୟାର ପ୍ରବଳ ତୋଫାନ ଭିତରେ ପଡ଼ି ମୋର ମନ ବଡ଼ ଧର୍ଷିତ ଓ କ୍ଲାନ୍ତ ହୋଉପଡିଚି । ନିଜର ମନଭିତରେ ମୁଁ ଆଜିପର୍ଯ୍ୟନ୍ତ କେବେହେଲେ ଏତେବଡ଼ ଆଘାତ ପାଇ ନ ଥିଲି ।

ତେବେ ହଠାତ୍ ଆଜି ଏହି ଖାତାରେ ପୁଣି କାହିଁକି ଲେଖିବାକୁ ଆରମ୍ଭ କଲି ? କି ସତ୍ୟ ତେବେ ମୁଁ ପାଇଚି ? ମୁଁ ଜାଣେନା । ତଥାପି ଯେଉଁ ମନ ଆଜିଯାଏ କିଛିହେଲେ ଲିପିବଦ୍ଧ କରି ରଖିବାକୁ ବିତୃଷ୍ଣା ଦେଖାଇ ଆସିଥିଲା, ସେଇ ମୋତେ ପୁଣି ଟାଣିଆଣି ଏଠି ବସାଇ ମୋ'ରି ହାତ ଦେଇ ଏସବୁ ଲେଖିଯାଉଚି ।

୧୮ । ୧୧ । ୪୭

ମୁଁ ଏଇଦେଶର କବି ହେବି, ଏହି ଦେଶର ପ୍ରାଣର କଥାକୁ ଭାଷାରେ ଫୁଟାଇ ମୁଁ ମୋର ଜୀବନ ସାର୍ଥକ କରିବି । ଏପରି କେତେ ପ୍ରତିଜ୍ଞା ମୁଁ କରିଆସିଚି । ନିଜେ ସାମ୍ୟବାଦୀ, କବି ଓ ପ୍ରେମିକ ହେବି ବୋଲି ମନେମନେ

ଅନେକ କଳ୍ପନା କରିଚି । ସେ ଥିଲା ଗୋଟାଏ ସମୟ । ମୋ' କୈଶୋରର ସେହି ସ୍ୱପ୍ନଘେରା ଦିନଗୁଡ଼ିକ ଅତୀତ ହୋଇଯାଇଚି ।

ତଥାପି ମୁଁ ବଞ୍ଚିରହିଚି, ମୋର ସେହି ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାକୁ । ବୟସରେ ବଡ଼ ହେବା ସଙ୍ଗେ ସଙ୍ଗେ ମୁଁ ମୋ' ଜ୍ଞାନ ଓ ଅନୁଭୂତିର ସୀମାକୁ ମଧ୍ୟ ବଢ଼ାଇ ଚାଲିଚି । ପ୍ରତ୍ୟେକ ଦିନର ଘଟଣା ଦେଇ ମୁଁ ମଣିଷକୁ ଅଧିକରୁ ଅଧିକ ଚିହ୍ନିବାରେ ଲାଗିଚି ।

ବେଳେ ବେଳେ ମନ ବଡ଼ ଅସ୍ଥିର ହୋଇଉଠେ । ମୁଁ ମଧ୍ୟ ଲେଖିବି । ଯେତେବେଳେ କୌଣସି ପତ୍ରପତ୍ରିକା ଦେଖେ, ସେତେବେଳେ ନିଜର ମନ ଭିତରେ ଗୋଟାଏ ପ୍ରକାରର ବିରକ୍ତି ଆସେ । ଭାବେ, ମୁଁ ନ ଲେଖିବି କାହିଁକି ? ତଥାପି ଆପଣାକୁ ଠିକ୍ ଭାବେ ପ୍ରସ୍ତୁତ କରି କଲମ ଧରି ବସିପାରେ ନାହିଁ । କ'ଣ ଲେଖିବି ? ଆଜିଯାଏ କ'ଣ ଲେଖା ହୋଇ ନାହିଁ ? ଅନେକେ ତ ସାହିତ୍ୟ ଲେଖିଚନ୍ତି, କିନ୍ତୁ ସାହିତ୍ୟ ସୃଷ୍ଟି କରିଚନ୍ତି କେତେଜଣ ? ଜୀବନଦାୟୀ ଲେଖା ଲେଖି ମଣିଷକୁ ନୂଆ ଜୀବନ ଦେଇଚନ୍ତି କେତେଜଣ ? ଗୌରବ ପାଇବାକୁ ଲେଖିବି ? ଅବସର-ବିନୋଦନ ପାଇଁ ଲେଖିବି ? ବିନୋଦନ ପାଇଁ ତ ସାରା ଦୁନିଆ ପଡ଼ିରହିଚି, ଏଠି ପବନ, ପାଣି, ଆଲୁଅ ଓ ଅନ୍ଧାରର ଖେଳ, ତା'ର ଜୀବସୃଷ୍ଟିରେ ବୈଚିତ୍ର୍ୟ ଓ ବିଭବମୟ ନିତ୍ୟଲୀଳା,—ଏସବୁ ମୋତେ ନିରନ୍ତର ଆନନ୍ଦରସରେ ବୁଡ଼ାଇ ରଖିଚି । ଆହୁରି ଅଧିକ କି ଆନନ୍ଦ ପାଇବାକୁ ମୁଁ ଲେଖିବି ? ମୋ' ଆପଣାର ଅଭିଜ୍ଞତାଗୁଡ଼ାକୁ ଲେଖିବି ? ମୋ'ରି ହସ ଓ ମୋ'ରି କାନ୍ଦକୁ ଅତିରଞ୍ଜିତ ଭାଷାର ବେଶରେ ସଜାଇ ଦେଇ ସାହିତ୍ୟର ଢମ କରିବି ଆମୋଦଲୋଭୀ ସମାଜ ଆଗରେ ? କାହିଁକି ? ଏଗୁଡ଼ାକୁ ନ ଲେଖିଲେ କ'ଣ ସାହିତ୍ୟର ବଜାର ଅପୂରା ରହିଯିବ ? ଅନେକ ଲୋକ ତ ଲେଖିଚନ୍ତି, କାରୁଣ୍ୟ, କ୍ରନ୍ଦନ, ହାସ୍ୟ ଓ ବ୍ୟଙ୍ଗକୁ ଭାଷା ଦେଇ କେତେକେତେ ଲେଖକ ନାମ କମାଇ ଯାଇଚନ୍ତି । ମୁଁ ଆଉ ଅଧିକା କ'ଣ ଲେଖିବି ? ଏହି ଯୁଗର କବିସମାଜକୁ ତ ମୁଁ ନିତି ଦେଖୁଚି,—ଏ ଯୁଗର ଶସ୍ତା ରାଜନୀତିଜ୍ଞ, ଶସ୍ତା ଶିକ୍ଷିତ ଓ ଶସ୍ତା ସଭ୍ୟମଣିଷ ପରି ସିଏ ମଧ୍ୟ ସାହିତ୍ୟ ବିକି ଗୋଟାଏ ସୁଖବାଦୀ ଜୀବ ପରି ସମାଜର କାନ୍ଧ ଉପରେ ଆପଣାର ବପୁ ଲଦି ବସିଚି । ଏହି ଗରିବ ଦେଶରେ ରାଜନୀତି ନାମରେ ଯେମିତି ମେଳା, ମଉଛବ, ଅଭ୍ୟର୍ଥନା ଓ ଅଭିନନ୍ଦନମାନ ଚାଲିଚି, ପ୍ରଶଂସାଲୋଭୀ ଦେଶସେବୀ ଯେପରି ନାନା କିସମର ପୋଷାକ ଓ ଭେକ ଦେଖାଇ ବୁଲୁଚି, ସାହିତ୍ୟ ଓ କଳାର ନାମରେ ମଧ୍ୟ ଏହି ଭୁଖିଲା ଦେଶରେ ଠିକ୍ ସେହିପରି ଉତ୍ସବ ଚାଲିଚି । ବଡ଼ବଡ଼ ଛାପାଖାନା ବସୁଚି, ଛାପାଖାନାର ବଡ଼ ମାଲିକମାନେ ହଜାରହଜାର ଟଙ୍କା କମାଉଚନ୍ତି, ଏବଂ ବ୍ୟବସାୟଜନିତ ସେହି ଲାଭର ଉଚ୍ଛିଷ୍ଟଦ୍ୱାରା କୌଣସି କୁବଘରେ ଦେଶର

ତଥାକଥିତ ସାହିତ୍ୟିକକୁ ମାନପତ୍ର ଦିଆଯାଉଚି । ଖବରକାଗଜରେ ସେହି ଖବର ପଢ଼ି ସମସ୍ତ ଜାତି ଧନ୍ୟ ହେଉଚି । କେତେ ସାହିତ୍ୟ ଜନ୍ମହୋଇ ମରୁଚି, କେତେ ମାନପତ୍ର ପୁରୁଣା ହୋଇ ପୋକଖାଉଚି, କବି ପଛକୁ କବି ଜନ୍ମହୋଇ ମରୁଚନ୍ତି, ତଥାପି ମଣିଷ ଏହି ସଂସାରରେ ଶାନ୍ତିରେ ଘର କରି ରହି ଶିଖୁ ନାହିଁ । ଭୋକୀ ମଣିଷକୁ ଦି'ଦିନର ଆମୋଦ ଯୋଗାଇଦେଇ ଦେଶର ସାହିତ୍ୟିକ ଦେଶର ଟଙ୍କାରେ ବଡ଼ ସ୍ୱଚ୍ଛଳ ପ୍ରକାରେ ଦିନ ବଞ୍ଚି ମରିଯାଉଚି । ତଥାପି ଦେଶର ମଣିଷ ସେମିତି ମ୍ଳେଚ୍ଛ ହୋଇ ପଡ଼ିଚି । ଗର୍ବ ବା ଗୌରବ ଅନୁଭବ କରିବାକୁ ତା'ପାଖରେ କିଛି ନାହିଁ, ଦେହକୁ ଦାନାକନା ନାହିଁ, ମନରେ ବିଶ୍ୱାସ ଓ ବଳ ନାହିଁ । ତା'କଥା ବୁଝାହେବା ଆଗରୁ ତା'ଦେଶର ସେବକ ବୋଲାଇ ଶାସକନେତା ହଜାର ହଜାର ଦରମା ପାଉଚି । କାହିଁକି ? ଏ ଦେଶର ସମସ୍ତେ ଯେପର୍ଯ୍ୟନ୍ତ ଖାଇବାକୁ ନ ପାଇଚନ୍ତି, ସେପର୍ଯ୍ୟନ୍ତ ଦେଶମାଟିର ଇଞ୍ଚେ ଜାଗାରେ ମଧ୍ୟ ଖାଦ୍ୟଗ୍ରସ୍ତ ନ ହୋଇ ଫୁଲ ଓ ଘାସର ବଗିଚ୍ଚ ହେବ କାହିଁକି ? ଦେଶର ଗୋଟାଏ କଣରେ ଯେତେଦିନଯାଏ ମଣିଷ ଅଣନିଘା ହୋଇ ରୋଗରେ ମରୁଚି, ଏଣେ ତାହାରି ଖଜଣା ପଇସାରେ ନୂଆ ହୋଟେଲ ଓ ନୂଆ କ୍ଳବ୍‌ମାନ ଖୋଲାହେବ କାହିଁକି ? ସୁଖ, ଆନନ୍ଦ, ଆମୋଦ, ଉପଭୋଗ, ଅତୀତଗୌରବ, କଳା ଓ ସଂସ୍କୃତି ସବୁ ବୁଝିହୁଏ; ଯିଏ ଏସବୁର ସାଧନା କରେ, ସିଏ ନିଶ୍ଚୟ ନମସ୍ୟ ଓ ଭକ୍ତିଭାଜନ । କିନ୍ତୁ ଭୋକିଲା ମଣିଷର ପେଟକୁ ଖାଲି ରଖି ସେଗୁଡ଼ାକୁ ସଜାଇ ରଖିବାରେ କେଉଁ ଯୁକ୍ତି ଯେ ରହିଚି, ମୁଁ ତାହା ଆଦୌ ବୁଝିପାରୁ ନାହିଁ ।

ଏହି ସମାଜରେ ଓ ଏହି ଯୁଗରେ ମୁଁ ଲେଖକ ହେବାକୁ ଚାହେଁ, ଏହିପରି ଏକ ସାମାଜିକ ପ୍ରଚ୍ଛଦ ଉପରେ ମୁଁ ସାହିତ୍ୟସୃଷ୍ଟି କରିବାକୁ ଚାହେଁ । ଏଇଟା କ'ଣ ଏଡ଼େ ସହଜ ? ଦୁଇ ମିନିଟ୍‌ର ମଜାମଜଲିସ୍ ପାଇଁ ପନ୍ଦରଧାଡ଼ି ଗଦ୍ୟ ବା ପଦ୍ୟ ଲେଖିଦେଲେ କ'ଣ ସେଇଥିରେ ସାହିତ୍ୟରଚନା ହୋଇଯିବ ? ନା,—ଏସବୁ ଅନେକ ହୋଇଚି, ଅଫିମ ଖୁଆଇବାକୁ ଅନେକ ଲୋକ ଅଛନ୍ତି । ମାତ୍ର ନିଶା ଛଡ଼ାଇବାକୁ ଲୋକ କାହାନ୍ତି ? ଜାତି, ଧର୍ମ ଓ ଦେଶର ଦୁଆ ଉଠାଇ ଶହା ଗୌରବରେ ମଜାଇ ରଖିବାକୁ, ନଗ୍ନ-ସୁନ୍ଦର ମଣିଷକୁ ଆଭିଜାତ୍ୟର ଅଭିମାନୀ ଭୂଷାରେ ସଜାଇବା ପାଇଁ ସୁଆଙ୍ଗୀ ସାହିତ୍ୟକାର ଅନେକ ଅଛନ୍ତି, କିନ୍ତୁ ମଣିଷକୁ ଯଥାର୍ଥ ଭାବରେ ଜାଗ୍ରତ କରାଇ ମନୁଷ୍ୟତ୍ୱ ଯୋଗ୍ୟ ଏକ ସମାଜ ଗଠନା କରିବାର ଲୋକ କାହାନ୍ତି ? ମଣିଷକୁ ମଣିଷପରି ଗଢ଼ିବାର କର୍ତ୍ତବ୍ୟ ହାତକୁ ନେଲେ ପ୍ରତ୍ୟେକ ଲେଖକକୁ ସାହିତ୍ୟକ୍ଷେତ୍ରରେ ଆପଣାର ପ୍ରକୃତ ସ୍ଥାନଟି ବାଛି ନେବାକୁ ହେବ । 'ଠିକ୍ କେଉଁଠି ମୋର ଆବଶ୍ୟକତା ରହିଚି, ଜୀବନର ଗଠନଶାଳାରେ ମୁଁ ଠିକ୍ କେଉଁ କାରିଗରର ଅଭାବ ପୂରଣ କରିପାରିବି ?'—ଏହି ପ୍ରଶ୍ନଗୁଡ଼ିକୁ ଲେଖକ ନିଜକୁ ନିତିନିତି ପଚାରୁ ।

ସାହିତ୍ୟଜଗତରେ ନିଜର ହସ୍ତାଙ୍କିତ କୌଣସି ଅବଦାନ ର ିବାଲାଗି ଯେତେବେଳେ ଭିତରୁ ଗୋଟାଏ ଅସ୍ଥିରତା ଆସୁଚି, ସେତିକିବେଳେ ମନଭିତରେ ଏହିସବୁ ପ୍ରଶ୍ନ ସ୍ୱତଃ ଜାଗ୍ରତ ହୋଇ ମୋ'ର କଲମକୁ ଅଟକାଇ ରଖୁଚି । ଗୌରବଲୋଭୀ ମନ ଆପଣାର ବିଜ୍ଞାପନ ପରିବାକୁ ଉଚ୍ଛନ୍ନ ହୋଇଉଠିଲା-ବେଳେ ସାଧକ ମନ ପଛରୁ ଲଗାମ ଟାଣିଧରିଚି । ଦିନ ଆସି ନାହିଁ, ଏପର୍ଯ୍ୟନ୍ତ ମୁଁ ମୋର ଯଥାର୍ଥ ସ୍ଥାନ ନିର୍ଣ୍ଣୟ କରିପାରି ନାହିଁ । ଆହୁରି ଦେଖିବାକୁ ହେବ, ଆହୁରି ବୁଝିବାକୁ ହେବ, ଚତୁର୍ଦ୍ଦିଗର ଜୀବନକୁ ଆହୁରି ଅଧିକ ଗଭୀର ଭାବରେ ଅନୁଭବ କରିବାକୁ ହେବ । ମୁଁ ଲେଖାଲେଖି ଛାଡ଼ିଦେଲିଣି ବୋଲି ଥରେ ଜଣେ ବନ୍ଧୁ ମୋ'ଉପରେ ଭାରି ବିରକ୍ତ ହେଲେ । କିନ୍ତୁ ମୁଁ କ'ଣ କରିବି ? ମୋ'ଲେଖାର କ'ଣ ପ୍ରକୃତ ଆବଶ୍ୟକତା ରହିଚି ? ସମାଜ କ'ଣ ପ୍ରକୃତରେ ମୋର ଲେଖାକୁ ଅପେକ୍ଷା କରିଚି ? ସମାଜ ଓ ମଣିଷର ଜୀବନସତ୍ୟକୁ ମୁଁ କେତେଦୂର ବୁଝିଲିଣି ଯେ ମଣିଷର ମର୍ମକଥା ବୁଝିପାରିବାର ଦମ୍ଭ ମୁଁ କରିବି ? ମୋ' ବ୍ୟକ୍ତିଗତ ଜୀବନର ଛୋଟଛୋଟ ପ୍ରତିକ୍ରିୟା ଓ କ୍ଷଣିକ ଉନ୍ମାଦନାଗୁଡ଼ାକୁ ଭାଷାର ବେଶ ପିନ୍ଧାଇ ପାଠକମଣ୍ଡଳୀରେ ତୁଳାକୁ ସମସ୍ୟାର ଗୋଟାଏ ପାହାଡ଼ ଠିଆ କରିବାକୁ ମୋର କି ଅଧିକାର ରହିଚି ? ମଦଖଟିର ମଜାଗପ ପରି ଶସ୍ତାସାହିତ୍ୟ ମୁଁ ଲେଖିପାରିବି ନାହିଁ । କେଉଁ ନିର୍ବୋଧ ରାଜାକୁ ଖୋସାମଦ କରୁଥିବା ଭାଟ ବା ଭାଣ୍ଡ ପରି ମୋ'ର ମଣିଷଭାଇକୁ ଦୁଇଦିନର ଆମୋଦ ଦେବାର ଦୁଃସାହସ ମୁଁ କରିବି ନାହିଁ । ସମାଜରେ ଏପରି ଅଭିନୟ ଅନେକ ହୋଇଚି, ସମାଜକୁ ଏକ ନାଟ୍ୟଶାଳା କରି ଜୀବନକୁ ଦୁଇଦିନର ଗଞ୍ଜପା ଖେଳ ବୋଲି ପ୍ରମାଣ କରିବାର ଚେଷ୍ଟା ଅନେକ ହୋଇଚି । ମୁଁ ସେଇ ଗଡ୍ଡୋଡ଼ଦଳରେ ନାମ ଲେଖାଇବି କିଆଁ ?

୧୯ । ୧୧ । ୪୭

କଲିକତା ସହର—ବଙ୍ଗଳାର ରାଜଧାନୀ । ବ୍ରିଟିଶ୍ ସାମ୍ରାଜ୍ୟର ଦ୍ୱିତୀୟ ସହର, କମ୍ପାନୀ ଅମଳର ନାମଜାଦା ଏହି ମହାନଗରୀ କଲିକତା ।

ଅନେକ ମଣିଷ ଆସୁଚନ୍ତି, ଯାଉଚନ୍ତି । ଟ୍ରାମ୍, ବସ ଓ ଗାଡ଼ିମଟରର ଦୌଡ଼ାଦୌଡ଼ିରେ ଘଡ଼ିଏ ହେଲେ ଫୁରସତ୍ ନାହିଁ । କେତେ ରକମର ପୋଷାକ, କେତେ ରକମର ହାବଭାବ ଓ କେତେ ରକମର କଥାବାର୍ତ୍ତା । କଳଯୁଗର କୃପାରୁ ଦେଶର ଏକଣ ସେକଣ ଏକାଠି ହେଉଚନ୍ତି ଏହି ବଡ଼ ସହର କଲିକତାରେ । କାହାର କେତେ ରକମର କାମ; ଯେଝା ଯେଝାର ବିଗ୍ଭର ନେଇ ପ୍ରତ୍ୟେକେ ଧାଇଁ ଗ୍ଭଲିଚନ୍ତି । ମୁଁ ମଧ୍ୟ ଗ୍ଭଲିଚି ଏଇ କଲିକତାର ଏକ ଫୁଟପାଥ୍ ଉପରେ ।

ନିହାତି ଅପ୍ରୟୋଜନରେ ମୁଁ ଯାଉ ନାହିଁ । ଫୁଟ୍‌ପାଥ୍‌ର କଡ଼ରେ ଥିବା ବହିଦୋକାନରୁ ପୁରୁଣା ବହି ତଲାସ କରିବା ମୋର କାମ । ଦୈବାତ୍ ଖଣ୍ଡେ ଭଲ ବହି ଆଖିରେ ପଡ଼ିଗଲା ତ, ଶସ୍ତାରେ କିଣି ନେଇପାରିବି ।

ନଗରଲକ୍ଷ୍ମୀ ଚାରିଆଡ଼େ ବିପୁଳ ବିପଣି ମେଲିଦେଇ ବସିଚି । ନିଜନିଜର ଓଜନ୍କୁ ଅନାଇ ଯିଏ ଯେପରି ଢଙ୍ଗରେ ଯାହା ଚାହିବ, ସବୁ ମିଳିବ ଏଇ ଲକ୍ଷ୍ମୀବଜାରରେ । ସାହେବମାନଙ୍କ ବଡ଼ଦୋକାନର କୋଠାର ଉପର ମହଲାକୁ ଆଖି ପାଉ ନାହିଁ । ସେଇ ଉପର ମହଲାଠାରୁ ଦୋକାନ ଲାଗିରହିଚି ଭୂଇଁ ପର୍ଯ୍ୟନ୍ତ । ସବାଶେଷକୁ ଫୁଟ୍‌ପାଥ୍‌ର ଏହି ବହିଦୋକାନ,–ଗଦି ନାହିଁ, ଗାଲିଚା ନାହିଁ, ସାଜ କି ସରଞ୍ଜାମ କିଛି ନାହିଁ । ଖୋଲା ପବନ ଓ ଆଲୁଅତଳେ ଦଉଡ଼ା ଦେହରେ ଟଙ୍ଗାହୋଇଚି ପୁରୁଣା ବହିଗୁଡ଼ାକ । ଯାହାର ଦରକାର, ସେ ନିଜେ ବାଛି କିଣିନେବ ।

ଏହି ଜାଗାଟା ସହିତ ମୋର ଅନେକ ଦିନ ପରିଚୟ । କଲିକତା ଆସିଲେ ମୁଁ ସବୁଥର ଏଆଡ଼େ ଘେରାଏ ମାରିଦେଇ ଯିବାକୁ ଭୁଲିପାରେ ନାହିଁ ।

ବରଷକ ତଳେ ଏଠାକୁ ଆସିଥିଲି । ସେଥର ଯାହାଠାରୁ ବହି କିଣିଥିଲି, ଏଥର ତା'ର ଦୋକାନ ଦେଖିଲି ନାହିଁ । ଅନ୍ୟ ଏକ ଦୋକାନରୁ ଖବର ନେଇ ବୁଝିଲି, ତା'ର ଘର ହେଉଚି ଢାକା ଆଡ଼େ । ସେ ଜାତିରେ ମୁସଲମାନ । ମାଛୁଆ ବଜାରରେ ବସାଘର କରି ଏଇଠି ବହି ବିକ୍ରୀ କରୁଥିଲା । ଗୋଳମାଳରେ ତା'ର ପ୍ରାଣ ଯାଇଚି । ପାଖରେ ଗୋଟାଏ ମସଜିଦ୍ ଭାଙ୍ଗିରୁଜି ବଡ଼ ହତଶ୍ରୀ ହୋଇପଡ଼ିଚି । ଏଇଟା ହିନ୍ଦୁପଡ଼ା । କଲିକତାର ମୁସଲମାନମାନେ ଯେଉଁ ସମୟରେ ହିନ୍ଦୁଙ୍କ ଉପରେ ହଣାକଟା ଆରମ୍ଭ କଲେ, ସେହି ସମୟରେ ଏପଡ଼ାର ହିନ୍ଦୁମାନେ ଏଠି ତାହାର ପ୍ରତିଶୋଧ ନେଇଥିଲେ ।

ବହି ଦେଖି ଦେଖି ମୁଁ ଆଗକୁ ଚାଲିଚି । ସଫା ଧୋତି, ସଫା ଖଦଡ଼ର ପଞ୍ଜାବୀ, ତା'ଉପରେ କାନ୍ଧକଟା କୁରୁତା । କାନ୍ଧରେ ଝୁଲୁଥିବା ମୁଣି ଭିତରେ ବହିପତ୍ର, ଟିପାଖାତା ଓ କଲମ । ପାଦରେ କାବୁଲି ଜୋତା । ଭଦ୍ର ପୋଷାକରେ ଭଦ୍ରଲୋକଟି ପରି ମୁଁ ଚାଲିଚି ।

ହଠାତ୍ ଗୋଡ଼ ଅଟକିଗଲା ବେଳକୁ ଦେଖିଲି, ଗୋଟାଏ କଳା କଟକଟ ପିଲା ଏକାଜିଦ୍ କରି ମୋର ଗୋଡ଼କୁ ଧରିବସିଚି, ଜୋତା ପାଲିସ୍ କରିବବୋଲି । ବଡ଼ ବିରକ୍ତି ଆସିଲା; ମୋର ଅନୁମତି ନନେଇ ରାସ୍ତାରେ ମୋତେ ଏପରି ବନ୍ଦକରି ରଖିବାଟା ବଡ଼ ଅପସନ୍ଦ ଲାଗିଲା । ଛୋକରା ମୋଟେ ଭଦ୍ରତା ଜାଣେ ନାହିଁ ।

ପିଲାଟା ଆଡ଼କୁ ଅନାଇ ଦେଖିଲି । ଖିଲ୍‌ଖିଲ୍ କରି ସେ ହସୁଥାଏ । ଗୋଡ଼ରେ ଛିଣ୍ଡା କୋଟା, ଦେହରେ ଛିଣ୍ଡା ପ୍ୟାଣ୍ଟ ଓ ଛିଣ୍ଡା ଗେଞ୍ଜି ଖଣ୍ଡେ । ଧୂଳି ଖାଇଖାଇ ମୁଣ୍ଡର ବାଳଗୁଡ଼ାକ ତମ୍ବାତାର ପରି ଅଳେଇମଳେଇ ପଡ଼ିଚି । ଖୁବ୍ ସୁନ୍ଦର ହିନ୍ଦୁସ୍ତାନୀ କହିଜାଣେ ସେ ।

କଥା କହୁଚି, ଯେମିତି ଅତି ଆପଣାର ! ମୋ'ରି ଜୋତା ପାଲିସ୍ କରିବାକୁ ସତେଯେମିତି ସେ ସେଇ ଖରାରେ ସିଝିସିଝି ସକାଳୁ ରୁହିଁ ରହିଥିଲା । ମୋ'ପରି ଜଣେ ବାବୁଙ୍କର ଜୋତା ପାଲିସ୍ କରିବାରେ ତା'ର ଏଡ଼େ ଉତ୍ସାହ ଦେଖି ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ତା' ମୁହଁଉପରର ଖିଲ୍‌ଖିଲ୍ ହସ ମୋତେ ଆହୁରି ବିସ୍ମୟରେ ପକାଇଦେଲା । ବାର ବରଷର ପିଲା, ବାରଦୁଆରେ ବାବୁ-ମାନଙ୍କର ଜୋତାରେ ରଙ୍ଗ ଦେଇ କେତେ ଅଣା ରୋଜଗାର କରି ସେ ଏମିତି ହସିଶିଖିଲା କିପରି ? ଏତେ ଖୁସୀ ତାକୁ କଲା କିଏ ? ହୁଏତ ଗାଆଁଗହଳରେ କେଉଁଠି ତା'ର ଗାଆଁ ହୋଇଥିବ, ତେୟାଳିଶି ମସିହାରେ ବାପମାଆଙ୍କୁ ହରାଇ ହୁଏତ ସିଏ ଜୋତା ସଫାକରି ଏହି ସହରରେ ପେଟ ପୋଷିବାକୁ ଆସିଚି ! ବା ହୁଏ ତା'ର ବାପମାଆ ହିନ୍ଦୁ କି ମୁସଲମାନ ଥିଲେ, ତାଙ୍କ ବସ୍ତିର ସମସ୍ତଙ୍କ ସାଙ୍ଗରେ ସେମାନେ ବି ହାଣମୁହଁରେ ପଡ଼ିଚନ୍ତି । ପିଲାଟାର ରୂପ ଓ ଭେକରୁ ସିଏ ହିନ୍ଦୁ କି ମୁସଲମାନ, ସେକଥା ମୋତେ ଠଉରାଇ ହେଉ ନ ଥିଲା ।

ସେ ଯିଏ ହେଉନା,—ମୋର ତ ଦରକାର ନାହିଁ; ମୋ' ଯୋତାକୁ ମୁଁ ଠିକ୍ କଲିକତା ଆସିବା ଆଗରୁ ପାଲିସ୍ କରି ଆଣିଚି !

'ବାବୁ, ଗୋଡ଼ଟା ଏଣିକି ରଖନ୍ତୁ !'—ପାଖରେ ଥିବା ସରଞ୍ଜାମ ଭିତରୁ ସେ ଲୁହାଟା ବଢ଼ାଇଦେଲା । ମୋ'ଠୁଁ ମତାମତ ଶୁଣିବା ଆଗରୁ ମୋର ଗୋଡ଼ ଛାଏଁ ଜୋତାକୁ ନେଇ ଲୁହାଉପରେ ରଖି ସେ ଏକମନରେ ରଙ୍ଗ ଘଷିବା ଆରମ୍ଭ କରିଦେଲା । ପିଲାଟା ପ୍ରତି କୃପା ହେଲା । କେତେ ପଇସା କେତେ ବାଟରେ ଗଳିଯାଉଚି । ଦୁଇଅଣା ପଇସାରେ ଟିକିଏ ବିଳାସ କରିନେଲେ ମୋର ଏବେ କି କ୍ଷତି ହୋଇଯାଉଚି ? ଆଉ ବାଧା ଦେଲିନାହିଁ,—ପିଲାଟା ତା' କାମରେ ଲାଗିଗଲା ।

ଭାରି ସୁନ୍ଦର ପାଲିସ୍ କରିପାରେ ସେ, ମାସମାସ ହେଲା ଅଭ୍ୟାସ କରି ତା'ର ହାତ ବିଲକୁଲ ବାଗେଇ ଯାଇଚି । କି ଫୁର୍ତ୍ତି, ଦୁଇମିନିଟରେ ମୋର ଯୋତାହଳକୁ ରଙ୍ଗରେ ଚିକ୍‌ଚିକ୍ କରିଦେଲା । ମୁଁ ଅନ୍ୟମନସ୍କ ଭାବରେ ଦେଖୁଥିଲି ସେପାଖ ଦୋକାନର ପୂଜା-ବିଜ୍ଞାପନଗୁଡ଼ାକ ।

ତା'ର କାମ ସରିଲା, ମୁଁ ଭଲକରି ଜୋତା ଦୁଇଟାକୁ ଦେଖିନେଲି । ପସନ୍ଦ ଅପସନ୍ଦ ବିଗ୍ଭର ନ କରି ତା'ଆଡ଼କୁ ଦୁଇଅଣା ପଇସା ପକାଇଦେଲି ।

ପିଲାଟା ଦି'ଅଣିଟାକୁ କପାଳରେ ଛୁଆଁଇ ବଡ଼ପାଟି କରି ପଛରୁ କହିଲା, 'ନମସ୍କାର ବାବୁ, ଜୟହିନ୍ଦ୍ !'

ମୁଁ ଫେରି ଅନାଇଲି । ତା'ର ମୁହଁରେ ସେଇ ଖିଲ୍‌ଖିଲ୍ ହସ । ଦି'ଅଣା ପଇସା ପାଇ ସେ ଭାରି ଖୁସି । ମୋ' ବ୍ୟବହାରରେ ଯେପରି ଖୁବ୍ ସନ୍ତୁଷ୍ଟ !

ଅଲକ୍ଷ୍ୟ ଓ ଅସଚେତ ଭାବରେ ମୁଁ ମଧ୍ୟ 'ଜୟହିନ୍ଦ୍' କହି ଜବାବ ଦେଲି । କ୍ଷଣକପାଇଁ ସହର ଓ ଫୁଟ୍‌ପାଥ୍ ସବୁ ଭୁଲିଗଲି । ଆଖିଆଗରେ ତାକୁ ଦେଖିଲି ମୋର ଅତି ନିକଟରେ, ସେଇ ଅଶୋକଚକ୍ରର ପତାକାତଳେ ।

ଜୟହିନ୍ଦ୍ ! ମନଭିତରୁ କିଏ କହିଉଠିଲା : ସେ ମୋର ଭାଇ, ମୋ'ରି ମୋରି ଦେଶର ପିଲା । କିନ୍ତୁ ମୁଁ ? ମୁଁ ତା'ର କ'ଣ ?

୨୦ । ୧୧ । ୪୭

କାଲି ଛୁଟୀ ପୂରିବ, ଆଜି ଅଧେ ପିଲା ଆସିଗଲେଣି । ନୀରବ ତୋଟାତଳ ଏଥର ପୁଣି ମୁଖରିତ ହୋଇଉଠିବ । ଏଇ ଛୁଟୀରେ ଖୁବ୍ ଭଲକରି ଜାଣିଲି ଯେ ଏକାବେଳେକେ ନିର୍ଜନତା ଭିତରେ ରହିବା ମୋତେ କଦାପି ଭଲ ଲାଗିବ ନାହିଁ । ମୁଁ ମଣିଷକୁ ଭଲପାଏ, ତାହାରି ସଙ୍ଗ ଓ ସାହଚର୍ଯ୍ୟ ପାଇଲେ ମୁଁ ସବୁଠୁଁ ଅଧିକ ଖୁସୀ ହୁଏ । ଏହି କେତେଟା ଦିନ ଏତେ ଅଳ୍ପ ଲୋକଙ୍କର ଏତେ ଅଳ୍ପ କାର୍ଯ୍ୟକଳାପ ଭିତରେ ବଡ଼ ନୀରସ ଲାଗୁଥିଲା । ଘୁରିଆଡ଼େ ଫାଙ୍କା ଘର ଓ ଶୂନ୍ୟ ପ୍ରାଙ୍ଗଣମାନ ଦେଖି ମନଭିତରେ ଯେପରି କିଏ କାହାର ଅଭାବ ଅନୁଭବ କରୁଥିଲା ! ଆଜି ସଞ୍ଜବେଳେ ଏତେଗୁଡ଼ିଏ ସାଙ୍ଗସାଥୀଙ୍କୁ ପାଇ ପ୍ରାଣ ସରସ ହୋଇ ଉଠିଲା ।

୨୫ । ୧୧ । ୪୭

ଆଲୁଅ ଆଉ ଅନ୍ଧାର,—ସଂସାରର ନାନା antinomy ଭିତରେ ଇଏ ବି ଗୋଟାଏ । କବି ଓ ଦାର୍ଶନିକମାନେ ଏହି ଆଲୁଅ ଓ ଅନ୍ଧାରର ସମସ୍ୟା ନେଇ ନାନାକଥା ଲେଖିଚନ୍ତି, ନାନାପ୍ରକାର ସମାଧାନ କାଢ଼ିଚନ୍ତି । ଆଲୁଅ ଯାହାର, ଅନ୍ଧାର ମଧ୍ୟ ତାହାର;—ଏହି ସତ୍ୟଟିର ଉପଲବ୍ଧି କରି ଜୀବନକୁ ସବଳ ଓ ସମର୍ଥନପୂର୍ଣ୍ଣ କରିବାର ଆହ୍ୱାନ ମଧ୍ୟ କେହି କେହି ମନୀଷୀ ଦେଇଯାଇଚନ୍ତି ।

ପ୍ରତିଦିନ ସୂର୍ଯ୍ୟୋଦୟ ହେଉଚି, ଅପଲକ ନୟନରେ ମୁଁ ଗ୍ରହିଁରହୁଚି ସେହି ପୂର୍ବତୋରଣ ଆଡ଼କୁ । ପ୍ରତିଦିନ ଦେଖୁଚି ଆଲୋକର ବର୍ତ୍ତୁଳ ପିଣ୍ଡଟି କିପରି ସାବଲୀଳ ଭାବରେ ଉଠିଆସୁଚି ସମସ୍ତ ଜଗତକୁ ଜଗାଇଦେଇ ।

ପ୍ରାଣର ସହସ୍ରତନ୍ତ୍ରୀ ଏକାବେଳେକେ ଖୋଲିଯିବାପରି ଲାଗୁଚି । ମନେହେଉଚି, ସବୁବେଳେ ଏହିପରି ସକାଳ ହୋଇଥାନ୍ତା କି ! ସବୁବେଳେ କିଏ ଏହିପରି ନୂତନ ଜନ୍ମର ସନ୍ଦେଶ ବହନ କରି ଆଣୁଥାନ୍ତା କି !

ଖୁବ୍ ଚେଷ୍ଟା କରୁଚି, ତଥାପି ମୁଁ ଅନ୍ଧାରଟାକୁ ସହିପାରୁ ନାହିଁ । ଦିନଶେଷର କ୍ରୀଡ଼ାକ୍ଳାନ୍ତ ପକ୍ଷୀଟି ପରି ମୁଁ ଯେତେବେଳେ ଆପଣା ନୀଡ଼କୁ ବାହୁଡ଼ି ଆସୁଚି, ସେତେବେଳେ ବିଶ୍ୱବ୍ୟାପୀ ଅନ୍ଧକାରର ଭୟଙ୍କରତାରେ ପ୍ରାଣ ସତେଅବା ବିହ୍ୱଳ ଓ ଅସ୍ଥିର ହୋଇଉଠୁଚି । ସିଏ କେତେ କଥା ଦେଖିଚି, ଆହୁରି କେତେକ'ଣର ଆଭାସ ପାଇଚି, କେତେଭାବେ କେତେକ'ଣ ଦେଖିବାର ଦମ୍ଭ ବି କରିଚି, ତେବେ ଏହି ଅନ୍ଧାର ହଠାତ୍ ଆସି ତାକୁ କ୍ଷୁଦ୍ର ଏହି ଶୂନ୍ୟକୋଠରୀର ନିକାଞ୍ଚନତା ଭିତରେ ପକାଇଦେଇ ଯାଉଚି କାହିଁକି ? ମୁଁ ସବୁ କବାଟ ଓ ଝରକାକୁ ଖୋଲିକରି ରଖିଚି, ତଥାପି ମସୀରାତ୍ରିର ଏହି ଅନ୍ଧାରରେ ମୋ' ଛୋଟ କୋଠରୀଟିର ନିର୍ଜନତା ଯେପରି ଆହୁରି ଭୟଙ୍କର ଓ ଆହୁରି ଅସହ୍ୟ ହୋଇଉଠୁଚି । ଆଲୁଅର ସ୍ଫଟିକ ଭିତରଦେଇ ଯାହାକୁ ମୁଁ ଅନ୍ତରର ଅତି ପାଖରେ ପାଇଥିଲି, ମୁଁ ତାହାକୁ ହିଁ ଦେଖିବାକୁ ଚାହେଁ; ଏହି ଅନ୍ଧାରର ଅନିଶ୍ଚିତତା ଭିତରେ ମୁଁ ତାକୁ ହରାଇଦେବାକୁ ଚାହେଁ ନାହିଁ ।

ଅନେକ ସାନ୍ତ୍ୱନାଶାସ୍ତ୍ର ଲେଖାହୋଇଚି ଏହି ଅନ୍ଧାର ଓ ଆଲୁଅସମସ୍ୟାର ସମାଧାନ ବାହାର କରିବା ପାଇଁ । ଅମାବାସ୍ୟା ରାତ୍ରିର ଘନ ତମିସ୍ରା ଭିତରେ ଚନ୍ଦ୍ରାଲୋକର ଶୀତଳ ସ୍ପର୍ଶ ଅନୁଭବ କରିବାଲାଗି ପୃଥିବୀ ଉପରେ ଅନେକ ଉପଦେଶ ଅଜାଡ଼ା ହୋଇଚି । ତଥାପି ପୃଥିବୀର ସଂଶୟ ତୁଟି ନାହିଁ । କାରଣ ପୃଥିବୀ ଧରିରଖିବାକୁ ଚାହେଁ, ଛାତିର ଅତି ନିକଟରେ ଅନୁଭବ କରିବାକୁ ଚାହେଁ ।

ହୋଇଥିବ ଅବା ! ଆଲୁଅରେ ଯିଏ ହସେ, ଅନ୍ଧାରର ଏକାକୀ କ୍ରନ୍ଦନଭିତରେ ସେ ହୁଏତ କାଲିକାର ଆଲୁଅ ପାଇଁ ମୋତେ ପ୍ରସ୍ତୁତ କରୁଥାଏ ! ମୋତେ ସମ୍ପୂର୍ଣ୍ଣ କରି ଦେଖିବା ସକାଶେ ଯେପରି ଆଲୁଅ ଓ ଅନ୍ଧାର ଉଭୟକୁ ନେଇ ସ୍ରଷ୍ଟାର ଏଇ ବିଚିତ୍ର ସୃଷ୍ଟି ! ଅନ୍ଧାରର ବିରହ ଓ ବ୍ୟଥା ମୋତେ ଆଲୋକକୁ ବରଣ କରି ଆଣିବାର ବଳ ଦେବ । ଅନ୍ଧାରଜନିତ ଅଶ୍ରୁପ୍ରବାହର ନିଷ୍କାସନରେ ହୃଦୟ ନିର୍ମଳ ହୋଇ ଆପଣାକୁ କାଲିର ଆଲୋକ ପାଇଁ ଯୋଗ୍ୟ କରିପାରିବ, କାଲିର ଆଲୋକକୁ ଯଥାର୍ଥରୂପେ ନିଜଉପରେ ପ୍ରତିଫଳିତ କରିପାରିବ । ଯିଏ ମୋତେ ଏତେ ଭଲ ପାଏ, ତା'ର ଭଲପାଇବାରେ ପୁଣି କୌଣସି ସର୍ତ୍ତ ରହିବ କାହିଁକି ? ଆଲୋକ ଓ ଅନ୍ଧାରର ତାରତମ୍ୟ ଅନୁସାରେ ସିଏ ତା'ର ପ୍ରେମବର୍ଷଣରେ ତାରତମ୍ୟ କରିବାକୁ ଯିବ କାହିଁକି ? ଅନ୍ଧାର ବା ଆଲୁଅ ଯେତେବେଳେ ଯାହା ଆସୁନା କାହିଁକି, ସିଏ ତଥାପି ରହିଚି । ମୋତେ ତାହାରି ନିତ୍ୟାନୁଭୂତି ପାଇବାକୁ ହେବ । ମୁଁ ଆଉ ଅନ୍ଧାରକୁ ଡରିବି ନାହିଁ,

ଅନ୍ଧାରଶଯ୍ୟା ଉପରେ କ୍ଲାନ୍ତ ହୋଇ ପଡ଼ିରହି ମୁଁ ଆଉ ଏପରି କାତର ହୋଇ ପଡ଼ିବି ନାହିଁ । ରାତ୍ରିର ଅନ୍ଧକାର ମୋତେ ବିବଶ ନ କରି ବିମଳ କରୁ, ଏହା ହିଁ ମୋର ଆଜିର ପ୍ରାର୍ଥନା ।

୨୬ । ୧୧ । ୪୭

ଢୁଗୁଳା ହୋଇ ମୁଁ ଅନେକ ଦୂରକୁ ଗ୍ଧଲିଯାଇଚି, ସେଥିଲାଗି ଆଜି ଆପଣାର ହୃଦୟ ଘରକୁ ଫେରିଆସି ମୁଁ ଆପଣାକୁ ଚିହ୍ନିପାରୁ ନାହିଁ । ବିସ୍ତୃତ ସଂସାର ଭିତରେ ନିଜକୁ ବ୍ୟାପୃତ କରାଇଦେବାକୁ ଯାଇ ମୁଁ ଯା'ଭିତରେ ନିଜକୁ କେଡ଼େ ସଂକୀର୍ଣ୍ଣ ଓ କ୍ଷୁଦ୍ର କରି ପକାଇଚି ! ପଚିଶି ଜାଗାରେ ପଚିଶି ରକମର ମାୟା ଓ ବନ୍ଧନ ସୃଷ୍ଟି କରି, ପ୍ରତ୍ୟେକ ଘାଟରେ ମୋହ ଓ ଦି'ଦିନର ସ୍ନେହସୂତାରେ ନିଜକୁ ଛନ୍ଦିଦେଇ ଆଜି ମୁଁ କେଡ଼େ ମ୍ରିୟମାଣ ଅନୁଭବ କରୁଚି ! ସମସ୍ତ ସଂକୀର୍ଣ୍ଣତା ଓ ସମସ୍ତ ଅସ୍ଥାୟୀ ବନ୍ଧନକୁ ଛିନ୍ନ କରି ଅସୀମ ଲୋକାଳୟରେ ପ୍ରବେଶ କରିବାର ଶକ୍ତି ମୁଁ କେଉଁଠି କିଁପରି ହରାଇ ବସିଲି ? ସମସ୍ତଙ୍କୁ ନିର୍ମଳ ସ୍ନେହ ଓ ପ୍ରେମ ଦେଇ ସମସ୍ତଙ୍କଠାରୁ ଅଗାଧ ସ୍ନେହ ପାଇବାର ମନ୍ତ୍ର ମୁଁ କିପରି ପାସୋରି ବସିଲି ? ମୁଁ ଯେଉଁଠିକି ଯାଉଚି, ଯାହାର ଜୀବନର ଏତେଟିକିଏ ସଂସ୍ପର୍ଶରେ ଆସୁଚି, ସେଠି ଏକ ସ୍ନେହଲୋଭୀ, ସ୍ୱାର୍ଥପର ଓ କୁତ୍ସିତ ଜୀବ ପରି ନିଜ ପାଇଁ ମୋହଜାଲ ବିଛାଇ ବସିବାକୁ ଅରାଏ ଜାଗା ମାଡ଼ିବସିବାରେ ମୁଁ କି ଆନନ୍ଦ ପାଉଚି ? ହରାଇବାର ଓ ଏକାକୀ ପଡ଼ିଯିବାର କାତରତା ମୋର ଅଜଣାରେ ମୋ'ଭିତରେ କେଉଁଦିନୁଁ ଚେର ମାଡ଼ି ରହିଲାଣି ? ସଂସାର କ'ଣ, ମୁଁ ସେକଥା କିଛି ବୁଝି ନାହିଁ । ସ୍ନେହପ୍ରେମର ଲୁବ୍ଧ ପ୍ରତ୍ୟାଶାରେ ମୁଁ ଦୈନନ୍ଦିନ ଜୀବନରେ ଅନେକ ସ୍ନେହ ଓ ପ୍ରେମରୁ ଖାଲି ବଞ୍ଚିତ ହୋଇ ଆସିଚି ।

ଆଉ ବେଶୀ ନୁହେଁ, ଏଥର ନିଜକୁ ସଜାଡ଼ିବାକୁ ହେବ, ବାଉଳା ମନ ! ପୃଥିବୀଟା ହିଁ ତୋ'ର, ସମଗ୍ର ଜଗତର ସୌନ୍ଦର୍ଯ୍ୟ ବିପଣି କେବଳ ତୋତେ ଆନନ୍ଦ ଦେବାପାଇଁ ଏତେ ଆଲୋକ ଓ ହସର ସମ୍ଭାର ଧରି ଅପେକ୍ଷା କରି ରହିଚି । ତୁ ଖାଲି ନିର୍ମଳ ହୋଇପାରିଲେ, ପ୍ରାଣ ଖୋଲି, ଅହଙ୍କାର ମାରି, 'ମୁଁ' କାରକୁ ଅତିକ୍ରମ କରି ବଞ୍ଚିପାରିଲେ ସେହି ସମସ୍ତ ଶୋଭାର ଆଗାର ତୋ'ରି ହୋଇପାରିବ, ଜଗତର ସମସ୍ତ ଆନନ୍ଦ, ସମସ୍ତ ହସ ଓ ସମସ୍ତ ପ୍ରେମକୁ ତୁ ସବୁଦିନ ଲାଗି ଆପଣାର କରି ପାଇପାରିବୁ ।

୨୮ । ୧୧ । ୪୭

ଯେତେବେଳେ ନିଜକୁ କାମ ଭିତରେ ହରାଇ ଦେଉଚି, ଜୀବନଟା ଯେ ଗୋଟାଏ ସମସ୍ୟା, ସେତେବେଳେ ସେକଥା ମୁଁ ଏକାବେଳେକେ ଭୁଲିଯାଉଚି । ନିକିମା ହୋଇ ବସିଥିଲାବେଳେ ମନ ଖିଅ ଖିଅ କରି କେତେ କଥା ଭାବୁଚି,

ଦିନମାନର ସଂସ୍ପର୍ଶ ଓ ସମ୍ପର୍କ ନେଇ କେତେ ପ୍ରକାରର ସମସ୍ୟା ତିଆରି କରୁଚି, ସେସବୁର ସମାଧାନ କରିବାଲାଗି କେତେ ଜଟିଳତା ଓ ଗ୍ରନ୍ଥିଳତାର ସୃଷ୍ଟି କରୁଚି । ସେତେବେଳେ ଜୀବନଟା ହିଁ ଗୋଟାଏ ସମସ୍ୟା ହୋଇପଡୁଚି । ସମାଜଟା ସତେଅବା ଶତ୍ରୁପକ୍ଷୀୟ ଏକ ସାଗରପରି ମନେହେଉଚି, ଯାହାରି ଶୈଳମାଳା ଭିତରଦେଇ ମୋତେ ଆପଣାର ଜୀବନ ତରୀଟିକୁ ବାଟ କଟାଇ ନେଇଯିବାକୁ ହେବ । ଭଲ ଓ ମନ୍ଦ, ଦ୍ୱେଷ ଓ ସ୍ନେହ, ସମର୍ଥନ ଓ ପ୍ରତିରୋଧ,– ଏସବୁ ଗୋଟିକପରେ ଗୋଏଟି ଆସି ମନଭିତରଟାକୁ ବଡ଼ ଗୋଳମାଳିଆ କରିପକାଉଚି । ସହସ୍ର ଅଡ଼ୁଆ ଭିତରେ ମନ ଆପଣାର ନିଜତ୍ୱ ହରାଇ ବସୁଚି, ଆପଣାର ନିଜସ୍ୱ ସ୍ୱାଧୀନତାରୁ ବଞ୍ଚିତ ହୋଇ ସେ ବଡ଼ କ୍ଷୁଦ୍ର ଓ ଶକ୍ତିହୀନ ଭାବରେ ପଡ଼ିରହୁଚି । ମନେହେଉଚି, ଯେପରିକି ମୁଁ ଆଉଗୋଟାଏ କୌଣସି ଜଗତରୁ ଏହି ସଂସାର ଭିତରକୁ ଖସିପଡ଼ିଚି, ମତ୍ର୍ୟ ପର୍ଯ୍ୟନ୍ତ ସତେଯେପରି ମୋତେ ନାନା ସତର୍କତା ଓ ସାବଧାନତା ଅବଲମ୍ବନ କରି ଏଠି ବାଟ ଚାଲିବାକୁ ହେବ । ବିରାଟ ସଂସାରରେ ଆପଣାକୁ ଏହିପରି ଏକ ବିଦେଶୀ ବୋଲି ଭାବିବାରେ ମୋର ମନଟା କି ଆତଙ୍କ, ଆଶଙ୍କା ଓ ଆକୁଳତା ଭିତରେ ନିରନ୍ତର ଆଲୋଡ଼ିତ ହୋଇ ନ ରହିଚି !

କିନ୍ତୁ ଯେତେବେଳେ ସଂସାରର ଜଣେ ହୋଇ ମୁଁ ମୋର କର୍ତ୍ତବ୍ୟ କରିଯାଉଚି, ସେତେବେଳେ ଜୀବନର ଏସବୁ ସମସ୍ୟା, ଅଡ଼ୁଆ ଓ ଆନ୍ଦୋଳନ କୁଆଡ଼େ ଯାଉଚି ? କୁଆଡ଼େ ଯାଉଚି ଭଲମନ୍ଦ ଆଉ ବିପଦଆପଦର ଜଟିଳ ଭାବନା ଓ ଜ୍ଞାନର ଜଞ୍ଜାଳ ? ଏହି ସଂସାରରେ ମୁଁ ମଧ୍ୟ ଜଣେ, ମୋ'ରି ଭିତରେ ରହି ସଂସାରବିଧାୟକ ଆପଣା ସୃଷ୍ଟିକ୍ରିୟାକୁ ପୂର୍ଣ୍ଣ କରିବାରେ ଲାଗିଚି, ମୋ' କାମ, ମୋର କୀର୍ତ୍ତି ଓ କଳୁଷ ସବୁ ହେଉଚି ଏହି ଅପାର ସୃଷ୍ଟିର ହିଁ ଏକ ଅଂଶ । ସେତେବେଳେ ମୋହରି ମନଭିତରୁ ହିଁ ସମାଧାନ ବାହାରି ଆସୁଚି ।

ସଂସାରକୁ ସମସ୍ୟାର ଜଟିଳତା ଭିତରେ ଦୂରଛଡ଼ା କରି ରଖି ନିଜକୁ କେତେ ଦୀନ ଓ ନିଃସ୍ୱ ମନେ ନ ହେଉଚି ? ପୁଣି ସେହି ସଂସାରର କର୍ମଯଜ୍ଞ ଭିତରେ ଆପଣାକୁ ଗୋଟିଏ ଆହୁତିପରି କରିପାରିଲେ ଜୀବନ କେଡ଼େ ବିପୁଳ ଓ ପୁଣ୍ୟମୟ ବୋଲି ନ ଲାଗୁଚି ?

ଶୀତଦିନର ସକାଳ ମୋତେ ସବୁଦିନ ଅପାର ଆନନ୍ଦ ଦେଇଯାଉଚି । ମୁଁ ସବୁଦିନେ ସ୍ନାନ ସାରି ଆପଣାର ଭୂଷଣହୀନ ମନ ଓ ବସନହୀନ ବକ୍ଷ ନେଇ ତା'ଆଡ଼କୁ ଅନାଇ ରହୁଚି, ମୋର ପ୍ରତୀକ୍ଷାର ମୁହୂର୍ତ୍ତଗୁଡ଼ିକୁ ସଫଳ କରି ସକାଳର ସୂର୍ଯ୍ୟ ଉଠିଆସୁଚି । ସକାଳର ଏହି ସୂର୍ଯ୍ୟ ବିଷୟରେ ମୁଁ ଅନେକ ବର୍ଣ୍ଣନା ପଢ଼ିଚି, ଅନେକ ଉପମା ଶିଖିଚି; କିନ୍ତୁ ଆଗରୁ ଏତେ ଘନିଷ୍ଠ ଭାବରେ ମୁଁ ତାହାକୁ କେବେହେଲେ ଜାଣିପାରି ନ ଥିଲି । ମୋର ମନେହେଉଚି, ମୁଁ

ଗତବର୍ଷ ହିଁ ଏହାର ନିର୍ମଳ ପରିଚୟ ପାଇଲି, ରଙ୍ଗର ଉଜ୍ଜ୍ୱଳତା ଭିତରେ ହୃଦୟର ଆଲୋକମୟ ଅଂଶଟିକୁ ଚିହ୍ନିନେଇ ପାରିଲି ।

୨୯ । ୧୧ । ୪୭

ପିଲାଦିନେ ଯୋଗଦର୍ଶନ ସମ୍ବନ୍ଧରେ କିଛି ଜାଣି ନ ଥିଲି । ଜେଲ୍‌ରେ ଥିଲାବେଳେ ମଧ୍ୟ ଯୋଗସାଧନା ସମ୍ବନ୍ଧରେ କୌଣସି ବହି ପଢ଼ି ନ ଥିଲି । କିନ୍ତୁ ଯୋଗଦର୍ଶନର ପ୍ରତ୍ୟାହାର, ସଂପ୍ରଜ୍ଞାତ ଓ ଅସଂପ୍ରଜ୍ଞାତ ପ୍ରଭୃତି ବିଭିନ୍ନ ସାଧନାଙ୍ଗକୁ ସେତେବେଳେ ମୁଁ ଅନୁଭବ କରିପାରିଥିଲି । ଅସମ୍ପୂର୍ଣ୍ଣ ବିଘ୍ନର ଓ କ୍ଷଣିକ ସୁଖଭୋଗରେ କ୍ଲାନ୍ତଶ୍ରାନ୍ତ ହୋଇ ମୁଁ ଯେତେବେଳେ ଆପଣା ମନର ପରମ ଗଭୀରରେ ସ୍ଥାୟୀ ଆନନ୍ଦ ଖୋଜିଯିବାକୁ ମନ କରୁଥିଲି, ସେତେବେଳେ ସେହି ମନଭିତରେ ବାଟଟା ଯେପରି ଆପେ ଆପେ ଦିଶିଯାଉଥିଲା । ମନକୁ ଏକାଗ୍ର କରିବାକୁ ହେବ, ଆପଣାର ଦୃଷ୍ଟିକୁ ସବୁଆଡ଼ୁ ଟାଣିଆଣି ଗୋଟିଏ ଆଡ଼େ ସନ୍ନିବେଶିତ କରିବାକୁ ହେବ, ମନର ଆଖିଆଗରେ ଏସବୁ କିପରି ଯେ ସ୍ୱତଃ ଧରା ପଡ଼ିଯାଉଥିଲା, ବର୍ତ୍ତମାନ ତାହା ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗୁଚି । ଅନେକ ସମୟରେ ମୁଁ ଅତି ସ୍ୱତଃପ୍ରବୃତ୍ତ ଭାବରେ ମୋର ଆଖିଆଗରେ ବିସ୍ତୃତ ରହିଥିବା ନୀଳସାଗରର ଏକମାତ୍ର ପାଲଟଣା ନୌକାକୁ କେନ୍ଦ୍ର କରି ଚିନ୍ତା କରିଚି, ନିବିଡ଼ ଓ ସ୍ନିଗ୍ଧ କୌଣସି ବନାନିର ଗୋଟିଏମାତ୍ର ମୁଖରିତ ଝରଣାର କଳଧ୍ୱନିକୁ ମୁଁ ଧ୍ୟାନତନ୍ତ୍ରୀରେ ବଜାଇବାକୁ ଚେଷ୍ଟା କରିଚି । ଏହିସବୁ ଉପାୟ ମୋତେ ସେତେବେଳେ କିଏ ଶିଖାଇଥିଲା ? କୌଣସି ବହିପଢ଼ିବା ଆଗରୁ ଯେ ଏସବୁ ମୋର ଜିଜ୍ଞାସୁ ମନର ଆଗ୍ରହ ଭିତରେ ଆପେଆପେ ଆସି ଧରା ଦେଇଥିଲା, ଏହା କିପରି ସମ୍ଭବ ହେଲା ?

ସାରା ବିଶ୍ୱଭୁବନ ଭରି କେହିଜଣେ ଶକ୍ତିମୟ ପୁରୁଷ କଣ ମଣିଷକୁ ସାଧନା ପଥର ଇଙ୍ଗିତ ଦେଉଥାଏ କି ? ମଣିଷର ସଂଶୟପୂର୍ଣ୍ଣ ଜୀବନକୁ କେଉଁ ଏକ ମହିମାର ସଂବେଦନାମୟ ହାତ ବାଟ କଢ଼ାଇ ନେଇଯାଏ କି ? ଭାବିଲା ବେଳକୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଚି ।

ଆଜି ଦାର୍ଶନିକ ସ୍ପିନୋଜାଙ୍କ ବିଷୟରେ ମୋର ନିବନ୍ଧଟି ଆରମ୍ଭ କରିବି ବୋଲି ସ୍ଥିର କରିଚି । ଜାଣେ ନା, ଜୀବନର ଏହି ପ୍ରଥମ ଦାର୍ଶନିକ ପ୍ରଚେଷ୍ଟାରେ ମୁଁ କେତେଦୂର ସଫଳ ହେବି ।

୩୦ । ୧୧ । ୪୭

Subjective ଓ Objective ଭିତରେ ପ୍ରକୃତରେ କି ପ୍ରଭେଦ ରହିଚି ? 'ଶୁଦ୍ଧମୁକ୍ତ ସାକ୍ଷୀଚୈତନ୍ୟ'କୁ ଅନେକେ ଏହିପରି ବ୍ୟାଖ୍ୟା କରନ୍ତି ଯେ ପୃଥିବୀ ହେଉଚି କେବଳ ମାୟା, ଆତ୍ମା ହେଉଚି ଏକମାତ୍ର ସତ୍ୟ; ମୁଁ ହେଉଚି ଏହି

ଜଗତଠାରୁ ଅଲଗା । ଯୁକ୍ତିଟା ବଡ଼ ଦୈନ୍ୟ କ୍ଲିଷ୍ଟ ବୋଲି ମନେହୁଏ । ଏପରି ଏକ ସଙ୍କୀର୍ଣ୍ଣ ବ୍ୟକ୍ତିବାଦୀ ଦୃଷ୍ଟି ପ୍ରଚାର କରିବା କୌଣସି ଋଷିର ଉଦ୍ଦେଶ୍ୟ ଥିଲା ବୋଲି ମୋର ମନେହୁଏ ନାହିଁ । ମାୟା କଣ ? ପୃଥିବୀର ଅସଲ ରୂପକୁ ନଦେଖି ସ୍ଥାନ, କାଳ ଓ ଆପଣାର ସଙ୍କୀର୍ଣ୍ଣ ସ୍ୱାର୍ଥଭିତରେ ସୀମାବଦ୍ଧ କରି ଦେଖିବାଟା ହେଉଚି ମାୟା । ଏହି ଅସମ୍ପୂର୍ଣ୍ଣ ଦୃଷ୍ଟିକୁ ଅତିକ୍ରମ କରି ଯିଏ ସମଗ୍ର ଭିତରେ ନିଜକୁ ଦେଖେ, ନିଜ ଭିତରେ ସମଗ୍ରକୁ ଦେଖେ, 'ଯ ଆତ୍ମନ୍ୟେବାନୁ ପଶ୍ୟତି', ସେଇ ଯଥାର୍ଥରେ ଦେଖେ । ମୋ'ରି ପରି ଏହି ପୃଥିବୀ ମଧ୍ୟ ସତ୍ୟ, ମୁଁ ହେଉଚି ପୃଥିବୀ, the 'I' is God, ଆପଣାକୁ ସେହି ବଡ଼ ଶକ୍ତିର ଏକ ସତ୍ତା ହିସାବରେ ଦେଖିବା ହେଉଚି ଶୁଦ୍ଧ ଚୈତନ୍ୟ । ଏହି ପୃଥିବୀରୁ ଅଲଗା କରି ନିଜର ପୁରୁଷକୁ ଚିହ୍ନିବା ନୁହେଁ, ସକଳ ସ୍ୱାର୍ଥବୁଦ୍ଧି-ବର୍ଜିତ ହୋଇ ପୃଥିବୀକୁ କେବଳ ଗୋଟିଏ ରୂପରେ ରୂପମୟ ବୋଲି ଚିହ୍ନିବା ହିଁ ଯଥାର୍ଥ ଶୁଦ୍ଧ ଦୃଷ୍ଟି । ପତଞ୍ଜଳି ଓ ଶଙ୍କରାଚାର୍ଯ୍ୟ ବୋଧହୁଏ ଏହି ବ୍ୟାଖ୍ୟା କରିଚନ୍ତି । ମାତ୍ର ଆଜି ·ଦର୍ଶନ ଜୀବନଠାରୁ ବିଚ୍ଛିନ୍ନ ହୋଇଯାଇଚି, ଅନେକ ଦର୍ଶନପଣ୍ଡିତ ଦର୍ଶନର ଏକମୁଖୀ ବ୍ୟାଖ୍ୟା କରି, ବୁଦ୍ଧିପ୍ରସୂତ ବିକୃତ ବ୍ୟାଖ୍ୟା ଦେଇ ସକଳ ବିଶ୍ୱସମସ୍ୟାକୁ ବଡ଼ ଜଟିଳ କରିପକାଇଚନ୍ତି । ହିନ୍ଦୁଦର୍ଶନର ଜୀବନ ସହିତ ଅଙ୍ଗାଅଙ୍ଗି ସମ୍ବନ୍ଧ ରହିଥିଲା । ମଣିଷକୁ ମହାନ୍ କରିବା, ମଣିଷ ସମାଜକୁ ଭଗବତ୍ ପର୍ଯ୍ୟାୟକୁ ଉନ୍ନୀତ କରି ତାକୁ ମହିମାମୟ କରିବା ହିଁ ଏହି ଦର୍ଶନର ଲକ୍ଷ୍ୟ ଥିଲା । ଏହାରି ଅନୁସାରେ ମଣିଷ ହେଉଚି ବିରାଟ, ବିଶ୍ୱମୟ ଓ ସର୍ବଶକ୍ତିମାନ୍ । ପ୍ରତ୍ୟେକ ମଣିଷର ଜୀବନ ମଧ୍ୟଦେଇ ବିଶ୍ୱଦେବତା ଆପଣାକୁ ପ୍ରକାଶିତ କରନ୍ତି । ଏହି ବୋଧକୁ ହିଁ ଶୁଦ୍ଧ ଚୈତନ୍ୟର ସ୍ଥିତି ବୋଲି କୁହାଯାଇ ପାରିବ ।

୪ । ୧୨ । ୪୭

ନିଜ ବିଷୟରେ ଆଉ ଏତେ ଭାବିବି ନାହିଁ । ନିଜର ଲାଭକ୍ଷତି ଓ ଯଶ ଅପଯଶଗୁଡ଼ାକୁ ବିଚାରି ନିଜଉପରେ ନିଜେ ଆଉ ଏପରି ଅଭିଭାବକଗିରି କରିବି ନାହିଁ । ନିଜର ମନଟାକୁ ଜଗି ଛକି କିଛି ଫଳ ନାହିଁ । ଯେତେ ବାଟ ଓଗାଳି ବସିଲେ ବି ସିଏ ନିଜ ଛଟକରେ ଛିଦ୍ର ଖୋଜି ବାହାରଯାଉଚି । ନାନା ପ୍ରକାରର ନୀତିନିୟମ ଓ ଶାସ୍ତ୍ରବିଧାନର ଦଉଡ଼ିରେ ତାକୁ ବାନ୍ଧିରଖିବା ଆଦୌ ସମ୍ଭବ ନୁହେଁ । ପାଣିପରି ବହିବା ହେଉଚି ତା'ର ଧର୍ମ, ତାକୁ ଓଗାଳି ରଖିଲେ ଆବଦ୍ଧ ହୋଇ ରହିଥିବା ପଚାପାଣି ପରି ସେଥିରୁ ଦୁର୍ଗନ୍ଧ ବାହାରିବ ସିନା, ଆଉକିଛି ଲାଭ ହେବ ନାହିଁ । ଏହି ଅନୁତାପ, ଭୁଲ କରି ପକାଇଲି ବୋଲି ଏହି ଅନୁଶୋଚନା କ୍ରମେ ଅସହ୍ୟ ହୋଇଉଠୁଚି । ଭୁଲ୍‌ଠାରୁ ଭୁଲ୍‌ଜନିତ ଅସନ୍ତୋଷ ପାପଠାରୁ ପାପଜନିତ ପଶ୍ଚାତ୍ତାପ ଯେପରି ଶତଗୁଣେ ଭୟଙ୍କର

ବୋଲି ମନେହେଉଚି । ନା,—ନିଜର ମନଟାକୁ ମୁଁ ଆଉ ଶତ୍ରୁପର ବାନ୍ଧି ରଖି-ପାରବି ନାହିଁ । ତାକୁ ପଘାଫିଟା କରି ଛାଡ଼ିଦେବି । ସିଏ ନିଜର ମନଇଚ୍ଛା ଯାଉ, ଅନୁଭୂତି ପାଉ, ଆଘାତ ଖାଇ ଆପେ ଫେରିଆସୁ । ଏହିପରି ଧକ୍କା ଖାଇ ହିଁ ସେ ସଂସାରରେ ନୀତିଅନୀତିର ଜ୍ଞାନ ହାସଲ କରୁ । ହୁଏତ ତାହା ହିଁ ବାଟ । ହୁଏତ କେବଳ ସ୍ୱାଧୀନତା ଦେଇ ହିଁ ତାହାକୁ ନୀତି, ନିୟମ ଓ Necessity ଭିତରକୁ ଅଣାଯାଇ ପାରିବ ।

୧୧ । ୧୨ । ୪୬

We are such stuffs of sorrow ! ହେ ଆନନ୍ଦର ଦେବତା, ଖାଲି ତୁମର ଅଭାବଦ୍ୱାରା ହିଁ କଣ ତୁମକୁ ଭକ୍ତି କରିବାକୁ ଓ ତୁମଲାଗି ଗ୍ରହିରହିବାକୁ ମଣିଷର ଜୀବନଟା ଏତେ ଦୁଃଖ, ଏତେ ବିଚ୍ଛେଦ ଓ ଏତେ ଅଶାନ୍ତିରେ ପୂର୍ଣ୍ଣ ହୋଇ ରହିଚି ? ମଣିଷ ଭିତରେ ତୁମ ଆନନ୍ଦର କଣା କାହିଁ ? ତା'ର ମନଭିତରେ ଅରାଜକତା, ତା'ର ପରିବାରରେ ଅରାଜକତା, ତା'ର ସମାଜରେ ମଧ୍ୟ ଅରାଜକତା ! ସବୁଠି ସେ ବିକଳ ଓ ବିପର୍ଯ୍ୟସ୍ତ ହୋଇ ରହିଚି । ଝଡ଼ ପୂର୍ବର ସାମୟିକ ସ୍ତବ୍ଧତା ପରି ମଝିରେ ମଝିରେ ସେ ଶାନ୍ତିର କଳ୍ପନା କରବସୁଚି, ଆଦର୍ଶ ଗଢ଼ିବସୁଚି, ସଂସାରକୁ ଆପଣାର ସହଯୋଗୀ ବୋଲି ଗ୍ରହଣ କରନେଉଚି । ତା'ପରେ ତା'ର ଗୋଡ଼ ଖସିଯାଉଚି, ଆଦର୍ଶର ଅନନ୍ତ ଗଗନ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ୁଚି । ପରିବାର ଓ ସମାଜର ନାନା ବ୍ୟତିକ୍ରମ ଓ ବ୍ୟବଚ୍ଛେଦ ତାକୁ ବଡ଼ ବିରକ୍ତ କରଦେଉଚି । ଖାଲି ଅବିଶ୍ୱାସ;—ନିଜଉପରେ, ମଣିଷ ଉପରେ ଓ ସମାଜ ଉପରେ ଅବିଶ୍ୱାସ,— ଏହା ହିଁ କଣ ଚରମ ସତ୍ୟ ? ମୁଁ ଯିବି, ମୋର ପରିବାର ଯିବ, ମୋର ସ୍ନେହ ଓ ମମତା ଦୁଇଦିନର ମାୟା ପରି ଦିନେ ଅସ୍ତିତ୍ୱ ହରାଇ ବସିବ,—ତେବେ ଏଇଥିପାଇଁ କଣ ଦି'ଦିନର ବାଉଳା ମନର ଏହି କାରବାର ? ମୁଁ କିଛି ବୁଝିପାରେ ନାହିଁ, ବୁଝାଇ ମଧ୍ୟ ପାରେ ନାହିଁ ।

ମଣିଷକୁ ମୁଁ କେଡ଼େ ବଡ଼ ବୋଲି ଭାବିଥିଲି, ତାହାରି ପ୍ରଚ୍ଛଦପଟ ଉପରେ ନିଜର ବଡ଼ ଆଦର୍ଶର ପ୍ରତିଷ୍ଠା କରି ମୁଁ କେତେ ସ୍ୱପ୍ନ ଦେଖିଥିଲି ! କିନ୍ତୁ ବିଶ୍ୱବ୍ୟାପୀ ଏକ ବିରାଟ flux ଭିତରେ ଯେପରି ସବୁ କୁଆଡ଼େ ଉଭେଇ ଗଲାପରି ମନେହେଉଚି । ମୁଁ ଦେଖିବି ବୋଲି ଗ୍ରହିବସିଚି, ଅଥଚ ମୋର ଆଖିସାମନାରୁ ସବୁ ଯେପରି ଘୁଞ୍ଚି ଘୁଞ୍ଚି କୁଆଡ଼େ ଗ୍ରଲିଯାଉଚି ।

ଯାଉ, ହୁଏତ ସବୁ ଯିବ । ମୋର ସବୁ ଭରସାସ୍ଥଳ,—ପରିବାର ଓ ସମାଜ—ମୋର କ୍ଷଣିକ ଉତ୍ତେଜନାପ୍ରସୂତ ମୋର ଆଦର୍ଶ ସଙ୍ଗେସଙ୍ଗେ ଅନ୍ତରାଳର ଅନାବିଷ୍କୃତି ଭିତରେ ମିଳାଇ ଯାଉ । କିଛି ଚିନ୍ତା ନାହିଁ । ଆଉ ଭାବିବି ନାହିଁ । ମୁଁ ଅଛି, ସେତେଦିନଯାଏ ଏହି ସଂସାର ମଧ୍ୟ ମୋ'ରି

ଭିତରେ ରହିଥାଉ । ବିରାଟ ଈଶ୍ୱରଙ୍କର ଯେଉଁଟିକକ ଖେଳ ମୋ'ରି ଭିତର ଦେଇ ହେବାର କଥା, ମୁଁ ସେଇତକ କରି ଚାଲିଯାଏ । ମୋତେ ଚାଲିଯିବାକୁ ହିଁ ହେବ । ଏପର୍ଯ୍ୟନ୍ତ ଅନେକ ବକିଚି, ପୃଥିବୀକୁ ଭଲକରି ନ ଜାଣି ତା' ବିଷୟରେ ମୁଁ ଅନେକ ଫତୁଆ ଦେଇଚି । ଏଥର ଚୁପ୍ ରହିବାକୁ ହେବ ।

ଚିତ୍ତ, ତୋତେ ଆହୁରି ଅନେକ ଦେଖିବାକୁ ହେବ । ଘାଣ୍ଟ ହୋଇ କାଚ ବୋତଲର ମଲ୍ଲାମାଛ ପରି ଜଳଜଳ ହୋଇ ଦେଖାଯିବାର ଜିନିଷ ନୁହେଁ, ଜୀବନ flux ମଧ୍ୟ ନୁହେଁ । ଏସବୁ ସତ୍ୟ ନୁହେଁ । ଆହୁରି ଗଭୀରକୁ ଯିବାକୁ ପଡ଼ିବ । ତୁ ଦେଖ୍, ଶୁଣ୍, ହସ୍ ଓ କାନ୍ଦ୍ । ନାନାଘଟଣାର ଆବେଦନ ଓ ଅଭିଶାପ ଦେଇ ନିଜର ଜୀବନଦେବତାକୁ ବରଣ କରି ଆଣ । ତୋ'ର ଠିକ୍ ଓ ତୋ'ର ଭୁଲ ସବୁ ତାହାରି ପାଖରେ ସମର୍ପଣ କରିଦେ, ଚୁପ୍ ହୋଇ, ନିର୍ମଳ ମନ ଓ ନିର୍ବୋଝ ମସ୍ତିଷ୍କ ନେଇ ତାହାରି ଆଦେଶ ପାଇଁ ତୁ ତାହାରି ଦୁଆରେ ଅପେକ୍ଷା କରି ରହ । ତୁ ସବୁ ପାଇବୁ । ଆଖିକୁ ଖର ତୀରପରି ଦଉଡ଼ାଉଚୁ ବୋଲି ତୋତେ ଦୁନିଆଟା flux ବୋଲି ମନେହେଉଚି; ସବୁ ଭାସିଯାଉଚି, କିଛି ଧରାପଡ଼ୁ ନାହିଁ । ତୁ ଚୁପ୍ କର, ବାଗ୍ମିତାର ବାଣରେ ଜୀବନର ସତ୍ୟକୁ ଦୂରକୁ ଉଡ଼ାଇ ଦେ'ନା । ଚୁପ୍ କର, ଆହୁରି ଦେଖ, ଆହୁରି ଆଘାତ ସହ, ଆହୁରି କାନ୍ଦ । ଉପାୟ ନାହିଁ, ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଅପେକ୍ଷା କରି ନଗ୍ନ ମନର ଆସନ ଉପରେ ତୋତେ ବସି ରହିବାକୁ ହେବ । ଯାହାର ଉପଲବ୍ଧି ପାଇଁ ତୁ ଆକୁଳ ହୋଇ କାନ୍ଦୁଚୁ, you must deserve that.—ତୋତେ ତାହାରି ଯୋଗ୍ୟ ହେବାକୁ ପଡ଼ିବ ।

୨୦ । ୧୨ । ୪୭

ଜୀବନ ଅନେକ ବଡ଼, ବିରାଟ ଅସ୍ତିତ୍ୱର ସତ୍ତାଧାରିଣୀ ଧରିତ୍ରୀ ଅନେକ ବିଚିତ୍ର । ମୁଁ ତା'ର କେତେଟିକିଏ ଜାଣେ, ଅଥଚ କେତେବେଶୀ ଜାଣେ ବୋଲି ଦେଖାଇ ହୁଏ ? ନିଜର ଜ୍ଞାନ, ନିଜର ମାର୍ଗ ଓ ନିଜର ବୁଦ୍ଧିକାଠିକୁ ମୁଁ ଫସାରସାରା ଡୁଙ୍ଗୁରା ପିଟାଇ ବୁଲେ । ଶେଷରେ କେବଳ ହାର ମାନି ଅପମାନିତ ହୋଇ ଫେରି ଆସିବାକୁ ପଡ଼େ ଆପଣା ସ୍ୱାର୍ଥଫଶୟର ଛୋଟିଆ ପଞ୍ଜୁରିଟି ଭିତରକୁ; ତଥାପି ମୁଁ କେଡ଼େ ନିର୍ବୋଧ, ବୁଝି ମଧ୍ୟ ବୁଝି-ପାରେ ନାହିଁ । ଜାଣି ମଧ୍ୟ ଜାଣିପାରେ ନାହିଁ । ଅନ୍ତରର ଗଭୀରରେ ମୋର ଅଜ୍ଞାନ ଓ ଅଳ୍ପଧୀ ମନଟା ଆପେ ଆପେ ଛୋଟ ହୋଇ ପଡ଼ିରହେ, ତଥାପି ବାହାରେ ମୁଁ ନିଜକୁ କେଡ଼େ ବଡ଼ ଓ କେଡ଼େ ସର୍ବଜ୍ଞ ବୋଲି ପରିଚୟ ଦେଇ ବୁଲୁଥାଏ ! ଏହି ବୃଥାଡ଼ମ୍ବରର ଲାଜକୁ ମୁଁ କିପରି ସହିପାରେ କେଜାଣି ? ଅନେକ ସମୟ ଏପରି ମଧ୍ୟ ଆସେ, ଯେତେବେଳେ କି ହୃଦୟ ହଠାତ୍ ଖୋଲିଯାଏ ଏହି ପୃଥିବୀର ଦୃଶ୍ୟ ଦେଖି ଓ ଏହି ପୃଥିବୀର କଥା ଭାବି ।

ସକାଳର ସୂର୍ଯ୍ୟ, ଖୋଲା ଝରକାବାଟେ ଝଲକାଏ ପବନ, ନୀରବ ସାହାନ୍ତା-ବେଳେ ବିଜନ ପକ୍ଷୀର ବୈତାଳିକ ଥରେଥରେ ମୋର ଏହି ଛୋଟିଆ ଦୃଷ୍ଟିଆଗରେ ଯେପରି ସମସ୍ତ ଭୁବନକୁ ଖୋଲି ଦେଇଯାଏ । ସମସ୍ତ ସତ୍ତା କେଉଁ ଅପୂର୍ବର ବିଭାସରେ ଯେପରି ଖାଲି ମୁହୂର୍ତ୍ତକ ଲାଗି ଆଖିଆଗରେ ନାଚିଉଠେ । ମୋର ଦୃଷ୍ଟି କୂଳ ହରାଇ ବସେ । କିନ୍ତୁ ସେହିପରି ହଠାତ୍ ଆସି ତାହା ହଠାତ୍ ଗୁଳିଯାଏ । ଓଳିଏ ବା ଦିନକରୁ ତା'ର ପରମାୟୁ କଦାପି ଅଧିକ ହୁଏ ନାହିଁ । ତେବେ ଏ'କଣ ଖାଲି ସ୍ୱପ୍ନ ? କାହାର ହାତ ମୋତେ ଏପରି ଘରଛଡ଼ା କରି ବିରାଟ ଦାଣ୍ଡରେ ନଗ୍ନଇବାରେ କି ଆନନ୍ଦ ପାଉଚି ? ଯଦି ମୁଁ ସେହି ବିରାଟ ପଥର ପଥିକ, ତେବେ ମୁଁ ସେହି ପଥର ଚିରନ୍ତନ ପରିଚୟ ପାଇପାରୁ ନାହିଁ କାହିଁକି ? ସଂସାରରୁ ପଳାଇ ଯାଇପାରିଲେ କ'ଣ ମୁଁ ସେହି ଶାନ୍ତିର ଚିରନ୍ତନ ଅଧିକାରୀ ହୋଇପାରିବି ? ନା—ପଳାଇଯାଇ ଆତ୍ମଗୋପନର ଆତଙ୍କିତ ଶାନ୍ତି ଲାଭ କରିବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଏହି ସଂସାରରେ ପାପୀ ହୋଇ ରହିବି ପଛକେ, ସଂସାରରୁ ବାହାରିଯାଇ ଭଗବାନ୍‌ଙ୍କୁ ପାଇବାର ପାଗଳାମି କରିବି ନାହିଁ । ସଂସାର ଭିତରେ ହିଁ ପରମ ଓ ପ୍ରଶାନ୍ତ ପୁରୁଷକୁ ଚିହ୍ନିନେବାକୁ ହେବ, ତାହାରି କରତଳଛାୟାରେ ଅବିରତ ଜୀବନ ବଞ୍ଚି ସଂସାରକୁ ତା'ରି ବୋଲି ଧରିନେବାକୁ ହେବ । ସଂସାର ମାୟା ନୁହେଁ—କେବଳ ମୋର ଆଖିଟା ହିଁ ମାୟାଗ୍ରସ୍ତ । ମୋ' ଆଖିର ବିୟୋଗ-ହରଣ-ଗୁଣନ-ଯୋଗ କରିବାର କୃତ୍ରିମ ଅପୂର୍ଣ୍ଣତା ଭିତରେ ଧନ୍ଦିହୋଇ ରହି ହିଁ ମୁଁ ଜୀବନର ଅଧିକାଂଶ ସମୟରେ ସଂସାରକୁ ହରାଇ ବସୁଚି । I must deserve it,—ମୋତେ ତାହାରି ଯୋଗ୍ୟ ହେବାକୁ ପଡ଼ିବ ।

୨୯ । ୧୨ । ୪୭

ଆହୁରି ଅନେକ,—ଅନେକ ଦୁଃଖ, ଅନେକ ଅଶ୍ରୁଜଳ ! ତା'ପରେ ଯାଇ ଆନନ୍ଦର ନିର୍ଝରଟି ପଥର ଫଟାଇ ବାହାରି ଆସିପାରିବ । ଆହୁରି ଅନେକ ଛିଣ୍ଡାଇ ଆସିବାକୁ ପଡ଼ିବ, ନାନାସ୍ଥାନରୁ ନାନାପ୍ରକାର ସଉଦା ତୁଟାଇ ନିର୍ମଳ, ସ୍ନାତ ଓ ଉଲଗ୍ନ ହୋଇ ଆସିବାକୁ ପଡ଼ିବ, ତେବେଯାଇ ମୁଁ ଯୋଗ୍ୟ ହୋଇ-ପାରିବି । ଅନେକ ବନ୍ଧନ, ଅନେକ କଷ୍ଟ । ଯେତିକି ମୋହବଶ ହୋଇ ପଶିପଶି ଯାଇଥିଲି, ସେତିକି ବାଟ ଫେରିଆସିବାକୁ ପଡ଼ିବ । ତ୍ୟାଗ ବ୍ୟତୀତ ଉପଭୋଗ କାହାରି ଭାଗ୍ୟରେ ନାହିଁ,—ତେନ ତ୍ୟକ୍ତେନ ଭୁଞ୍ଜୀଥାଃ । ହାତମୁଠାରେ ଜାବୁଡ଼ିଧରି ରଖିବାର ଦୁଃସାହସ କରିବସିଲେ ତାହା ଆହୁରି ଦୂରକୁ ଛିଟିକି ଯିବ, ତା'ର ବିଚ୍ଛେଦ ସେତିକି ବେଶୀ ଦୁଃଖ ଦେବ, ହାତରେ ପାଇଲାବେଳେ ତାକୁ ପୁଣି ହରାଇ ବସିବାର ଆଶଙ୍କା ନିତ୍ୟକାତର କରି ରଖିଥିବ ।

ଆଖିର ଲୁହସଙ୍ଗେ ହୃଦୟ ଭିତରୁ ସବୁ ସ୍ୱାର୍ଥ ଓ ସବୁ ଲାଳସା ଧୋଇ ହୋଇଯାଉ । 'ମୁଁ' କାରର ସମସ୍ତ ବିକୃତି ଏହି ଦାରୁଣ କ୍ରନ୍ଦନର ତୀକ୍ଷ୍ଣ

ଧାରରେ ଟିକିଟିକି ହୋଇଯାଉ, ନ ହେଲେ ଆଉ ଗତି ନାହିଁ । ନ ହେଲେ ଯିଏ ଦୁଆର ପାଖରେ ପ୍ରସାରିତ ବାହୁ ନେଇ ଅପେକ୍ଷା କରି ରହିଚି· ତାକୁ ଅଗତ୍ୟା ଫେରିଯିବାକୁ ପଡ଼ିବ । ଚିତ୍ତ, ତୋ'ର କିଛି ଲୋଡ଼ା ନାହିଁ,—ଯଶ, ମାନସମ୍ମାନ, ସମ୍ପଦ, ସ୍ୱୀକୃତି ବା ସଂସାରର ପ୍ରଶଂସା କିଛି ଲୋଡ଼ା ନାହିଁ । ତୋ'ର ଦୁଆର ଖୋଲିଦେ'; ଦେଖ, ରଙ୍ଗରାଗ ଓ ରୂପବର୍ଣ୍ଣର ଅରୂପ ପୂଜାରୀ ତୋହରି ଅଭ୍ୟର୍ଥନା ଲାଗି ବସିରହିଚି, ତୋତେ ଅତି ଆଦରରେ ଆପଣାର ବିରାଟ କୋଳକୁ ଟାଣିନେବାକୁ ।

ଭୁଲିଯା' ସବୁ, ଭୁଲିଯା' ତୋ'ର କେଉଁଦିନ କିଛି ଥିଲାବୋଲି । ତୋର ସମସ୍ତ ଲାଳସା, ଏଇଟା ବା ସେଇଟା ହେବାଲାଗି ତୋ'ର ସମସ୍ତ ଅହଙ୍କାର ଓ ବାହାଦୁରୀ ତୋତେ ଖାଲି କଷ୍ଟ ଦେଇ ଆସିଚି । ଆଜି ବିରାଟ ସମର୍ପଣର ଶୁଭ ମୁହୂର୍ତ୍ତ ଉପସ୍ଥିତ ହୋଇଚି । ତୁ ନିଜକୁ ଖାଲି ଅଜାଡ଼ି ଦେ', ଜଗତର ଶାଶ୍ୱତ ପ୍ରବାହଟିରେ ଆପଣାକୁ ମିଶାଇଦେ' । ଜଗତର ମଣିଷ, ଜଗତର ସ୍ନେହପ୍ରେମ ଓ ଜଗତର ଧୂଳିମାଟି କେବଳ ତୋ'ରି ନୁହେଁ, ତାହା କେବଳ ତୋହରି ଅଣ୍ଟିରେ ଭରିରଖିବାର ଐଶ୍ୱର୍ଯ୍ୟ ନୁହେଁ । ତୁ ନିଜକୁ ଯେତିକି ବିଚ୍ଛୁରିତ କରିଦେଇ ପାରିବୁ, ସେସବୁ ତୋ'ର ସେତିକି ନିଜର ହୋଇ ରହିଥିବ । ନିଜର ବୋଲି ସେଗୁଡ଼ାକୁ ଯେତିକି ସିନ୍ଦୂକରେ ମୁଦିରଖିବାର ସାହସ କରିବାକୁ ଯିବୁ, ସେତିକି ଧକ୍କା ଖାଇବୁ, ତୁ ସେତିକି ଅପମାନ ପାଇବୁ ।

......ମନଭିତରେ ମୁଁ ଅନେକ କଥା ଭାବିଯାଉଚି । କିନ୍ତୁ ଏହି ଖାତାରେ ସେଗୁଡ଼ିକୁ ଲିପିବଦ୍ଧ କରି ରଖିବାର କୌଣସି ସ୍ପୃହା ହେଉ ନାହିଁ । ସବୁ ଭାବନାକୁ ମନଭିତରେ ଆଉଟିପାଉଟି ତାହାରି ତାପରେ ନିଜେ ନୀରବରେ ସିଦ୍ଧ ହେବାକୁ ଯେପରି ଭାରି ଭଲ ଲାଗୁଚି । ଏହି ଦାରୁଣ ଯଜ୍ଞର ପ୍ରତାପରେ ମୋତେ କେତେଦିନ ସିଝିବାକୁ ହେବ କେଜାଣି ? ମୁଁ ସବୁ ଦେଖୁଚି, ସବୁ ଶୁଣୁଚି;—ତଥାପି ଯେପରି ଧରିରଖିବାର ବା ସାଇତି ରଖିବାର କିଛିହେଲେ ପାଉ ନାହିଁ । ଜଗତରେ ଯାହା ସୁନ୍ଦର ଯାହା ବାଞ୍ଛନୀୟ, ସେଗୁଡ଼ିକୁ ରଖିପାରିବାର ଯୋଗ୍ୟ ପାତ୍ର ଯେପରି ମୁଁ ତଥାପି ହୋଇପାରି ନାହିଁ ।

ନିଜକୁ କେବେ ଏତେଦୂର ହୀନ କରି ଦେଖି ନ ଥିଲି । ବିଶ୍ୱର ବିରାଟ ସତ୍ତାର ଆଧାର ମୁଁ, ତଥାପି କି ମଇଳା ଓ ଆବର୍ଜନାଗୁଡ଼ାକ ଯେ ମୁଁ ସମ୍ପଦ ପରି ସାଇତି ରଖିଚି, ଏହିକଥା ଭାବିଲାବେଳକୁ ନିଜପ୍ରତି ବଡ଼ ଦୟା ହେଉଚି । ନିଜର ଯାହା ଅଛି, ସବୁ ହରାଇ ନିଃସ୍ୱ ଓ କାଙ୍ଗାଳ ହୋଇ ବୁଲିବାର ଅଭିଶାପ ନିଜକୁ ଦେବାଲାଗି ବି ବେଳେବେଳେ ଇଚ୍ଛା ହେଉଚି । ଯାହାର ଯୋଗ୍ୟ ଯେ ନୁହଁ, ସିଏ କାହିଁକି ତା'ର ହକଦାର ହେବ ? ମୁଁ ଜାଣେ ନା, କିଏ କାହା ଉପରେ ରାଗ କରୁଚି । ଭୁଲ 'କରୁଚି କିଏ, ପୁଣି ଶାସ୍ତି ଦେଉଚି କିଏ ?

୧୪ । ୧ । ୪୮

ଖାଲି ମୁହୂର୍ତ୍ତକ ପାଇଁ ଚକିତ ହେବାକୁ ନୁହେଁ, ଶାଶ୍ୱତ ଜୀବନ ଭିତରେ ହିଁ ମୁଁ ବଞ୍ଚିରହିବାକୁ ଚାହେଁ । ମୋର କଥା ଓ ନୀରବତା, ମୋର ନିଦ୍ରା ଓ ଜାଗରଣ ସବୁଥିରେ କେବଳ ସେହି ଶାଶ୍ୱତର ହିଁ ଛାପ ପଡ଼ିବାରେ ଲାଗିଥାଉ । ମୁଁ ଶାଶ୍ୱତ, ମୁଁ ଅନନ୍ତ,—ଦୈନନ୍ଦିନ ଜୀବନର ମିଛସତ, ନିନ୍ଦାପ୍ରଶଂସା ଓ ହସକାନ୍ଦର ଅନେକ ଉପରେ ମୁଁ ।

ନୂଆବର୍ଷ ଆସିଚି, କେବଳ ମୋ'ରି ନୂଆହେବାକୁ ବାକୀ ରହିଚି । ଜଗତଦାଣ୍ଡରେ ବିଧାତାର ନୂଆପଞ୍ଜି ଖୋଲାହେଲାବେଳେ କ ସରାଗ ପାଇବା ପାଇଁ ମୁଁ ସେଇ ପୁରୁଣା ଓ ପୋକଲଗା ଧଡ଼ଟାକୁ ଧରି ପଡ଼ିରହିଚି କାହିଁକି ? ଏହା ଭିତରେ ଆମର ବାର୍ଷିକ ଭ୍ରମଣଦଳ ସାଙ୍ଗରେ ମୁଁ ଡାଲିମିଆନଗର, ସାସାରାମ, ରୋଟାସ୍ ଓ ବୁଦ୍ଧଗୟା ବୁଲିଆସିଚି । ବନ୍ଧୁମାନଙ୍କର ଅତି ନିକଟ ସମ୍ପର୍କରେ ଆସି ନିଜକୁ ଭଲକରି ଚିହ୍ନିବାର ଅନେକ ଅବସର ପାଇଚି । ନିଜକୁ ଜାଣି, ନିଜର ମଇଳାଗୁଡ଼ାକୁ ଧୋଇଦେବା ଲାଗି ମୋତେ ଅନେକ ସୁଯୋଗ ମିଳିଚି ।

ଦେଶରେ ଚାଲିଥିବା ସାମ୍ପ୍ରଦାୟିକ ହାଣକାଟ ଓ ଦ୍ୱେଷବିଦ୍ୱେଷ ବିରୁଦ୍ଧରେ ଗାନ୍ଧିଜୀ ପୁଣି କାଲିଠୁଁ ବିଦ୍ରୋହ ଘୋଷଣା କରିଚନ୍ତି, ଆମରଣ ଅନଶନର ପଣ କରି । ଜାଣେ ନା, ଦେଶ ତାଙ୍କୁ ଜୀଆଇ ରଖିବାର ଯୋଗ୍ୟ ହୋଇପାରିବ କି ନାହିଁ । ସକ୍ରେଟିସ୍ ଓ ଯୀଶୁଙ୍କ ପରି ହୁଏତ ଗାନ୍ଧୀଙ୍କୁ ମଧ୍ୟ ପ୍ରାଣ ଦେବାକୁ ପଡ଼ିବ । ଏ ଯୁଗର ମୋହାନ୍ଧ ମଣିଷ ତା'ର ଅତି ଆପଣାର ମଣିଟିକୁ ଚିରଦିନ ଲାଗି ହରାଇ ବସିବ । ଏହି ଦରଗଡ଼ା ସଂସାରରେ ମହାତ୍ମାର ଜନ୍ମ କେବଳ ଏକୁଟିଆ ହୋଇ ମରିବା ପାଇଁ । ତାକୁ ଏକୁଟିଆ ନିଜର କଥା କହିବାକୁ ହେବ, ନିଜ ହାଡ଼ର ସମିଧ ସଜାଡ଼ି ତାକୁ ଏକୁଟିଆ ଅନ୍ଧାର ଭିତରେ ଆଲୁଅର ସର୍ଜନା କରିବାକୁ ହେବ, ଏକୁଟିଆ ପଥର କଣ୍ଟା ମକଚି ବାଟ ଚାଲିବାକୁ ହେବ ।

ଆଜିଠାରୁ ସୂତା କାଟିବା ଆରମ୍ଭ କରିଚି । ଗାନ୍ଧୀଙ୍କର ଅନଶନର ପ୍ରତିକ୍ରିୟା ସକାଶେ ନୁହେଁ, ଆଉ ଅଧିକ ଅବହେଳା କରିବା ଅସହ୍ୟ ହୋଇପଡ଼ିଚି ବୋଲି । ଦଶହରା ଛୁଟୀ ପରଠାରୁ ନାନା ଉପଲକ୍ଷ୍ୟର ଦୁହାଇ ଦେଇ ମୁଁ ସୂତାକଟା ବନ୍ଦ କରିଆସିଚି; ସେଥିଲାଗି ମୋତେ ଯଥେଷ୍ଟ ଭୋଗିବାକୁ ହୋଇଚି, ମୋର ମାନସିକ ସମତା ଅନେକ ସମୟରେ ହରାଇ ବସିଚି । ଆମେ ସମସ୍ତେ ଗୋଟିଏ ଗୋଟିଏ ରୋଗୀ;—ଦେଶର ଅର୍ଥନୀତି, ସମାଜନୀତି ଓ ଶୈଶବକାଳର ନାନା ଅଶିକ୍ଷା ଫଳରେ ଆମର ମନ ରୁଗ୍ଣ ହୋଇଯାଇଚି ଆମର ଇଚ୍ଛା ବିରୁଦ୍ଧରେ । ସରଳ ଓ ନିର୍ମଳ ଆତ୍ମନିବେଦନ ଦ୍ୱାରା ମନକୁ ସୁସ୍ଥ କରାଯାଇ

ପାରିବ, ନିଃସ୍ୱାର୍ଥ କର୍ମଯଜ୍ଞ ଦ୍ୱାରା ତାହାକୁ ସବଳ କରାଯାଇ ପାରିବ । ସୂତାକଟା ହେଉଚି ଏହି ଆତ୍ମନିବେଦନର ଏକ ଅଭିନବ ଉପାୟ । ଯେଉଁ କେତେମିନିଟ ସୂତା କାଟେ, ସେତିକି ସମୟ ମୁଁ ପୃଥିବୀର ସବୁ ମଣିଷର ଆତ୍ମାସହିତ ଯୁକ୍ତ ହୋଇ ରହେ, ଜାତି, ବର୍ଣ୍ଣ ଓ ଶାସନର ବାର ବିଭେଦ ସେହି କେତେଘଡ଼ି ପାଇଁ କୁଆଡ଼େ ଅପସରିଯାଏ । ସୂତାକଟାର ରାଜନୀତିକ ଓ ଅର୍ଥନୈତିକ ଆବଶ୍ୟକତା ଅବଶ୍ୟ ରହିଚି, କିନ୍ତୁ ମୋ'ଲାଗି ମାନସିକ ଶୁଚୀର ଆବଶ୍ୟକତାଟି ହେଉଚି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ସୂତା କାଟି ମୁଁ ସମସ୍ତ ମଣିଷଜାତିକୁ ମୋର ଅନ୍ତରଭିତରେ ଆପଣାକରି ପାଇପାରିଚି ।

୨୧ । ୧ । ୪୮

ଗାନ୍ଧୀ ଅନଶନ ଭାଙ୍ଗିଚନ୍ତି । ଚଗଲା ପିଲା ବାପର ବୋଲ ମାନିଚି । ଜାଣେ ନା, ଏମିତି ବୋଧ ଦେଇ ଆମେ କେତେଦିନଯାଏ ଜାତିର ପିଟାକୁ ବଞ୍ଚାଇ ରଖିପାରିବା ।

ଗାନ୍ଧୀର ଏହି ଅନଶନ ମୋର ଘୁମନ୍ତ ଆତ୍ମାର ନିଦ ଭଙ୍ଗାଇ ଦେଇଚି । ଅନେକଦିନ ଶୋଇ ରହିଥିଲି । ଅନେକ ଦିନ ଉଦ୍ଦେଶ୍ୟହୀନ ତୂଳାମଞ୍ଜି ପରି ପବନର ଖେଳନା ହୋଇ ଶୂନ୍ୟରେ ଉଡ଼ି ବୁଲୁଥିଲି । ଏଥର ମାଟିକୁ ଆସି ଗଛ ହୋଇ ଫୁଲ ଫୁଟାଇବାକୁ ହେବ । ଗାନ୍ଧୀ ମୋତେ ନିର୍ମଳ କରୁ, ଗାନ୍ଧୀ ମୋତେ ପାଗଳ କରୁ । ମାନସମ୍ମାନ ବିଷୟରେ ମୋ'ର ସମସ୍ତ ଲାଜକୁ ଅପହରଣ କରିନେଇ ଗାନ୍ଧୀ ମୋତେ ଦାଣ୍ଡକୁ ବାହାର କରୁ । ଅନ୍ତରର ବୋଲକୁ ମୁଁ ଆଉ ଅଧିକ ଦିନ ଉପେକ୍ଷା କରିପାରିବି ନାହିଁ ।

୫ । ୩ । ୪୮

ପୁଣି ଅନେକଦିନ ପରେ,—ଗାନ୍ଧୀହରା ଦେଶରେ ଇଏ ହେଉଚି ମୋର ପ୍ରଥମ ଡାଏରୀ ଲେଖା । ଯାହାର ମୃତ୍ୟୁପରେ ଦି'ଟୋପା ଲୁହ ଗଡ଼ାଇବାକୁ ମଧ୍ୟ ଆଖିଡୋଳା ପଥର ହୋଇଯାଇଥିଲା, ତାକୁ ମୁଁ ମୃତ ବା ହୃତ ବୋଲି କିପରି ବିଶ୍ୱାସ କରିପାରିବି ? ତାହାରି ଗ୍ଲଲିଗଲା ପରେ ମୁଁ ଆଜି ଠିକ୍ ବୁଝିପାରୁଚି, ମୋର ଅଜଣାରେ ମୋତେ ସେ କେଡ଼େବଡ଼ ଆଶ୍ରୟ ଦେଇଥିଲା, କେତେକେତେ ନୀରବ ହୃତାଶର ବେଳାରେ ତାହାରି ବ୍ୟକ୍ତିତ୍ୱର ବିଭବ ମୋତେ କିପରି ସବୁ ଶକ୍ତିଶାଳୀ ନିର୍ଭର ଦେଇଯାଇଥିଲା ! ତାକୁ ମୁଁ କଦାପି ହରାଇ ପାରିବି ନାହିଁ । ଅନ୍ତର ଭିତରୁ ବାହାର କରି ଦେଶ ଯେଉଁଦିନ ଗାନ୍ଧୀକୁ ପଥର ଭିତରେ କିଳିରଖିବାର ପ୍ରୟାସ କରିବ, ସେହିଦିନ ହିଁ ସେ ତାକୁ ହରାଇ ବସିବ ।

ଗାନ୍ଧୀକୁ ନେଇ ଦେଶରେ ବର୍ତ୍ତମାନ ଅନେକ ଆଲୋଚନା ଗ୍ଲଲିଚି । ରାଜନୀତିମଞ୍ଚର ମୁଖ୍ୟ ପଣ୍ଡାମାନେ ଗାନ୍ଧୀ ନାମରେ ଏକ ଅପରକୁ ଗାଳି

ବେବାକୁ ସୁରୁ କରିଦେଲେଣି । ଗାନ୍ଧୀର ମର୍ଯ୍ୟାଦା ବୁଡ଼ାଇବାରେ ସହଯୋଗ କରୁଚି ବୋଲି ପରସ୍ପରକୁ ଦୋଷ ଦେଲେଣି । ମାତ୍ର ଗାନ୍ଧୀ କ'ଣ ସତେ ମରିଯିବ ? ତାହାରି ତିଆରି ଆମେ ଏତେ ମଣିଷ ଥାଉଥାଉ ସେ କ'ଣ ଆମକୁ ଠକିଦେଇ ଉଚ୍ଚ ଆକାଶକୁ ଗ୍ଲିଯିବ ? ସେ ହେଉଚି ଏହି ମାଟିର ମଣିଷ, ତା'ର ମାଟିଲୋଭୀ ଆତ୍ମା କେବେହେଲେ ଉଚ୍ଚ ଆକାଶରେ ଗୋଟାଏ ତାରା ହୋଇ ଜଳିବାର ସ୍ୱପ୍ନପ୍ରୟାସ କରି ନ ଥିଲା । ଆମେ କ'ଣ ଏଡ଼େ ଚଞ୍ଚଳ ତାକୁ ଉଚ୍ଚ ଆକାଶର ଗ୍ରହଗ୍ରନ୍ଥି ଭିତରକୁ ପେଲିଦେବା ? ସିଧା ବାଟ ନ ପାଉଣୁ, ଅନ୍ଧାର ନ ଯାଉଣୁ ଆମେ କ'ଣ ତାକୁ ପରମାର୍ଥୀ ଯୋଗୀ ଓ ଦେବତା କରି ଆମଭିତରୁ ବାହାର କରିଦେବା ?

ଗାନ୍ଧୀକୁ କିଏ ବଞ୍ଚାଇ ରଖିବ ? ମୁଇଁ ତାକୁ ବଞ୍ଚାଇବି । ହେ ମୋର ସଂଶୟସନ୍ଦଗ୍ଧ ମନ, ସରକାର ବା ଦେଶନେତାର ଟୀକା କରିବା ଆଗରୁ ତୋତେ ଆଜି ଏହି କଠୋର ଶପଥ ନେବାକୁ ହେବ । ତୁଇ ତୋ'ର ଗାନ୍ଧୀକୁ ବଞ୍ଚାଇ ରଖିପାରିବୁ, ତୋର ଆପଣା ଅନ୍ତର ଭିତରେ ଆପଣା ପ୍ରାତ୍ୟହିକ ଜୀବନର କର୍ମକଳାପ ଓ ଆଶାଆକାଙ୍‌କ୍ଷା ଦେଇ ତୁ ତାକୁ ବଞ୍ଚାଇ ରଖିପାରିବୁ । ପରକୁ ନ ଗ୍ହିଁ, ଦିଲ୍ଲୀର ଦରବାରକୁ ନ ଗ୍ହିଁ ପ୍ରତ୍ୟେକ ମଣିଷକୁ ଆପଣା ପାଖରେ ଏହି ଶପଥ ଗ୍ରହଣ କରିବାକୁ ହେବ ; ଗାନ୍ଧୀକୁ ମୁଇଁ ଜୀଆଇ ରଖିବି । ମୁଁ ତାହାରି ଯୁଗର ମଣିଷ; ଆପଣା ହାତରେ ଆପଣା ସ୍ୱାର୍ଥର ମୁଦ୍‌ଗର ପିଟି ମୁଁ ତାକୁ ଛେଚିକୁଟି ଦେବି ନାହିଁ । ପଥର ମୂର୍ତ୍ତିରେ ନୁହେଁ, ଛପା ଅକ୍ଷରର ଚକ୍ଷୁଭୁଲା ଆଡ଼ମ୍ବରରେ ନୁହେଁ, ମୋ' ଜୀବନର ପ୍ରତ୍ୟେକ ରାତି ଓ ପ୍ରତ୍ୟେକ ଦିବସର ପ୍ରାଣେପ୍ରାଣେ ଗାନ୍ଧୀ ବଞ୍ଚିରହିବ ।

× × × × ଖାଲି ଆଭାସ ପାଇବାକୁ ନୁହେଁ, ମୋତେ ତାହାରି ଭିତରେ ବଞ୍ଚିରହିବାକୁ ପଡ଼ିବ; ଖାଲି ଗ୍ହିଁଦେଇ ଦଣ୍ଡକଲାଗି ଚକିତ ହେବାକୁ ନୁହେଁ, ତା'ର ଚିରୋଜ୍ଜ୍ୱଳ ଆସନସମୀପକୁ ଠେଉରାଇ ନେଇ ମୋତେ ସେହି ଧୂଳିରେ ଧୂସରିତ ହେବାକୁ ପଡ଼ିବ । ସେ ଏଠି ନୁହେଁ, ଏଠି ନୁହେଁ,—ସେ ଅନେକ ଦୂରରେ; ଅନେକ ଠେଲିପେଲି ଓ ଅନେକ ଧକ୍‌କା ଖାଇ ମୋତେ ଆଗକୁ ଯିବାକୁ ପଡ଼ିବ । ଅନେକ ଝୁଣ୍ଟି, ଅନେକ କାନ୍ଦି ତାହାରି ଦୃଷ୍ଟିର ଭାଜନ ହେବାକୁ ପଡ଼ିବ ।

ଭାରି କଷ୍ଟ । ଅନେକ ବାନ୍ଧିହୋଇ ଯାଇଥିଲୁ ବୋଲି ଆଜି ପଛୁଣ୍ଡେ ଆଗକୁ ଯିବାଲାଗି ପ୍ରାଣାନ୍ତ ପରିଶ୍ରମ କରିବାକୁ ପଡ଼ୁଚି । କିନ୍ତୁ ତୋତେ ତଥାପି ଆଗକୁ ଯିବାକୁ ହେବ । ଅନ୍ୟଥା ତୋ'ର ଶାନ୍ତି ନାହିଁ । ଘଡ଼ିଏ ପାଇଁ କିଏ ଟିକିଏ ମନ ବହଲାଇ ଦେବ ସିନା, କିନ୍ତୁ ଆଶ୍ରୟ ଦେଇପାରିବ କେବଳ ସେଇ । ଅକସ୍ମାତ୍ ଅନ୍ୟମନା ପରି ବାଟଚଲାର ରାସ୍ତାଘାଟରେ କିଏ କେତେ ଖୁସୀକଥା

କହି ସୁଖସନ୍ତୋଷର ଜାଦୁ ଦେଖାଇବ ସିନା, କିନ୍ତୁ ତୋ'ର ପହୁଣ୍ଡ ଗଣି ସେଇ ଜଣେ କେବଳ ଦୁରୂହ ରାତ୍ରିପଥର ଯାତ୍ରାନ୍ତରେ ଜଗି କରି ବସିଚି, ତୋ'ରି ଭିତରେ ନିଜକୁ ଚିହ୍ନିନେଇ ପ୍ରାଣରେ ପ୍ରାଣର ଆଲିଙ୍ଗନ ଦେଇ ସେ ଆପଣାର ମହାକ୍ଷୁଧା ମେଣ୍ଟାଇବ ବୋଲି ।

ତୁ କାହାକୁ ଭର୍ତ୍ସନା କରୁଚୁ ? ଅବର୍ଜିଆ ଅସନା କହି କାହାଉପରେ କୋପ ଦେଖାଇ ହେଉଚୁ ? କିନ୍ତୁ ତା'ର ରାଜ୍ୟରେ ପ୍ରକୃତରେ କ'ଣ କିଛି ଅସନା ବା ଆବର୍ଜନା ରହିଚି ? ମଣିଷର ମାୟାକୁ ଅସ୍ୱୀକାର କରି, କୋଟି ପ୍ରାଣର କୋଟି ବନ୍ଧନ ଛିଡ଼ାଇ ତୁ ତାକୁ କେବେହେଲେ ପାଇପାରିବୁ ନାହିଁ । ଅପର କାହାକୁ ଅପୂର୍ଣ୍ଣ ବୋଲି ବର୍ଜନ କରି ଆସିଲେ, ସେହି ବର୍ଜନର ତାପରେ କେବଳ ନିଜେ ସନ୍ତାପିତ ହୋଇ ମରିବୁ । ତେଣୁ ତୋତେ ସମସ୍ତଙ୍କୁ ନେଇ ବାଟ ଗ୍ଲଳିବାକୁ ହେବ । ଏଠିକାର ହସ, ଏଠିକାର ପଦେ କଥା ଓ ଏହି ଧୂଳିସୃଷ୍ଟିର ଅଶ୍ରୁରେଖା ତୋତେ ଅଧିକ ସୁନ୍ଦର କରିବ, ଏଠିକାର ସବୁ ପ୍ରାପ୍ତଧନକୁ ପରମ ସମ୍ପଦ କରି ତୋତେ ବାଟ ଗ୍ଲଳିବାକୁ ପଡ଼ିବ । ଅନେକ ବୋଝ, ଅନେକ ଜଞ୍ଜାଳ,—ନା ? ସେଇଥିପାଇଁ ଟିକିଏ ଅଡୁଆରେ ପଡ଼ିଗଲେ ତୋ'ର ପ୍ରାଣଟା ବଡ଼ ଛଟପଟ କରି ଉଠୁଚି । ଟିକିଏ ସ୍ନେହମମତା ପାଇଲେ ତୁ କାଙ୍ଗାଳ ମତୁଆଲଙ୍କ ପରି ତାହାକୁ ହାତମୁଠାରେ ଜାବୁଡ଼ି ଧରି ଚୂର୍ଣ୍ଣବିଚୂର୍ଣ୍ଣ କରିଦେବାକୁ ବସୁଚୁ । ପୁଣି ଜାଲରେ ପଡ଼ିଗଲୁ ବୋଲି, ବାଟ ହରାଇ ବସିଲୁ ବୋଲି ବିକଳ ହୋଇ ଚିତ୍କାର କରୁଚୁ । ଏଇଥିପାଇଁ ସ୍ନେହମମତାକୁ ତୋ'ର ଭାରି ଡର, ନା ? ନା'ରେ ଅବୋଧ, ଅର୍ବାଚୀନ, ଅଧାପଣ୍ଡିତ ! ଯାହା ପାଉଚୁ, ଯାହା ଦେଖୁଚୁ, ସେସବୁ କେବଳ ତାହାରି ପଦତଳେ ସମର୍ପିତ କରିଦେ, ସେସବୁକୁ କେବଳ ତାହାରି ପ୍ରସାଦ ଓ ପରମ ଦାନ ବୋଲି ଗ୍ରହଣ କର । ଦେଖିବୁ, ଆଜି ଯାହା ତୋତେ ଏଡ଼େ କ୍ଷୁଦ୍ର କରି ରଖିଚି, ତାହା ହିଁ କାଲି ତୋତେ ବିଶ୍ୱମାନବର ଦୁଆର ଖୋଲିଦେବ । ଯାହାର ଦହନଜ୍ୱାଳା ତୋ'ର ପଥିକମନକୁ ଏପରି ବିକଳ କରି ପକାଉଚି, ସେଇ ଦିବ୍ୟଜ୍ୟୋତିପାତ କରି ତୋ'ର ସମସ୍ତ ପଥକୁ ଉଜ୍ଜ୍ୱଳ କରିଦେବ । ତେଣୁ ଶୋଚନା ଛାଡ଼ିଦେ, ଆହୁରି ଦେଖ, ଆହୁରି ବୁଝ, ଆହୁରି ଭଲ ପାଇବାକୁ ଶିଖ ।

୬ । ୩ । ୪୮

କାଲି ମୁଁ କାହାକୁ ଦେଖିଲି ? ତାହାରି କେତେଖଣ୍ଡ ହାଡ଼ଭିତରେ ମୁଁ କାହାର ପ୍ରତ୍ୟକ୍ଷ କଲି ? ସେଇକଥା ଭାବିଲାବେଳକୁ ହୃଦୟ ଏପରି ଥରିଉଠୁଚି କାହିଁକି ? ସେଇ ଅନୁଭୂତିଟି ପାଖରୁ ନିଜର ସମସ୍ତ ଲାଜସରମ ନେଇ ପଳାଇ ଯିବାକୁ ଇଚ୍ଛା ହେଉଚି କାହିଁକି ?

ଆଜି ବି ମନେଅଛି, ଦୁଇବର୍ଷ ତଳେ ଆମେ କେତେଜଣ ପିଲା ବାନ୍ଧଗଡ଼ା ଗାଆଁର ତମପଡ଼ାକୁ ସଗଠନ–କାମ କରି ଯାଉଥିଲୁ । ସଙ୍ଗଠନ-କାମ କହିଲେ କଥାଟା ଅତି ବଢ଼ିଯିବ । ତଥାପି ସାହୀ ପରିଷ୍କାର କରିବା, ରୋଗୀମାନଙ୍କୁ ସଫାସୁତୁରା କରି ଔଷଧ ନେଇ ଯୋଗାଇଦେବା, ବସ୍ତିର ଅଶିକ୍ଷିତ ଛୋଟଛୋଟ ପୁଅଝିଅମାନଙ୍କୁ ଗପ କହିବା ଆମର କାମ ଥିଲା । ଆମର ପ୍ରାୟ କେତେମାସର କାମରେ ସେଇ ଗାଆଁର ଲୋକମାନେ ଆମର ଅତି ନିକଟକୁ ଆସି ପାରିଥିଲେ । ଗାଆଁର ଉତ୍ସାହୀ ପିଲାମାନେ ଦଳ ବାନ୍ଧି ଆସି ଆମକୁ ଅଧବାଟରୁ ଡାକି ନେଉଥିଲେ ।

ସେତିକିବେଳର ସେଇ ବୁଢ଼ୀଟିର କଥା ମନେପଡ଼ୁଚି । ଶାନ୍ତିନିକେତନରେ ମୁଁ ତାକୁ ଅନେକଥର ଦେଖିଚି । ଘରକୁ ଏକୁଟିଆ,–ତାଳପତ୍ରର ଟୋପି ତିଆରି କରି ସେ ଆଶ୍ରମରେ ବିକେ, ସେଥିରେ ସଂସାର ଟାଣେ । ସେତେବେଳର ଲୁଗାମହରଗରେ ବଙ୍ଗଳାର ଅନେକ ଗାଆଁରେ ଅନେକ ଯୁବତୀଙ୍କୁ ମୁଁ ଡଉଲିଆ ପିନ୍ଧିବାରେ ଦେଖିଚି । ସେହି ଦୁର୍ଦ୍ଦିନରୁ ବୁଢ଼ୀ ପଇସା ନ ନେଇ ଟୋପି ବଦଳରେ ପୁରୁଣା ବା ଚିରା ଲୁଗା ଗାମୁଛା ନେବାକୁ ବଡ଼ ଜିଦ୍ କରେ । ତା'ଠାରୁ ମୁଁ ମଧ୍ୟ ଥରେ ଟୋପି କିଣିଚି, ନିଜର ଅତିଚିରା ଲୁଗାପଟାରୁ ବି ତାକୁ କେତେଖଣ୍ଡ ଦେଇଚି ।

ଆମକୁ ସେ ସେତିକିବେଳେ ଦେଖିଚି । କାହାଘରେ ଓଷଦ ଦେଇ କାହାକୁ ଭଲ କଲାବେଳେ ଦଶଜଣଙ୍କ ସହିତ ସିଏ ମଧ୍ୟ ଆମକୁ କେତେ କଲ୍ୟାଣ କରିଚି, ଆମର ସୁଖସମ୍ପଦ ଓ ବଢ଼ତି କାମନା କରି ସେ କେତେଥର ଉପରକୁ ହାତ ବଢ଼ାଇଚି । ସବୁ ମନେପଡ଼ୁଚି ଆଜି !

କାଲି ତାକୁ ପୁଣି ଦେଖିଲି ମୋ'ର ରହିବା ଘରର ପିଣ୍ଡା ଉପରେ । କିଏ ଜଣେ ମନୋମତ ଖଣ୍ଡେ ଟୋପିର ବରାଦ ଦେଇଥିଲେ, ତାଙ୍କରି ଫରମାସକୁ ଟୋପିଟିଏ ଧରି ତାକୁ ଖୋଜୁଚି ! ଅନୁମାନ କରି ମୋତେ ସେହି ବାବୁ ବୋଲି ଭାବି ସେଇ ପିଣ୍ଡାଉପରେ ଆସି ବସିଚି । ସିଏ ତା'ର ପୁରୁଣା ବ୍ୟବସାୟକୁ ଆଜି ବି ଛାଡ଼ିପାରି ନାହିଁ । ଦୁଇବର୍ଷ ତଳେ ସେ ଯେଉଁ ହାଡ଼ୁଆ ଆଙ୍ଗୁଠିରେ ଟୋପି ବୁଣି ବାବୁମାନଙ୍କୁ ବିକ୍ରୀ କରିବାକୁ ଆଣୁଥିଲା, ଦୁଇବର୍ଷ ପରେ ମଧ୍ୟ ସେଇ ଆଙ୍ଗୁଠିଗୁଡ଼ାକ ସେହିପରି ତତ୍ପରତାରେ କାମ କରୁଚନ୍ତି । ଏହି କେତେମାସ ଭିତରେ ଦେଶ ସ୍ୱାଧୀନ ହୋଇଚି, ଦେଶର ସେବକ ଦେଶର ଶାସକ ହୋଇଚି, ସରକାରୀ ଆଇନ୍‌ସଭାରେ ଦି'ଟା ବଡ଼ବଡ଼ ବଜେଟ ପାସ୍ ହୋଇଯାଇଚି, ଦି'ମାସ ତଳେ ଗାନ୍ଧୀ ମରିଚି !

କିନ୍ତୁ ବୁଢ଼ୀର କିଛି ବଦଳି ନାହିଁ । ଦି'ବରଷ ପରେ ଚମଗୁଡ଼ାକ ଆଉଟିକିଏ ବେଶୀ ଧୋକଲା ହୋଇଯାଇଚି, ଆଖି ଦୁଇଟା ଆଉ ଟିକିଏ ବେଶୀ

ଭିତରକୁ ପଶିଯାଇଚି । ସେଇ ଚିରା ଫଟା ଧଡ଼ି-ନଥିବା ଲୁଗା, ସେଇ ନୁଖୁରା ବାଳଗୁଡ଼ାକ ଫରଫର କରି ଉଡ଼ୁଚି । ଧୂଳିଧୂସର ପାଦ ଦି'ଟା ଫାଟିଯାଇ ଆଙ୍ଗୁଠିଗୁଡ଼ାକ ସେଇମିତି ଫରକଟା ହୋଇଯାଇଚି ।

ହଠାତ୍ ଘରଭିତରୁ ବାହାରି ଆସିଲା ବେଳକୁ ମୁଁ ତାକୁଇ ଦେଖିଲି । ଘଡ଼ିଏ ଠିଆହେବାକୁ ଯେପରି ମୋର ଗୋଡ଼ଦୁଇଟା ବନ୍ଦ ହୋଇଗଲା ।

ଟୋପିଟା ଦେଖି ମୋର କାହିଁକି ଲୋଭ ହେଲା । ବଡ଼ ବାଗରେ ତିଆରି ହୋଇଚି । ମୁଣ୍ଡ ଉପରକୁ ନେଇ କଣ୍ଟିଲି, ମୋର ବଡ଼ ମୁଣ୍ଡଟାକୁ ଠିକ୍ ଫରଗ୍ଗ ହୋଇ ତିଆରି ହୋଇଚି । ସଙ୍ଗେସଙ୍ଗେ କହିଲି, "ବୁଢ଼ୀ, ଠିକ୍ ଏମିତି ଗୋଟାଏ ଟୋପି ମୋ'ଲାଗି ବି ଦରକାର । କେବେ ଆଣିବୁ ? ପଇସା ଦେବି ।" ବୁଢ଼ୀ ନିରୀହଟି ପରି ହଁ ସୂଚାଇ ମୁଣ୍ଡ ହଲାଇଦେଲା । କିନ୍ତୁ ତା'ର ଆଖିଦୁଇଟା କାହିଁକି ଅନେକବେଳୁଁ ମୋତେ ଚାହିଁରହିଥାଏ ।

ମୁଁ ସେଇ ବାବୁ ! ଏତେବେଳକେ ସେ ଠିକ୍ ଠଉରାଇ ପାରିଚି । ଅଚିହ୍ନା ବାବୁଙ୍କୁ ଖୋଜିବାକୁ ଆସି ସେ ଚିହ୍ନା ବାବୁଙ୍କୁ ପାଇଚି । ଖୁସୀଟାଏ ହୋଇ ବୁଢ଼ୀ କେତେଗୁଡ଼ାଏ କଥା କହିବବୋଲି ମୋ'ଆଡ଼କୁ ଚାହିଁ ଲମ୍ବା ନିଶ୍ୱାସଟାଏ ପକାଇଲା । "ବାବୁ, ମୋ'ପାଇଁ ଟିକିଏ ଓଷଦ ଦିଅ ବାବୁ ! ଚାରିମାସ ଜରରେ ପଡ଼ିପଡ଼ି ଆଜି ଭରସା ପାଇଲାରୁ ଏଯାଏ ଆସିଚି ବାବୁ ! କୁଆଡ଼େ କେତେ ଲୋକଙ୍କୁ ଭଲ କରୁଚ ମୋତେ ଟିକିଏ ଭଲ କରିଦିଅ ବାବୁ !" ଆରମ୍ଭ କରିଥିଲା ସିନା ହସହସ ମୁହଁରେ ତା'ର ଚିହ୍ନାବାବୁଙ୍କୁ ଦେଖିଥିଲା ବୋଲି; କିନ୍ତୁ ନିଜର ଖାଲି ପେଟ ଓ ଶୁଖିଲା ଛାତିର ସବାକ୍ ପ୍ରଦର୍ଶନୀ କରୁ କରୁ ତାର ଆଖିଦୁଇଟା ଯେ କେତେବେଳେ ଲୁହରେ ଭରିଉଠିଲା, ସେ ନିଜେ ବୋଧହୁଏ ଜାଣିପାରିଲା ନାହିଁ ।

ମୁଁ ଆଉ କ'ଣ କହନ୍ତି ? ତାକୁ ବୋଧ ଦେବାପାଇଁ ମୋ'ପାଖରେ ଥିଲା ବା କଣ ? "ବୁଢ଼ୀ, ମୁଁ କ'ଣ ଓଷଦ ଦଉଥିଲି କି ? ଆମର ଜଣେ ମାଷ୍ଟର ଦଉଥିଲେ ନା ! ତୁ ତାଙ୍କରି ପାଖକୁ ଯାଆ, ସେଇ ଭଲ କରିଦେବେ ।" ଦି'ବରଷ ତଳର କଥା, ଯା'ଭିତରେ କେତେ କ'ଣ ହୋଇଯାଇଚି । ମୁଁ ଯେ କେବେ ସେଇ ବୁଢ଼ୀର ପଡ଼ାକୁ ଯାଇ ଓଷଦ ଦେଇ ରୋଗୀ ଭଲ କରୁଥିଲି, ମନର ସେକଥାଟା କୁଆଡ଼େ ମରିଉଡ଼ି ଗଲାଣି ।

କିନ୍ତୁ ବୁଢ଼ୀ ଯେପରି ଖାଲି ଓଷଦ ଚାହୁଁ ନ ଥିଲା ! ଏତେ ସାହସ କରି ତା'ର ଚିହ୍ନାବାବୁଙ୍କ ପାଖରେ ଛାତିତଳର ଅଳିଗୁଡ଼ାକ ଅଜାଡ଼ି ଦେଉଥିଲା ଯେପରି ସେ କେତେ ଆଶାର ଆଶାରେ ! ତାକୁ ଫାଙ୍କିଦେଇ ମୁଁ ସହଜେ ଯାଏ କିପରି ? "ବାବୁ, ମାସମାସ ଅସୁଖରେ ପଡ଼ିଲି, ପାଟିକି ଟୋପାଏ

ସାଗୁପାଣି ବି ପଡ଼ିଲା ନାହିଁ, ବାବୁ ! ସାହୀଭାଇ କେହି ପଗ୍ଭରିଲେ ନାହିଁ । ଘ୍ଭର'ଣା ଆଠ'ଣା ଦିଅ ବାବୁ, ରାତିକି ପଥି କରିବାକୁ ମୁଁ ଗୁଡଲଗଣ୍ଡାଏ କିଣିବି ।"

ମୁଁ ଠିଆ ହୋଇଥାଏ, ଆଉ ସିଏ ସେମିତି କହି ଗ୍ଭଲିଥାଏ । ମୁହଁମୁଦା ଝରଣା ମୁଣ୍ଡ କଗ୍ଭଡ଼ିବାକୁ ସଚେଅବା ଠିକଣା ପଥର ପାଇଚି ! "ଆଜିଯାଏ ଆସି ପାରୁ ନ ଥିଲି ବାବୁ, ମାସମାସ ନ ଖାଇ ନ ପିଇ ଗୋଡ଼ଗଣ୍ଠି ଧରିଯାଇଥିଲା, ଅଣ୍ଟା ଭାଙ୍ଗିପଡ଼ିଥିଲା । ସକାଳୁ ମୁଢ଼ି କୁଆଁଏ ଖାଇ ଆସିଥିଲି ବାବୁ, ଭୋକରେ ପେଟ ଆଉଟେଇ ହୋଇଯାଉଚି । ଦିଅ ବାବୁ, ଅଣାଏ ଦି'ଅଣା ପକାଇ ଦିଅ ! ତୁମର ଗୋଡ଼ତଳେ ପଡ଼ୁଚି ବାବୁ !"

ପଇସା ଥିଲା, ଟ୍ରଙ୍କରେ–ଘରଭିତରେ । ବୁଢ଼ୀକୁ ଫାଙ୍କିଦେଇ ଗ୍ଭଲି ଯାଇଥିଲେ ସେ କଦାପି କେଉଁଠିକି ନାଲିସ୍ କରିବାକୁ ଯାଇ ନ ଥାନ୍ତା, ତଥାପି କେଜାଣି କାହିଁକି ସଂଶୟରେ ପଡ଼ି ମୁଁ ମୂଢ଼ଟି ପରି ସେଇଠି ଠିଆହୋଇ ରହିଲି । ତା'ର ଚିହ୍ନାବାବୁ ମୁଁ;–ସଫା ସର୍ଟଲୁଗା ପିନ୍ଧିଚି, ଜୋତା ମାଡ଼ିଚି, – ସେ ଠିକ୍ ଚିହ୍ନିଚି । ଔଷଦ ଦେଇ ଅନ୍ୟକୁ ଭଲ କଲାବେଳେ ସେ ଯାହାଲାଗି କେତେଥର ଧରମକୁ ହାତ ବଢ଼ାଇଚି, ଯାହାର ଦୟାକୁ ଗୁଣିହୋଇ ସେ ଆଖିର ଲୁହ ଗଡ଼ାଇଚି, ଅକାରଣରେ, ଅଯାଚନରେ; – ସେ ଠିକ୍ ଚିହ୍ନିଚି !

"ଟୋପି ନେଇ ଆଉଦିନେ ଆସିବୁ, ପଇସା ଦେବି ।"–ସମଦରଦୀ ପରି ଗୋଟାଏ କରୁଣ ମୁଖଭଙ୍ଗୀ କରି ମୁଁ ସେଠୁ ଗ୍ଭଲିଗଲି ରକ୍ଷା ପାଇ । ବୁଢ଼ୀ ସେମିତି ଅନାଇ ରହିଥାଏ ।

ତା'ର ଆଖି ଏଡ଼ାଇ ସିନା ଗ୍ଭଲିଗଲି, କିନ୍ତୁ ତା'ର ମୁହଁଟା ଯେପରି ଦୁଇଟା ଗାଡ଼ୁଆ ଆଖି ହୋଇ ମୋ' ମୁଣ୍ଡ ଭିତରେ ଭୂତ ହୋଇ ରହିଲା । ଯାହାପାଇଁ ମୁଁ ଦୁଆର ବନ୍ଦ କରିଦେଲି, ରୁଦ୍ଧ ଦୁଆରର ଅସହ୍ୟ ଅବହେଳା ଉପରେ ସେ ଯେପରି ମୁହୂର୍ମୁହୁ କରି କଗ୍ଭଡ଼ିବାକୁ ଆସିଲା ।

ଧୀରେ ଧୀରେ ମୁଁ ତାକୁ ଦେଖିବାକୁ ଆରମ୍ଭ କଲି । ସେଠି ଗ୍ଭର'ଣା ପଇସାର ତାଗିଦା ନାହିଁ, ସଭ୍ୟ ମନର ଭୟ କରିବାଭଳି ସେଠି କିଛି ନାହିଁ । ଖାଲି ଦୁଇଟା ବଡ଼ ଆଖି ମନଗହୀରର ଆକାଶ ଉପରେ ରୂକ୍ଷ ଓ ରୌଦ୍ରଦ୍ୟ ତାପ ନେଇ ଜଳୁଚି । ମୋର ମନ, ମୋର ମାନ ଓ ସମ୍ଭ୍ରମ ସବୁ ଖାଲି ତାହାରି ପଦତଳକୁ ଛୁଟାଇ ନେଉଚି ।

ତାକୁ ଭଲକରି ଦେଖିବାକୁ ପାଇଲି । ଗୋଟାଏ ଧଡ଼ଭିତରେ ତାକୁ ମୁଁ ଶତଧା କରି ପ୍ରତ୍ୟକ୍ଷ କଲି । ସେ ନାରୀ,–ମାଆ, ଭଉଣୀ, ଅନୁବର୍ତ୍ତିନୀର ବାତ୍ୟା ସେ । ମୋତେ ମାଗୁଥିଲା ଗ୍ଭରିଅଣା ପଇସା !

ଏଇ ନାରୀ,—ତା'ର ସୌନ୍ଦର୍ଯ୍ୟ, ତା'ର ଯୌନପିପାସା କାହିଁ କୋଉ ମେଘତଳେ ଲୁଚିଗହିଚି । ସଭ୍ୟ ସଭାର ସବୁ ପ୍ରଏଡ୍ ହାର ମାନୁଚନ୍ତି ସେଠି । ସେଠି ଖାଲି ଚମ, ମାଂସ, ହାଡ଼ର ଚିତ୍କାର । ସେହି ଆଖିଭିତରେ ଖାଲି ମାସ ବରଷ ସନ୍ତାପିତ ହୋଇ ମରିବାର ନିଆଁ । ସେ କିଛି ନୁହେଁ,—ରୂପ ନୁହେଁ ବା ରସ ନୁହେଁ । ନାରୀ ନୁହେଁ ସେ,—ନାରୀ ହୋଇଥିଲେ ଶୁଖିଲା ଛାତି ଆଉ ଫାମିଲା ପେଟ ଦେଖାଇ ସେ ମୋ' ଗୋଡ଼ତଳେ ପଡ଼ିଥାଆନ୍ତା କାହିଁକି ? ସେ କିଛି ନୁହେଁ, କାହାରି ପାଇଁ ନୁହେଁ, କାହାରି ପୋଥିପାଠର ସମସ୍ୟା ନୁହେଁ ସେ ।

ଖାଲି ଦୁଇଟା ଆଖି,—ନିଜର ସମସ୍ତ ନିଆଁ ଏକାଠି କରି ମୋ'ର ମନଉପରେ ତପନ ହୋଇ ଜଳୁଚି । କ'ଣ ଗୁହେ ସେ ? ଖାଲି ନିଜର ପରିଚୟ ଦେବାକୁ ?

ସଞ୍ଜବେଳେ ସାଙ୍ଗମେଳରେ ଜଳଖିଆ ଖାଇବାକୁ ଯାଇଚି, ପୁଣି ତାକୁ ଦେଖିଲି । ରାସ୍ତାକଡ଼ର ପଥର ବେଞ୍ଚ୍ ଟି ଉପରେ ସେ ନିର୍ଘାତ ହୋଇ ଶୋଇପଡ଼ିଚି । ପଥର ସାଙ୍ଗରେ ସଙ୍ଗାତପଣ କରି ସତେ ଅବା ଆପେ ମଧ୍ୟ ପଥର ହୋଇଯାଇଚି ! ସଂସାରର କେତେକେତେ ପୂରା ପେଟ ଯେଉଁଠି ପାନାହାରର ଉଦ୍‌ଯୋଗରେ ବାହାରିଚନ୍ତି, ସେଇଠି ସେ ନିଶ୍ଚଳ ହୋଇ ପଡ଼ିଯାଇଚି । ମଝିରେ ମଝିରେ ଦକ୍ଷିଣା ପବନରେ ତା'ର ନୁଖୁରା ବାଳଗୁଡ଼ାକ ଝୁଲୁଗି ଉଠୁଚି ।

ନାରୀ ସେ । ସେ ଯଦି ମୋର ବୋଉ ହୋଇଥାନ୍ତା !—ଧମକ ଦେଲାପରି ଆଖିରେ ଆଙ୍ଗୁଠି ଗେଞ୍ଜି ଯେପରି କିଏ ଏଇପଦକ ମୋତେ ହେଜେଇ ଦେଇଗଲା !

ମୁଁ ତା'ର କିଛି କରିପାରିଲି ନାହିଁ । ତାକୁ ଗ୍ୱରିଅଣା ପଇସା ଦେବାର ଯୋଗ୍ୟ ହୋଇପାରିଲି ନାହିଁ । ନିତିଦିନର ମୋର ବିଳାସବ୍ୟସନର ବଳକା ବଜେଟ୍‌ରେ ତା'ଲାଗି ଗ୍ୱରିଅଣାର ସଙ୍କୁଳାନ ହୋଇପାରିଲା ନାହିଁ ।

ତାହାରି ମୁହଁ ଭିତରେ ମୁଁ ଭଗବାନ ଦେଖିଚି । ନିଜକୁ ଦେଖିଚି । ସେଠାରେ ଜାତି, ଦେଶ, ମାନସମ୍ମାନ, ଶୌର୍ଯ୍ୟ ବା ସ୍ପର୍ଦ୍ଧା କିଛି ନାହିଁ । ଖାଲି ପ୍ରାଣ ପ୍ରାଣକୁ ଦେଖିଚି । ମୁଁ କ'ଣ କିଛି କରିପାରିବି ନାହିଁ ତା'ଲାଗି ? ସେଠି ମୁଁ ନିଜେ ଅପମାନିତ ହୋଇଚି । ମୋ'ରି ରାକ୍ଷସ ମୋତେ ଏପରି ଅପମାନିତ ଓ ଲାଞ୍ଛିତ କରିଦେଇଚି ।

ଆଉ କେତେଦିନ ଏପରି ଦୁଆର କିଳି ବସି ରହିଥିବି ? ପ୍ରାଣର ଠାକୁର ଆଉ କେତେଦିନ ଏପରି ବାରବାର କର କଚାଡ଼ି ନିରାଶ ହୋଇ ଫେରିଯାଉଥିବ ?

ଅନେକ ଦୂରଛଡ଼ା ହୋଇ ମୁଁ ଅନେକ ଉଚ୍ଚକୁ ଉଠିଲିଣି । ତଥାପି ସିଏ ଯେପରି ମୋର ଗୋଡ଼ଦୁଇଟା ଧରି ମୋତେ ଟାଣିବାରେ ଲାଗିଚି !

ଯାହା ଦେଖିଲି, ତାକୁ ବର୍ଣ୍ଣନା କରିପାରିବି ନାହିଁ । ତା'ର ଦୁଃଖ, ତା'ର ଦୈନ୍ୟ, ତା'ର ଆଶା, ଭରସା, ହର୍ଷ ଓ ଆହ୍ଲାଦ;—ମୋର କ୍ଷୁଦ୍ରତା, ମୋର ଶଠ ଓ ପଳାୟନପଟୁ ମନର ଆତ୍ମଦହନ ! ଖୁବ୍ ପୋଡ଼ିଲିଣି, ଖୁବ୍ ଦଗ୍ଧ ହେଲିଣି । ରାକ୍ଷସ ପରି ଯେତିକି ଠେଲିଦେଉଚି, ତାକୁ ଛାଡ଼ି ମୁଁ ଯେତିକି ନିଜପାଇଁ ଅଲଗା ସ୍ୱପ୍ନମାନ ତିଆରି କରୁଚି, ତା'ର ଆଖି ମୋତେ ସେତିକି ବେଶୀ ଥରାଇ ପକାଉଚି । ତା'ର ବନ୍ଧନ ଛିଡ଼ାଇ ମୁଁ ଯେତିକି ଦୂରକୁ ପଳାଇବାକୁ ଚାହୁଁଚି, ତାହାର ହାତଦୁଇଟା ସେତିକି ଦୂରବ୍ୟାପୀ ହୋଇ ମୋତେ ଛୁଇଁବାକୁ ଧାଇଁଚି । ତାହାରି ହାତଭିତରେ ଧରା ନ ଦେଲେ ମୋ'ର ଆଉ ଆଶ୍ରୟ କାହିଁ, ମୋର ସୁଖ କାହିଁ, ମୋର ଭଗବାନ କାହିଁ ? ଜାଣେ ନା, କେବେ ମୁଁ ନିଜକୁ ତାହାରି ଶୂନ୍ୟମନ୍ଦିରର ହତାଶା ଭିତରେ ଭରାଇ ଦେଇପାରିବି, ତାକୁ ହିଁ ସ୍ୱୀକାର କରିନେଇ ପାରିବି ?

୭ । ୩ । ୪୮

ଆଜି ସଞ୍ଜବେଳେ ଆମେ କେତେଜଣ ଛାତ୍ରଛାତ୍ରୀ ସର୍ଭେକାମ କରିବାକୁ ଭୁବନଡାଙ୍ଗା ଗାଆଁକୁ ଯାଇଥିଲୁ । ଆଜି ମୁଁ ତିନୋଟି ପରିବାରର ସର୍ଭେ କରିପାରିଚି । କିନ୍ତୁ କେତେଟା ପ୍ରଶ୍ନସମ୍ବଳିତ ଏହି ସର୍ଭେଟା କ'ଣ ସେହି ପରିବାରଗୁଡ଼ିକର ସମଗ୍ର ଚିତ୍ରଟିକୁ ସ୍ପଷ୍ଟଭାବରେ ଫୁଟାଇ ଦେଇପାରିବ ? ଏଦେଶର ଗାଆଁମାନଙ୍କରେ ବାସ କରୁଥିବା ପ୍ରତ୍ୟେକଟି ପରିବାର ଯେ ଗୋଟିଏ ଗୋଟିଏ କରୁଣ ଇତିହାସର ଗ୍ରନ୍ଥ ! ମୂଲ ଲାଗିବା, ବାବୁ ବା ଜମିଦାରଘରୁ କରଜ ଆଣି ତାଙ୍କରି ଦଉଡ଼ିରେ ବାନ୍ଧି ହୋଇଯିବା, କେତେ ଭାଇବିରାଦର କଳି, ଗୁଣ୍ଠେ ଜମି ବା ହାତେ ଗୋହରୀ ନେଇ କେତେ ବଣ୍ଟାକୁଣ୍ଟା, ହରଣ ଓ ଫେଡ଼ାଣ ! ବିଶେଷତଃ ଆଜି ଗୋଟାଏ ପରିବାରର ସର୍ଭେ କଲାବେଳେ ନିଜପ୍ରତି ଭାରି ଅବଜ୍ଞା ଆସିଲା । ସେମାନେ ଦୁଇଭାଇ । ବଡ଼ଭାଇ ବିବାହିତ, ସାନଭାଇର ବୟସ ପ୍ରାୟ ପଚିଶି ବର୍ଷ । ବୋଲପୁରର ବଡ଼ ଗୋଦାମରେ ଜିନିଷ ଲଦଉ କରି ବଡ଼ ଦିନକୁ ଦୁଇଟଙ୍କା ପର୍ଯ୍ୟନ୍ତ ପାଏ, ସାନ ଧାନକଳରେ କାମ କରି ଟଙ୍କାଏ ଲେଖାଏଁ ମଜୁରୀ ଆଣେ । ଘର ବୋଲି ବଖରାଏ, ପୁରୁଣା ଗୋଟା କାନ୍ଥର ଲଦଉ ଘର । ଗୋଟିଏ ବୋଲି ଝରକା ନାହିଁ । ବାହାରକୁ ପିଣ୍ଡାଟି ପ୍ରାୟ ଦେଢ଼ହାତ ଓସାରର । ହଠାତ୍ ପଗ୍ଭରିଦେଲି, ଗୋଟାଏ ବଖରାରେ ସେମାନେ ଶୁଅନ୍ତି କିପରି ? ଶୁଣିଲି, ସାନଭାଇ ଆଉଜଣକ ଘରକୁ ଶୋଇବାକୁ ଯାଏ । କୋଠଦୁଆରେ ଚୂଲୀ ତିଆରି ହୋଇଚି, ସେଇଠି ରୋଷେଇବାସ ହୁଏ । ବର୍ଷାଦିନେ ବାରଣ୍ଡାରେ

କାମ ଚଳିଯାଏ । ଘରର ଜଙ୍ଗମ ସମ୍ପତ୍ତି ଭିତରେ ଛେଳି ତିନୋଟି । ସେମାନେ ପିଣ୍ଡାରେ ଗୋଟିଏ କଣକୁ ବନ୍ଧା ହୁଅନ୍ତି । ଦିନବେଳା ବସବାସ କରିବା ପାଇଁ ଭଙ୍ଗା ଘରରୁ ଆଗକୁ ପାଲ ଝୁଲାହୋଇଚି ପିଣ୍ଡାକୁ ଛାଇଁ କରି । ବଡ଼ଭାଇର ଦୁଇ ବର୍ଷର ଛୁଆଟିଏ; ଜନ୍ମରୁ ବିଇଞ୍ଚି ଭୋଗୁଚି । ଦୁଇଭାଇ ରୋଜିନା ଯାହା ରୋଜଗାର କରନ୍ତି, ସେଥିରେ ସିଆଡ଼ୁ ଗୁଡ଼ଳ ଲୁଣ କିଣାହୋଇ ଆସେ । ସଞ୍ଚୟ କରିବାର ପ୍ରଶ୍ନ ହିଁ ନାହିଁ, ଗୋଦାମବାଲା ପାଖରେ ଦୁଇଶହ ଟଙ୍କା କରଜ ଅଛି । ବିଂଶ ଶତାବ୍ଦୀରେ ଏଇ ହେଉଚି ଗୋଟାଏ ମଣିଷପରିବାରର ଚିତ୍ର । ବିଶେଷକରି ବିଶ୍ୱଭାରତୀ ଅନୁଷ୍ଠାନ ପାଖରେ, ଯେଉଁଠି ପ୍ରତ୍ୟେକ ମଣିଷକୁ ପରସ୍ପରର ଅତି ପାଖର ପରିଚୟକୁ ଆଣିବାଲାଗି ଦାମୀ ଶିକ୍ଷା, ଦାମୀ ଖାଇବା, ଭ୍ରମଣ ଓ ନାଚଗାନର ବ୍ୟବସ୍ଥା ରହିଚି ! ଲାଜରେ ମୋର ମୁଣ୍ଡ ନଇଁଗଲା । ଏଠି ସୃଷ୍ଟିର ଶ୍ରେଷ୍ଠତମ କଳାକୁ ଅବହେଳା କରି ଆମେ ସେଠି ଏହିମାନଙ୍କ ପଇସାରେ କାନ୍ଥ, ବାଡ଼ ଓ ପଥର ଉପରେ କଳା ଖୋଳିବାକୁ ଯାଉଚୁ ! ଏମାନଙ୍କ ପାଇଁ ବଖରାଟ୍ଟ ଦୁଇବଖରା ସ୍ଥାନ ନ ଥିବା ସତ୍ତ୍ୱେ ଆମେ ସେଠି କିସମ କିସମର ଫୁଲ ପାଇଁ କିସମ କିସମର ବଗିଚ୍ଚ କରୁଚୁ । ଏହି ଯୁଗରେ ଏଇ ଦ୍ୱନ୍ଦ୍ୱର ଶେଷ କେଉଁଠି ? ବିସ୍ମୟ ଲାଗେ, ସବୁ ତ ଦରକାର ! ଅଜନ୍ତା ଓ ତାଜମହଲର ଅନ୍ତର ତାଡ଼ି ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ନିଶ୍ଚୟ ଗୌରବ ଅଛି । କିନ୍ତୁ ଚମମାଂସରେ ଗଢ଼ାହୋଇଥିବା ଏହି କଥାକୁହା ମଣିଷଗୁଡ଼ାକୁ ଅସ୍ୱୀକାର କରି ଆମେ ଆଉ କେତେଦିନଯାଏ ଯାଦୁଘର ଦେଖିବାରେ ପଇସା ଖରଚ କରୁଥିବା ? ସୌନ୍ଦର୍ଯ୍ୟମନା ହେବା ଆଗରୁ ମଣିଷ ମଣିଷମନା ହେବାକୁ ଭୁଲିଗଲେ ଚଳିବ କିପରି ?

୨୪ । ୬ । ୪୮

ତୁ ମତେ ଆଖି ଦେ', ବିଶ୍ୱମନର ବିଚିତ୍ର ସୃଜନକୁ ମୁଁ ଅତି ଆପଣାର କରି ଦେଖିବି । ପ୍ରାଣଭିତରେ ତୁ ମତେ ସେହି ଶିହରଣଶକ୍ତି ଆଣିଦେ', ବର୍ଷା, ଝଡ଼ ଓ ଅନ୍ଧାରରାତିର ଗରଜନବେଳେ ମୁଁ ବି ଯେପରି ଘନଶାଖାର ଛୋଟିଆ ପତରଟି ପରି ଶିହରି ଉଠିପାରିବି ! ତୁ ମତେ ସ୍ୱର ଶିଖାଇଦେ', ସଞ୍ଜସକାଳର ସକଳ ରୂପାୟନ ସହିତ ମୁଁ ଯେପରି କଣ୍ଠ ଖୋଲି ଗୀତ ଗାଇପାରିବି, ମନର ଏହି କ୍ଷୁଦ୍ର କୁଲାୟଟିକୁ ବିଶ୍ୱମନର ସଙ୍ଗୀତଧନ ଆମନ୍ତ୍ରିତ କରି ଆଣିପାରିବି । ତୁ ମତେ କହିବାର ଭାଷା, ଦଗ୍ଧ ହେବାର ତାପ ଆଉ ଦହିବାର ତେଜ ଦେ', ଯେପରି ମୁଁ ସବୁରି କଥାକୁ ଆପଣାର କଥା ପରି କହିପାରିବି, ନିତ୍ୟସହନର ଶିକ୍ଷା ଭିତରଦେଇ ମୁଁ ଯେପରି ସବୁ ଦହନକୁ ଜ୍ୟୋତିର୍ମୟ ରୂପରେ ପ୍ରକାଶ କରିଦେଇ ପାରିବି !

ବର୍ଷା ଆସୁଚି, ଚାଲିଯାଉଚି । ଘଡ଼ିଆଡ଼େ ଅନ୍ଧାର ହୋଇ ପୁଣି ସଫା ହୋଇଯାଉଚି । ନଈ ଉପରର ଜନସମତଳଟା ବି ଢେଉରେ ଆକୁଳ

ହୋଇଉଠୁଚି, ପାହାଡ଼ପର୍ବତର ଅନ୍ଧିସନ୍ଧିରେ ଗଛପତରର ଅସୁରନୃତ୍ୟ ଆରମ୍ଭ ହୋଇଯାଉଛି । ତଳେ ଉପରେ କେତେ ସ୍ୱରର ହୁଙ୍କାରରେ କିଏ ଯେପରି ସମସ୍ତ ସୃଷ୍ଟିକୁ ପାଗଳ କରିଦେବବୋଲି ବସିଚି । ତଥାପି ମୁଁ ଚୁପ୍ କାହିଁକି ?

କାନ୍ଦିକାନ୍ଦି ମଣିଷ ଚୁପ୍ ହୋଇଯାଉଚି, ଅନାଇ ଅନାଇ ମଣିଷ ପଥର ପାଲଟି ଯାଉଚି; ରାତି ପାହୁଚି, ତଥାପି ଅନ୍ଧାର ରାତିର ଭୋକିଲା ପେଟରେ ମୁଠାଏ ଦାନା ପଡ଼ିପାରୁ ନାହିଁ । ମୁଁ ସବୁ ଦେଖୁଚି । ତଥାପି ଚୁପ୍ ହୋଇ ବସିଚି କାହିଁକି ? ଜୀବନ ଓ ମଣିଷର କେତେ ସଙ୍ଗ ମୋତେ ଆହ୍ୱାନ କରୁଚି, ତଥାପି ମୁଁ ପୋଥି ବନ୍ଦକରି ବସିଚି କାହିଁକି ? ମୂକ ମଣିଷଟାକୁ ଇଟାପଥର ମଣି କିଏ ସେଇଥିରେ କୋଠା ତୋଳିବାର କଉଶଳ ଚିନ୍ତା କରୁଚି, ଇଟାପଥରରୁ ସାର ନେଇ ବଞ୍ଚିଥିବା ମୁଁ ଏମିତି ଥୋବରା ହୋଇ ବଞ୍ଚିଚି କାହିକି ?

୨୬ । ୮ । ୪୮

ହୃଦୟଭିତରେ ହଠାତ୍ ଯେପରି ପ୍ରବଳ ଅଗ୍ନିଦୀପ୍ତିର ସନ୍ଧାନ ପାଉଚି । ବରଷ ବରଷର ମଇଳାପୋଡ଼ାର ଧୂଆଁମେଘ ପରେ କିଏ ଯେପରି ଶୁଦ୍ଧ ଅଗ୍ନିର ଅଭିସାର ରଚନା କରିବାର ଉଦ୍‌ଯୋଗ କରୁଚି । ଏଥର ଜଳିବାର ବେଳ ଆସିଲା । ଗଗନ, ପବନ ଓ ବିଶ୍ୱମନକୁ ଦୀପ୍ତ ଓ ଉଦ୍‌ଭାସିତ କରି ଏଥର ନିଜ ପ୍ରଦୀପଟିର ଶୁଦ୍ଧ ଅଗ୍ନିଶିଖା ଟେକି ଧରିବାକୁ ପଡ଼ିବ ।

ହେ ଅଗ୍ନି, ତୋ'ର ସେହି ନିଷ୍ଠୁର ନିର୍ମମ ଶିଖା ଆଜି କି ସୁନ୍ଦର, କି ମନୋରମ ଦିଶୁଚି ? ଦୀର୍ଘ ଜୀବନର ବିରାଟ ଦହନ ଓ ଦଗ୍‌ଧ ଭସ୍ମର ଇତିହାସ ଉପରେ ତୋତେ ମୁଁ ଆଜି କେଡ଼େ ଶାନ୍ତୋଜ୍ଜ୍ୱଳ କରି ପାଇଚି ! କେଡ଼େ କେଡ଼ ପାହାଡ଼ ଆଜି କୁଆଡ଼େ ଜଳିପୋଡ଼ି ପାଉଁଶ ହୋଇଗଲା ! ଯେଉଁ ଗ୍ଲାନି ଦିନେ ମୋତେ ବୋଝପରି ଗ୍ରସି ରଖିଥିଲା, ତାହା ହିଁ ଆଜି ଭସ୍ମବିଭୂତି ହୋଇ ଜୀବନର ପ୍ରତ୍ୟେକ ଲୋମକୂପରେ ରୁଦ୍ର ବିଭୂତିଭୂଷଣର ସୌନ୍ଦର୍ଯ୍ୟଦୀପ୍ତ ସ୍ରୋତ ବୁହାଇଦେଉ !

ଏହି ଦହନର ଭିତରଦେଇ ହିଁ ମୁଁ ପାଇଚି । ଅନେକ ଦେଇ ଆଜି ମୁଁ ଭିତରର ଦୀପଟିକୁ ଜଳାଇ ପାରିଚି । କି ସୁନ୍ଦର, କି ମଧୁର ଏହି ଜାଳିପୋଡ଼ି ଉଜ୍ଜ୍ୱଳ ହେବାର ପର୍ଯ୍ୟାୟଟି ! ଅଗ୍ନିବାଣର ପୂର୍ଣ୍ଣ ତୂଣୀର ନେଇ ଯିଏ ମୋତେ ଆଜିଯାଏ ଧସାଇ ଧସାଇ କନ୍ଦାଇ ଆସୁଥିଲା, ମୁଁ ତାକୁ ହିଁ ଆଜି ବିରାଟ ସମ୍ଭାବନାର ସ୍ୱରୂପ ଭିତରେ ଦେଖିବାକୁ ପାଇଚି । ସେହି ଅଗ୍ନିଦେବତା ହିଁ ମୋର ଗୁରୁ, ତାହାକୁ ହିଁ ମୋର ପ୍ରଣତି ଜଣାଉଚି ।

୨୮ । ୮ । ୪୮

ବଞ୍ଚିବି ଯେମିତି, ସେମିତି ବଞ୍ଚିବାକୁ ଦେବି । ବଢ଼ିବି ଯେମିତି, ସେମିତି ବଢ଼ିବାକୁ ଦେବି, ଭୁଲ କରିବି ଯେମିତି, ଅନ୍ୟର ଭୁଲକୁ ସେମିତି ସହିବି ଆଉ ବୁଝିବି ।

ତୁ ଚୁପ୍ କର,—ଅସ୍ଥାନରେ ବିଦ୍ରୋହ କରି ନିର୍ବୋଧତାର ପରିଚୟ ଆଉ ଦେ'ନା ! ଦୁନିଆଟା ତୋର ଏକା ନୁହେଁ, କେବଳ ତୋତେ ଖୁସୀ କରିବାକୁ ଜଗତଟା ନୁହେଁ ।

ନିଜର କହିବା କଥାକୁ ଠିକ୍ ଭାବେ ଶୁଣାଇ କହିପାରିବାକୁ ହେଲେ ଚୁପ୍ କରିବାର କଳା ମଧ୍ୟ ଶିଖିବାକୁ ହେବ । କହିବାର ପାତ୍ରାନ୍ତରଭେଦ ପରି ନୀରବ ରହିବାର ବି ସେହିପରି କଳାକୌଶଳମାନ ରହିଚି । ମଣିଷ ଇସ୍ପାତର ଗୋଟାଏ Sound Box ନୁହେଁ ଯେ ଖାଲି କଥା କହି ଚାଲିଯାଉଥିବ !

ଦରିଦ୍ର, ଅତୃପ୍ତ ଓ ବଞ୍ଚିତର କାରୁଣ୍ୟ ବର୍ଣ୍ଣନା କରି ସାହିତ୍ୟ ବୁଢ଼ା ହେଲା । ସାହିତ୍ୟ ଜଲସାରେ ଅନେକେ କ୍ଷଣକଲାଗି କାନ୍ଦି କ୍ଷଣକଲାଗି କେତେ କନ୍ଦାଇଲେ । ସାହିତ୍ୟର ପରିବେକ୍ଷଣ-କ୍ଷେତ୍ରରେ ଏହି ଦୟା ଓ ଦାନର ଦୁର୍ବିପାକ ଆଉ କେତେଦିନ ଚାଲିବ ? ପ୍ରତିଦିନର ଦୁଃଖଦୈନ୍ୟ ଭିତରେ ତଥାପି ଆଗକୁ ଯିବାର ବଜ୍ରାଘାତ କରିବ କିଏ, ମଡ଼ା ମଣିଷର ଜୀବନକୁ ବିଦ୍ୟୁତ୍‌ଦ୍ୱାରା ଦଗ୍ଧ କରି ମଣିଷକୁ ବିପୁଳ ସମ୍ଭାବନାର ପଥ ଦେଖାଇବ କିଏ ? କ୍ଷୁଦ୍ର ଖଦ୍ୟୋତର କ୍ଷୀଣ ଆଭାସ ଦେବାର ଚାରଣଗିରି କରି ରାତ୍ରି-ଅନ୍ଧକାରର ଭୟାବହତାକୁ ବଢ଼ାଇଦେବା କ'ଣ ଚିରଦିନ ଚାଲିଥିବ ? ତେବେ ଜୀବନର ପୂର୍ବଦିଗରେ ଅଗ୍ନିବାଣ ମାରି କାଲିକା ସୂର୍ଯ୍ୟୋଦୟର ଶୁଭକଥା କିଏ କହିବ ? ଏଥର ସାହିତ୍ୟ ସୃଷ୍ଟି କରିବାକୁ ମନ ବଳାଉ, କେବଳ ବର୍ଣ୍ଣନା କରି ବିମୁଗ୍ଧ କରି ରଖିବାରେ ଦିନ ଚାଲିଯାଇଚି । ସମାଜ ଓ ଜୀବନର ଅନ୍ଧକୂପ ଭିତରେ ଲୁପ୍ତପ୍ରାୟ ଜୀବନର ଅଭିଯୋଗଟି ଜଣାଇ ତା'ରି ହୋଇ ଦମ୍ଭ ଧରି ଠିଆହେବା ହେଉଚି ସାହିତ୍ୟର କାର୍ଯ୍ୟ । କେବଳ ଜୀବନ ଭିତରେ ହିଁ ସାହିତ୍ୟର ପୂର୍ଣ୍ଣ ଉପଲବ୍ଧି ହେଉ !

୨୯ । ୮ । ୪୮

ନା, ନା,—ଆହୁରି ଚୁପ୍ ରହିବାକୁ ପଡ଼ିବ । ତୋତେ ଯେ କାଲି ଅନେକ କଥା କହିବାକୁ ପଡ଼ିବ । ତୁ ସେଥିଲାଗି ଚୁପ୍ ହେବୁ କେତେବେଳେ ?

ଏ ଚୁପ୍ କିନ୍ତୁ ଆପଣାର ସଙ୍ଗଭୀରୁ ଭୀତ ମନକୁ ଅପସରାଇ ନେବାର ଚୁପ୍ ନୁହେଁ, ମଣିଷର ମେଳପାଖରେ ହାର ମାନି ଲୁଚିଛପି ଯାଇ ଆପଣା ଦୁର୍ବଳ ଦର୍ଶନଗୁମ୍ଫାକର ଆବରଣତଳେ ଶାନ୍ତି ପାଇବାର ଚୁପ୍ ନୁହେଁ । ହୁଏତ ସେହି ଚୁପ୍ ହିଁ ଦିନେ ମୁହଁରେ କୋଲପ ପକାଇ ରଖିଥିଲା । କିନ୍ତୁ ଆଜି ମୁଁ

ଅନେକ ପରିମାଣରେ ବାଟକୁ ଆସିଚି । ସମସ୍ତଙ୍କ ମେଳରେ ବସିବି, ସବୁରି ଦୁଆରେ ଧକ୍କା ଦେବି, ସବୁରିକୁ ସ୍ୱୀକାର କରିନେବାର ସାଧନା କରିବି, ସଂସାରରେ ବଢ଼ିବି ।

ଆଉ କୁହୁଳି କୁହୁଳି ଯେଉଁଦିନ କଥାଝରଣାର ପଥର ଫୁଟାଇବାର ବେଳେ ଆସି ପହଞ୍ଚିବ, ସେତେବେଳେ ମୁଁ ଯେପରି ଶତଶିଖାର ଦୀପ୍ତ ନିର୍ଝରରେ କଥା କହିପାରିବି ।

ତେଣୁ ଆଜି ମୁଇଁ ମୋ' ନିଜପାଖରେ ପ୍ରାର୍ଥନା କରୁଚି । ତୁ ଚୁପ୍ ରହ, କାଲି ସଭାରେ ମୁଖପାତ୍ର ହେବାଲାଗି ଆଜି ଚୁପ୍ ରହିବାକୁ ପଡ଼ିବ । ତୁ ଆନେକ ଦେଖୁଚୁ, ଦେଖିବୁ, ଦେଖୁଥିବୁ । ଡାକ ଆସିନି, କିନ୍ତୁ ଦିନେ ହଠାତ୍ ଆସିଯିବ । କେବଳ ଫମ୍ପା ଚିତ୍କାରର ବାକ୍‌ବିକାର ବ୍ୟତୀତ କହିବାର, ଦେବାର ଓ ବାଢ଼ିବାର ଉପଯୁକ୍ତ କିଛି ସଞ୍ଚୟ କରି ରଖୁଚୁ ତ ?

୩୦ । ୮ । ୪୮

ଆଜି ଦିନ ଦି'ପହରେ ହଠାତ୍ ଅଜସ୍ର ବୃଷ୍ଟି ମାଡ଼ିଆଇଲା । ଅନେକ ତାପର ସଞ୍ଚିତ ଭରାଗର୍ଭ ଜଳଭାର ଅଜାଡ଼ି ଦେଇ କିଏ ଯେପରି ପ୍ରାଣକୁ ଉଶ୍ୱାସ କରିଦେଇଗଲା । ଏହି ରୋଦସୀ ଭିତରେ ଆକାଶ ଓ ଅବନୀର ଲିପିବଦଳ ନିତ୍ୟକାଳ ଗ୍ଳଲିଆସିଚି । ଧରିତ୍ରୀର ଶ୍ୟାମଳ ବନବୀଥିର ଉତ୍ତର ପିପାସୀ ପ୍ରାଣକୁ ପୂର୍ଣ୍ଣ କରି ଉପରୁ ପତ୍ର ଆସୁଚି ସ୍ୱଚ୍ଛ ଜଳର ଶତସହସ୍ର ଅକ୍ଷରରେ । ସହସ୍ର ଆଘାତରେ ରୋଦସୀର ବ୍ୟବଧାନ ପୂର୍ଣ୍ଣ କରି ଧରଣୀର ମନକୁ ସେ ଚେତାଇ ଦେଇଯାଉଚି ।

ସନ୍ଧ୍ୟାବେଳେ ଅନେକଦୂର ପର୍ଯ୍ୟନ୍ତ ଚୁପ୍‌ଚୁପ୍ ବୁଲି ଯାଇଥିଲି । ଗ୍ଳରିଆଡେ କଳା ମେଘ,—ସେହି କଳାଗର୍ଭକୁ ଫୁଟାଇ ପଶ୍ଚିମ ଆକାଶରେ ଖଣ୍ଡିଏମାତ୍ର ନାଲିମେଘ । ବାଦଲ ବିଜୟର କୃଷ୍ଣସୁନ୍ଦର ଉତ୍ସବ ଭିତରେ ପରାଜିତ ଦିବସାଲୋକର କ୍ଷତରକ୍ତର ଶେଷରେଖା ପରି । ବନଗହନର ଧାଡ଼ିମାନ ଏକ ଅପୂର୍ବ ନୀଳିମାଭିତରେ ଯେପରି କେତେ ଦୂରରେ ଓ କେତେ ଗଭୀରରେ ନିମଗ୍ନ ହୋଇ ରହିଥିଲେ ।

ଏହିପରି ଗୋଟିଏ ସୁନୀଳ ତାମସ ସନ୍ଧ୍ୟାଭିତରେ, ଏକୁଟିଆ ଗହୀର ପ୍ରାନ୍ତରର ଗୋଟିକିଆ ତାଳଗଛର ଦୀର୍ଘ ଅସ୍ତିତ୍ୱ ଭିତରେ, ଅସ୍ତଗାମୀ ସୂର୍ଯ୍ୟର ଅବଗୁଣ୍ଠିତ ଶୋଣିତରାସ ଭିତରେ ହଠାତ୍ ସମଗ୍ର ପୃଥିବୀ ଓ ସମସ୍ତ ସୃଷ୍ଟିର ସ୍ୱଷ୍ଟ ପରିଚୟ ମିଳିଯାଏ କିପରି ?

୩୧ । ୮ । ୪୮

ଆଜି ସକାଳେ ତ ପୁଣି ସୂର୍ଯ୍ୟୋଦୟ ହୋଇଚି, ପୁଣି ପକ୍ଷୀ ଗାଇଚି, ଫୁଲ ଫୁଟିଚି; ତେବେ ମୁଁ ଭୟ କରିବି କାହିଁକି ? ଆଜି ସକାଳର ଏହି ନୂତନ ପବନ ମୋର ପ୍ରାଣରେ ନୂତନ ଜୀବନ ଓ ନୂଆ ଉଦ୍ୟମର ସଞ୍ଚାର କରିଦେଉ; ଆଜିର ସୂର୍ଯ୍ୟକିରଣ ପ୍ରାଣର ସବୁ ଉଷର କ୍ଷେତରେ ବିଶୋଧକର କାର୍ଯ୍ୟ କରୁ, ସମସ୍ତ ଆବର୍ଜ୍ଜନା କେବଳ ମୂଲ୍ୟମୟ ମଣିରେ ପରିଣତ ହେଉ ! ଆଜିର ନୂଆ ଜଗତ ସହିତ ମୁଁ ମଧ୍ୟ ନୂଆ ହୋଇ ବଞ୍ଚିଉଠେ ।

ଜଗତରେ ଏହି ନୂଆ ହେବାଟା ହିଁ ଏକମାତ୍ର ଶାଶ୍ୱତତା,—ଏହି ପଟ ବଦଳାଟା ହିଁ ପୃଥିବୀର ଚିରନ୍ତନ ମହାପୁରାଣ । ସେ ଗ୍ଭଲିଚି, ନିତି ନିମେଷେ ନିମେଷେ ନବୀନ ଓ ନବାଗତର Experiment ଗ୍ଭଲିଚି । ଗୋଟାଏ ଫୁଲ ପରେ ଆଉଗୋଟାଏ ଫୁଲ, ଗୋଟାଏ ହସ ପରେ ଆଉଗୋଟାଏ ହସ, ଗୋଟାଏ ବୀଣା ପରେ ଆଉଗୋଟାଏ ବୀଣା । ଏହି ଅସ୍ଥାୟିତ୍ୱର ସ୍ଥାୟିତ୍ୱକୁ ଯିଏ ଆପଣାର ବୋଲି ଚିହ୍ନିନେଇ ପାରିଚି, ସେହି କେବଳ ବଞ୍ଚିଜାଣିଚି, ବଢ଼ିଜାଣିଚି । ଆଜି ସକାଳେ ମୁଁ ବି ସେହିପରି ବଞ୍ଚିବାକୁ ଶିଖିଚି ।

ଖାଲି ପୁରାତନର ଶିରା ଖେଳାଇବାକୁ Research କୁହାଯାଏ ନାହିଁ । ଯେଉଁଠି ସୃଷ୍ଟି ନାହିଁ, ସେଠି କୃଷ୍ଟି ମଧ୍ୟ ନାହିଁ । ପୁରାତନର ରାତ୍ରି ଆକାଶରେ ଯିଏ ନୂତନର ପ୍ରଭାତୀ ତାରାକୁ ଚିହ୍ନିପାରିଚି, ତାହାକୁ ମୁଁ ସଚ୍ଚା Research Scholar ବୋଲି କହିବି ।

ହେ ମୋର ପ୍ରଭାତସ୍ନାନ-ଶୁଦ୍ଧ-ସ୍ନିଗ୍ଧ ନୂତନ ମନ, ତୋ'ରି ହୋଇ ତୋତେ ମୁଁ ଆଜି ପ୍ରଣତି ଜଣାଉଚି ।

୧ । ୯ । ୪୮

ସୂର୍ଯ୍ୟୋଦୟ ପୂର୍ବରୁ ହଠାତ୍ ଆକାଶକୁ ଗ୍ଭହିଁ ଦେଖିଲି, ଦକ୍ଷିଣ ବଳୟର ବନସୀମା ଉପରେ ସୁନା-ମେଘଖଣ୍ଡର ବିପୁଳ ଉଲ୍ଲାସ-ହସ । ବୋଧହୁଏ ପୂର୍ବ ତୋରଣର ଆଗାମୀ ଦେବତା ସୂର୍ଯ୍ୟ ମଧ୍ୟ ତାହାର ଖବର ରଖିପାରି ନ ଥିଲା । ଜୀବନର ଆକାଶକୁ ଯେତେବେଳେ ଗ୍ଭହିଁଦେଖେ, ସେତେବେଳେ କୁଆଡ଼େ କିଛି ଆଖିରେ ପଡ଼େ ନାହିଁ । ଗ୍ଭରିଆଡ଼େ କେବଳ ଶୂନ୍ୟ, ଦେଖିବାଭଳି କିଛି ନାହିଁ । ବିରାଟ ଶୂନ୍ୟ ଭିତରେ ନାନା କାଳ୍ପନିକ ଦ୍ୱାର ଉପରେ କର ପିଟି କେବଳ ଫେରି ଆସିବାକୁ ପଡ଼େ । କିନ୍ତୁ ହୁଏତ କି ଅଜ୍ଞାତ ଭାବରେ ଜୀବନର ଏହି ମହାବିସ୍ତୃତି ଭିତରେ କିଏ ମୋ'ଲାଗି ହିରଣ୍ୟପୁରୀର ଦ୍ୱାର ମୁକୁଳା କରି ଅପେକ୍ଷା କରି ବସିଚି, ସେକଥା କିଏ ନାହିଁ କରିପାରିବ ? ନିଜର ଗନ୍ତବ୍ୟ ଦ୍ୱାରଟିକୁ ଠାଣ କରି ନେବାର ଉପଯୁକ୍ତ ଆଖି ମୁଁ କେବେ ପାଇବି ?

ହଠାତ୍ ଗାଧୁଆଘରକୁ ଯାଉଯାଉ ଯେପରି ମୂହୂର୍ତ୍ତକ ପାଇଁ ଦେହର ଭାରି ଆବରଣଟା ଏକାବେଳେକେ ଖସିପଡ଼ିଲା । କି ଅପୂର୍ବ ମୁକ୍ତି ! ସେହି ମୁହୂର୍ତ୍ତକ ଭିତରେ ହିଁ ଚେତନାର ସକଳ ଭଣ୍ଡାରକୁ ମୁଁ ଆପଣାର ଅନ୍ତରଭିତରେ ଅନୁଭବ କରିପାରିଲି । ମୋର ଅଙ୍ଗପ୍ରତ୍ୟଙ୍ଗ ଓ ପ୍ରତ୍ୟେକ ଲୋମକୂପକୁ ନିରେଖି ଦେଖିଲି, ସବୁ ଏକାଠି ମିଳି ଯେପରି ଗୋଟିଏ ଅସ୍ତିତ୍ୱର ଉଜ୍ଜ୍ୱଳବିନ୍ଦୁ ହୋଇ ଘୂରୁଚି କେଉଁ ଅସୀମ ବ୍ୟାପ୍ତିଭିତରେ, ଅନନ୍ତ ବିଶ୍ୱପରିଚୟର ବିଶାଳତାକୁ ବହନ କରି ।

....ନଅ ବରଷ ତଳର କଥା, କିନ୍ତୁ ଯେପରି କାଲିପରି ମନେହେଉଚି । ଠିକ୍ ଏଇଦିନ ଯେତେବେଳେ ମୁଁ ପୋଲାଣ୍ଡ୍ ଲଢ଼ାଇର ଖବର ଶୁଣିଲି, ସେଦିନ ମୋର କିଶୋର ମନରେ କେତେ ବିସ୍ମୟ ଜାଗିଉଠିଥିଲା । ନଅବରଷ କାଳ ମଣିଷର ଏହି ମରିବାର ଅଭିନୟଟାକୁ ମୁଁ ଦୂରରୁ ଦେଖିଚି । ମରିବାର ହୀନ ପରିଣତିକୁ ଜାତୀୟତା, ଜନ୍ମଭୂମି ପ୍ରତି ଭକ୍ତି ଓ ଯୁଦ୍ଧଭୂଇଁର ବୀରତ୍ୱ ପ୍ରଭୃତିର ରଙ୍ଗ ଦେଇ ମଲା ମଣିଷ କିପରି ନିଜକୁ justify କରିବାର ଚେଷ୍ଟା କରିଚି, ମୋ' ମନଭିତରେ ରହିଥିବା ଗତ ନଅବରଷର ଅଭିଜ୍ଞତାପ୍ରାପ୍ତ ସଞ୍ଚୟ ଆଜି ଖାଲି ସେଇକଥା ବିଗ୍ଭର କରି ବସିଚି । ଜାତିର ଦୁହାଇ ଦେଇ ମଜୁରିଆ ଦୁଇଗୁଣ କାମ ଖଟିଲେ, ଜାତିର ମଙ୍ଗଳ ହେବବୋଲି କେତେ ମାଆ ଓ କେତେ ଶିଶୁ ମରାହେଲେ, ଜାତିର ମାନ ରଖିବାକୁ ଯାଇ କେତେ ଘର ଓ କେତେ ସୌଧ ଭଙ୍ଗା ହେଲା । ଉତ୍କୃଷ୍ଟତର ଜୀବନ ଗଢ଼ିବାର ସ୍ୱପ୍ନପାଗଳ ଉତ୍ସାହୀ ମଣିଷ-ଜାନୁଆର କେଡ଼େ ଉତ୍ଫୁଲ୍ଲତା ସହିତ ହଣାକଟା ଓ ଗୁଳିବନ୍ଧୁକ ଭିତରକୁ ଡେଇଁଲା, କିନ୍ତୁ ସେହି ସ୍ୱପ୍ନ ସଫଳ ହେଲା କି ? ମଣିଷ ବୁଢ଼ା ହେଲେ ଖେଳ, ହସ ଓ ପ୍ରେମ ଭୁଲିଯାଏ, ସଂସାରପ୍ରତି ବୈରାଗୀ ହୋଇ ସେ ନିଜରଚିତ କଳ୍ପନା ଭିତରେ କାଳ କଟାଏ । ଆଜି ଇତିହାସର ହେଲେନ୍ ଓ ସୀତାଙ୍କର ଯୁଗରୁ ସିଜର୍, ନେପୋଲିଅନ୍ ଓ ହିଟଲରର ପ୍ରଭୃତି ନାନା ଅବତାର ଗ୍ରହଣ କରି ମଣିଷ ଯୁଦ୍ଧ କଲା ଓ ବୁଢ଼ା ହେଲା, ତଥାପି ତ ସେଥିରେ ତା'ର ବୈରାଗ୍ୟ ଆସିଲା ନାହିଁ ! ତେବେ ଏହି ଦ୍ୱନ୍ଦ୍ୱ, ସଂଘାତ କଣ ଜୀବନର ମୂଳ ନିୟମ ? Havellock Ellisଙ୍କ ମତପରି ଏହି Conflict ଟା କଣ ଆମ ଜୀବନର ଏକମାତ୍ର ପ୍ରାଣସତ୍ୟ ?

ସେଥିଲାଗି ନଅବରଷ ଦ୍ୱନ୍ଦ୍ୱ, ସଂଶୟ ଓ ସମରର ତପ୍ତତା ଭିତରେ ପଡ଼ି ମନ ପୁଣି ପଗ୍ଭରୁଚି, ଏହି ସଂସାରରେ ମର ଓ ଆସକ୍ତ ମଣିଷର କଣ କେବେହେଲେ ବୈରାଗ୍ୟ ଆସିବ ନାହିଁ ?

୨ । ୯ । ୪୮

ଅନେକ ସମୟରେ ମଣିଷକୁ ଦେଖିଲେ ଡରମାଡ଼େ କାହିଁକି ? ବାଟ ଗ୍ଭଲୁଗ୍ଭଲୁ ହଠାତ୍ ମଣିଷକୁ ଏକୁଟିଆ ପାଇଲେ କେଳେବେଳେ ସମସ୍ତ ମନ

ଶଙ୍କା ଓ ସଂଶୟରେ ଭରିଉଠେ କାହିଁକି କାହିଁକି ? ଏତେ ଜାଣି ମୁଁ ତଥାପି କଣ ଜାଣିଲି ଏହି ମଣିଷର ? ଘୁରିଘଣ୍ଟା କାଳ ଲାଇବ୍ରେରିରେ ବହିଭିତରେ ଘାଣ୍ଟି ଚକଟି ହୋଇ ଘରକୁ ଫେରିବାବେଳେ ଶାଳବୀଥିତଳେ ମୁଁ ଯେଉଁ ଚମମାଂସ-ଆବୃତ ମଣିଷକୁ ଭେଟେ, ତାର ମନର କଥା, ତା'ମନର ମୁହୂର୍ତ୍ତମୟ ତଡ଼ିତ୍‌ଧାବନ ବିଷୟରେ ମୁଁ କଣ ଜାଣିପାରିଲି ? ମଣିଷର ଏହି ବିରାଟତ୍ୱର ରହସ୍ୟ ଆଗରେ ହାର ମାନି ନିଜର ପାଚେରୀଗୁଡ଼ାକର ଭିତରେ ନିଜ ମନଟା ଯେପରି କୁଆଡ଼େ ଲୁଚିଯିବାକୁ ଇଚ୍ଛା କରେ । ମୁହଁ ତଳକୁ ହୋଇଯାଏ, ପାଦତଳର ଭୂଇଁତକ ଛାଡ଼ି ସେତେବେଳେ ସତେଅବା ଆଉ କୌଣସି ଭରସା ହିଁ ରହେ ନାହିଁ । ସେଇ ମଣିଷକୁ ମୁଁ ଆପଣା ଭିତରକୁ ଡାକିଆଣିପାରେ ନାହିଁ । କେତେ ବିରାଟ ଓ ମହାଗର୍ଭ ଏହି ସଂସାରର ଗୋଟିଏ ଗୋଟିଏ ମଣିଷ ! କ୍ଷଣକର ପରିଚୟରେ ଆସି ବା କ୍ଷଣକଲାଗି ଭେଟି ଖଣ୍ଡେ ସିଗାରେଟ ବା ଦୁଇଟା ଉଡ଼ାକଥାର ଆଦାନପ୍ରଦାନରେ ଏଯୁଗର ସମାରେ ଆଜି କେଡ଼େ ଚଞ୍ଚଳ ବନ୍ଧୁତାର ମଜଲିସ୍‌ମାନ ଗରମ ହୋଇ ନଉଠେ ! କିନ୍ତୁ ଏହି ମଣିଷ-ଯୂଥର ମନଭିତରେ କେତେ ସିଜର୍, କେତେ କ୍ଲିଓପେଟ୍ରା, କେତେ ରାବଣ ଓ କେତେ ହନୁମାନର ଯେ ସଂଘାତତାଣ୍ଡବ ଲାଗି ରହିଥାଏ, କିଏ ତାହାର ଖବର ରଖେ ? ମଣିଷର ଏହି ପୂରା ପରିଚୟ ନ ପାଇ ସଙ୍କୋଚ ଏବଂ ସନ୍ତ୍ରସ୍ତତାରେ ମନଟା ବଡ଼ ହାହାକାର କରିଉଠେ । ମନର ମିଳନ ତ ଦୂରର କଥା, ଆଖିର ମିଳନ ବି ହୋଇପାରେ ନାହିଁ ।

୩ । ୯ । ୪୮

ମେଘଧୂସର ବିସ୍ତୀର୍ଣ୍ଣ ପ୍ରାନ୍ତର ଭିତରେ ମୁଁ ଯେତେବେଳେ ଅବାରିତ ପବନସ୍ରୁଅ ଆଡ଼କୁ ମୁହଁ କରି ଠିଆହୁଏ, ସେତେବେଳେ କ୍ଷଣକେ ମନେହୁଏ ଯେମିତି ମୁଁ କେବଳ ପବନରେ ତିଆରି ହୋଇଚି ! ଶୀତସକାଳର ସେହି ସ୍ୱର୍ଣ୍ଣାଭରଣ ସୂର୍ଯ୍ୟୋଦୟ-ରଥକୁ ଯେତେବେଳେ ଦୁଇଆଖିରେ ମୋର ପ୍ରଣତି ଜଣାଏ, ସେତେବେଳେ ସବୁ ମିଶି ମୁଁ ଯେପରି ଖାଲି ଆଲୋକର ପିତୁଳାଟିଏ ହୋଇଯାଏ । ଆଉ ଯେତେବେଳେ ଏହି ଦୃଶ୍ୟଛଳଛଳା ଧରିତ୍ରୀର ବୈଚିତ୍ର୍ୟ ମହିମାକୁ ମୁଁ ଇନ୍ଦ୍ରିୟ ଦେଇ ଗ୍ରହଣ କରେ, ସେତେବେଳେ ସତେଯେମିତି ମୁଁ ତାହାର ସେଇ ଜୀବନମୟ କାନନ, କାନ୍ତାର, ଗଛ, ପତର, ଫୁଲ ଓ ଫଳ ସାଙ୍ଗରେ ତଦେବ ହୋଇଯାଏ ! ଯେଉଁଠି ମୁଁ ତାକୁ ଯେମିତି ଦେଖୁଚି, ସେଠାରେ ସେ ଠିକ୍ ସେମିତି; ଆପଣାର Objective Reality କୁ ଗୌଣ କରି ସେ ସତେ ଅବା ତା'ର ସନ୍ତାନ ଓ ପ୍ରେମିକ ଆଗରେ ଠିକ୍ ତାହାରି ଆଖିଲାଖି ହୋଇ ଧରା ଦେବାକୁ ଏତେ ଭଲପାଏ !

ତୋର ଶିରକୁ ଉଚ୍ଚ କରି ରଖ, ଗହନ ସୁନ୍ଦର ପଦ୍ମବନରେ ସ୍ୱଚ୍ଛ ଜଳବିନ୍ଦୁଟି ପରି ତୁ ତୋ'ର ଆସ୍ୱାଦନ-କ୍ଷୁଧା ମେଣ୍ଟାଇଦେ' । ତଳେ ଖାଲି ପଙ୍କ,

ତାହାକୁ ଅନୁଭବ କରି ଦେଖିବାର କୌଣସି କୁତ୍ସିତ ଆକାଙ୍କ୍ଷା ରଖେନା । ଏଇ ପ୍ରେମ, ଏହି ଆସ୍ୱାଦନ ଓ ଏହି ମିଳନ,—ସବୁ ତ ସେଇ ନିଜକୁ ଓ ସର୍ବଜଗତକୁ ଉଚ୍ଚ, ଉନ୍ନତ ଓ ସମ୍ମାନିତ କରି ଦେଖିବାର ସାଧନା ! ସବୁରି ଭିତରେ ରହିଥିବା ମହିମାକୁ ଚିହ୍ନିବାକୁ ବାହାରି ନିଜର ମହିମାକୁ ଭୂଲୁଣ୍ଠିତ କରି ପକାନା । ସମାନ ସହିତ ସମାନର ମିଳନ ହେଉଚି ଶ୍ରେଷ୍ଠ ମିଳନ !

୪ । ୯ । ୪୮

ଗରିବ ଦେଶର ଗୌରବ-ଡିଣ୍ଡିମ ବଜାହେବା ପାଇଁ ସରକାର **ଲକ୍ଷଲକ୍ଷ** ଟଙ୍କା ଖରଚ କରୁଚନ୍ତି । ଦରମା ସମେତ ଜଣେ ବଡ଼ଲାଟ ସକାଶେ ଦରିଦ୍ର ଦେଶକୁ ମାସିକ ଏକଲକ୍ଷରୁ ଅଧିକ ଟଙ୍କା ଦେବାକୁ ପଡ଼ୁଚି । ଭାରତ ତରଫରୁ ବିଦେଶରେ ଭୋଜୀବିଳାସ କରିବାଲାଗି ଯେଉଁ ବହୁଖର୍ଚ୍ଚୀ ଭଦ୍ରଲୋକ-ମାନେ ଦୂତପଣ ନେଇ ଯାଉଚନ୍ତି, ସେମାନେ ବି ପ୍ରତ୍ୟେକେ ତିନି ହଜାରରୁ ବାର ହଜାରଯାଏ ଟାଣୁଚନ୍ତି । ଜଣକୁ ପୁଣି ଛଅଟା ମଟରଗାଡ଼ି ଦିଆଯାଇଚି ଦେଶର ଗୌରବ ରକ୍ଷା କରିବା ପାଇଁ ! ଦେଶଶାସନର ମହୁଡ଼ମଣି ସୁପଣ୍ଡିତ ଜବାହରଲାଲ ଏବେ ତାଙ୍କ ଦେଶକୁ ଏହି ବାଣୀ ଶୁଣାଇଚନ୍ତି । ଯେଉଁ ଦେଶରେ ଅଧେ ମଣିଷ ପେଟ ପୋଷିବାକୁ କାମ ପାଆନ୍ତି ନାହିଁ, ଯେଉଁ ଦେଶର ଯୁବତୀ ଲୁଗା ବିହୁନେ ଡଉଲିଆ ପିନ୍ଧିବାକୁ ଲଜ୍ଜାବୋଧ କରେ ନାହିଁ, ସେହି କାଙ୍ଗାଳ ଦେଶର ଶାସକ ଆଜି ଟଙ୍କାର ହାବେଳିବାଣ ମାରି ବାହାରେ ଦେଶର ସମ୍ମାନ ଦେଖାଉଚନ୍ତି ! କି ଧୃଷ୍ଟତା, ସେମାନଙ୍କର ଯଥାର୍ଥ ସମ୍ମାନବୋଧ କ'ଣ ମରିଉଡ଼ି ଗଲାଣି ? ଅଠର ବର୍ଷ ତଳେ ଏହି ଦେଶର ଜଣେ ନବୀନ ବୁଢ଼ା ଦେଶର ପ୍ରତିନିଧି ହୋଇ ବିଲାତ ଯାଇଥିଲା । ତାର ଛଅହାତି ଆଭରଣ ଦେଖି ବକିଙ୍ଗ୍‌ହାମ୍ ସାମ୍ରାଜ୍ୟ ପ୍ରାସାଦରେ ସେଦିନ କେତେ କିଏ ହସିଥିଲେ, କେଡ଼େ ବଡ଼ବଡ଼ ଇଂରାଜୀ ଅଭିମାନୀ ରାଗରେ ବାଳ ଛିଣ୍ଡାଇଥିଲେ ! ଆଉ ସେହି ବୁଢ଼ାର ଚେଲା ବୋଲି ନାଗରା ବଜାଇ କାଲିର ଦେଶସେବକ ଆଜି ଲକ୍ଷ ଟଙ୍କାର ସାଜସଜ୍ଜା ଖୋଜିବସୁଚି ବା କାହିଁକି ? ଏହି ନିର୍ଲଜ୍ଜତାର ଉତ୍ତର କିଏ ଦେବ ? ସାମନ୍ତବାଦୀ ସରକାରର ଲୋପ ହୋଇ ଅବଶିଷ୍ଟ ରହିଯାଇ-ଥିବା ଏହି ସାମନ୍ତବାଦୀ ମନକୁ କିଏ ଲୋପ କରିପାରିବ ?

୫ । ୯ । ୪୮

ସବୁ ଯେପରି ହଠାତ୍ ଆସି ମନଃସରୋବରରେ ଛାଇ ହୋଇ ଧରାଦିଏ । ହଠାତ୍ ପରିଚୟରେ ଲକ୍ଷପରସ୍ତର ମୁଦା ସିନ୍ଦୂକ ଖୋଲିଯାଏ, ହଠାତ୍ ପରଶର ପୁଲକ ଲାଗି ସମସ୍ତ ଶରୀରଟା ଯେମିତି ବେଳେବେଳେ ମନ ସାଙ୍ଗରେ ଉଡ଼ି ଗଳିଯିବାକୁ ଚାହେ ! Emerson ଙ୍କର ପୁଣି ସେଇ କଥାଟା ଦିଶିଯାଉଚି : God does not come with a bell ! ଆରେ ମୂର୍ଖ, ତ

ଯିବୁ ନା ସେ ଆସିବ ! ସିଏ ତ ଶାଶ୍ୱତ କାଳରୁ ତୋହରି ଭିତରେ ଧରା ଦେବବୋଲି କେତେ ରଙ୍ଗ, କେତେ ରାଗ, କେତେ ଛନ୍ଦ ଓ କେତେ ଗନ୍ଧର ଅଭିସାର କରି କେତେଥର ଆସି ଫେରିଯାଉଚି ! ତୁ ଦୁଆର ଖୋଲି ଦେ, ସଳଖ ହୋଇ ସ୍ୱଦୃଷ୍ଟି ଡେରି ଦେଖ, ସିଏ ଦୁଆରେ ଠିଆହୋଇ ରହିଚି । ଉତଳା ଗନ୍ଧର ଗୋଟାଏ ଉନ୍ମନା ହାଉଆ, ପାଗଳା ପବନର ଗୋଟାଏ ପରାଣଖୋଲା ଝଲକ, ଉଦୟଆଲୋକର ଗୋଟାଏ ଗୋଟାଏ ପୁଲକିତ ପ୍ରତିଫଳନ । ଯୋଗ୍ୟ ହେଲେ ତୁ ସବୁ ଅନୁଭବ କରିପାରିବୁ; ଦେଖିବୁ, କିପରି ତୋ' ବନ୍ଧ ସଂସାରର ଖାରପଟ ଦଗ୍ଧ କରି ସେସବୁ ତୋତେ ପ୍ରୀତି ଓ ମୁକ୍ତିର ପରିଚୟ ଦେଇଯିବ ! ଦେଖିବୁ, କିପରି ହଠାତ୍ ଆସି ହଠାତ୍ ଭୁଲାଇବ ! ଆଜି ତୁ ସବୁ ଭୁଲିଯା,—ସବୁ କାମରେ, ସବୁ ପ୍ରାଣରେ ଓ ସବୁ ଆସନରେ ତୁ ସକଳ ସତ୍ତାକୁ ବିରାଟ କରି ଦେଖି ଶିଖ,—ଦେଖିବୁ, କିପରି ମୁହୂର୍ତ୍ତ ମୁହୂର୍ତ୍ତର ହଠାତ୍ ପରିଚୟରେ ତୋ'ର ଜୀବନ ଚିର ମୂଲ୍ୟରେ ଧନବାନ୍ ହୋଇଉଠିବ !

ମୋର ସକାଳେ ଯିଏ ମୋତେ ପରମ ସମୃଦ୍ଧିରେ ପୂର୍ଣ୍ଣ କରିଦେଉଚି, ମୋ'ରି ସନ୍ଧ୍ୟାରେ ନିଜର ସମସ୍ତ ଅର୍ପଣ କରି ମୁଁ ଯେପରି ତାକୁ ନିତିଦିନ ପୂର୍ଣ୍ଣ କରି ରଖେ !

୬ । ୯ । ୪୮

ଶୀତର ସକାଳ ପରି ବରଷାର ସନ୍ଧ୍ୟାଗୁଡ଼ିକ ଏଠାରେ ବି ଚମତ୍କାର ! ପ୍ରତ୍ୟେକ ଦିନର ସୂର୍ଯ୍ୟାସ୍ତ ମୋତେ ଯେପରି ମୋ'ପାଖରେ ଆସି ଏକ ଅପୂର୍ବ ଓ ଅଭିନବ ରୂପରେ ଧରାଦେଇ ଯାଉଚି ! କଳାମେଘର ଉତ୍ତୁଙ୍ଗ ଶୈଳମାଳାର ଉପତ୍ୟକାମାନଙ୍କରେ ସିନ୍ଦୂର-ସାଗରର ଅଜସ୍ରତା ବୁହାଇଦେଇ ଏବେ ସୂର୍ଯ୍ୟ ନିତି ଖେଳ ଖେଳୁଚି । ଗ୍ଭରିଦିଗର ଅର୍ଦ୍ଧପକ୍ୱ ମେଘଖଣ୍ଡମାନ ସେହି ରକ୍ତରଞ୍ଜିତ ଅସ୍ତବଳୟ ଆଡ଼କୁ ବଡ଼ ଆକୁଳ ହୋଇ ଧାଇଁଚନ୍ତି । ମନ ଅନେକ ଦୂରକୁ ଗ୍ଭଲିଯାଉଚି । ସେଠି ଖାଲି ରଙ୍ଗ ନୁହେଁ, ଖାଲି ବର୍ଣ୍ଣ ଓ ଦୃଶ୍ୟ ନୁହେଁ; ସେଠି ଖାଲି ଉଦ୍‌ଭାସିତ କରିବାର ଅନିର୍ବଚନୀୟ ସଙ୍ଗୀତ । ମନର ରଙ୍ଗଟା ବି ଯେପରି ସେଇଠି ସହୋଦରପଣରେ ମିଳିଯାଇ ଶରୀରକୁ ଭୁଲି ଦୂରଦୂରନ୍ତକୁ ଛୁଟିଯାଉଚି । ବର୍ଣ୍ଣ, ରଙ୍ଗ ଏବଂ ଦୃଶ୍ୟରେ ସେଠି ନାନା ଉପଗ୍ଭରରେ ବୀଣା ବାଜୁଚି । ପ୍ରାଣକୁ ପୂର୍ଣ୍ଣ କରି ସଙ୍ଗୀତର ଧାରା ଅଜାଡ଼ି ହୋଇପଡ଼ୁଚି । ତୁ କାନ ଡେରି ଶୁଣୁଚୁ ତ ?

ସୂର୍ଯ୍ୟାସ୍ତ ସାଙ୍ଗକୁ ଆଜି ଆଉଗୋଟାଏ ଆକର୍ଷଣ ମଧ୍ୟ ଥିଲା, ଯାହାଠୁଁ ମୁଁ ହୃଦୟ ଏଡ଼ାଇ ପାରିଲି ନାହିଁ । ସୂର୍ଯ୍ୟାସ୍ତ-ସାଗରର ସଙ୍ଗୁବେଳାକୁ ଲାଗି ମେଘଖଣ୍ଡର ଏକ ବିରାଟ କୃଷ୍ଣ ସ୍ତୂପ ଏବଂ ତାହାରି ଉପରକୁ ଶୁକ୍ଳ ପ୍ରତିପଦ୍‌ର

ସୂତାସବୁ ବଙ୍କା ଜନ୍ତ । ସଂସାର, ସୃଷ୍ଟି ଓ ବିଶ୍ୱବିଧାତାର ଦୁଇଟିଯାକ ରୂପ ଯେପରି ଅତି ପରିଷ୍କାର ଭାବରେ ଫୁଟିଉଠୁଚି । ଗୋଟିଏ ଦିଗରେ ତା'ର ସୁନ୍ଦର ରୂପ, ଜୀବନବିଳାସୀ ପ୍ରେମିକ ପୁରୁଷର ସିନ୍ଦୂରୋଜ୍ଜ୍ୱଳ ବସନ୍ତବର୍ଣ୍ଣରେ ଭୂଷିତ ହେବାର ଶୋଭା; ସେଠି ସେ ମନୋହର, ନୟନାଭିରାମ, ଖାଲି ଅଙ୍ଗିର ପ୍ରେମର ଉତ୍ପ୍ରବାହରେ ହୃଦୟମନ ପୂର୍ଣ୍ଣ କରିଦିଏ । ଆଉ ଗୋଟାଏ ଦିଗରେ ତା'ର ଶଶୀଲେଖାଧୃତ ତପସ୍ୱୀ ଧୂର୍ଜଟୀର ରୂପ । ସେଠି ସେ ରୁଦ୍ର, କଠୋର, ପ୍ରଶାନ୍ତ ଓ ମହିମାମୟ । ଗୋଟାଏ ଟାଣିନିଏ, ମୁଗ୍‌ଧ କରେ;—ଆଉଗୋଟାଏ ମଗ୍ନ କରିରଖେ, ଆଶ୍ରୟ ଦିଏ । ଚିର ଆଲୋକର ଦୃଶ୍ୟବହୁଳ ଜଗତର ସ୍ୱପ୍ନ ଦେଇ ଗୋଟାଏ ମନର ଘୋଡ଼ାଟାକୁ ନାନା ଦିଗରେ ଛୁଟାଇନିଏ, ଆଉଗୋଟାଏ ରାତ୍ରି ପରି, ମାଆ ପରି କୋଳରେ ସ୍ଥାନ ଦିଏ । ଏହି ସ୍ମରଣୀୟ ସନ୍ଧ୍ୟାରେ ମୁଁ ଆଜି ସେହି ଦୁଇଟିଯାକ ପ୍ରକାଶକୁ ପ୍ରଣତି ଜଣାଉଚି ।

୭ । ୯ । ୪୮

ସତ କଥା, କାଶ୍ମୀରରେ ଯୁଦ୍ଧ ଲାଗିଚି, ହାଇଦ୍ରାବାଦ ନେଇ ରାତିରେ ନିଦ ହେଉ ନାହିଁ, ତେଣୁ ବର୍ମାଭୂଇଁରୁ କମୁନିଷ୍ଟ କୋକୁଆ ମାଡ଼ିଆସୁଚି; ତଥାପି ଦେଶବାସୀ ଓ ଦେଶରକ୍ଷକ ଇଚ୍ଛା କଲେ କଣ ଦେଶର ଅର୍ଥ ଓ ଶିକ୍ଷା ସମସ୍ୟାର ସମାଧାନ କରିପାରନ୍ତେ ନାହିଁ ? ସରକାର ଇଚ୍ଛା କଲେ ରାତିକେ କୋଠା ତୋଳାହୋଇ ପାରୁଚି, ଗୋଟାକୁ ଗୋଟା ଆନ୍ତର୍ଜାତିକ ସମ୍ମିଳନୀ ବସିପାରୁଚି, ତେବେ ସରକାର ଓ ଆମେ ସମସ୍ତେ ଇଚ୍ଛା କଲେ କଣ ସମାଜରୁ ସ୍ୱେରତନ୍ତ୍ରରକୁ ଦୂର କରି ଜନଗଣକୁ ଶିକ୍ଷିତ ଓ ସଚ୍ଛଳ କରିହୁଅନ୍ତା ନାହିଁ ? ହାଇଦ୍ରାବାଦ, କାଶ୍ମୀର ବା ବଡ଼ବଡ଼ ଯନ୍ତ୍ରପାତିର ଅଭାବରେ ଆମଦେଶର ଅଗ୍ରଗତି ଅଟକି ଯାଇ ନାହିଁ, ଅଟକିଚି, ଆମର ଜାତୀୟ ଭାବର ଅଭାବରୁ, ଆମ କର୍ମଠତାର ଅଭାବରୁ । ସ୍ୱାଧୀନ ନାଗରିକର କଠିନ ଶିକ୍ଷାରେ ଏଦେଶର ମଣିଷକୁ ଉଚ୍ଚଶିର କରି ଠିଆ କରାଇବାକୁ ପଡ଼ିବ, ତାହା ନ ହେଲେ ଆଉ ରକ୍ଷା ନାହିଁ । କାରଣ ଦେଶର ସମସ୍ତ ମେରୁଟି ଭାଙ୍ଗିପଡ଼ିଲେ 'ମୋ' 'ତୋ' ଭଳି ଶିକ୍ଷିତ ଓ ସଭ୍ୟର କୃଷ୍ଟିବିଳାସ ସକାଶେ ସେଠି ଆଉ କୋଉଠି ସ୍ଥାନ ରହିବ ?

ଗାନ୍ଧୀ-ଦେଶ ଭାରତବର୍ଷକୁ ଆପଣାର ସମୃଦ୍ଧି ଲାଗି ଏକ ବିଜ୍ଞରିତ ପନ୍ଥା ଅନୁସରଣ କରିବାକୁ ପଡ଼ିବ । ଆଗକାଳର ସାମନ୍ତ ଓ ରାଜାମହାରାଜାଙ୍କର ଶାସନଠାରୁ ବର୍ତ୍ତମାନର ଲାଟ, ବଡ଼ଲାଟ ଓ ମନ୍ତ୍ରୀମାନଙ୍କ ଶାସନ କୌଣସି ଗୁଣରେ ଅଧିକ ଭଦ୍ର ନୁହେଁ । କେବଳ ମନୋଭାବ ଦୃଷ୍ଟିରୁ ହିଁ ମୁଁ ଏଇ ପଦକ ଲେଖୁଚି । ଜନଗଣର ମନଭିତରେ ଏପର୍ଯ୍ୟନ୍ତ ସେହି ଅନ୍ଧ ପୂଜା, ଅଯୋଗ୍ୟ ଭକ୍ତି ଓ ଅଶିକ୍ଷିତ ପରନିର୍ଭରତାଗୁଡ଼ାକ ବଳବତ୍ତର ରହିଚି,

ସେଗୁଡ଼ାକର କେବଳ ପାନ୍ତାନ୍ତର ମାତ୍ର ହୋଇଚି । ଜନଗଣକୁ ଏକ ମନୁଷ୍ୟୋଚିତ ଆତ୍ମବୋଧରେ ଉଦ୍‌ବୁଦ୍ଧ କରି ନ ପାରିଲେ କୌଣସି ଜବାହରଲାଲ ବା କୌଣସି ପଟେଲ ଦେଶକୁ ରଖିପାରିବ ନାହିଁ । ଇତିହାସର କୌଣସିଠାରେ ଯାହା ହୋଇ ନାହିଁ, ତାହା ଏ ଦେଶରେ ବି ହୋଇପାରିବ ନାହିଁ ।

ଏହି ପନ୍ଥାର ମହତ୍ତ୍ୱକୁ ସମ୍ପୂର୍ଣ୍ଣଭାବେ ବୁଝି ଦେଶର ଶିକ୍ଷିତମାନଙ୍କୁ ଆଜି ଏହି ଦାୟିତ୍ୱ ବହନ କରିବାକୁ ପଡ଼ିବ । ଦେଶର ଶିକ୍ଷିତ ଆଜିଯାଏ ଖୁବ୍ ଚିନ୍ତାର କରି ଆସିଚି, ଦିନରାତି ଉପରେ ଉଡ଼ି ଆଦର୍ଶବାଦର ଖୁବ୍ ସ୍ୱପ୍ନ ଦେଖିଚି,—ସମସ୍ତ ଚିନ୍ତାର ଓ ସମସ୍ତ ଆଦର୍ଶବାଦକୁ ଆତ୍ମସ୍ଥ ଓ ନିଜସ୍ୱ କରି ତାକୁ ଆଜି କଠିନ କର୍ମର ଅବତାର ଗ୍ରହଣ କରିବାକୁ ପଡ଼ିବ । ଅନେକ ନେତା, ଅନେକ ପାର୍ଟି ଓ ନେତାଏ ଏଠି କୁବେରର ଭଣ୍ଡାର ଖୋଲିଦେବେ ବୋଲି ବିଶ୍ୱାସ କରୁଥିବା ଅନେକ ପ୍ରକାର ପରନିର୍ଭରତା ଦ୍ୱାରା କେତେ ଦେଶ ଓ କେତେ ଜାଗରଣର ଇତିହାସ ଆଜି ଦୂଷିତ ହୋଇ ପଡ଼ିରହିଚି । ଯେଉଁମାନେ ଆଗ ନେତାହୋଇ ପରେ ଲୋକସାଧାରଣଙ୍କ ଦୁଃଖ ଓ ଅଭାବ ଦୂର କରି-ଦେବାର ଭାଗ କରି ବଡ଼ବଡ଼ ସଭାସମ୍ମିଳନୀ କରନ୍ତି, ସେମାନଙ୍କୁ ମୁଁ ଲୋକ-ସମାଜର ଶତ୍ରୁ ବୋଲି କହିବି । ଯଥାର୍ଥ ଶିକ୍ଷାଦ୍ୱାରା ପ୍ରଥମେ ଲୋକମାନଙ୍କର ଆଖି ଖୋଲିଦେବାକୁ ପଡ଼ିବ, ଏବଂ ଆଖି ଖୋଲିଗଲେ ସେମାନେ ଆପଣାର ନେତା ବାଛିନେବେ । ଆପଣା ସମସ୍ୟାଗୁଡ଼ିକର ଆପେ ସମାଧାନ କରିବେ । ଏହି ଶିକ୍ଷା ସରକାରଙ୍କ ଦ୍ୱାରା ହେବ ନାହିଁ । ଏହି ଦେଶର ସରକାର ହିଁ ତାହାର ପ୍ରମାଣ ଦେଇ ସାରିଲାଣି । ଏଥିଲାଗି ପ୍ରତ୍ୟେକ ପ୍ରଦେଶରେ ଅନ୍ତତଃ ଶହେଜଣ ନିଡ଼ର ଯୁବକ ଦରକାର ।

୮ । ୯ । ୪୮

ମୋର ଶ୍ରେଷ୍ଠ ପ୍ରଣତିଲାଗି କେବଳ ସେହି ଗୋଟିଏ ନମସ୍କାର ଦରକାର ଯେଉଁ ନମସ୍କାର କି ମୋତେ ଶ୍ରାବଣମେଘର ରସଭାର ପରି ସେଇ ଚରଣତଳକୁ ନୁଆଁଇ ଆଣିପାରିବ, ଯେଉଁ ନମସ୍କାର ମୋତେ ଚିପୁଡ଼ି ଚିପୁଡ଼ି ମୋ' ଭିତରର ସଞ୍ଚିତ ସାରଟିକୁ ନିବେଦନ କରିଦେଇ ପାରିବ । ଏହି ନମସ୍କାରରେ କୌଣସି କଳଙ୍କ, କୌଣସି ସଂସ୍କାର, କୌଣସି କାମନା ବା କୌଣସି ଆତୁରତା ନାହିଁ । ସାଗର-ସଲିଳରେ ନିଜକୁ କେବଳ ଲୀନ କରି-ଦେବାର ମହାସମର୍ପଣ ଏଥିରେ ରହିଚି । ଏଥିପୂର୍ବରୁ ମୁଁ ଅଯୋଗ୍ୟ ଭକ୍ତି ଦେଖାଇଚି, ଅନେକ ଅସମ୍ପୂର୍ଣ୍ଣ ନମସ୍କାର କରିଚି, ଭକ୍ତର ଲୋଭଟା ହିଁ ସେଥିରେ ଅତିପ୍ରଧାନ ହୋଇ ରହିଚି । ନମ୍ରତାର ଭାଣ କରି ମୁଁ ଉଚ୍ଚ ଓ ବଡ଼ ହେବାର କାମନା କରିଚି । କିନ୍ତୁ ଆଜି ଶୂନ୍ୟ ତରୀଉପରେ ବସି ଠିକ୍ ଦେଖିପାରୁଚି ଯେ ଏପର୍ଯ୍ୟନ୍ତ ମୁଁ କିଛି ପାଇଲି ନାହିଁ । ମାନସମ୍ମାନ ପାଇବାଲାଗି ମୋର ସମସ୍ତ

ଆଶା ତାହାର ନିଷ୍ଠୁର ତରଙ୍ଗସଘାତରେ ଅପମାନିତ ହୋଇ ଫେରିଆସିଲା ସିନା, ମାତ୍ର ସାଗର ଭିତରେ ଯେଉଁ ପ୍ରସନ୍ନ ପ୍ରଶାନ୍ତି ରହିଚି, ମଣିମୋତିର ଯେଉଁ ଗନ୍ତାଘର ରହିଚି, ମୁଁ ତା'ର କୌଣସି ପରିଚୟ ପାଇଲି ନାହିଁ । ଆଜି ମନ ଗ୍ଭହୁଚି ଯେ ଏତେ ଜାଗାରେ, ଏତେ ରୂପରେ ଏତେ ନମସ୍କାର କରି ମୁଁ ଆଉ ଏତେ ଉପଦେବତାଙ୍କୁ ସନ୍ତୁଷ୍ଟ କରିବାକୁ ଯିବି ନାହିଁ । ମୁଁ ଆପଣାକୁ ସେହି ଗୋଟିଏ ନମସ୍କାର ଲାଗି ନିଜକୁ ଅହରହ ପ୍ରସ୍ତୁତ କରୁଥିବି ।

୯ । ୯ । ୪୮

ମୋର ଶାନ୍ତିନିକେତନ ଆସିବା ତିନିବର୍ଷରୁ ଅଧିକ ହୋଇଗଲା । ଏହାଭିତରେ ଉତ୍ସାହ ଓ ନିରୁତ୍ସାହ ଦେଖାଇଲି ଏଠି ଅନେକ ଘଟଣା ଘଟିଚି । ଆଶ୍ରମର ନାମ ସହିତ ମୁଁ ସାଧାରଣତଃ ଯେଉଁ ବିରାଟ ଆଦର୍ଶ କଳ୍ପନାକୁ ସଂଯୁକ୍ତ କରି ରଖିଥିଲି, ଅନେକ ସମୟରେ ତାହା ଦୋହଲିଗଲାପରି ମନେ ହୋଇଚି । କିନ୍ତୁ ଖାଲି ମଇଳା ପାଖଟାକୁ ଦେଖି ଏଡ଼େବଡ଼ ଐତିହ୍ୟକୁ ଅସ୍ୱୀକାର କରିବସିଲେ କଣ ମୁଁ ଉଚିତ କାର୍ଯ୍ୟ କରିବି ? ଶତ ଅଭାବ ଓ ଦୋଷଦୁଷ୍ଟତା ସତ୍ତ୍ୱେ ଶାନ୍ତିନିକେତନ ମୋ' ଜୀବନରେ ଏକ ସ୍ଥାୟୀ ବିକାଶ-ପର୍ବର ଦ୍ୱାର ଖୋଲିଦେଇଚି । ଏହି ଆଶ୍ରମରେ ବହୁଦୂର ଓ ବହୁଯୁଗବ୍ୟାପୀ ମୁକ୍ତ ବାୟୁର ସଞ୍ଜୀବନ ସ୍ପର୍ଶରେ ଯେପରି ପ୍ରତ୍ୟହ ମୋର ଜୀବନପଦ୍ମରେ ଗୋଟିଏ ଗୋଟିଏ କରି ଦଳମାନ ପ୍ରସ୍ଫୁଟିତ ହୋଇଉଠୁଚି । ଏଠିକାର ବିସ୍ତୃତି ଭିତରେ ମୁଁ ଆପଣାକୁ ବିସ୍ତୃତ କରିଦେଇଚି । ଏଠିକାର ବିଶ୍ୱମେଳା ମୋତେ କ୍ଷୁଦ୍ର ଜ୍ଞାନ ଓ ମାନ ଅଭିମାନର କ୍ଷୁଦ୍ରତାରୁ ବାହାର କରି ଆଣିଚି ।

୧୦ । ୯ । ୪୮

ମୁଁ ମରିବି, କିନ୍ତୁ ଆଜି ମଣିଷକୁ ମରିବା ଦେଖିଲି । ପ୍ରଥମ ଥର ଲାଗି ମଣିଷ ପାଖରେ ତା'ର ଶେଷ ନିଶ୍ୱାସ ଥିବାପର୍ଯ୍ୟନ୍ତ ବସିବାର ସୁଯୋଗ ପାଇଲି । ତାକୁ ବାନ୍ଧି ଶ୍ମଶାନକୁ ନେଇ ପୋଡ଼ିବାର ଅଭିଜ୍ଞତା ଆଜି ପ୍ରଥମ କରି ମିଳିଲା ! କି କଷ୍ଟରେ ମଣିଷ ମରେ ! ଆତ୍ମା ଆଉ ଦେହଭିତରେ କି ଦାରୁଣ ସଘାତ ଗ୍ଭଲେ ଶେଷରେ ସେଇ କେତୋଟି ଘଣ୍ଟା ପାଇଁ ! ମରଣୋନ୍ମୁଖ ମଣିଷର ମୁଖଭଙ୍ଗୀ ଦେଇ ଯେପରି ତାହା ଅତି ସ୍ପଷ୍ଟଭାବରେ ପ୍ରକାଶ ପାଏ ! ସବୁ ଥାଏ, ଜୀବନର ହସ ଯେପରି ସକଳ ଲୋମମୂଳରେ ବିକୀର୍ଣ୍ଣ ହୋଇ ରହିଥାଏ, ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ ଜୀବନସୂଚକ ଏକ ଚଞ୍ଚଳତା ମଧ୍ୟ ଥାଏ, କିନ୍ତୁ ଆତ୍ମାଉପରେ ଦେହମୃତ୍ୟୁର ଜିତାପଟ ହେଲେ ହଠାତ୍ ଏତେ ପରିବର୍ତ୍ତନ ହୁଏ କିପରି ? ଆଗରୁ ଯାହା ମଣିଷ ଥିଲା, ମୁହୂର୍ତ୍ତକ ମଧ୍ୟରେ ତାହା ଗନ୍ଧକ, ଲୌହ ଓ ଯବକ୍ଷାର ପ୍ରଭୃତି ରସାୟନ-ଉପାଦାନର ଏକ ମିଳିତ ମୂର୍ତ୍ତିକେ ପରିଣତ ହୋଇଯାଏ । ଯେପରି ତା'ର ବୋଲି ଆଉ କିଛି କହିବାର

ନଥାଏ । ଆଉ ଯିଏ ଜଣେ ମଣିଷ ବୋଲି ଆପଣାର ପରିଚୟ ଦେଉଥିଲା, ଦେହଭିତରେ ନିଜର ବିଶେଷ ଲୀଳାଟି ରଚିବାକୁ ଓ ନିଜର ବିଚିତ୍ର ସ୍ୱପ୍ନଟି ଦେଖିବାକୁ ଯିଏ ଜଗତକୁ ଆସିଥିଲା, ସିଏ ଯେପରି ଦେହଟାକୁ ମୃତ୍ୟୁହାତକୁ ବଢ଼ାଇଦେଇ ଆଉକୌଣସି ନୂଆ ଘଟର ସନ୍ଧାନରେ ଉଡ଼ିପଳାଏ । ମଣିଷର ମରିଲାବେଳେ ହିଁ ତା'ର ଅସଲ ସତ୍ତା ଓ ଘଟରୂପକୁ ପରସ୍ପରଠୁଁ ଅଲଗା ଅଲଗା କରି ଦେଖିହୁଏ । ମଣିଷ ଯେତେବେଳେ ବଞ୍ଚିଥାଏ, ସେତେବେଳେ ତା'ର ଜୀବନର ଆଲୋକରେ ମାଟିଉପାଦାନରେ ଗଢ଼ା ମଲା ଶରୀରଟା ମଧ୍ୟ ସତେଯେମିତି ଗୋଟାସୁଦ୍ଧା ଜୀବନମୟ ହୋଇ ରହିଥାଏ !

୧୧ । ୯ । ୪୮

ଅନେକ ସମୟରେ ଇଚ୍ଛା ହୁଏ, ପୃଥିବୀଠାରୁ ବିଲକୁଲ ଅଲଗା ହୋଇଯିବି, ଆକୁଳ, ବ୍ୟାକୁଳ ଓ ବିକଳପ୍ରାଣ ହୋଇ ଆଉ ଦ୍ୱାରେ ଦ୍ୱାରେ ସୁପାରିଶ ଓ ଶରଧା ଖୋଜି ବୁଲିବି ନାହିଁ । ନାନା ଘାତ ପ୍ରତିଘାତରେ ଆହତ ଏଥି ମନଟା ବେଳେବେଳେ ସଂସାରଠାରୁ ଅସଂଲଗ୍ନ ରହି ନିଜର ସାନ ସାମ୍ରାଜ୍ୟଟି ଭିତରେ ଆପଣାର ମୁକ୍ତିଲିପ୍‌ସା ଚରିତାର୍ଥ କରିବାକୁ ସତେଯେପରି ବଡ଼ ଉଚ୍ଛନ୍ନ ହୋଇଉଠେ । ଏଡ଼େ ଆପଣାର ଏହି ଜନଜଗତ ଭିତରେ ବେଳେବେଳେ ଆପଣାକୁ ବିଦେଶୀ ପରି କାହିଁକି ମନେହୁଏ ? ଆପଣାର ପ୍ରସାରଣ ପରି ଏହି ସଙ୍କୁଚନ ମଧ୍ୟ ଜୀବନର ଆଉଗୋଟିଏ ପ୍ରବୃତ୍ତି । ବେଳେବେଳେ ଜୀବନ ସବୁରି, ସମସ୍ତ ବିଶ୍ୱସଂସାରର; ପୁଣି ବେଳେବେଳେ ସେ ନିଜର ସାମ୍ରାଜ୍ୟରେ ଏକାଧୀଶ୍ୱର, ଆପଣାର ନୀରବ ଓ ନିରବଚ୍ଛିନ୍ନ ଐକାନ୍ତିକତା ଭିତରେ ସେ ଉନ୍ମୁକ୍ତ ଏବଂ ଉଜ୍ଜ୍ୱଳ । ଦୁଇଟିର ସମନ୍ୱୟ କରିବାକୁ ହେବ । ନିଜକୁ ମୁଁ ଯେପରି ଏହି ବହମାନ ଜୀବନଝରଣାରେ ଭସାଇଦେବି, ନିଜର କେନ୍ଦ୍ରଥାଇ ଶକ୍ତ କରି ନିଜକୁ ଧରିରଖିବି ବି ସେମିତି । Detached Attachment—ନିରାସକ୍ତ ଆସକ୍ତି,—ସ୍ୱାମୀ ବିବେକାନନ୍ଦଙ୍କର ଭାଷାରେ ସମ୍ଭବତଃ ଏହା ହିଁ ଶ୍ରେଷ୍ଠ ସୁଖର ଗୁବିକାଠି ।

୧୨ । ୯ । ୪୮

କାଲି ରାତି ଦଶଟା ପଚିଶି ମିନିଟରେ ହଠାତ୍ ହୃତ୍‌ପିଣ୍ଡ-କ୍ରିୟା ଥମିଯାଇ ଜିନ୍ନାସାହେବଙ୍କର ମୃତ୍ୟୁ ହେଲା । ଅନେକ ମୁସଲମାନଙ୍କର ଚମଦେବତା, ପାକିସ୍ତାନର ଗଭର୍ଣ୍ଣର-ଜେନେରାଲ କ୍ୱାଏଦୀ ଆଜମ୍ ମହମ୍ମଦ ଅଲି ଜିନ୍ନା ।

ମଣିଷ ମଲେ ମନରେ ସ୍ୱତଃ କଷ୍ଟ ହୁଏ,—ପୃଥିବୀରୁ ଗୋଟାଏ ଜୀବନ କମ୍ ହୋଇଗଲା ବୋଲି ଜଣକର ଖେଳରୋଳ ବନ୍ଦ ହୋଇଗଲା ବୋଲି । ଜିନ୍ନା ସାହେବଙ୍କୁ ମୁଁ ମଣିଷ ହିସାବରେ ଦେଖିବାର ସୁଯୋଗ କେବେ ପାଇ ନାହିଁ ।

ଦେଶ ରାଜନୀତିର ପ୍ରତିକ୍ରିୟା ପଡ଼ୁଥିବା ମୋର ମନଟା ତାଙ୍କ ବ୍ୟକ୍ତିତ୍ୱର ଆଘାତ ହିଁ ସହିଚି । ତେଣୁ ବାହାର ମନଟା ଯେତେ ଦବାଇ ରଖିବାକୁ ଚେଷ୍ଟା କରୁଥିଲେ ମଧ୍ୟ ଭିତରୁ ଯେପରି ଏକ ଶୀତଳ ସ୍ୱସ୍ତିର ଭାବ ବାହାରି ଆସୁଚି, ଆଜିକାର ଏହି ମୃତ୍ୟୁରେ ।

ଜିନ୍ନାସାହେବଙ୍କୁ ମୁଁ ହୁଏତ ଭଲକରି ଚିହ୍ନିପାରି ନାହିଁ । ତାଙ୍କୁ ଥରେ ଦେଖିବାର ସୁଯୋଗ ବି ପାଇ ନାହିଁ । ଯଦି ମୁଁ ପାକିସ୍ତାନର ହିନ୍ଦୁବାସିନ୍ଦା ହୋଇଥାନ୍ତି, ତେବେ ହୁଏତ ଜିନ୍ନାସାହେବଙ୍କୁ ନିକଟରୁ ନିରୀଖି ଦେଖିବାର ମନ ପାଇପାରିଥାନ୍ତି !

ମୁସଲମାନଙ୍କ ନେତା,—ଏଇଟା ଜିନ୍ନାସାହେବଙ୍କର ଅସଲ ପରିଚୟ ନୁହେଁ । ତାଠୁଁ ସିଏ ଯଥେଷ୍ଟ ଅଧିକ ଥିଲେ । An obstinate lawyer who dominated the domain of Indian politics, the one who represented the negative force in the Indian political movements,—ଏହି ପରିଚୟରେ ତାଙ୍କୁ ନିଶ୍ଚୟ ଅନେକଦିନ ମନେ ରଖାଯାଇ ପାରିବ । ତାଙ୍କର ଜନ୍ମ ହେବାର ଖୁବ୍ ଆବଶ୍ୟକତା ଥିଲା, ଆପଣାର ଅନମନୀୟତା ଦ୍ୱାରା ରାଜନୀତିର ଅନ୍ୟ ନେତାମାନଙ୍କୁ ସିଏ ଅନେକ ଶିକ୍ଷା ଦେଇଚନ୍ତି । କୋହଳ ହେଲେ ଅଙ୍ଗାରଖଣ୍ଡେ କିପରି ଦୁର୍ଗ ପୋଡ଼ାଇପାରେ, ଏହାର ଐତିହାସିକ ଉଦାହରଣ ଭାବରେ ଜିନ୍ନା କିଛିଦିନ ବଞ୍ଚିରହିବେ ।

ଜିନ୍ନା ମୁସଲମାନଙ୍କୁ ଭଲ ପାଉଥିଲେ, କିନ୍ତୁ ବଞ୍ଚି ରହିଥିଲେ ଆହୁରି ଅନେକ ଜିନିଷ ପାଇଁ । ମୁସଲମାନ ହିଁ ତାଙ୍କର ଏକମାତ୍ର ଭଗବାନ ଥିଲା । କୌଣସି ନା କୌଣସି Symbol ଉପରେ ଭାଗବତ ଆରୋପ କରି ନ ପାରିଲେ କୌଣସି ମଣିଷ ବେଶୀଦିନ ବଞ୍ଚିପାରିବ ନାହିଁ । କିନ୍ତୁ ଜନାବ ଜିନ୍ନାଙ୍କର କଳ୍ପନାରେ ରହିଥିବା ମୁମଲମାନ ଜାତି ଜୀବନ୍ତ ମୁସଲମାନଙ୍କର ସମଷ୍ଟି ନୁହେଁ, ଏହା ହେଉଚି ଏକ abstract symbol । ଏହି ପ୍ରତୀକ ତାଙ୍କୁ ମଣିଷପାଖକୁ ଆପଣାର କରି ଟାଣୁ ନ ଥିଲା, ଆଦିମ ମାନବର Totem ପରି ଏହି ମୁସଲମାନ ଜାତିର abstraction ଟା ହୁଏତ ତାଙ୍କୁ ଚିରଦିନ ପ୍ରେରଣା ଯୋଗାଉଥିଲା । ଜଗତରେ ଆପଣାର ଦୁଃସାହସିକ ପରିଚୟ ଦେବାଲାଗି ବୋଧହୁଏ ସେଇ totem ପଛରେ ବାଇ ହୋଇଥିବାରୁ ଏହି ବିଂଶ ଶତାବ୍ଦୀରେ ମଧ୍ୟ ସେ କହିପାରିଥିଲେ : It is my iron will, not the people, that has brought Pakistan । ଏ ଯୁଗର ମଣିଷକୁ କୁହୁକ ଦେଖାଇ ଶୂନ୍ୟ ଆଦର୍ଶରେ ଉଦ୍‌ବୁଦ୍ଧ କରିବାର ଶେଷ ଦୃଷ୍ଟାନ୍ତ ବୋଧହୁଏ କ୍ୱାଏଦୀ ଆଜମ୍ ଜିନ୍ନାସାହେବ ।

ଅନେକ କହିବେ, ଜିନ୍ନାସାହେବ ତ ନିଜର ସ୍ୱାର୍ଥପାଇଁ କିଛି କରୁ ନ ଥିଲେ । ମୁଁ କହିବି, ତାଙ୍କ ବ୍ୟକ୍ତିତ୍ୱର ଚମତ୍କାର ପରିଚୟ ହେଉଚି ଏଇଠି ।

He was the life incarnate of the other side` of man. ସେକ୍‌ସ୍‌ପିଅର୍‌ଙ୍କ 'ଇୟାଗୋ' ସାଙ୍ଗରେ ତାଙ୍କର ତୁଳନା କରାଯାଇପାରେ । ଭାଙ୍ଗିବା ଓ ଛିନଛତ୍ର କରିବା ତାଙ୍କର ସର୍ବପ୍ରଧାନ ସ୍ୱଭାବ, ଧର୍ମ ବା ଆଦର୍ଶ ଥିଲା । ଏହି Impulse ଟା ହିଁ ତାଙ୍କୁ ଅଧିକରୁ ଅଧିକ ସେପାଖକୁ ଟାଣିନେଇ ପାରୁଥିଲା । ତାଙ୍କର ମୃତ୍ୟୁ ସଫଳ ହେଉ !

୧୩ । ୯ । ୪୮

ଆଜି ଭୋର ଠିକ୍ ଘ୍ରରିଟାବେଳେ ବ୍ରାହ୍ମମୁହୂର୍ତ୍ତରେ ଭାରତରାଷ୍ଟ୍ରର ସୈନ୍ୟବାହିନୀ ହାଇଦ୍ରାବାଦ ଭିତରକୁ ପଶିଲେ । ଭାରତର ଅନ୍ତବୁଜୁଳା ଭିତରେ ଯେଉଁ ଅତ୍ୟାଘ୍ରର ଓ ଅରାଜକତାର ଜୀବାଣୁ ରହି ଆଜିଯାଏ ତାକୁ କାଟିକାଟି ଆସୁଥିଲା, ଆଜି ତାହାର ଅବସାନ ହେବ ।

ଦେଶଭିତରେ ଏହି ଡଣ୍ଡିକଟା ବନ୍ଦ କରିବାଲାଗି ଗାନ୍ଧିଜୀ ଦେଶବାସୀଙ୍କୁ କିପରି ନିର୍ଦ୍ଦେଶ ଦେଇଥାନ୍ତେ କେଜାଣି, ଭୀରୁ ହୋଇ ବସିରହିବାକୁ କଦାପି କହି ନ ଥାନ୍ତେ । ଅହିଂସ ମାର୍ଗରେ ଅତ୍ୟାଘ୍ରରର ଜବାବ ଦେବାଲାଗି ଯିଏ ଯୋଗ୍ୟ ହୋଇ ନାହିଁ, ତାକୁ ହିଂସାମାର୍ଗ ଗ୍ରହଣ କରିବାକୁ ହିଁ ପଡ଼ିବ; କିନ୍ତୁ ସର୍ବୋପରି ଜବାବ ଦେବାକୁ ହିଁ ହେବ । ଅହିଂସାର ପ୍ରଧାନୀ ଗାନ୍ଧୀ ଦେଶକୁ ଅନ୍ତତଃ ଏତିକି ଶିଖାଇ ଦେଇ ଯାଇଚନ୍ତି । ନିଜର କର୍ତ୍ତବ୍ୟପଥରେ କଣ୍ଟକ ଦଳିଲାବେଳେ ଲୁହାପରି ଶକ୍ତ ହେବାକୁ ହେବ, ଭୀମ ପରି ନିର୍ଭୀକ ହେବାକୁ ହେବ । ଏହି ନିର୍ଭୀକତା ସକାଶେ ଭାରତୀୟ ଜାତୀୟ ବାହିନୀ ଓ ତା'ର ନେତାଜୀଙ୍କୁ ଗାନ୍ଧିଜୀ ଦିନେ ଅଭିନନ୍ଦନ ଜଣାଇଥିଲେ, ଏହି ନିର୍ଭୀକ କର୍ତ୍ତବ୍ୟ-ପଣର ଆତ୍ମୋତ୍ସର୍ଗ ଲାଗି ସେ କାଶ୍ମୀରର ଲଢ଼ୁଆ ବୀରମାନଙ୍କୁ ନିଜର ଶ୍ରଦ୍ଧାଞ୍ଜଳି ଦେଇଥିଲେ । ଡରୁଆପାଇଁ ଅହିଂସା ନୁହେଁ, ପ୍ରେମରେ ହୃଦୟ ଜୟ କରିବାର ପୌରୁଷ କେବଳ ସବଳର ଓ ବୀରର । ଗାନ୍ଧିଜୀଙ୍କର ଜୀବନରେ ଏପରି କୌଣସି ଘଟଣା ନାହିଁ, ଯେତେବେଳେ କି ସେ ଅହିଂସାର ଯୋଗ୍ୟ ନ ହୋଇଚି ବୋଲି ମଣିଷକୁ ଭୀରୁପରି ପଛକୁ ହଟିଯିବାକୁ କହିଛନ୍ତି ।

କେବଳ ସେତିକି ନୁହେଁ । ଶସ୍ତା ସ୍ୱାଧୀନତା ପଛକୁ ଶୀତଳ ହାଉଆର ପରିସର ପାଇ ଆମ ଭିତରର ମଣିଷ ଧୀରେ ଧୀରେ ମରି ଯାଉଥିଲା । ନିକିମା ମନପାଇଁ ପ୍ରାଦେଶିକତା, ସ୍ୱାର୍ଥପର ଲାଭାନ୍ୱେଷ ଓ ଆତ୍ମପ୍ରାଧାନ୍ୟ ଲାଗି ଦଳାଚକଟା କରିବା ବ୍ୟତୀତ ଯେପରି ଆମ ପାଖରେ ଆଉ କୌଣସି ରସଦ ନ ଥିଲା । ଆଜି ଏହି ଅବସରରେ ଦେଶର ମନ ପୁଣି ଜାଗ୍ରତ ହେଉ । ଦଳନିର୍ବିଶେଷରେ ସବୁ ନିଷ୍ଠାପର ସେବକଙ୍କୁ ଏହା ଏକତ୍ର କରିଦେଉ ।

୧୪ । ୯ । ୪୮

ଦିନେ ଶାନ୍ତିନିକେତନର ନାମରେ ହିଁ ପ୍ରାଣ ପୂରି ଉଠୁଥିଲା । ଏଠିକାର ମଣିଷମାନେ ମୋତେ ସେହି ବିରାଟ ପ୍ରତିଭାର ବର୍ତ୍ତୀଧାରୀ ପ୍ରତିନିଧି ପରି ମନେହେଉଥିଲେ । କିନ୍ତୁ ତିନିବର୍ଷ ପରେ ଆଜି ଏ କି Disillusionment ! ଦିନୁଁଦିନ ଯେପରି ଏଠିକାର ଜୀବନ ମୋ'ପକ୍ଷରେ ଦୁର୍ବହ ହୋଇଉଠୁଚି । ଏଠିକାର ସଭ୍ୟସଂସ୍କୃତ ସମାଜ ଭିତରୁ ଅପସରି ଯିବାକୁ ମୋର ସ୍ୱାଭିମାନୀ ମନଭିତରୁ କିଏ ଯେପରି ହାହାକାର କରିଉଠୁଚି । ଏପରି କାହିଁକି ହେଲା ? ଖୋଲା ପବନ ଓ ପ୍ରୁଇକ ଭିତରେ ବଢ଼ୁଥିବା ଏହି ଆଶ୍ରମଟିରୁ ମଣିଷ କାହିଁକି କୁଆଡ଼େ ପାଖଛଡ଼ା ହୋଇ ରହିଲା ? ସବୁ ଅଛି, ସେଇପରି ଗୀତ, ବାଦ୍ୟ, ନୃତ୍ୟ, ହସ ଓ ଉତ୍ସବ ସବୁ ରହିଚି; କାନ୍ଥରେ, ବାଡ଼ରେ ଓ କାଗଜ ଉପରେ ଛବିଗୁଡ଼ାକ ଠିକ୍ ସେମିତି ଜଳଜଳ କରି ଝୁଲୁଛନ୍ତି, କିନ୍ତୁ ମଣିଷ କାହିଁ ? ମଣିଷର ଅଭାବରେ ଶାନ୍ତିନିକେତନର ମନ୍ଦିର ଆଜି କେଉଁ ମୋଗଲ ବାଦଶାହର ଦରବାର ପରି ହୀନ ହୋଇପଡ଼ିଚି । ମୋର ଅଶେଷ ଆଶାର ଏହି ଆଶ୍ରମଟି ଆଜି ଯେପରି ବ୍ୟସନବିଳାସୀ ଧନୀସନ୍ତାନର ଆଖଡ଼ାଘର ଛଡ଼ା ଆଉ କିଛି ବୋଲି ମନେହେଉ ନାହିଁ । ଆଶ୍ରମ ସେପାଖରେ ମଣିଷ ଯେତେବେଳେ ଲୁଗାଖଣ୍ଡେ ଦେଇ ନିଜର ମାଆଭଉଣୀଙ୍କୁ ଘୋଡ଼ାଇ ରଖିପାରୁ ନାହିଁ, ଏଠାରେ ସେତିକିବେଳେ ବ୍ୟସନବିଳାସର ଅତିରିକ୍ତ ପରିପାଟୀରେ ଦୈନନ୍ଦିନ ଜୀବନ ବକ୍ର ହେବାରେ ଲାଗିଚି । ସେପାଖରେ ପିଲା ଦୁଧ ପାଉ ନାହିଁ, ରୋଗୀ ଔଷଧ ପାଉ ନାହିଁ, ପରିଶ୍ରମ କରି ମଧ୍ୟ ହଜାରହଜାର ଲୋକଙ୍କର ପେଟ ପୂରୁ ନାହିଁ; ତଥାପି ଏଠି ବିଲାତୀ ଖାଦ୍ୟର ଶ୍ରାଦ୍ଧ ଚାଲିଚି, ଅତିଲୋଲୁପ ସୌନ୍ଦର୍ଯ୍ୟଉପଚାରର କୁତ୍ସୁମଚର୍ଯ୍ୟା ଚାଲିଚି । ଧନୀଘରର ଭଉଣୀ ଏଠି ସବୁ ଭୁଲି, ତା'ର ଦେଶ ଓ ସମାଜର ସବୁ ଅନୁଗତତାକୁ ଭୁଲି ମୁଖପ୍ରସାଧନ ଦ୍ୱାରା ସୁନ୍ଦରର ଉପାସନାଭିସାରରେ ଦିନ କଟାଉଚି । କେଡ଼େ ଅସୁନ୍ଦର ଏହି କୃତ୍ରିମ ସୌନ୍ଦର୍ଯ୍ୟବୋଧ !

୧୫ । ୯ । ୪୮

ଆଜିର ସୂର୍ଯ୍ୟାସ୍ତ ଦେଖି ସାର୍ଥକ ହେଲି । ପଶ୍ଚିମ ବଳୟରେ କଳାମେଘର ସମତଳ ବେଳାଉପରେ ପୂର୍ଣ୍ଣଗୋଲକ ଲାଲ ସୂର୍ଯ୍ୟକୁ ଆଜି ଏହିପରି ପ୍ରଥମଥର ପାଇଁ ଦେଖିଲି । ସକାଳେ ଅନେକଥର ବର୍ତ୍ତୁଳ ସୂର୍ଯ୍ୟୋଦୟ ଦେଖିଚି, କିନ୍ତୁ ସନ୍ଧ୍ୟାମେଘର ସୁଶାନ୍ତ ବକ୍ଷଉପରେ ସୂର୍ଯ୍ୟର ପୂର୍ଣ୍ଣ ବିନ୍ଦୁଟିକୁ ଆଗରୁ ଦେଖିବାର ସୁଯୋଗ କେବେ ହୋଇ ନ ଥିଲା ।

ଲେଖିବି ଲେଖିବି ବୋଲି ଲେଖିବାର ଉପଚାର ପାଉ ନାହିଁ । ଉଦ୍‌ଗାର କରିବାକୁ ତେଣେ ଆତ୍ମା ଗର୍ଜନ କରିଉଠୁଚି, ଅଥଚ ସେହି ଅସ୍ଥିରତାକୁ ପ୍ରକାଶ

କରିବାଲାଗି ମୁଁ କୌଣସି ଭିତ୍ତିଭୂମି ବା କୂଳକିନାରା ପାଉ ନାହିଁ । କାହିଁକି ? ଯେତେବେଳେ ସମସ୍ତେ ଦେବାଲାଗି ପ୍ରସ୍ତୁତ, ସେତେବେଳେ ଖାଲି ମନଟା ଫାଙ୍କିଦେଇ ପବଛଡ଼ା ହୋଇ ଏଣେତେଣେ ଉଡ଼ିବୁଲୁଚି କାହିଁକି ? ଯୁଗନୈରାଶ୍ୟର Shock ଲାଗି ଯେଉଁ ଅସ୍ଥିର କାତରତା ମୋର ମନକୁ ଦୋହଲାଇ ପକାଇଚି, ହୁଏତ ତାହାକୁ ପୂରାପୂରି ହଜମ କରି ଆପଣାର କରିପାରିବାକୁ ମୋର ମନଭିତରେ ଶକ୍ତି ନାହିଁ । ତେଣୁ ଘଟଣାପ୍ରବାହର ଶକ୍ତ ଘୂର୍ଣ୍ଣିଲ୍ୟ ତାକୁ କେବଳ ଆଘାତ ଦେଇ ଆକୁଳ କରି ଚାଲିଯାଉଚି, ସେହି ଘୂର୍ଣ୍ଣିଲ୍ୟରୁ ଶକ୍ତି ଆହରଣ କରି ତାହାକୁ ଆପଣା ପାତ୍ରରୁ ପରିବେଷଣ କରିବାର ଶିକ୍ଷାକୁ ମୋର ମନ ଏପର୍ଯ୍ୟନ୍ତ ଆୟତ୍ତ କରିପାରି ନାହିଁ ।

ଭାବିଭାବି Morbid ହୋଇଯିବି ନାହିଁ ତ ? ଏତେ ଚଞ୍ଚଳ ମୁଁ ବିଧାତାର ବିଧାନ ଓ ନିର୍ଦ୍ଦେଶକୁ ଭୁଲିଯାଉଚି କିପରି ? ମୁଁ କ'ଣ ସତକୁସତ ଏତେ ଦୁର୍ବଳ ? ତାହାର ପରୀକ୍ଷା ଏଇଠୁ ଆରମ୍ଭ ହେଉ !

୧୭ । ୯ । ୪୮

ଆଜି ହାଇଦ୍ରାବାଦର ନିଜାମ ହାରମାନି ଭାରତ ସରକାରଙ୍କର ସର୍ତ୍ତ ସ୍ୱୀକାର କରିନେଲେ । ମୋତିମାଣିକ୍ୟ ଧର୍ମାନ୍ଧତାର ଆସୁରୀବଳ ଉପରେ ଜନବଳର ବିଜୟ ହେଲା । ହଠାତ୍ ସୁନାପୁଅ ହୋଇଯିବାରେ ନିଜାମଙ୍କର କି ଅଭିସନ୍ଧି ରହିଚି କେଜାଣି, ଜନବଳର ବିଜୟ ଯେ ଚରମ ଓ ନିଶ୍ଚିତ, ସ୍ୱାଧୀନ ଭାରତରେ ଆଜି ଏହି ସତ୍ୟର ପ୍ରଥମ ପ୍ରମାଣ ମିଳିଲା ।

ଜହ୍ନରାତିରେ କିଛିସମୟ ପାଇଁ ପୂର୍ବପଲ୍ଲୀର ପଡ଼ିଆକୁ ବୁଲି ଯାଇଥିଲି । କି ବିରାଟ ମୁକ୍ତି ସେହି ନୀରବତା ଭିତରେ ! ବିରାଟ ଆକାଶତଳେ ଆଲୋକ ଓ ଅନ୍ଧକାର, ଜଡ଼ ଓ ଚେତନ, ପ୍ରାଣ ଓ ନିଷ୍ପ୍ରାଣ ସେଠି ଯେପରି ସେହି ଏକ ସୁରରେ ବାଜୁଚି, ସମସ୍ତ ନଦୀର ଚଞ୍ଚଳ ଧାରାଗୁଡ଼ିକ ସେଠି ଯେପରି ସୃଷ୍ଟିର ବିପୁଳ ସରିତସ୍ରୋତରେ ଏକଧାରା ହୋଇ ବହି ଚାଲିଚନ୍ତି । ବିରାମ ନାହିଁ, ବ୍ୟବଧାନ ନାହିଁ, ବିଭକ୍ତ ହୋଇ ରହିବାର ବିରହବ୍ୟଥା ମଧ୍ୟ ନାହିଁ । କୋଉଠି ମୁଁ, କୋଉଠି ମୋର ଅସମଞ୍ଜସ ଦ୍ୱନ୍ଦ୍ୱସବୁ ? ଯାହା ପ୍ରକାଶ କରିବାକୁ ମୁଁ ନିତିଦିନ ଅସ୍ଥିର ହେଉଚି, ଛାତିତଳେ ରହି ଯେଉଁ ଅଗ୍ନିବୀଣା ବିଶ୍ୱବ୍ୟାପୀ ବାଜିଉଠିବ ବୋଲି ମୋତେ ଅହରହ ବିଦୀର୍ଣ୍ଣ କରୁଚି, ସବୁର ପରିପୂର୍ଣ୍ଣତା ଯେପରି ସେଇ କେତୋଟି ମୁହୂର୍ତ୍ତର ଜ୍ୟୋସ୍ନାସଙ୍ଗମ ଭିତରେ ମୁଁ ପାଇଗଲି । ବିଧାତାର କି ସହଜ ସମାଧାନ ! ଶତ ମଣିଷର ଶତ ଦ୍ୱନ୍ଦ୍ୱ ଓ ସଂଶୟର ସମାଧାନ ଲାଗି ବିଧାତା ତା'ର ଅଯରନ୍ତି Laboratory ସଜାଇ ରଖିଚି । ସେଠି ପରଖିବାକୁ ହେଲେ ଶୁଦ୍ଧ ବିଜ୍ଞାନୀର ଆଖି ରହିଥିବା ଦରକାର ।

୧୮ । ୯ । ୪୮

ଆଜି ଖାଲି ବସିବସି ଦି'ପହରଟା କଟିଗଲା । ଭାରି ଗମ୍ଭୀର ହୋଇ ଖାତା ପେନ୍‌ସିଲ୍ ଧରି ବସିଲି । କିନ୍ତୁ ଘଡ଼ିଘଡ଼ି ବିତିଗଲେ ସୁଦ୍ଧା ଧାଡ଼ିଏ ବି କବିତା ଲେଖିପାରିଲି ନାହିଁ । ଆପଣାପ୍ରତି ଖୁବ୍‌ବେଶୀ ବିରକ୍ତି ଆସିଲା ନାହିଁ, ତଥାପି ବିକ୍ଷୁବ୍‌ଧ ମନଟା ଯେପରି ଅନେକ ସମୟଯାଏ ଆପଣା ଅସାମର୍ଥ୍ୟରେ ଚୁପ୍ ହୋଇ ବସିଥିଲା । ମନଭିତରର ଶତଦଳ ପଦ୍ମ ତ ଖୋଲିଲା, କିନ୍ତୁ ଭ୍ରମର ଆପଣାର ଗୁଣୁଗୁଣୁ ଦ୍ୱାରା ସେହି ପଦ୍ମର ରୂପବର୍ଣ୍ଣନ କରିବାକୁ ଏପରି କୁଣ୍ଠିତ କାହିଁକି ? କେଉଁଦିନ ଅତଳତଳର ବାକ୍ୟଭଣ୍ଡାର ଖୋଲିବ, ମୁଁ ଅଦମ୍ୟ ଅଶାନ୍ତିର ସହିତ ଶତମୁଖରେ ଜୀବନର ଗାନ ଉଚ୍ଚାରଣ କରିଉଠିବି ? କଣ ମୋର ଅଭାବ ? ଶବ୍ଦ ? ଭାଷା ? Havelock Ellisଙ୍କର ଗୋଟାଏ ବହିରେ ଆଜି ପଢ଼ିଲି ଯେ ଖାଲି ଶବ୍ଦ ଓ ଭାଷାର ବ୍ୟବହାରରେ ପ୍ରତିଭାର ପରିସ୍ଫୁଟନ ହୁଏ ନାହିଁ । କବିତ୍ୱ ହେଉଚି Personality ବା ସ୍ୱବ୍ୟକ୍ତିତ୍ୱର ଆତ୍ମପ୍ରସାରୀ ପ୍ରତିଭା । ସମୟ ହେଲେ ଆପଣା ସ୍ୱଭାବରେ ତାହା ଦଳ ଖୋଲି ପ୍ରସ୍ଫୁଟିତ ହୋଇଉଠେ । ସେହି ଦଳଟି କଣ ମୋ'ଭିତରେ ଏପର୍ଯ୍ୟନ୍ତ ଖୋଲି ନାହିଁ ?

ହଁ, ଗ୍ଭବି ପାଇଚି । ଆହୁରି ଭିତରକୁ ଯିବାକୁ ହେବ । ପଚିଶି ମନକୁ ଠୁଳ କରି ଓ ସମସ୍ତ ଆଖିକୁ ଏକମୁଖୀ କରି ଜଗତ ଓ ଜୀବନକୁ ଦେଖିବାକୁ ପଡ଼ିବ । ତାହାହେଲେ ଯାଇ ମୁଁ ସବୁରି ଆତ୍ମାଭିତରେ ପ୍ରବେଶ କରିବାର ଅଧିକାରୀ ହୋଇପାରିବି । ତୁ ସ୍ଥିର ହ', ଦଣ୍ଡେ ଠିଆହୋଇ ନିରାଟ ଆଖିରେ ଦେଖ, ତେବେଯାଇ ସମସ୍ତ ଜୀବନ ତୋ' ଆଖିର ଶ୍ରେଷ୍ଠ ରୂପାୟନରେ ଧରାଦେବ । ନିଜକୁ ପ୍ରକାଶ କରିବାକୁ ହେବ । ବିରାଟ ଦରବାରରେ ଠିଆହୋଇ ବିରାଟ ପ୍ରାଣର ଗାଥା ଗାନ କରିବାକୁ ହେବ ।

ରଜ୍ଜବଙ୍କର ଭାଷାରେ ଭାଷା, ବାଣୀ, ରୂପ ଓ ରାଗର ଅଧୀଶ୍ୱର, ଜୀବନର ନିଦାନନିଧି ସେହି ରାଜାର ରାଜାପାଖରେ ମୁଁ ପ୍ରାର୍ଥନା କରୁଚି : "ଗୈବକୋ ରୂପ ଦେ, ମୌନକୋ ଭାଷା ଦେ; ବାଣୀ ଦେ, ବାଣୀ ଦେ, ଦେ ଦେ ପ୍ରକାଶ ଦେ ।" ଆଜି ରାତିର ଜ୍ୟୋସ୍ନାପରି ମୋର ଏହି ନିବେଦନଟି ମଧ୍ୟ ସାର୍ଥକ ହେଉ ।

୧୯ । ୯ । ୪୮

ଶୁଦ୍ଧ ସିଦ୍ଧ ଶରୀର ଭିତରେ ମୁଁ ଆଜି ତାହାରି ଦୀପ୍ତିର ଶାନ୍ତି ଅନୁଭବ କରୁଚି । ତା'ରି ମୂର୍ତ୍ତିର ଅଗ୍ନିଚରଣ ତଳେ ମୋର ସମସ୍ତ ଆପଣାର ଧନ ଆଜି ସମିଧ ହୋଇ ଜଳୁଚି । ଏହି ବିରାଟ ଦହନୋତ୍ସବ ମନଭିତରଟାକୁ ଯେପରି କେତେ ଯୁଗର ଶାନ୍ତିରେ ପରିପୂର୍ଣ୍ଣ କରି ରଖିଚି ।

ପ୍ରତିଦିନର ସୂର୍ଯ୍ୟାସ୍ତ ମୋତେ ଏକାବେଳେକେ କିଣିନେଉଚି, ମନର ସାଗରସଲିଳ ତାହାରି ରଙ୍ଗରେ ରଞ୍ଜିତ ହୋଇଉଠୁଚି । କଳାମେଘର ସେପାଖରେ ମୁଁ ଆଜି ରକ୍ତରଙ୍ଗର କି ଶାନ୍ତ ସିନ୍ଧୁ ଦେଖିବାକୁ ପାଇଲି ! ଦୈନନ୍ଦିନ ଆଖପାଖର ମଣିଷ, ଗଛ, ଡାଳ, ଘର, ଗୃହ, ସବୁ କଳା କରି ଅଗ୍ନିକୁଣ୍ଡରେ ସହି ସୁନାର ଦୀପ୍ତି ଆଜି କି ଅପୂର୍ବ ମହିମାରେ ଜଳୁଥିଲା !

ସୂର୍ଯ୍ୟାସ୍ତ ପରେପରେ ପୂର୍ବଦିଗନ୍ତୁ ଏଣେ ଚନ୍ଦ୍ରୋଦୟ ଦେଖିଲି ଚିକ୍କୁରିତ କଳାମେଘର କୃଷ୍ଣବେଳା ଉପରେ । କଳାର ଭୁରୁ ଖୋଲି ପ୍ରତିପଚନ୍ଦ୍ରର ଆଲୋକ ଆପଣାକୁ ଯେପରି କୋଟି ଆଖିରେ ଧରା ଦେଉଥିଲା ! ସମସ୍ତ ବିଚ୍ଛେଦ ଓ ସମସ୍ତ ବେଦନାକୁ ଧନ୍ୟ କରି ଏମିତି ଦିନେ ମିଳନ ଫୁଟିଉଠେ ହସହସ ଆଲୋକର ଭୁରୁଗାର ପରି ।

ଜ୍ୟୋତ୍ସ୍ନାପଖଳା ପଡ଼ିଆ ଭିତରେ ଆଜି ଅନେକ ଗାନ ଶୁଣିବାକୁ ମିଳିଲା ମୋର ଜଣେ ବନ୍ଧୁଙ୍କଠାରୁ । ଗୀତ ଶୁଣିଲାବେଳେ ଅସଲ 'ମୁଁ'ଟି ଏତେ ସହଜରେ ଇସାରା ଦିଏ କିପରି ? କିଏ ଯେପରି ହଠାତ୍ ସମସ୍ତ ସଙ୍କୋଚ ଏଡ଼ି ଶତକଣ୍ଠରେ ବିଶ୍ୱର ମହାଗାନ ସହିତ ଆପଣାର ତାନଟିକୁ ହଜାଇ ଦେବାଲାଗି ଅତନ୍ଦ୍ର ହୋଇ ଉଠିବସେ । ସିନ୍ଧୁପାରର ପକ୍ଷୀ ପରି ମନଗଗନରେ କିଏ ଯେପରି ଚଞ୍ଚଳ ଡେଣାର ହିନ୍ଦୋଳ ଦେଇ ଗ୍ଳଲିଯାଏ, ଆଉ ଫେରେ ନାହିଁ ।

୨୦ । ୯ । ୪୮

'ଯତ୍ତେ ଗନ୍ଧଂ ପୃଷରମାଭିବେଶ, ତେନ ମାଂ ସୁରଭିଃ କୃଣୁ'—ପୃଷେ ପୃଷେ ଯେଉଁ ଗନ୍ଧର ନିତ୍ୟସ୍ରୋତ ବହୁଚି, ସେହି ଗନ୍ଧରେ ମୋତେ ଗନ୍ଧଯୁକ୍ତ କର । ସମସ୍ତ ସୃଷ୍ଟିର ଧାରାଭିତରେ ମୁଁ ଏକାବେଳେକେ ସହସ୍ରଧାର ହୋଇ ଉଚ୍ଛୁଳିପଡ଼େ, ପ୍ରାଣର ନିଭୃତ ଗୁହାରେ ସମସ୍ତ ବିଶ୍ୱର ଶବ୍ଦସମ୍ପଦ ନିନାଦିତ ହୋଇଉଠୁ । ଏଇ ମୋର ପ୍ରାର୍ଥନା ।

ନାମ, ରୂପ, ଭେକ ଓ ଟେକର କେତେ ବିଭେଦ ସୃଷ୍ଟି କରି ସୃଷ୍ଟିକୁ ଏପରି ଭିନ୍ନଭିନ୍ନ କରିଦେଲା କିଏ ? ପ୍ରତି ଧୂଳିକଣା, ପ୍ରତ୍ୟେକ ଘାସପତ୍ର, ପ୍ରତ୍ୟେକ ଫୁଲ ଓ ପ୍ରତ୍ୟେକ ପ୍ରାଣଭିତରେ ମୁଁ ନିଜର ସ୍ପନ୍ଦନଧ୍ୱନି ଶୁଣିବି କେବେ, କେତେଦୂର ନିର୍ମଳ ଓ ନିର୍ଭୁତା ହୋଇପାରିଲେ ମୋର ସ୍ୱଚ୍ଛ ଅସ୍ତିତ୍ୱ ଭିତରେ ମୁଁ ସକଳ ସୃଷ୍ଟିର ପ୍ରତ୍ୟାରୋପ କରିପାରିବି ?

ହଠାତ୍ ବେଳେବେଳେ ମନଟା ଆପଣା ନିର୍ଜନତାର ମୁକ୍ତ ଆସ୍ୱାଦ ପାଇଁ ବାଡ଼ ଡେଇଁ ବହୁଦୂରକୁ ପଳାଏ । ସେଇ ନିର୍ଜନତା ଯେପରି ସବୁ ଶାନ୍ତି ଦେବ ! କଣ୍ଠ, ରୋଳ ଓ କାରୁଣ୍ୟର ଦୂରାତିଦୂରକୁ ଗ୍ଳଲିଯାଇ ନିର୍ଜନତାର

ନିଚଳ ସୌଧଭିତରେ ମୁଁ ତାହାକୁ ହିଁ ସମ୍ମୋହନ ହୃଦେୟଶ୍ୱର ରୂପେ ପାଇବି, ଦେଖିବି ଆଉ ମଗ୍ନ ହେବି !

ମୁଁ ଅନେକ ପାଇଚି । ନିତି ସୂର୍ଯ୍ୟୋଦୟର ସଙ୍ଗେସଙ୍ଗେ ମୁଁ ତାହାରି ଉଦ୍ୟାନରେ ନିତି ଫଳ ଫଳାଇ ଗ୍ଲଲିଚି । ଜୀବନଟା ବିଫଳ ହୋଇଗଲା ବୋଲି ରୁଗ୍‌ଣ ମନ ନେଇ ରୋଦନ କରିବାର କାତରତା ମୋର ନୁହେଁ । ତାହାରି ପ୍ରଶସ୍ତ ରଜ୍ଜୁବନ୍ଧନରେ ମୁଁ ନିତି ନୂଆ ନୂଆ ମୁକ୍ତିର ରସ ଗ୍ଲଖିଗ୍ଲଖି ଯାଉଚି । ବଞ୍ଚିଥିବା ଯାଏ ଗ୍ଲଖୁଥିବି । ଜୀବନ ବିଫଳ ହେଲାବୋଲି କହିବାର ଦୁର୍ଭାଗ୍ୟ ବୋଧହୁଏ ମରଣ ପୂର୍ବରୁ କଦାପି ଆସିବ ନାହିଁ ।

୨୧ । ୯ । ୪୮

ଆଜି ସକାଳେ ତତ୍ତ୍ୱଶାସ୍ତ୍ରର ପଢ଼ା ଛାଡ଼ି ହଠାତ୍ କବିତା ଲେଖିଲି । ଗୋଟାଏ ଲେଖି ଶାନ୍ତ ହୋଇପାରିଲି ନାହିଁ, ଏକାବେଳେକେ ଦୁଇଟା ବଙ୍ଗଳା କବିତା ଲେଖିଲି,— ଅନେକ ଦିନ ପରେ । ତତ୍ତ୍ୱଶାସ୍ତ୍ରରୁ କବିତା,—କିନ୍ତୁ ଦୁଇଟା ସେଇ ଏକା ଜିନିଷ ନୁହେଁ କି ? ସେଇ ଏକ ମନର ଖେଳା ତ ସମସ୍ତଙ୍କୁ ନେଇ !

ସକାଳେ ହଠାତ୍ କବିତା ଲେଖି ବସିବାର ମନ ମୋତେ କିଏ ଦେଲା ? ଆଜିକାର ଶୁଭ୍ର କିରଣରେ ବ୍ୟାପ୍ତବିସ୍ତୃତ ହୋଇ ବୁଲୁଥିବା ହାଲୁକା ମନ ଯେପରି ହଠାତ୍ ଫୁଟିଉଠିଲା । କେଉଁ ଦୂରଶୂନ୍ୟର ନିଭୃତରେ ଠିଆହୋଇ ମୋର ମନଦେବତା ଏହି ଫୁଲ ଫୁଟିବାର ଆନନ୍ଦକୁ ଆଘ୍ରାଣ କରିବାରେ ଯେପରି ଭାରି ସୁଖ ପାଉଥିଲେ ! କି ବିରାଟ ମୁକ୍ତି !

ହଁ, ମୁଁ ଏଇମିତି ବୁଲିବି, ଖେଳିବି, ଭାସିବି, ମିଶିବି । ଦ୍ୱାରେଦ୍ୱାରେ ଏହିପରି ଅନାହୂତ ଶବ୍ଦର ସରିତ ହୋଇ ମୁଁ ବହିଯିବି । ତା' ନ ହେଲେ ମଇଳାର ହୋଝ ଭାରି ହୋଇ ମନଃ ସରୋବରର ସ୍ୱଚ୍ଛତାଟିକକୁ ଆବୃତ କରି ରଖିବ, ପ୍ରାଣର କଢ଼ଟି ମଉଳନ ପଡ଼ିରହିବ ।

ଆଜି ସଞ୍ଜବେଳେ ଦକ୍ଷିଣଦିଗରୁ ଦୁମ୍‌ଦୁମ୍ ବର୍ଷା ମାଡ଼ିଆସିଲା ଅନ୍ଧ-କାରକୁ ସତର୍କ କରିଦେଇ । ମୋର ନିଦ୍ରାମୁଖୀ ମନ ପୁଣି ଚଞ୍ଚଳ ହୋଇଉଠିଲା । ନା,— ଆଉ ବିଶ୍ରାମ ବା ବିରତି କିଛି ନାହିଁ । ଉପରେ ସିନା ସବୁ ପଥର ପରି ମନେହେଉଚି, କିନ୍ତୁ ସେଠି ପ୍ରାଣେ ପ୍ରାଣେ ଶତକୋଟି ପ୍ରାଣ-ଅଣୁର ଚରଣ-ଚଞ୍ଚଳତା ଲାଗି ରହିଚି । ନାନା ରୂପରେ, ନାନା ଆଲେଖ୍ୟ ଓ ପରିଚ୍ଛଦରେ ସେହି ଶାଶ୍ୱତ ଚଞ୍ଚଳର ନିତ୍ୟୋଦୟ ଗ୍ଲଲିଚି । ପରସ୍ତ ପରେ ପରସ୍ତ ଖୋଲୁଚି, ପଲକକ ପାଇଁ ମଧ୍ୟ ଆଖି ମୁଦି ରଖିବାକୁ ବେଳ କାହିଁ ?

୨୨ । ୯ । ୪୮

ଗଙ୍ଗଶିଉଳୀ ଫୁଲ ସହିତ ପ୍ରାଣକମଳର ବୋଧହୁଏ କୋଉଠି ଗୋଟାଏ ଘନ ସମ୍ପର୍କ ରହିଚି । ସେହି ଫୁଲକୁ ଦେଖିଲେ ମୋର ସମସ୍ତ ଭୁବନ ଯେପରି ତାହାରି ଗନ୍ଧରେ ଗୌରବମୟ ହୋଇ ଉଠିଲାପରି ମନେହୁଏ । ଆଜି ସକାଳେ ମନ୍ଦିରକୁ ଗଲାବେଳେ ମୁଁ ଗୋଟିଏ ଗଙ୍ଗଶିଉଳୀ ଫୁଲକୁ ଘାସଉପରୁ ସାଉଁଟିନେଇ ଆପଣା ବୋତାମ ପାଖରେ ଲଗାଇଥିଲି । କିନ୍ତୁ ଲୋକମେଳ ଭିତରକୁ ଯିବାଆଗରୁ ସରମୀ ମନଟା ଅତି ଅଲକ୍ଷ୍ୟରେ ଫୁଲଟିକୁ କାଢ଼ି ଫୋପାଡ଼ି ଦେଇଥିଲା । ଆଦିମ ବୋଲି କହି ଯେଉଁ ସହଜ ଅନ୍ତରାବେଗଗୁଡ଼ିକୁ ଆମର ସଭ୍ୟ ଓ ସଚେତ ମନ ଉପରକଣ୍ଠା ଦେଇ ଘୁଁପିରଖେ, ହୁଏତ ସେହି ଆବେଗଗୁଡ଼ିକ ହିଁ ହେଉଚି ଆମର ସବୁଠାରୁ ଅଧିକ ଅନ୍ତରଙ୍ଗ ପରିଚୟ । ସେହି ପରିଚୟରେ ଶୁଦ୍ଧ ଓ ନଗ୍ନହୋଇ ଶୋଭା ପାଇବାକୁ ମଣିଷକୁ ପୁଣି କେତେ ଯୁଗ ବୁଲିବାକୁ ହେବ କେଜାଣି ?

'ଉପନ୍ୟାସ'ର ଆଲୋଚନା କରିବାକୁ ଯାଇ ଆଜି ସନ୍ଧ୍ୟାବେଳେ ପୂର୍ବଦିଗରୁ ଭୀଷଣ ବେଗରେ ବୃଷ୍ଟି ମାଡ଼ିଆସିଲା । ତେଣୁ ସେଇଠି ସୁନୀଲଦାଙ୍କ ଘରେ ଅଟକିଗଲି । ତାଙ୍କଠାରୁ ଶାନ୍ତିନିକେତନ ସମ୍ବନ୍ଧରେ ଅନେକ କଥା ଶୁଣିବାକୁ ମିଳିଲା । We have assassinated the great spirit here— ଏବଂ ସେଇ ଭୟ, ସବୁ ବଡ଼ ଅନୁଷ୍ଠାନ ପରି ଏହି ଆଶ୍ରମଟି ମଧ୍ୟ ଆଉକେତେ ବର୍ଷରେ ଭାଙ୍ଗିପଡ଼ିବ । କବିର ମୃତ୍ୟୁ ହେବ କବି—ସତ୍ତ୍ୱାଧିକାରୀର ଅତ୍ୟନ୍ତାଗ୍ରହରେ । କିନ୍ତୁ କଥାବାର୍ତ୍ତା ଶେଷ ହେଲାବେଳକୁ ସନ୍ଧ୍ୟାଛାୟାର ବିରାଟ ଦ୍ରୁମତଳେ ଠିଆହୋଇ ସେ ମୋତେ ଯେଉଁ କଥାପଦକ କହିଲେ, ତାହାକୁ ମୁଁ କଦାପି ଭୁଲିପାରିବି ନାହିଁ : It is great sacrifice that we must require now. Be worthy of the sacrifice, sacrifice first and sacrifice last. ହିଁ ସେଇ sacrifice.

୨୩ । ୯ । ୪୮

ଆଗାମୀ ଭାରତର ପ୍ରତିମୂର୍ତ୍ତ ସୈନିକ ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣ ଆଜି ଶାନ୍ତିନିକେତନର ଛାତ୍ରମାନଙ୍କୁ ଭାଷଣ ଦେଇଥିଲେ । ଗାନ୍ଧିଜୀଙ୍କର ଶୂନ୍ୟ ସିଂହାସନକୁ ହୁଏତ ଏହି ଜୟପ୍ରକାଶ ଦିନେ ପୂର୍ଣ୍ଣ କରିବେ । ଭାରତବର୍ଷର ଅନ୍ୟ ଯେକୌଣସି ନେତାଙ୍କଠାରୁ ଅଧିକଭାବେ ସାଧାରଣ ବଞ୍ଚିତ ଓ ଅବହେଳିତ ବର୍ଗର ଦୁଃଖ, ଦୈନ୍ୟ, ଭାବନା ଓ ଆଶାଆକାଙ୍କ୍ଷାରେ ସମଭାଗୀ ହୋଇଚନ୍ତି ଏହି ଜୟପ୍ରକାଶ ନାରାୟଣ । ଭାରତର ବୃଦ୍ଧ ନେତାମାନେ ଯେତେବେଳେ ଆଜି ସ୍ୱର୍ଗୀୟ ଅତୀତ ଓ ଶୂନ୍ୟମୂଲ୍ୟ ଜାତୀୟତା ଭିତରେ ନୂଆ ସଭ୍ୟତାର ସ୍ୱପ୍ନରେ ଭାସୁଚନ୍ତି, ମାଟିର ବୀର ଜୟପ୍ରକାଶ ସେତେବେଳେ ଏହି ମାଟିର

ମଣିଷକୁ ଉପରକୁ ଉଠାଇବାର ପ୍ରଚଣ୍ଡ ବାଣୀ ବିତରଣ କରୁଚନ୍ତି । ସମସ୍ତଙ୍କର ଆଖି ଯେତେବେଳେ ଉପରକୁ, ଯେତେବେଳେ କୋଠା, ରେଡ଼ିଓ, ମେସିନ୍, ଜାହାଜ ଓ ଫଉଜ ପ୍ରଭୃତିର ଯାଦୁବଇଠା ଧରି ଆମର ଖ୍ୟାତ ଓ ସିଦ୍ଧ ନେତାମାନେ ପୃଥିବୀଦରବାରରେ ଦେଶଲାଗି ନାଆଁ କମାଇବାକୁ ଯାଉଚନ୍ତି, ସେତେବେଳେ ଜୟପ୍ରକାଶ ସାଧାରଣ ଓ ସର୍ବହରା ମଣିଷର ଅନ୍ନମୟ ଜୀବନର କାତର ଆଶାଶୂନ୍ୟ ହାହାକାର ଭିତରେ ସାହସ ଓ ଆଶାର ପୂଣ୍ୟ ନିର୍ମାଣବାଣୀ ଭରି ଦେଉଚନ୍ତି । ସେହି ଜୟପ୍ରକାଶଙ୍କର ଜୟ ହେବ, ଏବଂ ତାଙ୍କରି ଭିତରଦେଇ ମୂକ, ମୂଢ଼ ଓ ମ୍ଳାନ ମଣିଷର ଜୟ ହେବ । ସଭିଙ୍କ ଲାଗି ରାମରାଜ୍ୟ ଆସିବ ।

କି ଧୀର, ସ୍ଥିର ଓ ଶପଥସିଦ୍ଧ ବ୍ୟକ୍ତିତ୍ୱର ପରିଚୟ ମିଳିଲା ! ଉପରେ କେବଳ ସଭ୍ୟ ଓ ସଜ୍ଜିତ ଚମମଣିଷଟିଏ,—କଥାରେ ଉତ୍ତାପ ନାହିଁ, କଣ୍ଠରେ ଗର୍ଜନ ନାହିଁ, ମୁଖମଣ୍ଡଳ ଉପରେ କୌଣସି ଅସ୍ଥିର ଚଞ୍ଚଳତା ମଧ୍ୟ ନାହିଁ । ସତେଅବା ଅର୍ଜୁନ ଲକ୍ଷ୍ୟ ଠିକ୍ କରିସାରି ଶେଷ ବାଣଭେଦ ସକାଶେ ନିଜର ସ୍ଥିରନିଶ୍ଚିତ ଶରକୁ ଧନୁରେ ଚଢ଼ାଇ ସାରିଚି ଏବଂ ଆତ୍ମବିଶ୍ୱାସରେ ପରିପୂର୍ଣ୍ଣ ନିଜର ଅବିଚଳ ମନ ନେଇ ଶରନ୍ୟାସ କରିବାକୁ ଯାଉଚି । ରାମରାଜ୍ୟ ଯେ ଅବଶ୍ୟମ୍ଭାବୀ, ଏକଥା ଜୟପ୍ରକାଶଙ୍କର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଯେପରି ପ୍ରକାଶ କରିଦେଉଚି । ନିଆଁ ଜଳିବାର ପର୍ବ ଶେଷ ହୋଇ ଏଥର ଯେପରି ଦୀପ୍ତି ବିକୀରଣ କରିବାର ଉତ୍ସବ ଚାଲିଚି !

୨୪ । ୯ । ୪୮

ହୃଦୟର କେଉଁ କୋଣରେ ପୁଣି କେଉଁ ଚଞ୍ଚଳ ପୁରୁଷ ଜନ୍ମଗ୍ରହଣ କଲାଣି କି କଣ, ହଠାତ୍ ଆଜି ଦିନମାନଟାଯାକ ମନ ବଡ଼ ଅସନ୍ତୁଷ୍ଟ ଓ ଅସ୍ଥିର ହୋଇ ଉଠିଚି । ଗୋଟାଏ ଭାବ, ଗୋଟାଏ ପ୍ରକାରର ଉପଲବ୍ଧି ପୁରୁଣା ହୋଇ ପୁଣି ଏକ ନୂତନତର ପରିଚୟର ଆକାଙ୍କ୍ଷା ଜଳାଇବାକୁ ପ୍ରାଣଧାତାକୁ ପ୍ରକୃତରେ କେତେ ଅଳ୍ପ ସମୟ ଲାଗେ ! କିନ୍ତୁ ମୁଁ ଏହି ଚଞ୍ଚଳତା ଓ ଅସନ୍ତୋଷକୁ ତାହାର ଦାନ ଓ ଆଜିକାର ଉପହାରରୂପେ ଗ୍ରହଣ କରିନେଇଚି ! ଏହି ଅସନ୍ତୋଷର ଆତ୍ମଦହନ ମୋତେ ଆଉ Morbid କରିପାରିବ ନାହିଁ । ସବୁବେଳେ ଓ ସବୁ କ୍ଷେତ୍ରରେ କେବଳ ତାହାରି ଦୀପ୍ତି ହିଁ ମୋତେ ଉଦ୍ଭାସିତ କରୁଥିବ । ଏହା ହେଉଚି ମୋର ଶ୍ରେଷ୍ଠ ଶିକ୍ଷା, ସାଧନାର ଜଗତରେ ଏହା ହିଁ ମୋର ଉଦୟପଥ ।

ବେଳେବେଳେ ଅନ୍ତର କହୁଚି, ଏହି ଅଳସ ଓ ଶୀତଳ ଜ୍ଞାନସମୀକ୍ଷା ଛାଡ଼ି ମଣିଷସମାଜର ଭିତରକୁ ଚାଲିଯିବି, ମଣିଷ ଭିତରେ ମିଶିଯାଇ ମଣିଷର ହୋଇ ଠିଆହେବି, ମଣିଷର କଥାକୁ ହିଁ ମୁଁ ବିଶ୍ୱଦରବାରରେ ନେଇ ପହଞ୍ଚାଇବି । ମଣିଷ କେତେ ତଳକୁ ଗଲାଣି,—ଆଉ ସହି ହେଉ ନାହିଁ । ଶିକ୍ଷା, ସଭ୍ୟତା ଓ ସ୍ୱାଧୀନତାର ନାମରେ ମଣିଷ ଉପରେ ଏଡ଼େ ଦୁର୍ବ୍ୟବହାର କେବେ ହୋଇଥିଲା

ବୋଲି ମୁଁ ଅନୁମାନ କରିପାରୁ ନାହିଁ । ନାନା ମୁଖା ପିନ୍ଧି ଦିନରାତି ଅପମାନ ଦେବାର ଓ ଦବାଇ ରଖିବାର ଜୟଯାତ୍ରା ଚାଲିଚି, ତଥାପି ପଦେ ପ୍ରତିବାଦ କରିବାକୁ ମଧ୍ୟ ଯେପରି ସବୁରି ମୁଖ ବନ୍ଦ ହୋଇ ରହିଚି । ଏହି ମଣିଷମାନଙ୍କର ଭିତରେ ରହିଥିବା ଭଗବାନ ଆଉ କେବେ ଜାଗିଉଠିବ ? ସମ୍ମାନ, ସମ୍ମାନ–ଆତ୍ମସମ୍ମାନ,–ଏହା ହିଁ ହେଉଚି ଦେଶୋଦ୍ଧାରର ପ୍ରଥମ ଚାବି ।

୨୫ । ୯ । ୪୮

ନା,–କହିବାର ପ୍ରଣାଳୀ ମୁଁ ଏପର୍ଯ୍ୟନ୍ତ ଶିଖିପାରିଲି ନାହିଁ । ବୋଧହୁଏ ଚୁପ୍ ରହିବାର ସାଧନା ମୋର ଏବେ ବି ସଫଳ ହୋଇପାରିଲା ନାହିଁ । ହୃଦୟ ଭିତରେ ଯାହା ମୋତେ ମୁଖର ଓ ମଥିତ କରିଦେଉଚି, ମନ ତାକୁ ଉଚିତ ଭାଷା ଦେଇ ପରିବେଷଣ କରିପାରୁ ନାହିଁ କାହିଁକି ? ହୁଏତ ଯାହା ମୋର ହୃଦୟସାଗରକୁ ଉଚ୍ଛନ୍ନ କରୁଚି, ମୋର ରକ୍ତେରକ୍ତେ ଓ ପ୍ରାଣେପ୍ରାଣେ ତାହାରି ତରଙ୍ଗର ବଇଁଶୀ ଏପର୍ଯ୍ୟନ୍ତ ବାଜି ପାରି ନାହିଁ, ପ୍ରତ୍ୟେକ ଦିନର କର୍ମଭିତରେ ମୁଁ ହୁଏତ ଏପର୍ଯ୍ୟନ୍ତ ବି ତାହାର ଶତଦଳ ଫୁଟାଇ ପାରିଲି ନାହିଁ ।

ନିର୍ଜନତା,–ଆହୁରି ଏକା ଏକା, –ହଠାତ୍ ଯେପରି ଏହି ଲୋକକୋଳାହଳ ମୋତେ ସହିହେଉ ନାହିଁ । ଏଠିକାର ସ୍ନେହ, ଶ୍ରଦ୍ଧା, ପ୍ରୀତି ଓ ପ୍ରଶଂସା ଯେପରି ଅତି ଅପୂର୍ଣ୍ଣ ରହିଯାଉଚି । ଏଠି ଯେପରି ଜଣେ କେହି ମୋର ମନର କଥା ବୁଝିବାକୁ ନାହିଁ । ଏପର୍ଯ୍ୟନ୍ତ ମଧ୍ୟ ପ୍ରାଣକଳିର ପ୍ରଥମ ପାଖୁଡ଼ାରେ ଫୁଟିବାର ଶବ୍ଦ ଭରି ନାହିଁ । ଆହୁରି ଏକାନ୍ତ ଅନ୍ଧକାର, କୃଷ୍ଣରାତିର ଆହୁରି ଏକାକୀ ବାସ ଦରକାର । ତା' ନ ହେଲେ ମୁଁ ମଧୁସଞ୍ଚୟ କରିବି ଆଉ କେତେବେଳେ ? ପ୍ରତ୍ୟେକ କୋଳାହଳ ଓ ଜନସମାଗମର ପଦକ୍ଷେପରେ ଚହଲି ଚହଲି ମୁଁ ଶେଷକୁ ସର୍ବସ୍ୱାନ୍ତ ଓ ବିଶୁଷ୍କ ହୋଇ ବସିବି ନାହିଁ ତ ?

ନା,–ଏଠି ନୁହେଁ । ଏଠୁ ମୁଁ ରବୀନ୍ଦ୍ରନାଥଙ୍କୁ ହରାଇ ବସିଲିଣି । ସେଥିଲାଗି ଏଠିକାର କୌଣସି ବ୍ୟକ୍ତି ମୋତେ ସ୍ଥିର ଓ ଶାନ୍ତ ରଖିପାରୁ ନାହାନ୍ତି । ପୂଜା ଅର୍ଘ୍ୟ ଟେକିଦେଇ ସନ୍ଦେହୀ ମନଟା ହାତର ଅଞ୍ଜଳିକୁ କମ୍ପାଇ ଦେଉଚି । ସମସ୍ତ ଦିନର ସମ୍ଭାର ଯେପରି ବନ୍ଧ୍ୟା ସନ୍ଧ୍ୟାର କୂଳରେ ବ୍ୟର୍ଥ ଯାଉଚି ! ନା–ନା,–ଓଡ଼ିଶାର ନିଭୃତ ଗହଳରେ କେଉଁ ପର୍ବତ, କେଉଁ ନଦୀ ଓ କେଉଁ ଅମାର୍ଜିତ ବିଶୁଦ୍ଧ ମଣିଷସମାଜ ଯେପରି ମୋତେ ଡାକିବାରେ ଲାଗିଚି । ନା,–ଏଠାରେ ଅଧ୍ୟୟନର ଅଭିନୟ କରି ମୁଁ ଆଉ ପ୍ରାଣପକ୍ଷୀର ସ୍ୱଭାବସୁଲଭ ଗୀତବିଳାସକୁ ରୋଧି ରଖିପାରିବି ନାହିଁ । ସେହି ବନେବନେ, ମଣିଷ-ହୃଦୟର ସେହି ଅମଡ଼ା କନ୍ଦରେ କନ୍ଦରେ ମୋତେ ଏକା ଯାତ୍ରୀ ହୋଇ ଯିବାକୁ ପଡ଼ିବ ।

୨୬ । ୯ । ୪୮

ଶୀତର ସକାଳ ଆରମ୍ଭ ହୋଇଚି । ଗତ ଦୁଇବର୍ଷ ହେଲା ଏହି ଶୀତଦିନର ଉଦୟବେଳ ଯେପରି ମୋର ଅତି ଆପଣାର ହୋଇଯାଇଚି । ତାହା ଆହୁରି ସୁନ୍ଦର ହେବ, ନାନା ନୂତନ ରଙ୍ଗରେ ଆହୁରି ରଙ୍ଗୀନ୍ ହୋଇଉଠିବ, ଆହୁରି ପ୍ରକାଶବୈଚିତ୍ର୍ୟରେ ଏଥର ମୋତେ ଆହୁରି ଚଞ୍ଚଳ ଓ ଦୂରବ୍ୟାପୀ କରିଦେବ ।

ଦେଶର ଏହି ଜୀବନ-ପତନ ସମୟରେ କେବଳ ଛାତ୍ର ବା ଯୁବକ ହିଁ ଦେଶକୁ ରଖିପାରିବ । ରାଜନୀତିକ ନେତା ଆଜି ବଡ଼ ବଡ଼ ଯୁଦ୍ଧ, ଦଳ ଓ ଦମନ ନେଇ ବ୍ୟସ୍ତ, ତା'ପରେ ଆଜି କୋଟିକୋଟି ଟଙ୍କାର ଦେ'ଣନେ'ଣ ଋଲିଚି । ଦେଶର ବୃଦ୍ଧ ଓ ପ୍ରବୀଣ କଳାବିତ୍ ଓ ଲେଖକମାନେ ମଧ୍ୟ ବିଜ୍ଞାପନ ଓ ପ୍ରଦର୍ଶନୀ ନେଇ ବ୍ୟସ୍ତ, ଏହି ଦେଶର ଧର୍ମ ଆଜି ଆତ୍ମରକ୍ଷାକାମୀ ଅପରଦଳନର ଷଡ଼ଯନ୍ତ୍ରରେ ଦୂଷିତ । ତେଣୁ ବଞ୍ଚାଇବ କେବଳ ଛାତ୍ରସମାଜ,—ଯାହାର ନା ଅଛି ସ୍ୱାର୍ଥ, ଦେଶ, ଜାତି, ଦଳ ବା କ୍ଷମତାର କୁତ୍ସିତ ଲାଳସା ! ତା'ଭିତରେ ଆଦର୍ଶର ଯେଉଁ ଆକାଂକ୍ଷା ରହିଚି, ତାହା ହିଁ ଦେଶସାରା ନୂତନ ସମିଧରେ ନିଆଁ ଜଳାଇ ସବୁ ମଇଳା ଓ ସେଯୁଗର ସମସ୍ତ ନେତୃତ୍ୱକୁ ପୋଡ଼ିଜାଳି ଦେଇପାରିବ । ପ୍ରତ୍ୟେକ ପ୍ରଦେଶରେ ଅନ୍ତତଃ କୋଡ଼ିଏଜଣ ବାହାରି ଆସନ୍ତୁ, ଯେଉଁମାନେ ଆପଣାକୁ କେନ୍ଦ୍ର କରି କୌଣସି ambition ରଖି ନ ଥିବେ, ସତ୍ୟନିଷ୍ଠ, ନିର୍ଭୀକ ଓ ସବଳ ହୋଇଥିବେ; ଦେଶର କୁରୂପ କଙ୍କାଳଟାକୁ ଠିକ୍ କରି ଚିହ୍ନିଦେବାର ସାହସ ଓ ବଳିଷ୍ଠତା ସେମାନଙ୍କର ରହିଥିବ । ଏହିସବୁ ଦୃଷ୍ଟିରୁ ନିଖିଳ ଭାରତ ଛାତ୍ରକଂଗ୍ରେସର ବହୁବର୍ଷର ସଭାପତି ଶ୍ରୀ ରବୀନ୍ଦ୍ର ବର୍ମାଙ୍କର ବକ୍ତୃତା ଶୁଣି ଆଜି ହତାଶ ହେଲି । ଖାଲି Sentiment; ଦେଶର ହତାଶ ମନକୁ ଆହୁରି ଉଚ୍ଛନ୍ନ ଓ ଆହୁରି ଆନ୍ଦୋଳିତ କରି ଦେଶର କିଛି ହୋଇ ପାରିବ ନାହିଁ । ଶବ୍ଦାଡ଼ମ୍ବରର ଧୂଆଁ ମାରି ଛାତ୍ରମନକୁ ଖାଲି ଆଚ୍ଛନ୍ନ କରି ରଖିଲେ ଏହି ଧୂଆଁ ଦିନେ ଭବିଷ୍ୟ ଦେଶକୁ ବି ଆଚ୍ଛନ୍ନ କରି ପକାଇବ ।

୨୭ । ୯ । ୪୮

ଆଜି ସୂର୍ଯ୍ୟାସ୍ତପରେ ସନ୍ଧ୍ୟା-ଆକାଶକୁ ଅତି ଆପଣାର କରି ପାଇଥିଲି । ଅନ୍ଧାର ଓ ଛାୟାଭିତରେ ତାହାରି ପ୍ରସନ୍ନ ମୁଖ ଦେଖି ହୃଦୟ ତୃପ୍ତ ହୋଇଗଲା । ପଶ୍ଚିମ ଦିଗର ଦୂରଦୂରାନ୍ତ ପରପାରରୁ ସତେଅବା କେଉଁ ମାଆ କ୍ରୋଡ଼ ବିସ୍ତାରିତ ପ୍ରସନ୍ନତା ଦ୍ୱାରା ମୋତେ ଆପଣା ଭିତରକୁ ଡାକି ନେଉଥିଲା ! ସନ୍ଧ୍ୟା ହେଉଚି ଯଥାର୍ଥରେ ଏକ ତପସ୍ୱୀ;—ଆଲୋକବିଦାୟକୁ ସେ ଜଣେ ଖାଣ୍ଟି ତପସ୍ୱୀ ପରି ପ୍ରସନ୍ନ ମନରେ ହିଁ ଗ୍ରହଣ କରିଥାଏ । ଏହି ବିରହର ମହାଜୟ ଗାନ କରି ସନ୍ଧ୍ୟାପକ୍ଷୀ ଗୀତ ଗାଏ, ବନଶାଖାରେ ଫୁଲ ଫୁଟେ ସେହି ସ୍ପନ୍ଦନ

କଠୋର ଲଗ୍ନର ବରଣଗାନ ଗାଇ । ସଞ୍ଚପ୍ରଚ୍ଛଦ ଉପରେ ମୁଁ ଯେତେବେଳେ ଏଇ ଗଛ, ଘର, ନଦୀ, ପାଟ, ପଡ଼ିଆ ଓ ଗହୀରକୁ ଦେଖେ, ସେତେବେଳେ ନିଜେ ନିଜ ଜୀବନର ସମସ୍ତ ଜ୍ୱାଳା ଭୁଲିଯାଏ । ସକଳ ଦହନ ଓ କ୍ଷତ କେଉଁ ବିରାଟ ସର୍ବସମର ଆନନ୍ଦମୟ ପରଶରେ ପରିଶୁଦ୍ଧ ହୋଇଉଠେ ।

ହଁ, କେବଳ ଦହନଦ୍ୱାରା ହିଁ ମୁଁ ଏହିପରି ଗନ୍ଧର ଆଶୀର୍ବାଦ ପାଇପାରିବି । ମୁଁ ନିଜକୁ ପ୍ରକାଶ କରିବି, ନିଜର କହିବା କଥାକୁ ନିଜର ଛାପ ଓ ନିଜର ଗାର ଦେଇ ମଣିଷ ଆଗରେ ବାଢ଼ିଦେବି । ଏଇଥିଲାଗି ହିଁ ଭିତରର ମୁଁ ଏପରି ବିକଳ ହୋଇଉଠୁଚି । ଯାହାକିଛି ଅଶାଶ୍ୱତ ଓ ଅନାମଧେୟ ପ୍ରାଣର ଉତ୍ସମୁଖରେ ଆବର୍ଜନାର ବନ୍ଧ ବାନ୍ଧି ପଥ ରୋଧିଚି, ଆଜି ସବୁ ପ୍ରାଣଦହନର ତରଳ ଅଗ୍ନିସ୍ରୋତରେ ଗଳିତ ପଳିତ ହୋଇ ଭାସିଯାଉ । ନା,—ଆଉ ବେଶୀ ଡେରି ନାହିଁ, ପୂର୍ବଦିଗରେ ମୁଁ ସେହି ଶିଳ୍ପୀର ତୂଳୀ-ସଞ୍ଚଳନ-ଶବ୍ଦ ଶୁଣି ପାରିଲିଣି, ହୃଦୟ-ଶତଦଳର ପ୍ରଥମ ପତ୍ରଟି ହୁଏତ ଫୁଟିବାର ଇସାରା ଦେଲାଣି, ପ୍ରାଣର ଶୁଷ୍କନାଳୀକୁ ଉଛୁଳାଇବା ଲାଗି ଚିର-ଆକାଶରେ ଜାୟତ୍ରୀ ମେଘ ଜମାଟ ବାନ୍ଧିଲାଣି, ଖାଲି ତାହାରି ପବନସ୍ପର୍ଶକୁ ଅପେକ୍ଷା କରିଚି । 'ଗୈବକୋ ରୂପ ଦେ, ମୌନକୋ ଭାଷା ଦେ, ବାଣୀ ଦେ, ବାଣୀ ଦେ, ଦେ ଦେ ପ୍ରକାଶ ଦେ !'

୨୮ । ୯ । ୪୮

ମେଘାବୃତ ଆକାଶ ଭିତରୁ ହଠାତ୍ ଏ ଅସ୍ତଗାମୀ ସୂର୍ଯ୍ୟ ବାହାରି ମୋର ଅନ୍ତରେ ଓ ବାହାରେ ଏପରି ବିହ୍ୱଳତା ସୃଷ୍ଟି କଲା କାହିଁକି ? ପଶ୍ଚିମ ଆକାଶରୁ ପୂର୍ବାକାଶ ପର୍ଯ୍ୟନ୍ତ କେତେକ କ୍ଷଣ ଲାଗି ସମସ୍ତ ଅନ୍ତରୀକ୍ଷଟା ରାତ୍ରିଆଗମର ରକ୍ତରାକ୍ଷୀ ପିନ୍ଧିପକାଇଲା, ମୋହରି ହୃଦୟକୁ କେନ୍ଦ୍ର କରି ସମସ୍ତ ବିଶ୍ୱରେ ଏହି ବିଦାୟମିଳନର ସନ୍ଧିଟା ବ୍ୟାପ୍ତ ଓ ଅଭିବ୍ୟକ୍ତ ହୋଇଉଠିଲା । ମୁଁ ଯେପରି ହଠାତ୍ କୂଳ ପାଇଗଲି, ଅନ୍ଧାର ଭିତରର ଅଡ଼୍ଆଗୁଡ଼ାକ ସତେଅବା କାହାର ଦୃଷ୍ଟିପାତରେ ହଠାତ୍ ସହଜ ଓ ସମାହିତ ହୋଇଗଲା । ମନର ଆକାଶରେ ମୁଁ ସେହି ସୂର୍ଯ୍ୟାସ୍ତ ଉଦ୍ଦେଶ୍ୟରେ ଅଭିନନ୍ଦନ ଜଣାଇଲି ।

ହଁ, ଏଥର ଯେପରି ଖାଲି ଛାଡ଼ିଛାଡ଼ି ଯିବାକୁ ହିଁ ଭଲ ଲାଗୁଚି । ଯେଉଁସବୁ ସାମଗ୍ରୀ ନେଇ ମୁଁ ବହୁତର ବଡ଼ାଇ କରି ପଡ଼ି ରହିଥିଲି, ଆଜି ପରାସମ୍ପଦର ପାଖପାଖକୁ ଆସୁଥିବା ବେଳେ ସେଗୁଡ଼ାକ ଯେପରି ପଛରେ ପକାଇଦେଇ ଆସିବାକୁ ଆଉ କୌଣସି ମାୟା ଲାଗୁ ନାହିଁ । ଯିଏ ମୋ'ସହିତ ଆସିବ ଆସୁ, କିନ୍ତୁ ମୁଁ ଗ୍ଲାନି । ଆଉ ନାନା ଦୁଆରେ ସାଥୀ ସହାୟ ଖୋଜି ବୁଲିବି ନାହିଁ । ମୁଁ ମୋର ଭଗବାନ ପାଖକୁ ବାଟ ପାଇଚି । ଭବିଷ୍ୟତରେ ସକଳ ଦିନର ସନ୍ଧ୍ୟାବେଳ ମୋତେ ସେହି ସଲିଳକୁ ବ୍ୟାପ୍ତ ଓ ପ୍ରକାଶିତ

କରିବାକୁ ହେବ । ଯିଏ ଭୁଲିଚ ଭୁଲିଥା, ଯିଏ ଥଟ୍ଟା କରିବାର କରୁଥା;—ମୁଁ ଗ୍ଲଲିଲି । ତୁମେ କହୁଚ ମଁ ନିଷ୍ଠୁର, କିନ୍ତୁ ମୁଁ ଜାଣେ ଯେ ମୁଁ ପାଗଳ ଛଡ଼ା ଆଉ କିଛି ନୁହେଁ । କାରଣ ମୁଁ ଦେଖିଚି,—ପ୍ରତ୍ୟେକ ମଣିଷର ଅନ୍ତର-ଉହାଡ଼ରେ, ପ୍ରତ୍ୟେକ ସ୍ପନ୍ଦନର ମଧ୍ୟ ଦେଇ ତାକୁ ମୁଁ ଦେଖିବାକୁ ପାଇଚି !

୨୯ । ୯ । ୪୮

କାଲି ରାତିରେ ସୂର୍ଯ୍ୟୋଦୟର ସ୍ୱପ୍ନ ଦେଖିଲି । ସୂର୍ଯ୍ୟୋଦୟ ଦେଖିବାର ବାସନା ପୂର୍ଣ୍ଣ ହେଲା । ମୁଁ ଠିଆ ହୋଇଥିଲି ଏକ ପର୍ବତଶୃଙ୍ଗ ଉପରେ,—ସମ୍ମୁଖସ୍ଥ ଶୂନ୍ୟସମୁଦ୍ର ଭିତରୁ ତା'ର ଢଳଢଳ ବିରାଟ ବିନ୍ଦୁ ଉତ୍‌ଥିତ ହେଲା ସମସ୍ତ ବିଶ୍ୱକୁ ଏକ ରକ୍ତିମ ସିନ୍ଧୁରେ ପ୍ଲାବିତ କରି । ମୋର ମନ ସାର୍ଥକ ହେଲା । ସେଇ ସୂର୍ଯ୍ୟୋଦୟକୁ ହୃଦୟର ପ୍ରଣତି ଜଣାଇଥିଲି ସେହି ସ୍ୱପ୍ନଭିତରେ । ଅତିଥି ଅବେଳରେ ଆସି ଦୂଆରୁ ଫେରିଯାଇ ନାହିଁ, ଏଥିଲାଗି ମଗ୍ନ ମନକୁ ନମସ୍କାର ଜଣାଉଚି ।

ହଠାତ୍ ପ୍ରତ୍ୟେକ ପ୍ରଦେଶର ଲୋକସଙ୍ଗୀତ ଉପରେ ଆଜି କାହିଁକି ବଡ଼ ଖିଆଲ ଉଠିଲା । ମନକୁ ମନ ବଡ଼ ନିଶ୍ଚିତ ଲାଗୁଚି ଯେ ଭାରତର ମୂଳ ସଂସ୍କୃତି ଓ ପ୍ରାଣବିକାଶର ଧାରାଟି ଏକ ବୋଲି ପ୍ରତ୍ୟେକ ପ୍ରଦେଶର ଲୋକ-ସଂଗୀତରୁ ପ୍ରମାଣିତ ହୋଇପାରିବ । ଆଜି ପ୍ରାଦେଶିକ ସଂସ୍କୃତିମାନ ଫଣା ଟେକି ଅସଲ ସଂସ୍କୃତିଟିକୁ ଗିଳିବାକୁ ଯାଉଥିଲା ବେଳେ ଯିଏ ସଂସ୍କୃତି-ଆତ୍ମାର ଏହି ସ୍ୱାଭାବିକ ସଂଗମଟିକୁ ଚିହ୍ନାଇ ଦେଇପାରିବ, ଜାତିର ମନୋମାର୍ଗରେ ସିଏ ନିଶ୍ଚୟ ବଡ଼ ହୋଇ ରହିବ । Folk ବା ଲୋକ କହିଲେ ଆମେ ଯାହା ବୁଝୁ, ତାହାରି ମନର Machinations ସବୁ କାଳରେ ଓ ସବୁ ଦେଶରେ ପ୍ରାୟ ଏକ ଚରିତ୍ରର । ସାମ୍ରାଜ୍ୟ ପରେ ସାମ୍ରାଜ୍ୟ ଭାଙ୍ଗିଚି, ସଂସ୍କୃତି ମରି ସଂସ୍କୃତି ଗଢ଼ିଉଠିଚି, କିନ୍ତୁ ସହସ୍ର ସହସ୍ର ସହଜ ମଣିଷଙ୍କର ସହଜ ପ୍ରାଣର ଅନୁଭୂତି-ଗୁଡ଼ିକ ଏପର୍ଯ୍ୟନ୍ତ ବି ପରସ୍ପରର ମିଳନସୂତ୍ରକୁ ହରାଇ ନାହାନ୍ତି । ସେଠି ଲୀଳାଖୋର ଜୀବନ-ବିଧାୟକ ବଡ଼ ସହଜ ଉପାୟରେ ନିତ୍ୟପ୍ରାଣର ସରସ କମଳ ଫୁଟାଇ ଗ୍ଲଲିଚି । ସେହି କ୍ଷେତ୍ରରୁ ହିଁ ଆଜି ମଣିଷ ଏକ ହୋଇ ଶିଖୁ ! ସେଇ ହସ, କାନ୍ଦ, କାଠିନ୍ୟ ଓ କାରୁଣ୍ୟ, ଉତ୍ସାହ ଓ ଆନନ୍ଦ ପ୍ରଭୃତି ନିର୍ଦ୍ଦୁଷ୍ଟ ମୌଳିକ ଆବେଗର ଚରମ ଓ ଅଭ୍ରାନ୍ତ ପ୍ରକାଶ ହୋଇଚି ପ୍ରତ୍ୟେକ ଦେଶର ଲୋକସଙ୍ଗୀତରେ । ତାହାକୁ ଏକାଠି କରି ଗୁନ୍ଥିବା ହେଉଚି ଏ ଯୁଗର ବଡ଼ ସ୍ରଷ୍ଟାର କାମ ।

୩୦ । ୯ । ୪୮

ସମସ୍ତ ଦିନର ବରଷାଧାରାରେ ନୟନର ଅଞ୍ଜନ ଧୌତ ହୋଇଗଲା । ସମସ୍ତ ଜୀବନକୁ ଆଜି ମୁଁ ମେଘ ସେପାଖର ବିସ୍ମୃତି ଭିତରେ ଭରାଇଦେଲି ।

ସ୍ୱର୍ଗସଞ୍ଚୟର ଦୁଆର ଭାଙ୍ଗି ବୃଷ୍ଟିଜଳ ଝରିବା ସୁରୁ ହେଲେ ଏଣେ ହୃଦୟର ଗୁରିଧାରରୁ ଯେପରି ସହସ୍ର ସ୍ରୋତରେ କାହାର ବର୍ଷଣ ନଇଁଆସେ । ପାଟ ଓ ଘାଟର ଅସ୍ପଷ୍ଟ ଧୂସରତା ପ୍ରସାର ଭିତରେ ଯେପରି ମୁଁ ଏକାବେଳକେ ବ୍ୟାପ୍ତ ହୋଇଯାଏ, ମୋ' ହୃଦୟର ସ୍ରୋତଟି ଅତି ଅଜଣାରେ ଯାଇ ଯେପରି କେଉଁ ନାଳନଈକୁ ପୂର୍ଣ୍ଣ କରିଦିଏ । ସବୁ କାର୍ଯ୍ୟକ୍ଳେଶ ଭୁଲି ଖାଲି ଅନାଇ ରହିବାକୁ ହିଁ ଭାରି ଭଲଲାଗେ ।

ଏହି ଖାତାରେ ରୋଜ ରୋଜ କିଛି ଲେଖିବାଟାକୁ ମୁଁ ଏକ ରୁଟିନ୍ ପରି ନିର୍ଜୀବ ଓ ନିରୁନ୍ମେଷ କରିପକାଉ ନାହି ତ ? ଯେତେବେଳେ ପ୍ରାଣର ଜଳଭଣ୍ଡାର ପରିପୂର୍ଣ୍ଣ ହେବ, ସେତେବେଳେ ତାହା ବଳେ କଥା କହିଉଠିବ; ପ୍ରାଣସ୍ତବକର ରାତ୍ରିପ୍ରାର୍ଥନା ଶେଷ ହେଲେ ବଳେ ସିଏ ଫୁଲ ହୋଇ ଫୁଟି ଉଠିବ । ତାହାର ପ୍ରକାଶକୁ ସମୟ ଓ ଶାସନର ବନ୍ଧା ନିୟମରେ ବାନ୍ଧିରଖି ମୁଁ ତା'ର ପ୍ରାଣସ୍ୱଭାବକୁ ମାରିଦେଉ ନାହିଁ ତ ? ହୁଏତ ସବୁଦିନେ ଲେଖିବା ପଛେ ମୋର ଦରକାର ନାହିଁ, କିନ୍ତୁ ଯେତେବେଳେ ଭିତରପଟୁ ତାଗିଦା ନ ଆସିବ, ସେତେବେଳ ଯାଏ ମୁଁ କଲମ ଧରିବି ବା କାହିଁକି ? ଏହି ଲେଖା ତ କୌଣସି Task-masterର ଜବରଦସ୍ତିରୁ ନୁହେଁ, ଏହା ହେଉଚି କେବଳ ନିଜର ଭାଷାକୁ ନିଜେ ପ୍ରକାଶ ଦେଇ ନିଜେ ମୁଗ୍ଧ ହେବା; ଏବଂ ଏହି ମୁଗ୍ଧ ହେବାଟା ଯେତେ ସହଜ ଓ ସ୍ୱାଭାବିକ ଭାବରେ ହୋଇପାରିବ, ପ୍ରାଣର ଅଭିବ୍ୟକ୍ତିଟି ମଧ୍ୟ ସେତେ ସୁନ୍ଦର ହୋଇ ଉଠିପାରିବ । ଆଜିର ବରଷାଧାରା ପରି ମୋର ଅଶ୍ରୁଜଳ ବି ବିସ୍ତୀର୍ଣ୍ଣ ହୋଇଯାଉ ।

୧ । ୧୦ । ୪୮

ଶାନ୍ତିନିକେତନର ଆଜି ଆନନ୍ଦବଜାର,—ଆନନ୍ଦମୟ ଏହି ସ୍ଥାନରେ ଆଜିର ଆନନ୍ଦବଜାର ଆନନ୍ଦବଜାର ନ କରିଦେଲେ ହେଲା ।

ଆଜି ପ୍ରାଣ ବିଛାଇଦେଇ ଏହି ଆନନ୍ଦବଜାରର ଆନନ୍ଦ ଭିତରେ ମିଶି ଯାଇଥିଲି । ଅନେକ ଖାଇଲି, ଅନେକ ଆନନ୍ଦ ପାଇଲି, ଯତ୍‌କିଞ୍ଚିତ୍ ଦେଲି ମଧ୍ୟ ।

୪ । ୧୦ । ୪୮

ଗତ ଦୁଇତାରିଖ ଦିନ ଶାନ୍ତିନିକେତନରେ ଯଥାନୁଷ୍ଠାନରେ ଗାନ୍ଧୀଜୟନ୍ତୀ ପାଳିତ ହୋଇଥିଲା । କିଏ ଗାଇଲେ, କିଏ ଗୋଡ଼ତଳେ ପଡ଼ି ପାଦୁକ ପାଇଲେ, କିଏ ସ୍ତୁତି କଲେ, କିଏ ବା ସ୍ୱପ୍ନ ଦେଖିଲେ । କିନ୍ତୁ ଗାନ୍ଧୀର ମଲାକଥା ସ୍ମରଣ କରି ମୁଁ ଆଜି ତା' ଜନ୍ମବାସରର ଯୋଗ୍ୟ ହେବାକୁ ଯାଉଚି । ଗାନ୍ଧୀ ଗୁଜରାଟର ନୁହେଁ, ଗାନ୍ଧୀ ଭାରତର ବା ପୃଥିବୀର ମଧ୍ୟ ନୁହେଁ । ସିଏଖାଲି ବିଂଶଶତାବ୍ଦୀର ଭେକଧାରୀ କଂଗ୍ରେସୀ ନେତାମାନଙ୍କର ପଥପ୍ରଦର୍ଶକ

ନୁହେଁ । ଗାନ୍ଧୀ ହେଉଚି ମାଟିର ମଣିଷ ପାଖକୁ ଦିବ୍ୟଲୋକରୁ ଆସୁଥିବା ସନାତନ ଚିଠିର ଗୋଟିଏ ପୃଷ୍ଠା ମାତ୍ର । ଏହି ଗୋଟିଏ ପୃଷ୍ଠାକୁ ଆମେ ହୁଏତ ହିନ୍ଦୁ ବା ମୁସଲମାନର ମୁଖା ପିନ୍ଧି ଚିରି ନଷ୍ଟ କରିଦେବା, କିନ୍ତୁ କାଲି ସେ ସମସ୍ତ ରୂପ ଓ ଆଲୋକର ବୈଭବ ନେଇ ପରପୃଷ୍ଠାରେ ଉକୁଟି ଉଠିବ । ଗାନ୍ଧୀ ମରିବ ନାହିଁ, ଗାନ୍ଧୀ କେବେ ଜନ୍ମ ହୋଇ ନ ଥିଲା । ଏହା ହେଉଚି ଏକ ଶାଶ୍ୱତ କିରଣଶରର ଯୁଗାୟତନ ବ୍ୟକ୍ତିପ୍ରକାଶ । ଆମେ ତାହାର ଯେତିକି ଦେଖିଲୁ, କେବଳ ସେତିକି ଦେଖି ହିଁ ତା'ର ବିଗ୍ରହ କଲୁ । ପ୍ରାଗୈତିହାସିକ ଯୁଗର କଥା ଛାଡ଼ିଦିଅ,—ଯିଏ ପ୍ରଥମେ ଜଙ୍ଗଲ ଭିତରେ ନିଆଁ ଜାଳିଥିବ, ମଣିଷ ମଣିଷ ମିଶାଇ ଦଳ ଗଢ଼ିବାର ସ୍ୱପ୍ନ ଯିଏ ପ୍ରଥମେ ଦେଖିଥିବ, ତାହାକୁ ହୁଏତ କି ନୃଶଂସ ମରଣର ସମ୍ମୁଖୀନ ହେବାକୁ ପଡ଼ିଥିବ, ସେକଥା ସେହି ପ୍ରାକ୍ ଇତିହାସ ହିଁ ଜାଣେ । ତା'ପରେ ଆମେ ଜାଣିବା ଭିତରେ ପ୍ରଥମ ହେଉଚନ୍ତି ସକ୍ରେଟିସ୍, ତା'ପରେ ଯୀଶୁ, ବୁଦ୍ଧଦେବ, ଓ ତା'ପରେ ଗାନ୍ଧୀ । କିଏ ବିଷ ପିଇଚି, କିଏ ଆପଣା ହୃଦୟର ପ୍ରତ୍ୟେକ ଗଣ୍ଠି ଓ ଅନୁଗଣ୍ଠିରେ କଣ୍ଟା ପିଟା ହେବାର ତୀବ୍ର ଜ୍ୱାଳା ଅନୁଭବ କରିଚି, କିଏ ହୁଏତ ବନ୍ଧୁକଗୁଳିରେ ମରିଚି । କିନ୍ତୁ ସବୁରି ଭିତରେ ସେହି ଆଲୋକ ପରିପୂର୍ଣ୍ଣ ଓ ମୂର୍ତ୍ତିମନ୍ତ ହୋଇ ଉଠିଥିଲା, ପ୍ରତ୍ୟେକର ଭିତରେ ରହିଥିବା ଚକ୍ଷୁ ଅନ୍ତର୍ଗତ ସମସ୍ତ ସତ୍ୟ ଓ ସାଧନାସନ୍ଦେଶକୁ ଏକୀଭୂତ ଗୋଟିଏ ଶର କରି ଆପଣାର ଜୀବନ ମଧ୍ୟଦେଇ ସାରା ଜଗତ ଉପରେ ପ୍ରତିଫଳିତ କରାଇଥିଲା । ଖାଲି ଗାନ୍ଧୀ ନୁହେଁ, ଖାଲି ଯୀଶୁ, ବୁଦ୍ଧ ବା ସକ୍ରେଟିସ୍ ନୁହେଁ, ହୁଏତ ଏହି ସୃଷ୍ଟିର ନିତ୍ୟପ୍ରୟାସୀ ସତ୍ତାର ପରଖଘରେ ତୁ ଓ ମୁଁ ମଧ୍ୟ ସେହି ଆଲୋକକୁ ବହନ କରିଆସିଚୁ । କେବଳ ଯିଏ ସାଧନା ଓ ସମର୍ପଣର ଯୋଗ୍ୟ ହୋଇପାରୁଚି, ସେହି ଶତାବ୍ଦୀର ଶ୍ରେଷ୍ଠ ପୁରୁଷରୂପେ ଅବତୀର୍ଣ୍ଣ ହେଉଚି, କେବଳ ସେଇ ମଣିଷକୁ ଆଗେଇ ନେଇଯାଉଚି ।

ସେହି ଯୁଗଚକ୍ଷୁ ଗୁରୁର ସମସ୍ତ ଜୀବନାଦର୍ଶକୁ କଳୁଷିତ ଓ କଳଙ୍କିତ କରି ଯିଏ ବଡ଼ ସଭାରେ, ସରକାରୀ ବ୍ୟାଣ୍ଡ ଓ ସଲାମର ଯୋଗାଡ଼ କରି ଆପଣାର କର୍ତ୍ତବ୍ୟ ସମାପନ କରୁଚି, ଆଜି ତାହାରି ବିରୁଦ୍ଧରେ ମୋ' ଅନ୍ତର୍ବିଦ୍ରୋହର ଅଗ୍ନିଶାଖା ଜଳି ଉଠିଲାଣି । ସେମାନେ ସମସ୍ତେ ଗାନ୍ଧୀକୁ ଛୋଟ କରୁଚନ୍ତି, କିଛିଦିନ ପରେ ତାହାର ପ୍ରେରଣାଟିକକ ମଧ୍ୟ ମାରିଦେବାର ଷଡ଼ଯନ୍ତ୍ର କରୁଚନ୍ତି । ସେ ପୂଜା ମୋର ନୁହେଁ । ଯେଉଁ ଶାଶ୍ୱତ ସୃଷ୍ଟିତୀରର ଆଭାସଟିକକ ମୁଁ ଗାନ୍ଧୀର ଜୀବନ ଭିତରେ ପାଇଚି, ଆଜି ମୋତେ ସେହି ତୀରର ସନ୍ଧାନରେ ବାହାରି ଯିବାକୁ ପଡ଼ିବ । ଆପଣାକୁ ମୁଁ ଆହୁରି ପୋଡ଼ିବି, ମଣିଷ ତୀର୍ଥର ପାବଳ ଉପରେ ମୁଁ ଆପଣାକୁ ନଗ୍ନ ଓ ନିର୍ମଳ କରି ଠିଆକରାଇବି । ଯେଉଁ ଗାନ୍ଧୀକୁ କାଲି ଅମଣିଷ ଓ ଅନ୍ଧଭକ୍ତ ଅଭକ୍ତମାନେ ମାରିଦେଲେ, ସେହି ଗାନ୍ଧୀକୁ ମୁଁ ବଞ୍ଚାଇ ରଖିବି,—ପ୍ରଥମେ ନିଜର ଅନ୍ତର

ଭିତରେ, ନିଜର ଆଗାମୀ ଦିନର ସମ୍ଭାବନା ଭିତରେ । ତାକୁ ମୁଁ ଜ୍ୟୋତିସ୍ୱରୂପ କରି ଦେଖିଚି, ସେ ନିଭିବାର ନୁହେଁ, ତେଲଚିକିଟା ମଇଳା ଦୀପଭିତରେ ସିଏ ଅପମାନିତ ହେବାର ନୁହେଁ । ତା'ର ପୂଜା ହେଉଚି ତା'ର ଲାଞ୍ଛନା । ସେହି ଆଲୋକର ସମ୍ମୁଖରେ ମୁଁ ବୀର-ବିସ୍ତାରିତ ବକ୍ଷରେ ଠିଆହେବି । ଆଜି ଅସ୍ଥାୟୀ ମରଣ ଯାହାକୁ ଲୁଗ୍ରଇ ରଖି ସାରା ସଂସାରର ସାଧନାକୁ ପରୀକ୍ଷା କରୁଚି, ସେଇ ମରଣକୁ ମୁଁ ଜୟ କରିବି ସ୍ଥାୟୀ ଜୀବନର ବିରାଟ ବାର୍ତ୍ତା ବହନ କରି । ସେଇ ଆଲୋକକୁ,—ଗାନ୍ଧୀକୁ,—ମୁଁ ହଜମ କରିବି ।

ତିନିତାରିଖ ଦିନ ରାତିରେ ଶାନ୍ତିନିକେତନ ଛାଡ଼ିଲି । ଆସିବାର ଆୟୋଜନ ଓ ତରତରରେ ଏହି ଖାତାରେ ମୋର ଦୈନନ୍ଦିନ ଲିପିସ୍ଥୀକାରକୁ ଆବଦ୍ଧ କରି ରଖିବାକୁ ସମୟ ଓ ସ୍ଥିର ମନ ମୁଁ ପାଇ ନ ଥିଲି । ଗଲା କେତେଦିନ ତଳେ ଆଶ୍ରମରେ ଯେଉଁ ବିଚିତ୍ର ରୂପାୟନ-ଅନୁଷ୍ଠାନଟି ହୋଇଥିଲା, ସେଥିରେ ଗୋଟିଏ ପିଲା ଓଡ଼ିଆ ସାଜିଥିଲା । ବେଶଟିକୁ ଓଡ଼ିଆ କୁଲିର ବେଶ ବୋଲି କହିଥିଲେ ମୁଁ କୌଣସି ଆପତ୍ତି କରି ନ ଥାନ୍ତି, କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ମଣିଷ ପରି ମଣିଷକୁ ଏହିପରି ଜାତିମାର୍କା କରି ଦେଖିବାଟା ଶାନ୍ତିନିକେତନରେ ଥାଇ ମୁଁ ଆଦୌ ପସନ୍ଦ କରିପାରି ନ ଥିଲି । କୁଲି, ଗରିବ କିମ୍ବା ଭିକାରୀ,—ସେ ଓଡ଼ିଆ, ବଙ୍ଗାଳୀ, ବିହାରୀ ବା ମାନ୍ଦ୍ରାଜୀ ଯେଉଁ ଜାତିର ହୋଇଥାଉ ପଛକେ, ତାହାର ରୂପ, ଭେକ ଓ ଜୀବନଧାରଣ ସବୁଠି ସମାନଭାବରେ ମଳିନ, ସମାନ ଭାବରେ ଦୟନୀୟ । ପ୍ରଦେଶର ବଡ଼ଲୋକୀ ସଂସ୍କୃତିଟାକୁ ଆବୋରି ଧରି ସଭ୍ୟତାର ଡିଣ୍ଡିମ ପିଟିବାକୁ ବଙ୍ଗଳାରେ ଯେମିତି ଅନେକ ବିଳାସୀ କଳା-ସାହିତ୍ୟସେବୀ, ନେତା, ଦେଶଭକ୍ତ ବଡ଼ଲୋକ ଓ କୁଲି-ଚରେଇବାବାଲା ଅଛନ୍ତି ଓଡ଼ିଶାରେ ମଧ୍ୟ ସେହିଭଳି ରହିଚନ୍ତି । ନୂତନ ସରକାରଙ୍କର ଅନୁଗ୍ରହୀ ଯୋଜନା ଫଳବତୀ ହୋଇ ଦେଶରେ ଆହୁରି କଳ ବସିଲେ, ଆହୁରି ଖଜଣା-ଟଙ୍କା ବିଆହେଲେ ଅଳ୍ପଦିନରେ ନାଳିଧୂଳି କଟକ ସହରରେ ମଧ୍ୟ ଚକ୍ଷୁଲୋଭୀ ଚୌରଙ୍ଗୀ ଓ 'ନିଉ ମାର୍କେଟ୍'ର ଆଡ୍ଡା ଜମିଯିବ । ଓଡ଼ିଆର ବିଳାସସଂସ୍କୃତି ବି ଓଡ଼ିଶା ବାହାରେ ନାଆଁ କମାଇବ । ଏ ଯୁଗର ସଂସ୍କୃତି ବା ଜୀବନପ୍ରଣାଳୀ ପ୍ରତ୍ୟେକ ଦେଶରେ ଦୁଇଟି,—ଗୋଟିଏ ମ୍ଲେଚ୍ଛର ସଂସ୍କୃତି ଓ ଆଉଗୋଟିଏ ହେଉଚି ବିଳାସୀର ଅପୂର୍ଣ୍ଣବୋଧ ମାହାଳିଆ ସଉକୀ ।

ଚାରି ତାରିଖ ଦିନ ହାବଡ଼ା ଷ୍ଟେସନରେ ଓଡ଼ିଆ କୁଲିର ଏକ ପୂର୍ଣ୍ଣରୂପ ଯୂଥ ଦେଖିବାକୁ ପାଇଲି । ଟିକେଟ କିଣିଲାବେଳେ, ଗାଡ଼ିରେ ଚଢ଼ିଲାବେଳେ ଜାତିତ୍ୱ ଓ ମଣିଷପଣିଆର କି ନୈରାଶ୍ୟଜନକ ପରିଚୟ ସେମାନେ ଦେଉ ନ ଥିଲେ ! ଏଇମାନଙ୍କ ଜାତିର କେତେକ ଲୋକ ପୁଣି ରାମଚନ୍ଦ୍ର-ଭବନର କୋଠାଘରେ ବସି କୋଣାର୍କ ଆମର, ଭୁବନେଶ୍ୱର ଆମର ବା ଜୟଦେବ

ଆମର ବୋଲି କହି ଗୌରବ କରନ୍ତି ! କାହିଁକି ? କାହିଁକି ଏ ହୀନ ବେଶ, ଏ ହୀନ ମନ; ଏ ଭୟ ଆଉ କେତେ ଦିନ ? କେବଳ ଆର୍ଥିକ ଦାରିଦ୍ର୍ୟ ନୁହେଁ, ଏହି ହୀନତା ପଛରେ ଯେପରି ଆହୁରି ଅନେକ କାରଣ ରହିଚି । ଯଦି ମନଟା ପ୍ରକୃତରେ ଧନୀ ହୋଇଥାନ୍ତା, ସେଇ ମଇଳା ଲୁଗା ଓ ପଖଳା ପେଟତଳୁ ଯଦି ଆଗାମୀ ଶପଥରୂପୀ ଭଗବାନର ଶକ୍ତ ରୂପ ଫୁଟି ଉଠିପାରୁଥାନ୍ତା ! ନା,-ଆହୁରି କିଛି ଏମାନଙ୍କର ଜନ୍ମଗତ ଓ ଦେହଗତ ହୋଇଯାଇଚି ଯାହାକି ଏମାନଙ୍କୁ ଚିର ଭୟ ଓ ନ୍ୟୂନମନତାର ଶିକାର କରି ରଖିଚି ! ମୁଣ୍ଡ ଟେକି, ମୁହଁ ଫିଟାଇ ଓ ସବଳ ଭାଷାରେ କଥା କହି ଆପଣାର ଅସ୍ତିତ୍ୱଟିକକ ଜଣାଇ-ବାକୁ ମଧ୍ୟ ଯେପରି ଏମାନେ ଅସମର୍ଥ ହୋଇ ରହିଚନ୍ତି ! ଓଡ଼ିଆ ଜାତିର, ଏହି ଆହତ ମଣିଷଗୋଷ୍ଠୀର ଯିଏ ସେବା କରିବାକୁ ମଧ୍ୟ ଆଜି ଯିଏ ମନରେ ଭାବୁଚି, ତାକୁ ଆଜି ଅନେକ ଭିତରକୁ ଯିବାକୁ ପଡ଼ିବ । ଅନ୍ତର ଗଭୀରକୁ ଭେଦ କରି ଆଜି ତାହାକୁ ମନୋମୟ ସ୍ତରରେ ସଂସ୍କାରଗ୍ରନ୍ଥିର ସନ୍ଧାନ କରିବାକୁ ହେବ । ଦୀନ ଆତ୍ମାର ଉଦୟସଙ୍ଗୀ ରୂପେ ତାକୁ ସେଇଠୁ ଜୀବନର ସ୍ତରକୁ ଆସିବାକୁ ହେବ । ଆଜି ଯିଏ ଯେଉଁଠି 'ଉତ୍କଳ, ଉତ୍କଳ' ବୋଲି ଚିତ୍କାର କରୁଚ, ତୁମକୁ ମୁଁ ଏହିମାନଙ୍କ ଭିତରେ ପ୍ରବେଶ କରିବାଲାଗି ଆହ୍ୱାନ କରୁଚି । ଆଜି ଜାତିସୃଷ୍ଟିର କାର୍ଯ୍ୟ ଏହି ଭିତରୁ ହିଁ ଆରମ୍ଭ ହେଉ । ଯେଉଁ ଭୟ, ଭୀତି ଓ ନ୍ୟୂନତାର ମଳିପାହାଡ଼ ବସି ଆତ୍ମାର ଗତିକୁ ରୋଧିରଖିଚି, ଆଜି ସେଇଠି ସଙ୍ଗଠନର ପ୍ରଥମ ଆଘାତ ଆରମ୍ଭ ହେଉ । ଓଡ଼ିଆ ମରିଗଲାଣି, ବର୍ତ୍ତମାନ କେବଳ ତା'ର ହୀନ ଭେକ ଧାରଣ କରି ପ୍ରେତଟା ହିଁ ବଞ୍ଚିରହିଚି । ସେହି ପ୍ରେତକୁ ଆଜି ଆତ୍ମସମ୍ମାନ ଓ ସ୍ୱପ୍ନଦୃଷ୍ଟିର ନୂତନ ଦୀକ୍ଷା ଦେବାକୁ ହେବ, ପଙ୍କିଳ କର୍ଦ୍ଦମାଶୟ ଭିତରୁ ଅନନ୍ତ ଆକାଶର ଉଦାରତା ଆଡ଼କୁ ତା'ର ଦୃଷ୍ଟିକୁ ଉତ୍ତୋଳିତ କରିବାକୁ ହେବ । ନହେଲେ ନିସ୍ତାର ନାହିଁ ।

ଗାନ୍ଧୀଜୟନ୍ତୀ ଉପଲକ୍ଷେ ଏଥର ଯେତେ ନେତା ଯେଉଁଠି ଭାଷଣ ଦେଇଥିଲେ, ସବୁଠାରୁ ଭଲ ଲାଗିଲା ଭାରତର ବଡ଼ଲାଟ ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କର ଭାଷଣଟି । ଗାନ୍ଧୀଙ୍କୁ ଦେବତା କରି ନ ଦେଇ ମାନବିକ ଚରମ ଉତ୍କର୍ଷର ପ୍ରତୀକରୂପେ ତାଙ୍କୁ ଦେଖିବାଲାଗି ସେ ସମସ୍ତଙ୍କୁ ଆହ୍ୱାନ ଜଣାଇଥିଲେ । ମଣିଷର ଶ୍ରେଷ୍ଠ ପରିଣତି ହିସାବରେ ଗାନ୍ଧୀଙ୍କୁ ଦେଖୁଥିବା ଲୋକମାନଙ୍କ ଭିତରୁ ମୁଁ ଆଜି ବଡ଼ଲାଟଙ୍କ ଏହି ଭାଷଣକୁ ଅଭିନନ୍ଦନ ଜଣାଉଚି । କିନ୍ତୁ ସେ ଦେଶକୁ ଯାହା କହିଲେ, ଆଜି ସିଏ ନିଜେ ଓ ତାଙ୍କ ସରକାର ମଧ୍ୟ ତାହାକୁ ଗ୍ରହଣ କରନ୍ତୁ, ଦେଶକୁ ନୂତନ ବାଟ ଦେଖାନ୍ତୁ, ବିସ୍ମୃତ ଗାନ୍ଧୀସ୍ୱପ୍ନକୁ ଏହି ଦେଶର ଚିନ୍ତାଧାରା ଭିତରକୁ ଫେରାଇ ନେଇ ଆସନ୍ତୁ ।

୬ । ୧୦ । ୪୮

କାଲି ମାନ୍ୟବର ଲାଟସାହେବ ଓ ମୁଖ୍ୟ-ମନ୍ତ୍ରୀ ଟାଉନହଲ୍ ପଡ଼ିଆରେ ବୃକ୍ଷରୋପଣ କଲେ । ବୃକ୍ଷରୋପଣର ସମସ୍ତ ଅନୁଷ୍ଠାନାଙ୍ଗଟିକୁ ଲକ୍ଷ୍ୟ କଲେ ସ୍ଥାନଟି ଗୋଟିଏ Exhibition ପରି ମନେହେଉଥିଲା ।

ଅନେକ ଦିନ ପରେ ରାମଚନ୍ଦ୍ରଭବନରେ ଖଣ୍ଡେ ସାହିତ୍ୟସଭା ଦେଖିବାକୁ ପାଇଲି । ଛାତ୍ରସମାଜ ତରଫରୁ କବି ଦୀନକୃଷ୍ଣଙ୍କର ଶ୍ରାଦ୍ଧାହ ପାଳିବାଲାଗି ଏହି ସଭା ଡକାଯାଇଥିଲା । ସଭାପତି ହୋଇଥିଲେ ବୀତପ୍ରତିଭ ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକ । ସେ ଓ ଭିକାରୀବାବୁ ବକ୍ତୃତା ଦେଇଥିଲେ, ତାହାଛଡ଼ା ତିନିଜଣ ଛାତ୍ର ମଧ୍ୟ । ଛାତ୍ରମାନଙ୍କର ଗର୍ଜନ ଓ ବାକ୍ୟମାଡ଼ ଶୁଣି ଭବିଷ୍ୟ ବିଷୟରେ ଖୁବ ଆଶା କରିପାରିଲି ନାହିଁ । ତଥାପି ମନକୁ ବୋଧ ଦେଲି ଯେ ସଭାଟିକୁ ପ୍ରାୟ ତିରିଶିଜଣ ଲୋକ ଆସିଚନ୍ତି ଓ ଖୁବ୍‌ସମ୍ଭବ ତିନିଜଣ ସଭାର ସବୁକଥାକୁ ମନଦେଇ ଶୁଣୁଚନ୍ତି ।

ଦୀନକୃଷ୍ଣଙ୍କର ଜୀବନୀ ବା କରଣୀର ଚର୍ଚ୍ଚା ତ ପଣେ ନ ଥିଲା, ଓଲଟି ଶ୍ରାଦ୍ଧବାସରର ଶ୍ରଦ୍ଧାକ୍ଷେତ୍ରକୁ ଏମାନେ ଯେପରି ଆଧୁନିକ ବିରୋଧୀମାନଙ୍କ ସହିତ ଯୁଝିବାଲାଗି ଏକ ଯୁଦ୍ଧକ୍ଷେତ୍ରରେ ପରିଣତ କରିଦେଇଥିଲେ । ଏଯୁଗରେ କିଶୋର ଓ ସର୍ବାଗ୍ରହୀ ଛାତ୍ରସମାଜରେ ଏପରି prejudiced ବିଷମାନ ରହିପାରେ ବୋଲି ଆଗରୁ ଅନୁମାନ କରି ନ ଥିଲି । ସେମାନେ ଯୁଗକୁ ଆଦୌ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି, ଗଦ୍ୟସାହିତ୍ୟ ସେମାନଙ୍କର ପାଞ୍ଜିରେ ନାହିଁ । ଓଡ଼ିଆକୁ 'ଲହୁଣୀ ମଣିଷ' କରି ପ୍ରମାଣ କରିବାକୁ ସେମାନେ ଜନଶୂନ୍ୟ ସାହିତ୍ୟସଭାରୁ ଜନାକୀର୍ଣ୍ଣ ଜଗତ ଆଡ଼କୁ ଗାଳିଗୁଲଜର ହାବେଳିବାଣ ମାରୁଚନ୍ତି । ଓଡ଼ିଆର କଳାପ୍ରାଣତା ଓ ସଙ୍ଗୀତପ୍ରାଣତାକୁ ସେମାନେ ଏପରି ବିମୂଢ଼ ଭାବରେ ଗ୍ରହଣ କରିଚନ୍ତି ଯେ ନିଜର ବାକ୍‌ଶୈଳୀ, ବାକ୍‌ଶିଷ୍ଟତା ଓ ବିଗ୍ରହଶୁଦ୍ଧତାକୁ ଏକାବେଳକେ ଭୁଲି ନିଜ ଜୀବନରୁ ସମସ୍ତ କଳା ଓ ଛନ୍ଦକୁ ବହିଷ୍କୃତ କରିଦେଇଚନ୍ତି । କିଶୋର ଓ ଏକାବେଗୀ ବାଳକମାନଙ୍କର ଏହିପରି ଏକ ସଭାରେ ସଭାପତି ହୋଇ ନିଜର Suppressed emotion of venom ଢାଳୁଚନ୍ତି ନଷ୍ଟମତି ବିଚ୍ଛନ୍ଦଚରଣ ପଟ୍ଟନାୟକ । ପୁଣି ଗାନ୍ଧୀଙ୍କ ନାମ ଥରି ପାଞ୍ଚଥର ନେଇ ସେ ତାଙ୍କର ଅଜ୍ଞତା ତଥା ଅବଜ୍ଞାକୁ ଆହୁରି ସ୍ପଷ୍ଟ କରିଦେଲେ । ୧୯୪୧ ମସିହାରେ ନଈବାଲିର ଏକ ସାଧାରଣ ସଭାରେ ତାଙ୍କର ଅସୁନ୍ଦର ଧୈର୍ଯ୍ୟଚ୍ୟୁତି ଦେଖି ଆମେ ପିଲାଏ କି ମଜା ଯେ କରିଥିଲୁ, ସେଇକଥା ମନେ-ପଡ଼ିଗଲା । ସମାଜର ଅଜାତିଆ ଯେମିତି ଆଜି ଦଉଡ଼ି ଆସିଚି ସାହିତ୍ୟରେ ଜାତି ପାଇବାକୁ !

ତଥାପି ବଡ଼ ସାନ୍ତ୍ୱନାର କଥା ଯେ ଆମ ଛାତ୍ରମାନେ ଆହୁରି ଶିଖିବେ, ଜାଣିବେ, ହଜମ କରିବେ, ନିଜର ମୌଳିକ ପ୍ରାଣ-ତାରାଟିକୁ ଆପଣା ଜ୍ୟୋତିରେ ଫୁଟାଇ ପାରିବେ । ଏହା ହେବ ହିଁ ହେବ ।

୭ । ୧୦ । ୪୮

ବିରାଟ ଏ ସନ୍ଧ୍ୟା, ସେଥିଲାଗି କାଲିର ସକାଳ ମଧ୍ୟ ବିରାଟ ! ବିରାଟ ଏହି ବିଦାୟ, ସେଥିଲାଗି ମିଳନ ମଧ୍ୟ ସେହିପରି ବିରାଟ ।

ଅନେକବର୍ଷ ପରେ କାଠଯୋଡ଼ୀ ପଥରବନ୍ଧ ଉପରେ ବସି ଦୂର ଶୈଳମାଳାକୁ ଦେଖୁ ଦେଖୁ ସନ୍ଧ୍ୟା ଉପଭୋଗ କରିବାର ସୁଯୋଗ ମିଳିଲା । ପଲାଦିନର ଅନେକ ସ୍ମୃତି ମନକୁ ବଡ଼ ଚଞ୍ଚଳ କରିଦେଲା ।

୧୨ । ୧୦ । ୪୮

ପୁଣି ବ୍ୟାଘାତ, ପୁଣି ବ୍ୟତିକ୍ରମ । ଆଠ ତାରିଖ ଦିନ ହଠାତ୍ ଭାଗୁଭାଇଙ୍କ ପାଖକୁ ଆସିବାକୁ ପଡ଼ିଲା । ରାତାରାତ୍ ମାନ୍ଦ୍ରାଜ ମେଲ୍‌ରେ ବସି ବ୍ରହ୍ମପୁର, ସେଠୁଁ ମଟରରେ ଲୁହାଗୁଡ଼ି, ସେଠୁଁ ଦୁଇଦିନର ବାଟଚଲା ରାସ୍ତା ପାରହୋଇ ଦଶତାରିଖ ସନ୍ଧ୍ୟାବେଳେ ଉଦୟଗିରିଠାରେ ସମସ୍ତଙ୍କୁ ଆଚମ୍ବିତ କରି; ଏକାଏକା ମୁଁ କିପରି ଯେ ଏତେ ଜଙ୍ଗଲରାସ୍ତା ଅତିକ୍ରମ କରିପାରିଲି, ସେଥିଲାଗି ସମସ୍ତେ ଭାରି ଆଶ୍ଚର୍ଯ୍ୟ ହେଲେ ।

କିନ୍ତୁ ଏକା ମୁଇଁ ଜାଣେ ଏହି ଏକାକୀ ବାଟଚଲାରେ ମୁଁ କେତେ ଗୁପ୍ତଧନ ପାଇଚି, କେତେ ଗଭୀର ଠାବରେ ମୋର ମନ ନିଜର ପରିଚୟକୁ ଦୋରସ୍ତ କରିଚି । ଯେତେବେଳେ ମୁଁ ଏକାକୀ ଥାଏ, ନିଜକୁ ଓ ଜଗତକୁ ସାର ଓ ସଶବ୍ଦ କରି ଦେଖିବାର ସବୁଠାରୁ ଅଧିକ ସୁଯୋଗ ମୁଁ ସେତିକିବେଳେ ପାଏ । ଏହି ବାଟଚଲାରେ ମୁଁ ଅନେକ ଭାବିଚି, ଅନେକ ଶୁଦ୍ଧ ହୋଇଚି, ଗଞ୍ଜାମମାଳର ବଣଜଙ୍ଗଲ ମୋ ଆଖିରେ ନିତି ଜଳୁଥିବ, ଜାଗ୍ରତ ଜ୍ୟୋତ୍ସ୍ନା ପରି ମନଗଗନକୁ ଜ୍ୟୋତିର୍ମୟ କରି ରଖିଥିବ ।

ସବୁଠାରୁ ବଡ଼ ଲାଭ ହୋଇଚି ଏହି ପାର୍ବତ୍ୟ ଭୂଇଁରେ ଶ୍ରେଷ୍ଠ ମଣିଷର ସାନ୍ନିଧ୍ୟ । ବିପଦରେ ପଡ଼ି ଯୋଉଠି ଯୋଉ ଗାଆଁରେ ଆତିଥ୍ୟ ଭିକ୍ଷା କରି ଯାଇଚି, ସେଠୁ ଅଯାଚିତ ଭାବରେ ଅପୂର୍ବ କେତେ କ'ଣ ପାଇଚି । ଏପରି ହଠାତ୍ ସେମାନଙ୍କ ହୃଦୟର ନିକଟକୁ ଆସିପାରିବି ବୋଲି ମୁଁ ଆଶା କରି ନ ଥିଲି । ଅଥଚ ଏମାନଙ୍କ ପାଇଁ ସ୍କୁଲ ନାହିଁ, ଡାକ୍ତରଖାନା ନାହିଁ, ଏମାନଙ୍କ ଘରକୁ ସଭ୍ୟ ମଣିଷର ସିଡ଼ିରାସ୍ତା ନାହିଁ । ପର୍ବତ ଆଉ ଜଙ୍ଗଲ ଏପାଖେ ଏମାନେ ମୌନପୁରୀର ମହାମଣିଷଙ୍କ ପରି ବଢ଼ୁଚନ୍ତି ।

ଛେଳିଗଡ଼ ଗୋଟିଏ ଛୋଟ ଗାଆଁ । ଭାରି ଭୋକ କରୁଥାଏ ସେଠି ପହଞ୍ଚିଲା ବେଳକୁ । ପ୍ରଥମେ ଖ୍ରୀଷ୍ଟିଆନ୍ ସାହିରେ ପହଞ୍ଚିଲି । ପଦେ କଥା-ବାର୍ତ୍ତାରେ ସେମାନେ ମୋତେ ଘରକୁ ଡାକିନେଲେ, ପୁଣି ଜଳଖିଆ ଖୋଇଲେ ଚୂଲୀମୁଣ୍ଡରେ ବସାଇ । ସେମାନଙ୍କ ଦ୍ୱାରା ପରିଗ୍ଭଳିତ ରବିବାର ଉପାସନାରେ ଯୋଗଦେଲି, ତା'ପରେ ମୋ' ପାଇଁ ରନ୍ଧାହୋଇଥିବା ମାଂସତରକାରୀ ଓ ଭାତକୁ ତାଙ୍କ ନିଜ ବାସନରେ ସଭିଙ୍କ ସାଥିରେ ବସି ଖାଇଲି । ଏମାନଙ୍କ ଘର ଯେମିତି ପରିଷ୍କାର, ସେମିତି ପରିଷ୍କାର ଏମାନଙ୍କ ମନ ଓ ଧର୍ମ । ଏମାନେ ଖ୍ରୀଷ୍ଟଙ୍କ ସଙ୍ଗତେ ଦିନ ଯାପୁଚନ୍ତି । ଖ୍ରୀଷ୍ଟ ଏଠି ଜୀବନ୍ତ ଦେବତା ଏମାନଙ୍କର ଯାବତ କାର୍ଯ୍ୟରେ । କୋଡ଼ାଇ ଆଶ୍ରମର ସଭ୍ୟ ସୌଖୀନ ଧର୍ମଜୀବନଠାରୁ ଏଠି ଏହି ଅଶିକ୍ଷିତମାନଙ୍କ ଭିତରେ ଖ୍ରୀଷ୍ଟଙ୍କର ବେଶୀ ପୂଜା ହେଉଚି । କାରଣ ଏମାନେ ଆପଣା ମିହନ୍ତରେ ଜୀବନ ଓ ଧର୍ମ ଅର୍ଜନ କରୁଚନ୍ତି, ସଭ୍ୟସମାଜର ସମ୍ପଦ ଓ ସୁପାରିଶ ନେଇ ଜୀବନକୁ ଭୋଗ କରୁ ନାହାନ୍ତି । ଏମାନଙ୍କର ଧର୍ମ କର୍ମମୟ, ଯଜ୍ଞମୟ,–ଭୋଗମୟ ନୁହେଁ । ଏମାନଙ୍କର ଭଗବାନ ଘରେଘରେ, ପ୍ରତ୍ୟେକ କାର୍ଯ୍ୟକଳାପରେ; କେବଳ ମାସେ ବା ହପ୍ତାଏର ମଡ଼େଲ୍ ଆଶ୍ରମ ଭିତରେ ନୁହେଁ ।

୧୭ । ୧୦ । ୪୮

ଉଦୟଗିରିରୁ ରାମଗିରି । ରାମଗିରିରେ ଗ୍ଭରିରାତି କଟାଇ କାଲି ମୋତେ ଘରକୁ ଫେରିବାକୁ ହେବ । କର୍ମମୟ ଜୀବନଯଜ୍ଞରେ ନିଜକୁ ଉତ୍ସୃଷ୍ଟ କରିବା ଆଗରୁ କି ସୌଭାଗ୍ୟ ହେତୁ ମୁଁ ଏଠି ନିଦ୍ରିତ ମଣିଷର ଗୋଟାଏ କଳା ପାଖ ଦେଖିଗଲି । ଏଇ ହପ୍ତାକର ରହଣି ଭିତରେ ଏଠିକା ଲୋକଙ୍କୁ ମୁଁ କିଛି ଦେଇପାରିଲି ନାହିଁ, କିନ୍ତୁ ନେଲି ବହୁତ । ଡାକ୍ତରବାବୁଙ୍କ ଭାଇ ହିସାବରେ ମୁଁ ଅନେକ ଖାତିରି, ଅନେକ ମାନସମ୍ମାନ ଓ ସ୍ୱଭାବଗ୍ଭଳିତ ଅନେକ ନମସ୍କାର ପାଇଲି । କିନ୍ତୁ ଯାହା ପାଇଲି, ତା'ଠୁଁ ବେଶୀ ନେଇକରି ଯାଉଚି । ଏଠି ପଢ଼ିବା ଆଗରୁ ଛୋଟ ପିଲା ଧାଙ୍ଗଡ଼ୀଗୀତ ଗାଇଶିଖେ, ମାଇକିନିଆ ବେଶ ସାଜି କୁତ୍ସିତ ଓ ଅସୁନ୍ଦର ଅଙ୍ଗଭଙ୍ଗୀରେ ଭଞ୍ଜକବିତା ପଇଟାଇ ଆଦିରସର କରାମତି ଫୁଟାଏ । ସେ ପାଠ ପଢ଼ିବାଆଗରୁ ବିଡ଼ି ଟାଣେ, ହୁଏତ ଦଶ ବରଷରେ ବାହା ହୋଇପଡ଼େ, ହାକିମହୁକୁମାଙ୍କର ପିଆଦା, ଗ୍ଭକର ଓ ବର-କନ୍ଦାଜ ହୋଇ ଜୀବନ କଟାଏ । Anthropologist ଲାଗି ଏଠାରେ ଭଲ ଗବେଷଣାକ୍ଷେତ୍ର ମିଳିବ, କିନ୍ତୁ ମଣିଷପ୍ରେମୀ ମଣିଷ-ପାଗଳ ମୁଁ ଏଠି କି ଆନନ୍ଦ ପାଇବି ? ଏଠୁ ନିଜର ବୋଲି କ'ଣ ନେଇକରି ଯିବି ? ଏହି ଲୋକଙ୍କର ଭାଷାକୁ ମୁଁ କି ବ୍ୟଞ୍ଜନା ଦେଇ ମୋ' ଭଗବାନଙ୍କ ଆଗରେ କହିବି ?

ହ, ଏମାନଙ୍କର ଯୁଗ ଆସୁଚି । ଦିନେ ଏମାନେ ବି ଉଠିବେ, ଏଠି ମଧ୍ୟ ଦିନେ ରାତି ପାହିବ । ଏହି ଜଙ୍ଗଲମାଳର ପାଷାଣ ଉପରେ ମନର

ଭୀମ ଆଜି ଗଦା ଘୋରି ସମାନ କରୁଛି, ସେ ନିଶ୍ଚୟ ଉଠିବ । ଏଇଠୁ ଦିନେ ସର୍ବନାଶୀ ସଂହାରର ରୁଦ୍ର ଅଭିଯାନ ବାହାରି ସଭ୍ୟ ସୌଖୀନ୍ ସମାଜର ରୋମାନ୍ ସଭ୍ୟତାକୁ ଭାଙ୍ଗି ଚୂରମାର କରିଦେବ । ଏଠି ପର୍ବତର ମଲା ପାଷାଣ ଉପରେ ମୁଁ ଭଗବାନଙ୍କର ସେହି ନିବେଦନ-ପତ୍ରରେ ରକ୍ତସ୍ୱାକ୍ଷର କରିଯାଉଚି ।

ଏମାନଙ୍କର କ'ଣ ଲୋଡ଼ା ? କେଉଁ ଜିନିଷର ଅଭାବରେ ଏମାନେ ମଦ, ବିଡ଼ିଧୂଆଁ, ଜୁଆଖେଳ ଓ ଆଙ୍କା ଆପଣର ଧନ୍ଦାଭିତରେ ପଡ଼ିଚନ୍ତି ? ମଣିଷ ଅନୁପାତରେ ଏଠି ଯଥେଷ୍ଟ ଜମି ରହିଚି, ଶଉରାମାନଙ୍କର ବଡ଼ବଡ଼ ଫଳବଗିଚ୍ଛ ରହିଚି, ତଥାପି ଏମାନେ ମାଣ୍ଡିଆଚୂନାର ପଇତି ଖାଇ ବଡ଼ଲୋକକୁ ଉପାର୍ଜିତ ସାଉଣସ୍ୟମାନ ଦେଇଦିଅନ୍ତି କାହିଁକି ? ଏଠି ସ୍କୁଲ ନାହିଁ, ଯୋଉଠି ଅଛି ସେଠି ମାଷ୍ଟର ପିଲାହାତରେ ମଦ ଅଣାଇ ପିଏ, ପିଲାଆଗରେ ଧୂଆଁ ଟାଣେ, ପିଲାକୁ ବେଠି ଖଟାଏ । ଶିକ୍ଷାର ଆଲୋକ ଏଠୁ ବହୁଦୂରରେ, କିନ୍ତୁ ସେହି ଶିକ୍ଷା କେବଳ ସ୍କୁଲକଲେଜର ଶିକ୍ଷା ନୁହେଁ । ସମତଳଭୂଇଁର ସ୍କୁଲକଲେଜରୁ ବାହାରୁ-ଥିବା ପିଲା ତ ହାକିମ ସାଜି ଏଠି ସବୁଠାରୁ ଅଧିକ ଜୁଲମ କରୁଚନ୍ତି । ଏମାନଙ୍କର ନିର୍ଭୀକ ହେବାର ଶିକ୍ଷା ଦରକାର । ମଣିଷ ହିସାବରେ ବଞ୍ଚି-ରହିବାକୁ ହେଲେ ଏମାନଙ୍କୁ ମୁଣ୍ଡ ଟେକି ସଦମ୍ଭ ବାଟ ଚାଲିବାକୁ ହେବ । ମଣିଷର ଭଗବାନ୍ ବଡ଼ ଶକ୍ତ, ସେଇ ଭଗବାନଙ୍କ ପାଖରେ ନିଜକୁ ପ୍ରତିଷ୍ଠିତ କରିବାକୁ ହେଲେ ଏଠି ମଣିଷକୁ ବି ସେହିପରି ଶକ୍ତ ଓ ସବଳ ହେବାକୁ ପଡ଼ିବ । ସେହି ଶକ୍ତିର ଶିକ୍ଷା କିଏ ଦେଇପାରିବ ?

୨୩ । ୧୦ । ୪୮

ଗଲାଥର ଲେଖାହୋଇଚି ରାମଗିରିରେ, ଆଜି ପୁଣି ଆସି ଢେଙ୍କାନାଳ ହାଇସ୍କୁଲର ଛାତ୍ରାବାସରେ । ଏଇ ଛୁଟୀରେ ଅନେକ ବୁଲିଲି, ଅନେକ ଜାଗାରେ ଅନେକ ରକମର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଦେଖିଲି । ଜୀବନ ଧନ୍ୟ ହେଲା ।

ଗଡ଼ଜାତ ଦେଖିବା ମୋ'ର ଏଇଟା ଦ୍ୱିତୀୟଥର ପାଇଁ । ସାତବର୍ଷ ତଳେ ନୟାଗଡ଼ ଯାଇଥିଲି । ଢେଙ୍କାନାଳ ହେଉଚି ବାଜିରାଉତର ଭୂମି । ମଣିଷ ଭିତରର ଯେଉଁ ନିଆଁ ଏହି ପାହାଡ଼ ପର୍ବତ, ବଣ, ବିଲର ମଲା ପିଣ୍ଡକୁ ଚହକାଇ ଦେଇପାରିଲା, ସ୍ୱାର୍ଥୀ ଶାସନର ଦିଆସିଲିଖଣ୍ଡା କାରଖାନାରେ କାଠି ମାରିଦେବାକୁ ତାକୁ କେତେ ଦଣ୍ଡ ଲାଗିବ ?

ଏଥର ଗାଆଁରେ ଜଣଙ୍କ ସହିତ କେତେ ଆଲୋଚନା ହେଲା । ଦୀର୍ଘ ଅନେକଦିନ ପରେ । ତାଙ୍କ ବ୍ୟକ୍ତିତ୍ୱର ଆଉ ଗୋଟାଏ ରୂପ ଦେଖିବାକୁ ପାଇଲି । ସେଇ ମଣିଷ ଅଭିଳାଷ ରଖେ, ସେଇ ମଣିଷ ତଳକୁ ଖସେ,

ସେଇ ଅସାର ପନ୍ଥରେ ଦଉଡ଼େ, ପୁଣି ତୀବ୍ର ଅସନ୍ତୋଷର ଜ୍ୱାଳାରେ ସେଇ ଦହି ହୋଇ ମରେ । ଭଲ Vicious Circle !

୨୪ । ୧୦ । ୪୮

ଆଜି ସକାଳୁ ଢେଙ୍କାନାଳଗଡ଼ ଛାଡ଼ି, ବଳଦ ଗାଡ଼ିରେ ଜୋରନ୍ଦା ମହିମାଗାଦୀରେ ଯାଇ ପହଞ୍ଚିଲି । ମୁଁ ଠିକ୍ ପହଞ୍ଚିଲା ବେଳକୁ ଶୂନ୍ୟ ମନ୍ଦିରରେ ଘଣ୍ଟା, ମାଦଳ ଓ ଖଞ୍ଜଣି ବାଜାରେ ଉପାସନା ଚାଲିଥିଲା । ଏଇ ଚାରିଟାଦିନ ଏଠାରେ ସନ୍ନ୍ୟାସୀମାନଙ୍କ ଭିତରେ କଟାଇବାକୁ ହେବ । ଏମାନଙ୍କର ରହିବା ଘର ଅନେକ, ଖାଲି ଟଙ୍କା ପଇସା ହିସାବ କରି ଅନେକ ସନ୍ନ୍ୟାସୀ ସାରା ଦିନଟା କଟାଇ ଦିଅନ୍ତି । ତଥାପି ମୁଁ ମହିମା ଧର୍ମକୁ ଖରାପ ବୋଲି କହୁ ନାହିଁ । ଧର୍ମର ରାସ୍ତା ତ ସବୁଆଡ଼େ ପଡ଼ିଚି; ଯିଏ ନିଷ୍ଠାରେ ରଥ ବାହିପାରୁଚି, ସେଇ ଠିକଣା ଦର୍ଶନ ପାଉଚି । ଏଣୁ ଏ ସ୍ଥାନର କଳା ପାଖଟାକୁ ଦେଖି ମୁଁ ମହିମା ଧର୍ମର ବିଚାର କରି ବସିବି ନାହିଁ । ଆଜି ଅନ୍ତତଃ ଜଣେ ବାବାଙ୍କର ସାନ୍ନିଧ୍ୟ ଲାଭ କରିଚି, ଯାହାଙ୍କର ବ୍ୟକ୍ତିତ୍ୱ ଆପଣାର ନିରଳସ ଓ ନିରାଡ଼ମ୍ବର ପରିଚୟଦାନରେ ମୋତେ ଅପୂର୍ବ ମୁକ୍ତି ଦେଇଚି । କେବଳ ଏହି ଲାଭ ହିଁ ମୋର ଚିରସ୍ମରଣୀୟ । ସବୁଠାରୁ ବଡ଼ କଥା ହେଉଚି, ଧର୍ମରାଗୀ ରାଜା ଓ ଧର୍ମାନୁଷ୍ଠାନମାନଙ୍କର ପ୍ରକୋପ ସତ୍ତ୍ୱେ ଏହି ଧର୍ମଟି ସମାଜର ଅଜ୍ଞାତ ଓ ଅନାମଧେୟ ଦରିଦ୍ର ସାଧାରଣଙ୍କୁ ଏତେଦୂର ଆକୃଷ୍ଟ କରିପାରିଚି ! ସରଳ ମଣିଷ ଭୀମକନ୍ଧର ଭଜନ ଶୁଣି ନିଜକୁ ଅପରିସୀମ ଓ ଅକଳ ଈଶ୍ୱରଙ୍କଠାରେ ସମର୍ପଣ କରିଦେଇଚି । ସବୁ ଯୋଗକୁ ଯେଉଁ ସୀମା ଭିତରେ ରଖି ଏଠି ଭକ୍ତିଯୋଗ ଜିତାପଟ ନେଇଚି । ଠିକ୍ ଗୀତାର ଶେଷ ଅଧ୍ୟାୟରେ ରହିଥିବା ଚରମ ବିଜୟ ପରି—ସର୍ବଧର୍ମାଂ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ । ସବୁ ଧର୍ମର ଇତିହାସରେ ଏହି ଭକ୍ତିଯୋଗର appealଟା ହେଉଚି ସବୁଠାରୁ ବେଶୀ, ମଣିଷର ମନକୁ ଏହି ଯୋଗ ସବୁଠାରୁ ଅଧିକ ଟାଣିପାରିଚି, ମଣିଷ ଚୈତନ୍ୟକୁ ମଗ୍ନ ଓ ମଉନ କରାଇ ତାକୁ ବୃହତ୍ତର ଦୃଷ୍ଟି ଦେଇପାରିଚି । ମହିମା ଧର୍ମର ଏକ ଦ୍ୱିତୀୟ ବୈଶିଷ୍ଟ୍ୟ ହେଉଚି ଜାତି ବିଷୟରେ ଏହାର ଅଭେଦ ଜ୍ଞାନ । ଏକ ବ୍ରହ୍ମ ବା ଏକମେବା ଦ୍ୱିତୀୟଂର କଥା ଅନେକ ଧର୍ମରେ ରହିଥିଲେ ମଧ୍ୟ ସେହି ତତ୍ତ୍ୱକୁ ସକଳ ଘଟରେ ପ୍ରତ୍ୟକ୍ଷ କରି ସମଦୃଷ୍ଟି ହେବାର ସାବଧାନ ବାଣୀ ଖୁବ କମ୍ ଧର୍ମରେ ଏତେଦୂର ରହିଚି । ମହିମାପନ୍ଥୀ ସନ୍ନ୍ୟାସ ଓ ବନବାସକୁ ଘୃଣା କରନ୍ତି । ଗୃହସ୍ଥମାନଙ୍କ ଲାଗି ନିଷ୍କାମ କର୍ମ ଧର୍ମ ହେଉଚି ଏମାନଙ୍କର ଆଉ ଗୋଟିଏ ବିଶେଷ କଥା । ଏବେ ଦେଶ ଦେଶରେ ଯେଉଁଭଳି ନାନା ବିଭେଦ ଓ ନାଶନାଟ ଆରମ୍ଭ ହୋଇଚି, ଏହିପରି ଗୋଟାଏ ବିଦ୍ରୋହୀ ସହିଷ୍ଣୁ ଧର୍ମର ନବବାଣୀ ହିଁ ମଣିଷକୁ ଅନେକ ପରିମାଣରେ ବାଟ ଦେଖାଇ ପାରିବ । ଏହି ପନ୍ଥାରେ ଅବଶ୍ୟ ନିର୍ଦ୍ଦିଷ୍ଟ ଆଚାର ଓ ସଂସ୍କାରମାନ ମଧ୍ୟ ରହିଚି, କିନ୍ତୁ ପ୍ରଧାନତଃ

Spirit ଦୃଷ୍ଟିରୁ ମୁଁ ଧର୍ମଟିର ବିଗ୍ଭର କରୁଚି । ଏହି Spirit ଦୃଷ୍ଟିରୁ ଏହାର ଜୀବନମୁଖୀ ବ୍ୟଞ୍ଜନାଟି ହେଉଛି ମହିମାଧର୍ମର ବୈଶିଷ୍ଟ୍ୟ ।

୨୬ । ୧୦ । ୪୮

ଆଜି ସକାଳେ କେତେଦିନରୁ ମୁଦା ପଡ଼ିଥିବା ହୃଦୟ-କବାଟ ଖୋଲିଗଲା । ଭିତରର ଅନ୍ଧାର ଅସୁରଟା ରାତ୍ରି ଶେଷରେ ତା'ର ଶେଷ ବିନିପାତ ସାରି ପ୍ରଭାତ ଲାଗି ଆସନ ଛାଡ଼ିଦେଇ ଗଲା । ମୁଁ ଆଉ ଶୋଚନା କରିବି ନାହିଁ । ଯିଏ ତା'ର ଗୁରୁଭାର ଜଞ୍ଜାଳଜାଲ ଲଦିଦେଇ ମୋତେ ଅକର୍ମା ଓ ଥୋବରା କରି ବସିଥିଲା, ଆଜିର ସୂର୍ଯ୍ୟୋଦୟ ତାହାରି ଆସ୍ଥାନକୁ ଭାଙ୍ଗି ନୂତନ ଦିନର ମୂଳଦୁଆ ତିଆରି କରିଚି । ଯାହା ଥିଲା, ସବୁ କୁଟା, କାଠି, କଣ୍ଟା, ଖପରା ପୋତି ହୋଇ ସିଏ ମାଟିରେ ପରିଣତ ହେବ । ତା' ଲାଗି ଆଉ ଚିନ୍ତା କରିବି ନାହିଁ । ଆଜି ନୂତନ ଦିବସଟିର ନବାର୍ଚ୍ଚନ ଲାଗି ଉତ୍ତିଷ୍ଠ ହେବି ।

ଆଉ କେତେଦିନ ଯାଏ ଜୀବନରେ ଏମିତି ପରସ୍ତ ପରସ୍ତ ଫିଟୁଥିବ ? ଗୋଟାଏ ପରସ୍ତ ଖୋଲି ସେଇଥିରେ ବଞ୍ଚି ରହିବା ଜୀବନ ବିଧାତା ପକ୍ଷରେ ଯେପରି ଅସହ୍ୟ ହୋଇପଡ଼େ । ସେଇଥିପାଇଁ ସିଏ ପୁଣି ଥରେ ଅନ୍ଧାର ରାତି ଆଣି ପୁଣି ଥରେ ପାଖୁଡ଼ା ଖୋଲିବାର ସକାଳ ସୃଷ୍ଟି କରେ । ଯିଏ ତା'ର ଏହି ଖେଳଟି ବୁଝିଚି, ସିଏ ଆଉ ଶୋଚନା କରିବ କାହିଁକି ? ଶ୍ରଦ୍ଧା, ପ୍ରୀତି ଓ ଅନୁରାଗର ପରିମାପକରେ ଯେଉଁ ପ୍ରଯୋଗଶାଳାରେ ନିତ୍ୟ ପରୀକ୍ଷା ଓ ନିତ୍ୟ ଲୀଳା ଚାଲିଚି, ସେଠି ଆଉ ଆୟବ୍ୟୟ, ଲାଭ, କ୍ଷତି, ପାଇବା ଓ ହରାଇବାର କ୍ଲିଷ୍ଟ ଭାବନା ମୁଁ କରିବସିବି କାହିଁକି ? ଏଇ ଗଛଟି ପରି ମୁଁ ଝରା ପତରକୁ ଉତ୍ସର୍ଗ କରି ନୂଆ ପତରର ସୃଷ୍ଟି ପୁଲକରେ ମାତିବି, ଏଇ ଚଢ଼େଇ ପରି କାଲିକାର ଅନ୍ଧାର ନୀଡ଼ର ବିଳାପ ଭୁଲି ମୁଁ ନୂଆ ସକାଳର ପ୍ରାଣନିକ୍ୱଣରେ ତାଳ ମିଳାଇବି । ମଲା ଉପରେ ଝୁରି ଝୁରି ମୁଁ ନିଜକୁ ମାରିଦେବି ନାହିଁ । ମୁଁ ବଞ୍ଚିବାକୁ ଆସିଚି, ବଞ୍ଚିବି । ରାସ୍ତାର ସକଳ ମଧୁକଣ୍ଟକୁ ସାଇତି ରଖି ମୁଁ ସମୃଦ୍ଧ ହେବି । ସବୁ ଏସେଇ ଦେଇଚି, ସବୁ ସେଇ ଶିଖାଇଚି । ଏଇ ଅନ୍ଧାର ଆଲୁଅ, ଏଇ ଝଡ଼ା ଓ ଫୁଟାଇବାରେ ସେଇ ହେଉଚି କଉଶଳୀ ଖେଳାଳୀ । ତା' ମନର ମତଲବକୁ ମୁଁ ବୁଝିଲିଣି । ଆଉ କାନ୍ଦିବି ନାହିଁ । ମୁଁ ତାକୁ ଆପଣାର କରିନେବି ।

ଜ୍ଞାନ ଆଉ କର୍ମ,—ବେଳେ ବେଳେ ଦୁଇଆଡ଼୍ର ଦୁହେଁ ଟାଣୁଚନ୍ତି । ଯୁବକ ମନର ଚଞ୍ଚଳତା ଦ୍ୱାରା ବଶ ହୋଇ ମୁଁ ଏ ପର୍ଯ୍ୟନ୍ତ ସେଇ ଦୁଇଟା ଭିତରେ କୌଣସି ସମାଧାନ କରିପାରି ନାହିଁ । ଯେତେବେଳେ ମୁଁ ଜ୍ଞାନ ଚର୍ଚ୍ଚାରେ ମଗ୍ନ ହୋଇଯାଉଚି, ସେତେବେଳେ ମୋର ଦ୍ରଷ୍ଟାମନ ଊର୍ଦ୍ଧ୍ୱଦୃଷ୍ଟି ହୋଇ କେବଳ ଅନନ୍ତ ଆକାଶର ଅଧିଷ୍ଠାତା ଆଡ଼କୁ ଧାଇଁବାରେ ଲାଗିଚି;

ତାଙ୍କର ଅମଳ ଚରଣ ତଳେ ନିଜକୁ କେବଳ ସମର୍ପଣ କରିଦେବା ଛଡ଼ା ଯେପରି ସେ ଆଉ କିଛି ହେଲେ ଜାଣେ ନାହିଁ ! ପୁଣି ଆଉ ବେଳେବେଳେ ମନଟା ଲୋକମୁଖୀ ହୋଇଯାଉଚି, ବିକଳ ମାନବ ସମାଜରୁ ଡାକ ଆସି ମୋର ଚମ, ମାଂସ ଓ ଶିରାନାଡ଼ିଗୁଡ଼ାକୁ ଯେପରି ସନ୍ତୁଳି ପକାଉଚି । ତା'ର ଡାକକୁ ଏଡ଼ି ହେଉନାହିଁ । ସେହି ଆକୁଳ ମଣିଷ ଭିତରେ ରହି ଜର୍ଦ୍ଦିର ସେହି ଭଗବାନ ଭୀମ ଆଖିର ଦହନବାଣରେ ମୋତେ ଗୁଞ୍ଚି ଦେଉଛନ୍ତି । ମୁଁ ଏକା ଜାଣିଲେ କ'ଣ ହେବ ? ଆଉ ସମସ୍ତଙ୍କୁ ସାଙ୍ଗରେ ନ ନେଲେ, ସମସ୍ତଙ୍କ ସହିତ ଅନାଚାର ଓ ପାପ ଆଗରେ ସାହସୀ ଛାତି ନ ପତାଇଲେ ସେମାନଙ୍କର ବା ମୋର କାହାରି ହେଲେ ନିସ୍ତାର ନାହିଁ । ଏହି ଯୁଗର ପୀଡ଼ିତ ମଣିଷକୁ ଦେଖି ମୋର ଆତ୍ମକେନ୍ଦ୍ରୀ ଜ୍ଞାନପିପାସାର ଏକାବେଗତା କୁଆଡ଼େ ଶମି କୁଣ୍ଠିତ ହୋଇଯାଉଚି । ମନ ଡାକୁଚି,—ନା, ମୁଁ ଏହିମାନଙ୍କ ଭିତରେ ରହିବି, ସଭିଙ୍କ ସାଥିରେ ମିଶି ମୁଁ immanent ଆତ୍ମାକୁ ଜାଗ୍ରତ କରାଇବି । ସେତିକିବେଳେ ଇଚ୍ଛା ହୁଏ ଏକାଗ୍ର ଓ ଅବିଚଳ ଜ୍ଞାନଚର୍ଚ୍ଚାରୁ ଓହ୍ଲାଇ ଆସି ମୁଁ ବଞ୍ଚିତ ସମାଜର ଯଜ୍ଞକୁଣ୍ଡରେ ନିଜକୁ ଆହୁତି ଦେବି, ହାଡ଼ ଚମର ଧଡ଼ ଭିତରେ ମୁଁ ପରମସତ୍ତାକୁ ଚିହ୍ନିବି । ମୁଁ ଜାଣେ ଯେ ଜ୍ଞାନ ଓ କର୍ମ ଭିତରେ କୌଣସି ଦ୍ୱନ୍ଦ୍ୱ ନାହିଁ, କେବଳ ମୋର ଅପୂର୍ଣ୍ଣ ମନଟା ଭିତରେ ହିଁ ଦ୍ୱନ୍ଦ୍ୱ ରହିଚି । ପୂର୍ଣ୍ଣ ମନ ଏକାଧାରରେ ସବୁଠି ପରିବ୍ୟାପ୍ତ ହେବ, ସବୁ ପାତ୍ରକୁ ପୂର୍ଣ୍ଣ କରିବ । ସେହି ପରିପୂର୍ଣ୍ଣତାର ଦିନକୁ ମୁଁ ଅନାଇ ରହିଚି ।

୪ । ୧୧ । ୪୮

ଏ ବର୍ଷର ଦଶହରା ଛୁଟୀ ସରିଆସୁଚି । ଛୁଟୀଟା ସମ୍ପୂର୍ଣ୍ଣ ରୂପେ ଗାଆଁରେ କଟାଇବାକୁ ଭାରି ଇଚ୍ଛା ଥିଲେ ମଧ୍ୟ ଗାଆଁରେ ମାତ୍ର ପାଞ୍ଚଟା ଦିନ ରହିବାର ସୁଯୋଗ ମଧ୍ୟ ହେଲା ନାହିଁ । ଅନେକ ବୁଲିଲି ବାରବୁଲାଙ୍କ ପରି । ମୋର କେଳା ମନ କୋଉଠୁ କଣ ସଂଗ୍ରହ କଲା, କୋଉଠୁ କି ଆଘାତ ପାଇ ନିଜକୁ କି ପ୍ରକାରେ ପାକଳ କଲା, ମୁଁ ସେ କଥା ମଧ୍ୟ ଜାଣେ ନାହିଁ । ତଥାପି ବିଚିତ୍ର ପୃଥିବୀ ଓ ତା'ର ଅଙ୍କାବଙ୍କା ମଣିଷ ସହିତ ଏହି କେତେଦିନର ସାନ୍ନିଧ୍ୟ ମୋର ଅନେକ ଦିନକୁ ମନେରହିବ ।

ହଁ, ମୁଁ ଭଲକରି ଜାଣେ ଯେ ଏହି ଛୁଟୀରେ ମୋର ଫିସାଦି ମନଟା ସବୁ କଟକଣା ଛିଣ୍ଡାଇ ଅନେକ ଦୂରକୁ ଗ୍ଲିଯାଇଥିଲା । ବିବେକ ଓ ଚିତ୍ତବୋଧର ବୋଲ ନ ମାନି ସିଏ ଭାରି ହୁଗୁଳା ହୋଇ ବୁଲିଲା । ନିଜର ସାଇତା ଘରର ସଞ୍ଚିତ ଧନକୁ ପଥଧୂଳିରେ ମିଶାଇ ଦେବାକୁ ସେ ଦ୍ୱିଧା କରି ନ ଥିଲା । ସଂଗ୍ରହୀ ମନଟା ସେଥିଲାଗି ଅନେକ ଖେଦ କରିଚି, ତଥାପି ନାଶଧର୍ମୀ 'ମୁଁ'ଟା ତା'ର ବିନାଶ ଝୁଙ୍କଗୁଡ଼ାକୁ ଚରିତାର୍ଥ କରି ଗ୍ଲିଯାଇଚି

ସବୁ ଶାସ୍ତ୍ରଜ୍ଞାନ, ସବୁ ଭଗବତ୍ ପ୍ରଣିଧାନ ସେଠି କୁଆଡ଼େ ହାର ମାନି ପକାଇଛି । ହୁଏତ ସେଇ ମୋତେ ଚେତାଇଦେଇ ଯାଇଛି । ମୁଁ ପୁଣି ସଜ ସଜାଡ଼ି ନୂଆ କ୍ଷେତରେ ଗ୍ୱଷ କରିବାର ବଳ ବାନ୍ଧୁଛି ।

୫ । ୧୧ । ୪୮

ଛୁଟୀ ସରିଗଲା, ଆଜି ଗାଆଁରୁ ବିଦାୟ ନେଇ ଯିବାକୁ ହେବ । ଯେଉଁଥିଲାଗି ଭଉଁରି ମନଟା ବି ଗାଆଁ ମାଟି ଛାଡ଼ି ଶାନ୍ତିନିକେତନର ଆକାଶ ଆଡ଼କୁ ଧାଇଁବାକୁ ଆରମ୍ଭ କଲାଣି । କେଡ଼େ ବୈଚିତ୍ର୍ୟଲୋଭୀ ମୋର ଏହି ମନଟା, ଖାଲି ଛାଡ଼ି ଗ୍ୱଲିଯିବାରେ ଯେପରି ତା'ର ସବୁ ଆନନ୍ଦ ! ଏହି ନିତ୍ୟତୃଷ୍ଣାର ଅସନ୍ତୋଷ ଭିତରେ ବସା ବାନ୍ଧି ପଙ୍କ ଆଉ ପାଣିକୁ ଏକାଠି କରିଦେବାକୁ ଗ୍ୱହେ ଏଇ ମନଟା । ଖାଲି ଖେଳିବ, ଚଞ୍ଚଳତା ଖେଳାଇ ଜଗତକୁ ଚଞ୍ଚଳ କରିବ, ପୁରୁଣାକୁ ନୂଆ କରି ଗଢ଼ିବ । ବିରାଟ କର୍ତ୍ତାର ସେହି ଚିର ଶିଶୁକୁ ମୁଁ ପ୍ରଣାମ ଜଣାଉଛି ।

ବିଗତ ଦିନଗୁଡ଼ିକରେ ମୁଁ ଯେତେ ଯେଉଁଠି ପଙ୍କରେ ପଶିଛି ସେଗୁଡ଼ାକୁ ଲୁହାଗାର ପକାଇ ଜୀବନ ପାଞ୍ଜିରେ ଲେଖି ରଖିବି ନାହିଁ । ପୃଥିବୀ ଅନେକ ବଡ଼, ମନେରଖିବାର ଓ ସାଇତି ରଖିବାର ଅନେକ ଜିନିଷ ଅଛି ଏହି ପୃଥିବୀରେ । ନାଉରୀ,—ଯିଏ ତା'ର ଗମ୍ୟ କୂଳକୁ ଅନେକ ଦିନରୁ ଚିହ୍ନିଛି,—ସିଏ କାହିଁକି ଢ଼େଉର ଚଞ୍ଚଳ ଦୋହଲାଗୁଡ଼ାକୁ ଗଣି ଗଣି ବୁଜୁଳା କରି ରଖୁଥିବ । ଖାଲି ଗ୍ୱଲିଯିବାରେ ହିଁ ତା'ର ଆନନ୍ଦ । ଉପରେ ଅନନ୍ତ ଆକାଶ, ଆଖିରେ ଅନନ୍ତ ପିପାସା, ଅନ୍ତରରେ ଅନନ୍ତ ଯାତ୍ରୀର ସରଗରମ ଯାତ୍ରା ଯୋଜନା,—ସିଏ କେବଳ ନାଚି ନାଚି ଗ୍ୱଲିଯିବ । ତ୍ରେତାଯୁଗର ସୀତା ପରି ମୋର ପ୍ରତ୍ୟେକ ଦିନଟର ଅଗ୍ନି ପ୍ରବେଶ ହେଉ,—କେଉଁ ଭର୍ତ୍ତା ବା ବିଗ୍ୱରକ ଆଗରେ ନିଜ ଚରି ତ୍ରର ପରୀକ୍ଷା ଦେବାକୁ ନୁହେଁ, ଜୀବନର ବିଚିତ୍ର ଖେଳରେ ସମ୍ମିଳିତ ହୋଇ ସୃଷ୍ଟିର ନିତ୍ୟକର୍ତ୍ତାର ସଖ୍ୟ ଲାଭ କରିବାକୁ ମୋର ଏହି ନିରୁଦ୍ଦେଶ୍ୟ ସହସଯାତ୍ରା । ନଦୀ ଢେଉକୁ ଆହୁରି ଚଞ୍ଚଳ କରି ମୋର ନାଆ ଗ୍ୱଲିଯାଉ । ହୁଏତ କ୍ଷଣକପାଇଁ ଢେଉ ଚହଲିଯିବ, ନାଆ ଟିକିଏ ଏପାଖ ସେପାଖ ବି ହୋଇଯିବ । କିନ୍ତୁ ମୋତେ ଯେ ରାତିଦିନ ଯିବାକୁ ହେବ, ମୁଁ ସେକଥା ପାସୋରିଦେବି ନାହିଁ । ରେଲଗାଡ଼ି ରାସ୍ତା ପାଖରେ ଅନେକ ପୋଡ଼ା କୋଇଲା ଜମାକରିଦେଇ ଯିବ । କିନ୍ତୁ ଗାଡ଼ିକୁ ଚିହ୍ନିବା ଲାଗି ସେଇ କ'ଣ ଏକମାତ୍ର ପରିଚୟ ?

୯ । ୧୧ । ୪୮

ମୋ'ରି ଆଗରେ ତେଣେ ପୂର୍ବ ତୋରଣରେ ସୂର୍ଯ୍ୟର ଅଗ୍ନି ଉତ୍ସବ ଗ୍ୱଲିଛି, ଆଉ ମୁଁ ଏକ ଅଗ୍ନିପିପାସୀ କଇମର ନିହାଣ ଦ୍ୱାରା ମନକୋଷରେ

ସେହି ଅଗ୍ନିବୀଜକୁ ସଞ୍ଚି ରଖୁଚି ଜୀବନର ଅନାଗତ କ୍ଷେତରେ ସେହି ଅଗ୍ନିର ସ୍ବର୍ଣାଶସ୍ୟ ଫଳାଇବି ବୋଲି । ଜୀବନରେ ଏହିଭଳି ଉଦୟ ନିତି ଘୁଞ୍ଚିଚି, ଚିରଶିଶୁ ସୂର୍ଯ୍ୟ ପରି ମୁଁ ବି ନିତି ସକାଳେ ନୂଆ ହୋଇ ଜନ୍ମ ହେଉଚି, ସଂସାରରେ ନିତି ନୂଆ Experiment କରିବାରେ ଆନନ୍ଦ ପାଉଚି, ସେହି ସବୁଭୁଲା ସୂର୍ଯ୍ୟଟା ପରି ମୁଁ ମଧ୍ୟ ନିତି ଅନ୍ଧାର ରାତିର ମଳିନ କ୍ଲିଷ୍ଟତା ଭୁଲି ନୂଆ ପଟରେ ନୂଆ ଅନୁରାଗ ନେଇ ବିଶ୍ୱ ବିପଣିରେ ମିଳିଯାଉଚି । ଏହି ଜୀବନର ପ୍ରତ୍ୟେକ ସକାଳେ ସୂର୍ଯ୍ୟୋଦୟ ହେଉଚି, ସବୁ ଅନ୍ଧାରକୁ ବାରୁଦ ଦେଇ ସେ ନିଆଁ କରି ଫୁଟାଉଚି ।

ଆଜି ପୁଣି ଶାନ୍ତିନିକେତନରେ, ଅନେକ ଦିନ ପରେ । ନୀଡ଼ଛଡ଼ା ଚଢ଼େଇ ପୁଣି ନୀଡ଼କୁ ବାହୁଡ଼ି ଆସିଚି ଏଇ ତୀର୍ଥର କୁଟାକାଠିରେ ଆପଣାର ନିଜସ୍ୱ ନୀଡ଼ଟିଏ ରଚନା କରିବ ବୋଲି । କାଲି ଯେଉଁ ଶାନ୍ତିନିକେତନକୁ ମୁଁ ବିଶ୍ୱଭରା କରି ଦେଖିଥିଲି, ଆଜି ଅନ୍ତର ଭିତରେ ତାହାରି ରଚନା କରିବାକୁ ହେବ ।

ମୁଁ ଅନେକ ପଢ଼ିବି, ଅନେକ ଜାଣିବି; କିନ୍ତୁ ହେ ଜୀବନବିଧାତା ବିଶ୍ୱ ବିଭୁ, ତୁମରି କରୁଣା ଓ ତୁମରି ସ୍ନେହକୁ ମୁଁ ଯେପରି ସବୁ ଜାଣିବାଠାରୁ ଅଧିକ ସାର କରି ରଖିଥିବି । ମୁଁ ଖାଲି ପଣ୍ଡିତ ହେବାକୁ ଆସି ନାହିଁ । ମୁଁ ମୂଳତଃ ଓ ସମଗ୍ରତଃ ତୁମରି ମଣିଷ । ତୁମରି ହାତରେ ମୋତେ ଲଙ୍ଗଳା ଶିଶୁଟିଏ କରି ତୁମେ କାଲି ଯେମିତି ମୋତେ ନାନା ଦ୍ୱାରରେ ଭୁବନ ଦେଖାଇଥିଲ, ଠିକ୍ ସେମିତି ଏକ ଲଙ୍ଗଳା ଶିଶୁର ମନପରି ମୋର ମନ ଆଜି ତୁମରି ପାଖରେ ଆଶ୍ରୟ ପାଉ । ମୋର ସବୁ ପାଠ, ମନର ସବୁ ଆଶା ଓ ଜିଜ୍ଞାସା ଉପରେ ତୁମେ ହିଁ ପରମ ଦୀପ୍ତିରେ ଉଦ୍ଭାସିତ ହୋଇଉଠ ।

ତୁମରି ମଣିଷ ତୁମେ ଛଡ଼ା ଆଉ କେହି ନୁହେଁ । ମୋର ମନ୍ ସେଇକଥା କହୁ, ସେଇକଥା ବୁଝି ହୃଦୟ ଖାଲି ନତନୟନରେ ଶ୍ରଦ୍ଧା କରି ଶିଖୁ । ମୁକ୍ତି ପାଇବା ଲାଗି ମୋର ଅନ୍ୟ ଆକାଙ୍କ୍ଷା ନାହିଁ । ମୁକ୍ତି ତ ମୋର ସବୁଦିନେ । ନାନା ବନ୍ଧନର ମେଘ ଭିତରେ ମୋର ମୁକ୍ତି ନିତ୍ୟ ଉଜ୍ଜ୍ୱଳ ହୋଇ ସୂର୍ଯ୍ୟପରି ଫୁଟିଉଠୁଚି ସବୁ ମେଘକୁ ଆଲୋକରେ ଉଦ୍ଭାସିତ କରିଦେଇ । ମୁଁ ଜୀବନରେ କେବେହେଲେ ଅନ୍ୟ ମୁକ୍ତିଲାଗି ପ୍ରାର୍ଥନା କରିବି ନାହିଁ । ମୁଁ ଏଇ ଧୂଳିରେ ଲଘୁ ହେବି, ଏଇ ମଣିଷ ସହିତ ନିଜକୁ ମିଶାଇଦେବି ଗନ୍ଧସାଗରରେ ଗନ୍ଧ ମିଳିଗଲା ପରି । ମୁଁ ସବୁରି ସରିକ ହେବି, ସବୁରି ଭିତରେ ଅଜ୍ଞାତ ଅଥଚ ଅତି ସ୍ୱାଭାବିକ ଭାବରେ ମୁଁ ବିରାଟ ଓ ବିଭୁମୟ ହୋଇ ଉଠିବି । ତାହା ହିଁ ମୋର ବିଶେଷ ପ୍ରଣତି, ମୋର ବିଶେଷ ଅନୁବେଦନ ।

ସୂର୍ଯ୍ୟ ଉଠି ଉଠି ଅନେକ ଉପରକୁ ଗ୍ଭଲିଗଲାଣି । ତେଣେ ମୋର ମନଭିତରେ ରଥସଜଡ଼ା ହେବାର ଆୟୋଜନ ମୁଁ ବେଶ୍ ବାରିପାରୁଚି । ସୂର୍ଯ୍ୟର ନାଲିକିରଣ ମୋର ପ୍ରତ୍ୟେକ ଲୋମଗହ୍ୱରରେ ସଖ୍ୟ ଖୋଜିବୁଲୁଚି ନାନା କମ୍ପନ ଓ ଶିହରଣର ଶ୍ରଦ୍ଧାଞ୍ଜଳି ଦେଇ । ମୋର ମନଭିତରେ ସାରା ବ୍ରହ୍ମାଣ୍ଡର ସ୍ୱପ୍ନ ହଠାତ୍ ଏକାବେଳେକେ ଜାଗିଉଠୁଚି । ମୁଁ ଯେପରି କାହାର କୋଳେ ଉନ୍ନୀତ ହୋଇ ଗ୍ଭଲିଚି । ସମସ୍ତ ଦିନର ବିରାଟ ସରଣୀରେ ଆଜି ରଥର ପରିକ୍ରମା ହେବ, ନାନା ମଣିଷର ନାନା ତୀର୍ଥରେ ମୁଁ ଅବତରଣ କରିବି, କର୍ମର ମର୍ମାଲିଙ୍ଗନ ଭିତରେ ମୁଁ ଅନେକ ସହିତ ମିଶିବି, ମୋର ସ୍ନେହୋନ୍ନତ କପାଳ ଉପରେ ସବୁରି ଚରଣଧୂଳିକୁ ଭୂଷଣ କରି ରଖିବି । ଏଇ ହେଉଚି ମୋର ଧର୍ମ, ଯିଏ ଯାହା କହୁ ପଛକେ । ମୁଁ ସବୁଠୁଁ ଉଡ଼ିବି, ବୁଲିବି; ସେଇ ମୋର ସଫଳତା, ମୋର ଚରମ ମୁକ୍ତି !

୧୦ । ୧୧ । ୪୮

ମୋ'ର ଆଖିଆଗରେ ସୂର୍ଯ୍ୟର ନାଲି ଗୋଲାପ ଫୁଟିଫୁଟି ଯାଉଚି କଳା ଅନ୍ଧାରକୁ ଅଗ୍ନିର ସମ୍ଭାରରେ ଶୁଦ୍ଧ କରି, ଆଉ ମୁଁ ଅନ୍ତରର ଉତ୍କ୍ରାନ୍ତ ଆକୁଳତା ନେଇ ସେଇ ଅନୁଭୂତିକୁ ଲେଖିରଖୁଚି ଏହି ପୃଷ୍ଠାଉପରେ । ତା' ମୋ' ଭିତରେ ଆଉ କୌଣସି ବ୍ୟବଧାନ ନାହିଁ, ବହୁ ଗଗନର ଦୂରତାକୁ ଲଙ୍ଘ କରି ସେ ସିଧା ଆସି ମୋ'ରି ମୁହଁରେ ଧରାଦେଉଚି । ଅଗଣିତ ଘାସ-ପତରର ଶିରାରେ ଶିରାରେ ପ୍ରାଣ ଯେପରି ତା'ପାଇଁ ଆସ୍ଥାନ ସଜାଡ଼ୁଚି ! କ୍ଷଣକପରେ କିରଣ ବ୍ୟାପ୍ତ ହୋଇଯିବ, ଘାସଉପରେ ତାହାରି ହୀରାର ପ୍ରତିଫଳନକୁ ଅନୁଭବ କରି ମୁଁ ଧନ୍ୟ ହେବି ।

ସବୁଦିନେ ମୁଁ ଏହି ଘାସଶେଯ ଉପରେ ସୂର୍ଯ୍ୟଶିଶୁକୁ ରଙ୍ଗ ରଚିବାର ଦେଖୁଚି । ରାତ୍ରିର ଅଶ୍ରୁକଣାରେ ଜ୍ୱଳନ ଜଗାଇଦେଇ ଯେପରି ସେ ବିନ୍ଦୁଭିତରେ ପରିବ୍ୟାପ୍ତ ହୋଇଯାଉଚି, ଏବଂ ସଙ୍ଗପିପାସୀ ମୋର ମନଟା ମଧ୍ୟ ଯେପରି ସେହି ଉଲଗ୍ନ ଜ୍ୟୋତିର୍ମୟ ଶିଶୁକୁ ଆପଣାଭିତରେ ସାର କରି ପାଉଚି । ଯଦି ଆଖି ଥାଆନ୍ତା, ତେବେ ମୁଁ ହୁଏତ ସବୁବେଳେ ସୂର୍ଯ୍ୟୋଦୟ ଦେଖୁଥାଆନ୍ତି । ଯଦି ହୃଦୟକୁ ଆହୁରି ପ୍ରସାରିତ କରିପାରନ୍ତି, ତେବେ ହୁଏତ ସବୁବେଳେ ତାକୁ ଧାରଣ କରି ରଖିବାର ସୌଭାଗ୍ୟ ପାଇଥାନ୍ତି ।

ଏଇ ତ, ତାହାରି କିରଣସ୍ନାନର ତରଳ ବନ୍ୟା ଲୋମକୂପ ଦେଇ ମୋର ରକ୍ତରେ ମିଶିଯାଉଚି, ଯେପରି ସେଇ ଆଜି ଅଭିସାରରେ ଓହ୍ଲାଇ ଆସିଚି ମୋ' ଅନ୍ତରରେ ଆପଣାର ନୀଡ଼ ରଚନା କରିବବୋଲି ! ଏଇ ତ ଯଥେଷ୍ଟ ! ଆଜି ମୋର ସକଳ ସଙ୍ଗଲାଳସା ପରିଶାନ୍ତ ହୋଇଚି । ମୁଁ ଦେଖିଚି, ମୁଁ ପାଇଚି, ମୋର ଆଉ କିଛି ଅଭାବ ନାହିଁ ।

୧୧ । ୧୧ । ୪୮

ଆଜିଠାରୁ ଆସନ କରିବା ଆରମ୍ଭ କଲି । ଏଇ ଶୀତ ଚାରିମାସ ମୁଁ ଆସନ ଅଭ୍ୟାସ କରେ ଆଉ ତାହାରି ଫଳ ବରଷଯାକ ପାଏ । ଭାରି ଭଲ ଲାଗୁଚି ଶୀତସକାଳୁ ଉଠି ଗାଧୋଇପଡ଼ି ଆସନରେ ବସିଯିବାକୁ । କେତେ ଯୁଗର ବୋଝ ଓ କେତେ ରାତିର ମଇଳା ସତେଥବା ତରଳି ସ୍ରୋତ ହୋଇ ବହିଯାଉଚି ସେଇ କେତେଟା ମିନିଟର ପ୍ରସନ୍ନ ଅବସ୍ଥାରେ ।

ଏଇ ଖୋଜିବାରେ ହିଁ ମୁଁ ପାଇବି । ଆଉ ଅନ୍ୟକୌଣସି Short Cut ନାହିଁ । ଏଇ ଖୋଜାପଥର ଧୂଳିମାଟିରେ ହିଁ ମନ ଦିନେ ଶୁଦ୍ଧସ୍ନାନ ହୋଇ ତାହାରି ଚରଣ ଲାଭ କରିପାରିବ । ମୋର ଏହି ଖୋଜିବାରେ ହିଁ ଆନନ୍ଦ । କାହିଁ, ଏତେଦିନ ତ ମୁହୂର୍ତ୍ତେହେଲେ ହାତରେ ଧରିପାରିଲି ନାହିଁ କି ଆଖିରେ ଦେଖିପାରିଲି ନାହିଁ । କେବଳ ଖୋଜାଦିନର ନିବିଡ଼ ମୁହୂର୍ତ୍ତରେ ଯେତେବେଳେ ସମସ୍ତ ହୃଦୟ ଯେତେବେଳେ ତାହାରିପାଇଁ ସବୁ କାମ କରେ, ତାହାରିପାଇଁ ଗୀତ ଗାଏ, ତାହାରିପାଇଁ ସ୍ୱପ୍ନ ଦେଖେ, ସେତିକିବେଳେ ହିଁ ମୋର ଆଖି, କାନ ଓ ହାତର ସମସ୍ତ ଆକାଂକ୍ଷା ପୂର୍ଣ୍ଣ ହୋଇଯାଏ । ତେବେ ସେଇଆ ହେଉ,—ମୁଁ କେବଳ ଖୋଜିବାରେ ହିଁ ଲାଗିଥାଏ, ଏତକ ମୋର କାମ । ଏଇଥିରେ ହିଁ ମୁଁ ପରିତୃପ୍ତି ପାଏ !

ମଣିଷତୀର୍ଥରେ ମଣିଷଦେବତାକୁ ସମ୍ମାନ ଓ ଶ୍ରଦ୍ଧାର ନିବେଦନ କରି ମୁଁ ମୋ' ଭଗବାନର ପୂଜା କରିବି । ଏହି ବିଜ୍ଞାନଯୁଗରେ ମଣିଷ ଅନେକକିଛି ଲାଭ କଲା, କିନ୍ତୁ ହରାଇ ବସିଲା ଏହି ଶ୍ରଦ୍ଧା ଓ ସମ୍ମାନଟିକକ । ସେଥିଲାଗି ଆଜିର ସଭ୍ୟତାରେ କୁକୁର ସମ୍ମାନ ପାଉଚି, ଘାସ ଓ କଣ୍ଟାଗଛ ସମ୍ମାନ ପାଉଚି, କିନ୍ତୁ ଖାଲି ମଣିଷ ହିଁ ଅଶ୍ରଦ୍ଧା ଓ ଅସମ୍ମାନରେ ରାସ୍ତାକଡ଼ରେ ପଡ଼ି ମରୁଚି । ଆଜି ସନ୍ଧ୍ୟାବେଳେ ବୋଇପୁର ରାସ୍ତାକଡ଼ରେ ଜଣେ ମଣିଷକୁ ପଡ଼ିଥିବାର ଦେଖିଆସିଲି । ଏହି ସଂସାରର ସମସ୍ତ ଶ୍ରଦ୍ଧାବନ୍ଧନ ତୁଟାଇଦେଇ ସେ ଦାରୁଣ କଷ୍ଟରେ ଚିତ୍କାର କରୁଥିଲା । ନିଜକୁ ମରଣଲାଗି ପ୍ରସ୍ତୁତ କରୁଥିଲା । ଅଥଚ ରାସ୍ତାଉପରେ ସବୁ ଚଳାଚଳ ସାଧାରଣ ଓ ସ୍ୱାଭାବିକ ଭାବରେ ଚାଲିଥିଲା । ଏପରି କାହିଁକି ହେବ ? ଧୂଳି, ମାଛି ଓ ପୋକ ଉଧେଇଲାବେଳେ ମଣିଷ କାହିଁକି ଅଶ୍ରଦ୍ଧାବର୍ଜିତ କୀଟ ପରି ମରୁଥିବ ?

୧୪ । ୧୧ । ୪୮

ଏତ୍ତେଟିକିଏ ଶରୀର ଭିତରେ ଏତେ ଅଧୈର୍ଯ୍ୟର ଅଗ୍ନିଗର୍ଭ କିଏ ରଖିଥିଲା କେଜାଣି, ଆଜି ଆକାଶକୁ ଅଣ୍ଟିରେ ଧରିବାକୁ ମନହେଉଚି । ମୁଁ ଯାହା ପଢୁଚି, ଯେଉଁଠି ପାଣ୍ଡିତ୍ୟର ଚର୍ଚ୍ଚା ଦେଖୁଚି, ସେଠି ସ୍ୱାର୍ଥୀ ପ୍ରାଣଟା ଖାଲି ରୋଦନ କରିଉଠୁଚି : "ତୋ'ଭିତରେ କଣ ଶକ୍ତି ନାହିଁ, ତୁ ନକରିପାରିବୁ

କାହିଁକି ?" ଜ୍ଞାନଲୋଭୀ ମନ ଆପଣା ଅଧୈର୍ଯ୍ୟକୁ ଗଣ୍ଠି କରି ଧରି ଉପସ୍ଥିତ ସମସ୍ତ କର୍ତ୍ତବ୍ୟ ଓ ସଂସାରକୁ ପଛରେ ପକାଇଦେଇ ଧାଇଁଯିବାକୁ ମଧ୍ୟ ଚିକିଏ-ହେଲେ ଦ୍ୱିଧା କରୁ ନାହିଁ,—ମୁଁ ବି ତିବ୍‌ବତ ଯିବି, ନେପାଳ ଯିବି, ମୁଁ ବି ବଡ଼ବଡ଼ ପୋଥିଗଦା ଭିତରେ ପଶି ଅତୀତକୁ ଖୋଳି ବାହାର କରିବି, ମୁଁ ଓଡ଼ିଶାର ଗାଆଁଗହଳରେ ବୁଲି ସଂସ୍କୃତି ଓ ଇତିହାସର ସନ୍ଧାନ କରିବି । ଖାଲି ଏଇ ଅଧୈର୍ଯ୍ୟ ହୋଇ ଖୋଜିବାଛଡ଼ା ଯେପରି ନିଜକୁ ପାଇବାର ଆଉ ଅନ୍ୟ ବାଟ ନାହିଁ ।

ଆଉ ରାଜନୀତି ! ଅନେକ ଲୋକ ପ୍ରଲୋଭନ ଦେଖାଇଚନ୍ତି, ଏବେ ବି ଦେଖାଇବାର ସାହାସ ଛାଡ଼ି ନାହାନ୍ତି । ମୋର ରାଜନୀତି ମୁଁ ସେମାନଙ୍କ-ଠାରୁ ଅଧିକ ଭଲକରି ଜାଣେ । ମୁଁ ମଣିଷର ପ୍ରାଣକୁ ଚିହ୍ନିବି, ସେଇଠୁ ମୁଁ ତାକୁ ଉଦ୍‌ବୋଧନ ଦେବି ନିବିଡ଼ ଅନ୍ଧାର ଭିତରେ ନିଜ ଆଲୁଅର ବତୀ ଜାଳିବାକୁ । ଭୋଟବେଳର ଭାଟପ୍ରତିଜ୍ଞା କରି ମୁଁ ମଣିଷର ସଂଗ୍ରାମ ଓ ସାଧନାକୁ ଶସ୍ତା ଓ ସିଧା କରିବାକୁ ଚାହେଁ ନାହିଁ । ମୋର ରାଜନୀତି ହେଉଚି ସମଗ୍ର ରାଜନୀତି, ମୋ'ର ଧର୍ମ ସମଗ୍ର ଧର୍ମ । ଏହି ରାଜନୀତିକୁ ମୁଁ ପ୍ରତ୍ୟେକଦିନ ବଞ୍ଚୁଚି, ମୋର ପ୍ରତ୍ୟେକ କାର୍ଯ୍ୟ ଭିତର ଦେଇ ମୁଁ ଏହି ଧର୍ମରେ ଆରାଧନା କରୁଚି । ମୁଁ ଧୂଳି ଭିତରେ ଧାଡ଼ାକୁ ଖୋଜି ବୁଲୁଚି, ବେଳେ ବେଳେ ଅନୁଭବ ବି କରୁଚି । ନିଜକୁ ଯେତିକି ଯୋଗ୍ୟ କରିପାରୁଚି, ତାକୁ ମୁଁ ସେତିକି ପାଖକୁ ଟାଣିଆଣି ପାରୁଚି ।

ମୋତେ ଅନେକ ଦିନ ବଞ୍ଚିବାକୁ ହେବ । ଏବେ ସୁଦ୍ଧା ସ୍ୱପ୍ନ ଦେଖାର ଶେଷ ହେଇ। ନାହିଁ । ଏବେ ସୁଦ୍ଧା କହିବାର ଓ କରିବାର ବେଳ ଆସି ନାହିଁ । ସଂସାରର ଧୂଳି ମାଟିରେ, ସବୁ ମଣିଷର ପ୍ରାଣର ଆସ୍ଥାନ ତଳେ ମୋ'ରି ନାଗରାର ଅନାଗତ ସନ୍ଦେଶ ମୁଁ ଶୁଣିପାରିଲିଣି । ଧାଇଁବା ସଙ୍ଗେସଙ୍ଗେ ସାଗରରେ ମିଶିବାର ସନ୍ଦେଶ ଆସି ପହଞ୍ଚିଗଲାଣି । ହୁଏତ ଆଉ ବେଶୀ ଡେରି ନାହିଁ । ଯେତିକି ଅଗ୍ନି ଆହରଣ କରି ନିଜକୁ ଅଗ୍ନିମୟ କରିପାରିଚି, ଆଜି ମୁଁ ତାହାରି ଦ୍ୱାରା ଜଗତରେ ଅଶନି-ପ୍ଲାବନର ଶ୍ରଦ୍ଧା ନିବେଦନ କରିବି । ସେହି ଅନଳ ହୋମର ଉତ୍ସର୍ଗରୂପୀ ଶୀତଳତା ଆଜି ମୋର ମର୍ମେ ମର୍ମେ ସତେ ଅବା ଡାକି ଡାକି ଚାଲିଯାଉଚି । ମୁଁ ଥିଲି ପର୍ବତ ଗହ୍ୱରର ନଦୀ, ଲକ୍ଷ ଜଳକଣା ସଂଗ୍ରହ କରି ମୁଁ ନିଜର ଭଣ୍ଡାର ସାଇତି ରଖିଥିଲି । ବର୍ତ୍ତମାନ ଧାରା ହୋଇ ବହିଯିବାର ବେଳ ଆସିଲା, ସହସ୍ର ସ୍ଥାନର ମାଟି ଭେଦାଇବାର ବେଳ ଆସିଲା । ଆଜି ମୁଁ ତାହାରି ସାଧନା କରୁଚି, ସବୁଦିନ କରୁଚି, ମୋର ସବୁ ଭୁଲ ଓ ସବୁ ସଫଳତା ଦେଇ ମୁଁ ଏହି ସାଧନା କରୁଚି । ସାହିତ୍ୟ ହେଉ, ଧର୍ମ ହେଉ ବା ରାଜନୀତି ହେଉ; ଏହି ଉତ୍ସର୍ଗ ହିଁ ହେଉଚି ମୋର ନିଦାନ ଦାନ, ଏହି ଉତ୍ସର୍ଗର

ପବିତ୍ର ପାତ୍ରରେ ହିଁ ମୁଁ ନିଜକୁ ଜଗତର ଅଞ୍ଜଳିରେ ଭରାଇ ଦେବି । କିଏ କହିବ ଯେ ମୁଁ ଖାଲି ସ୍ୱପ୍ନ ଦେଖୁଚି, ମୁଁ କାମ ଛାଡ଼ି ପଳାଉଚି ? ମୁଁ କହିବି, ମୋ' କଥା ମୁଁ ଭଲକରି ଜାଣିଚି । ମୁଁ ମୋର ଜୀବନ ବଞ୍ଚୁଚି, ମୋର ଧର୍ମ ବଞ୍ଚୁଚି, ଉତ୍ସର୍ଗ ଲାଗି ମୁଁ ନିଜକୁ ଆନତ ଓ ସଂଗୃହୀତ କରି ଆଣୁଚି ।

୧୬ । ୧୧ । ୪୮

ହୃଦୟର ବିରାଟ ପ୍ରାନ୍ତରକୁ ପୂର୍ଣ୍ଣ କରି ଆଜି ମୁଁ ସୂର୍ଯ୍ୟୋଦୟକୁ ଅଭିନନ୍ଦନ କରି ଆଣିଲି । ଶିଶିର ପବନର ଖୋଲାପଡ଼ିଆ ଭିତରେ ଏକା ଠିଆ ହୋଇ ମୁଁ ଯେତେବେଳେ ପୂର୍ବମେଘର ପ୍ରତ୍ୟେକ ରେଖାଟିକୁ ନିକୁଟି ଦେଖୁଥିଲି, ଶୀତଳ କିରଣର କନକପାତ୍ର ନେଇ ସେ ଠିକ୍ ସେତିକିବେଳେ ମୋର ଶୂନ୍ୟ ଭଣ୍ଡାରଟିକୁ ପୂର୍ଣ୍ଣ କରିଦେଲା । ମୁଁ ଏହି ସୂର୍ଯ୍ୟୋଦୟ ଲାଗି ବଞ୍ଚିଚି, ସବୁ ରାତ୍ରି ଓ ସବୁ ରୋଦନର ଅଶାନ୍ତି ଭୁଲି ମୁଁ ନିତି ମୁହୂର୍ତ୍ତ ଉଦିତ ହୋଇ ଗ୍ଲଲିଚି;— ଠିକ୍ ଏଇ ସୂର୍ଯ୍ୟପରି, ସବୁରି ଦିଗ୍‌ବଳୟରେ ରକ୍ତରେଖା ଆଙ୍କିଦେଇ, ଜୀବନର ପୃଷ୍ଠା ଉପରେ ନବୋଜ୍ଜ୍ୱଳ ଅକ୍ଷର ଲେଖି ଲେଖି ।

ଆଜି ମାସର ଷୋଳ ତାରିଖ, ମୋର ଆରାଧନାର ଦିନ, ଜୀବନ ସଙ୍କଳ୍ପର ପୁଣ୍ୟବାସର । ତାହାକୁ ହିଁ କେନ୍ଦ୍ର କରି ମୁଁ ଅନେକ ବୁଲିଲିଣି, ବୁଲୁଥିବି । ସେଥିରେ ମୋର ଆଦୌ ଦୁଃଖ ନାହିଁ । କିନ୍ତୁ ସଦାସର୍ବଦା ମୁଁ ତାହାରି ପରିଧି ଖୋଳି ଜୀବନକୁ ବୃହତ୍ତର ଓ ଅଭିଜ୍ଞାନୀ କରିବାରେ ଲାଗିଥିବି । ମୋ' ଲାଗି ଏହି ଷୋଳ ତାରିଖର ଦୁଇଟା ରୂପ । ଜଗତର କଳା ଧଳା, ଆଲୁଅ ଅନ୍ଧାର, ଶିବ ଓ ରୁଦ୍ର ପରି ସେ ମୋ' ଆଗରେ ଦୁଇଟା ପରିଚୟ ରଖିଯାଇଚି । ତା'ର ପ୍ରଥମ ରୂପଟା ତାରା ପରି, ସମସ୍ତ ଚକ୍ଷୁକୁ ଏକାଗ୍ର କରି ଉପରକୁ କେବଳ ଆକର୍ଷି ନେଇଯାଏ, ତାହାରି ପ୍ରଶାନ୍ତ ଗର୍ଭରେ ଜଳିବା ପାଇଁ ମୁଁ ଆପଣାର ସ୍ଥାନ ବାଛିନିଏ । ଆଉ ଗୋଟାଏ ହେଉଚି ତା'ର ଦୁର୍ବାସା ଦୁରାଶାର ମୂର୍ତ୍ତିମନ୍ତ ରୂପ । ଅଭିଶାପର ଆଘାତ ଦେଇ ମୋତେ ସେ ଶକ୍ତ କରିବାକୁ ଗ୍ଲହେ । ଅନେକ ସ୍ୱପ୍ନର ସାଥୀ କରି ଯାହାକୁ ଅତି ନିକଟରେ ଦେଖିଥିଲି, ସେ ଆଜି ସତେ ଅବା ଅନ୍ଧାର ରାତିର ଅମୁହାଁ ଗୁମ୍ଫାରେ ବନ୍ଦୀ ହୋଇ ରହିଲା । ତାହାରି ଅଭିଶାପ ଆଶୀର୍ବାଦ ହୋଇ ଯେପରି ମୋତେ ନିତି ନିତି ସିଦ୍ଧ କରୁଚି । ଜୀବନର ଏହି ମୃଦାଗୁହା ଭାଙ୍ଗି ମୁଁ ବାଟ ଫିଟାଇବି, ଶରୀର, ମନ ଓ ଆତ୍ମା ଲାଗି ମୁଁ ଖୋଲା ଆକାଶର ରଚନା କରିବି । ଶକୁନି ପରି ସବୁରି ସାର ନେଇ ଆଜି ମୁଁ ତିଆରି ହେଉଚି ଦୁଃଖ ଓ ଦୁର୍ଯୋଗର ଦୁର୍ଯ୍ୟୋଧନ-ବୁକୁ ଫଟାଇ ଅଭିଶପ୍ତ ମେଦିନୀର ବକ୍ଷତଳ ଶାନ୍ତ କରିବି ବୋଲି । ସବୁରି ଆତୁର କ୍ରନ୍ଦନକୁ ବିକାଶର ବିପାଶାରେ ପରିଣତ କରିବି ବୋଲି । ଖାଲି ସ୍ୱପ୍ନରେ ଭସାଉ ନାହିଁ, ପ୍ରତ୍ୟେକ ମାସର ଏହି ଷୋଳ ତ ରିଖ ଆପଣାର

ନୀରବ ଆଶୀର୍ବାଦ ଦେଇ ମୋର କର୍ମକ୍ଷେତ୍ର ଲାଗି ଦୀପ୍ତ ଓ ଦୁର୍ଦ୍ଦମ କରିଦେଇ ଯାଉଚି ।

ଜଣେ ବନ୍ଧୁ ଆଜି ପିଲାଟିପରି ମୋ' ବିଷୟରେ ତାଙ୍କର Impression ମୋତେ କହିଦେଲେ । ନୂଆ ନୂଆ କୁଆଡ଼େ ମୁଁ ତାଙ୍କୁ ଗୋଟାଏ ଗୁଣ୍ଡା ପରି ମନେ ହେଉଥିଲି, ଏବେ କୁଆଡ଼େ ଭାରି ସରଳ ପରି ଲାଗୁଚି । ମୁଁ ଜାଣେନା, ମୋ' ଭିତରେ ପ୍ରକୃତରେ କଣ ଦେଖି ସେ ମୋତେ ଏପରି ଧାର୍ମିକ ଓ ନିରାମିଷ ବୋଲି ଠଉରାଇ ନେଇଚନ୍ତି । ଏ ପାଖ ବା ସେପାଖ, କୌଣସିଟା ହିଁ ଠିକ୍ ନୁହେଁ । ରାସ୍ତାର ମରମ ବଳଦର କାନ୍ଧ ଜାଣେ । ଅବସର ପାଇଲେ ଯିଏ ଖାଲି ମତାମତରେ ପାଞ୍ଚଣ ପିଟିଦେଇ ଯାଉଚି, ସିଏ କାହୁଁ ଜାଣିବ ମୋ' ଗହନର ସେହି ବିଦ୍ରୋହୀ ପ୍ରବୀଣ ମନଟାର କଥା ? ଖାବରାଖଣ୍ଡିଆ—କ୍ଲିଷ୍ଟ-କର୍ମଠ ଜୀବନର ବୈଚିତ୍ର୍ୟ ନେଇ ମୁଁ ହେଉଚି ଏକ ସମଗ୍ର ପ୍ରାଣୀ । ମୁଁ ଗୁଣ୍ଡା ନୁହେଁ କି ଜ୍ୟାମିତିରେଖା ପରି ସରଳ Short cut ବି ନୁହେଁ । I am a great experimenter, the 'I' Brand Robinson Crusoe.

୧୭ । ୧୧ । ୪୮

ନାନା ଦିଗ ଓ ଦୃଷ୍ଟିକୋଣରୁ ଜୀବନର ଅବଲୋକନ କରି ହୃଦୟଲୁତା ନାନା plot ତିଆରି କରି ଥୋଇଦେଉଚି, ପ୍ରକାଶର ପୂର୍ବାଭାସ ଦେଇ । ବିଚିତ୍ର ଏହି ଜଗତରେ ମୁଁ ଯାହା ଦେଖୁଚି, ଧୀରେ ଧୀରେ ନିଜ ଭିତରେ ମୁଁ ତାହାର 'ନିଜ' ମାର୍କା Response ମଧ୍ୟ ପାଉଚି । ଦୁଆର ଖୋଲିବାର ଯେପରି କେଉଁ ପୂର୍ବରାଗ ଆରମ୍ଭ ହେବାକୁ ଯାଉଚି !

ଜିହ୍ୱାକୁ ଜବତ କରି ମୁଁ ଆଜିଯାଏ ଖାଲି Absolve କରି ଆସିଚି, ଜଗତର ତିକ୍ତ ମଧୁ ଖାର ଖଣ୍ଡ ସବୁ ମିଶାଇ କୋଉ ରାନ୍ଧୁଣୀ ଯେପରି ଗୋଟିଏ ବିଶିଷ୍ଟ ରସ ତିଆରି କରି ଆସିଚି, ଆଜି ଚଖାଣିଆ ଜୀବନଜୀବୀମାନଙ୍କ ଆଗରେ ତା'ର ପରିବେଷଣ କରିବାକୁ ହେବ । ଚଖା ସମାଜକୁ ମୋର ଡର ନାହିଁ, ପରଖିବା ସଭାକୁ ମୁଁ ଭୟକରେନା । ମୋ'ର ଭୟ ମୋ' ନିଜ ମନର ପରଷିବାକୁ । ନିଜର ଶୁଦ୍ଧ ସାମଗ୍ରୀକୁ ଅମିଶ୍ର ରଖି ମୁଁ ଯେପରି ଜଗତ ଆଗରେ ପରଷି ଦେଇପାରିବି, ସେତିକି ମୋର ଚିନ୍ତା । ସେତିକି ସାହସ, ନିଜ ପ୍ରତି ସେତିକି ଶ୍ରଦ୍ଧା ମୋର ହେଉ । ନିଜର ଦାନ ପଛରେ ନିଜକୁ ନିର୍ବାପିତ କରି ରଖିବାର ବଳିଷ୍ଠ ଶପଥ ମୋ' ଭିତରେ ଆସୁ । ଖାଲି ସମର୍ପଣ କରିବାକୁ ହେବ, ଖାଲି ନିଜକୁ ସମର୍ପଣ କରିବାକୁ ହେବ, ଯାହା ନ ଦେଲେ ଆଦୌ ଚଳିବ ନାହିଁ । ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେଇଆ । ନିଜର ବୈଶିଷ୍ଟ୍ୟ ଚିହ୍ନି ଯିଏ ଶତହସ୍ତରେ ଦାନ କରିପାରିଚି, କେବଳ ସେଇ ସଂସାରର ଶ୍ରଦ୍ଧା ନେଇପାରିଚି, ସଂସାରକୁ ଯଥାର୍ଥ ଶ୍ରଦ୍ଧା ଦେଖାଇପାରିଚି ।

ମୁଁ ନିଜକୁ ଏକ ଅନନ୍ତ ଯାତ୍ରୀ ବୋଲି ମାନି ନେଇଚି, ପଥାପଥ ମତାମତକୁ ଆଉ କାନ ଦେବି ନାହିଁ । କାଦୁଅ ଖସଡ଼ାକୁ ଡରିବି ନାହିଁ, ପ୍ରଶଂସା ଟାପରାକୁ ସମାନ ହେବି । ମୁଁ ଜୀବନପଥର ଯାତ୍ରୀ, ସବୁ ମଣିଷକୁ ମୁଁ କେବଳ ସତୀର୍ଥ ଓ ସହଯାତ୍ରୀ ରୂପେ ଦେଖିବି । ଏଇ ମୋର ଧର୍ମ ।

କାର୍ତ୍ତିକ ପୂର୍ଣ୍ଣିମାର ବୈତାଳିକକୁ ଯାଇ ଆଜି ନିରାଶ ହେଲି । ହୁଏତ ଆଉ କେତେଟା ବର୍ଷ ପରେ ଶାନ୍ତିନିକେତନର ଦୈନନ୍ଦିନ ରୁଟିନ୍ ଏହି ବୈତାଳିକକୁ ଏକାବେଳକେ ଭୁଲିଯିବ । ଯେଉଁ କେତେଜଣ ଉତ୍ସାହୀ ପିଲା ଆଜି ଜ୍ୟୋତ୍ସ୍ନାବରଣର ବୈତାଳିକରେ ଯୋଗ ଦେବାକୁ ଆସିଥିଲେ, ସେମାନଙ୍କ ଭିତରୁ ପୁଣି ଅନେକେ ଗୀତ ଗାଇ ଜାଣନ୍ତି ନାହିଁ । ଏଡ଼େ ମହତ ଅନୁଷ୍ଠାନଟି କ'ଣ ଖାଲି ଗୀତ ଗାଇବା ସକାଶେ କରାହୋଇଥିଲା ? ସମସ୍ତେ ଏକତ୍ର ହେବେ, ଏକ ସ୍ୱରରେ ଦିନଟିର ବୈଶିଷ୍ଟ୍ୟକୁ ଅନ୍ତର ଭିତରକୁ ଆବାହନ କରିନେବେ,—ବିରାଟ ବିଶ୍ୱର ପଖଳା ପ୍ରାଙ୍ଗଣରେ ସମବେତ ବ୍ୟକ୍ତି ଯୂଥର ମିଳନ-ନିବେଦନ ଏ । କେତେଜଣ ଏକଥା ବୁଝନ୍ତି ? ଯିଏ ଏହି ସମ୍ମିଳିତ ପୂଜାର ଗୀତୋତ୍ସବରେ ସମବେତ ନ ହେଉଚି, ସିଏ ଏହି ସମ୍ମେଳନ ତୀର୍ଥର ଗୋଟିଏ ଦୁଆର ବନ୍ଦ କରିଦେଉଚି, ମିଳନଧର୍ମୀ କବିର ଆତ୍ମାରେ ସେ ଦାରୁଣ ହୋଇ କଣ୍ଟା ପିଟୁଚି ।

ଆଜି ଦିନଟି କଟିଚି ଅତି ସମ୍ପୂର୍ଣ୍ଣ ଓ ସ୍ୱଚ୍ଛବଭାବେ । ସେଥିଲାଗି ହେ ଅନନ୍ତ ଦିନର ଧାତା, ପୂର୍ଣ୍ଣ ପ୍ରୀତିର ପ୍ରାଣ ପାତ୍ରରେ ଏହି ଦିନଟିକୁ ମୁଁ ତୁମରି ଭଣ୍ଡାରରେ ସାଇତି ରଖୁଚି । ଏହି ଦିନଟିର ସଙ୍ଗେ ସଙ୍ଗେ ଆଜିକାର ରାତ୍ରି ମଧୁମୟ ହେଉ, ଆଜିର ସ୍ୱପ୍ନ ମଧୁମୟ ହେଉ । କର୍ମ ଶେଷର ପ୍ରଶାନ୍ତ ଆଶୀର୍ବାଦ ନେବା ଆଗରୁ ତୁମକୁ ମୋର ପ୍ରଣତି ଜଣାଇ ଯାଉଚି ।

୧୮ । ୧୧ । ୪୮

ଦଗ୍ଧା ମେଘର କଳାପଥର ଫଟାଇ ସୂର୍ଯ୍ୟ ଆଜି ଝରଣାପରି ନିଃସରି ପଡ଼ିଲା । ଏବଂ ମୋ' ଭିତରର ସମସ୍ତ ନିଦାପରସ୍ତ ଫୁଟାଇ ତା'ରି ମର୍ମର ସ୍ରୋତ ଯେପରି ସକାଳର ସମସ୍ତ ପାତ୍ରକୁ ଭରାଇ ଦେଇଗଲା ସହସ୍ର ଓ ବିଭିନ୍ନକୁ ଗୋଟିଏ ଆଲୋକ ଏକକରେ ବିକଶାଇ ଦେଇ ସୂର୍ଯ୍ୟ ଶିଶୁର ଏହି ଯେଉଁ ନିତ୍ୟଖେଳା ନିତ୍ୟ ସକାଳେ ଗ୍ଳଲିଚି, ତାହାର ସହିତ ସମଗ୍ର ମନ ହଠାତ୍ ଏପରି ଉଛୁଳି ଧାଉଁଚି କାହିଁକି ? ବାହାରେ ନିତି ଅନ୍ଧାରପଟ ଖୋଲିବା ସଙ୍ଗେ ସଙ୍ଗେ ତେଣେ ଭିତରେ ବି ପଟ ଖୋଲିଯାଉଚି ।

ଖରା ନାହିଁ । ପ୍ରଥମ ମାର୍ଗଶିରର ଏହି ଅଞ୍ଜନଲଗା ସକାଳଟି ଭାରି ଚମତ୍କାର ଲାଗୁଚି । ହାତରେ, ମୁହଁରେ ଦୂରର ଉତ୍ତରା ପବନ ବାଜି ମନକୁ ବାରବାର ଜଣାଇଦେଇ ଯାଉଚି । ସରଗରେ ଆଜି ମେଘର ଭିଡ଼, ଗଛ ପତର

ସମସ୍ତେ ନିଶ୍ଚଳ ହୋଇ ତାହାରି ଆଡ଼କୁ ଅନାଇ ରହିଚନ୍ତି । ବାହାରେ ଆଜି ତାପ ନାହିଁ, ସମ୍ଭବତଃ ସେଇଥିପାଇଁ ଭିତରର ତାପ ମୋତେ ଆଜି ଏଡ଼େ ଅସ୍ଥିର କରିପକାଉଚି ! ସେ ବାହାରକୁ ବାହାରିବ, ଜଡ଼ ଜଗତର ପାହାଚେ ପାହାଚେ ଗୋଡ଼ ସିଏ କୁହୁଡ଼ିମଣ୍ଡଳ କାଟି ଗ୍ଲଲିଯିବ । ଭିତରଟା ଆଜି ଭାରି ଚଞ୍ଚଳ, ଶୀତର ଶାନ୍ତ ହିମ ପରଶରେ ସେ ଆଜି ସମସ୍ତ ଉଷ୍ଣତା ଓ ପ୍ରଖରତାକୁ ହୃଦୟରେ ଧରି ଜାଗି ଉଠିଚି ।

୧୯ । ୧୧ । ୪୮

ମନ ଆଜି ଅନେକ ଦୂରକୁ ଛୁଟି ପଳାଇଚି । ଡେନମାର୍କର ଜାତୀୟ ସାହିତ୍ୟରେ କବି ଓ ଯୁଗଦର୍ଶୀ Grundtvigଙ୍କ ନାମ ଆଗରୁ ଶୁଣିଥିଲି । ସେଇଦିନଠାରୁ ଡେନମାର୍କର ମଣିଷ, ତା'ର ସାହିତ୍ୟ ଓ ସଂସ୍କୃତି ଆଡ଼କୁ ଭାରି ଆକୃଷ୍ଟ ହୋଇପଡ଼ିଥିଲି, କିନ୍ତୁ ନିକଟତର ପରିଚୟ ପାଇବାର ସୁଯୋଗ ମୋତେ ଏପର୍ଯ୍ୟନ୍ତ ମିଳି ନ ଥିଲା । ଆଜି ଆମେରିକାର ଅଧ୍ୟାପକ ଶ୍ରୀଯୁକ୍ତ ଷ୍ଟର୍କଙ୍କ ସହିତ ଆଳାପ ହେଲାପରେ ସେ ଅନୁବାଦ କରିଥିବା ଡେନିଶ୍ କବିତା ସଂଗ୍ରହକୁ ସାରାଦିନ ବସି ପଢ଼ିବାର ଆନନ୍ଦଲାଭ କଲି । କି ସ୍ୱାଭାବିକ, ସରଳ ଓ ସୁନ୍ଦର ଭାବରେ କବିର ଅନ୍ତରତମ ପ୍ରାଣରୁ ଏହି କବିତାଗୁଡ଼ିକ ଫୁଟିଉଠିଚି ! ଏବେ ମଧ୍ୟ ଡେନମାର୍କକୁ ଯନ୍ତ୍ରବାଦୀ ଇଉରୋପର ଯାନ୍ତ୍ରିକ ନିଶା ଓ କ୍ଷମତା କୁଟିଳତା ଗ୍ରାସ କରିପାରି ନାହିଁ, ସେହି ଦେଶର ମଣିଷ ପ୍ରକୃତି ସହିତ ଏବେ ମଧ୍ୟ ଖିଅ ଲଗାଇ ରଖିଚି । ସେଥିଲାଗି ଧର୍ମ, ପ୍ରକୃତି, ପ୍ରେମ ଓ Floklore ସେହି ଦେଶର କବିତାରେ ଏତେବଡ଼ ସ୍ଥାନ ହାସଲ କରି ରହିଚି । ଆଗରୁ ଖୁବ୍ କମ୍ କବିତାରେ ମୁଁ ଏପରି ପ୍ରାଣମୟ ସ୍ପର୍ଶ ପାଇଚି । ଗୋଟାଏ ନୂଆ ସତ୍ୟ ଆସି ମନଆଗରେ ହାବୁଡ଼ିଯାଉଚି । ଯଦି କ୍ଷମତା ଓ ସମରସ୍ପୃହାଙ୍କ ଛାଡ଼ି ମଣିଷର ପ୍ରେମ ଓ ପ୍ରକୃତି ଭିତରେ ବଢ଼ି ପାରୁଥାନ୍ତା, ତେବେ ତାହାର ଚିନ୍ତାଧାରା ପରସ୍ପରର ଅଧିକ ନିକଟକୁ ଆସିପାରନ୍ତା । ନାନା ପ୍ରକାର କୁତ୍ସିତ କୁଟିଳତା ଓ ସ୍ୱାର୍ଥର ବଶବର୍ତ୍ତୀ ହୋଇ ମଣିଷର ବାଟ ଆଜି ବଡ଼ ବିଚ୍ଛିନ୍ନ ଓ ବିଭିନ୍ନ ହୋଇପଡ଼ିଚି । ଜୀବନର ଜଳଧାରା ଶତଧା ହୋଇ ଶୁଷ୍କ ହୋଇପଡ଼ିଚି । ସବୁ ଦେଶର Floklore ଓ Ballads ଭିତରେ ସେହି ଗୋଟିଏ ପ୍ରାଣମର୍ମର ଇଙ୍ଗିତ ରହିଚି । ସେଠି ଦେଶ ନାହିଁ, ଜାତି ନାହିଁ, ପ୍ରାଚୀର ନାହିଁ ବା ପ୍ରଭେଦ ନାହିଁ । ସେଠି ଶୁଦ୍ଧ ସୁନ୍ଦର ମଣିଷ ନିଜର ସକଳ ସମ୍ପଦକୁ ସମ୍ଭାରି ଧରି ବିରାଟ କେଉଁ ମନ୍ଦିର ଛାୟାରେ ସତେଅବା ମୁହାଁମୁହିଁ ହୋଇ ଠିଆ ହୋଇଚି ।

୨୦ । ୧୧ । ୪୮

ଯେତେବେଳେ ଅରଟ ଧରି ମୁଁ ସୂତା କାଟିବସେ, ସେତେବେଳେ ମୁଁ ବିଶ୍ୱଧୂଳିରେ ବ୍ୟାପ୍ତ ହୋଇଗଲାପରି ଅନୁଭବ କରେ । ସେତେବେଳେ ସ୍ୱର୍ଗର

ଗନ୍ଧ ଧରଣୀର ଧୂଳିକୁ ପବିତ୍ର କରେ, ଆକାଶବିହାରୀ ଆତ୍ମା ନୃମୟ ସମାଜ ଭିତରକୁ ବାହୁଡ଼ିଆସେ । ଜଗତରେ ମୁଁ ଏକା ନୁହେଁ, ଏହି ଚମମାଂସର ଓ ଏହି ଆଶାଆକାଙ୍କ୍ଷାର ଆହୁରି କୋଟି କୋଟି ରହିଚନ୍ତି । ସେମାନେ ମଧ୍ୟ ମୋ'ରି-ପରି ଖାଇବେ, ପିନ୍ଧିବେ, ଆଶା ବାନ୍ଧିବେ ଓ ଫଳ ଫଳାଇବେ । ବିଶ୍ୱବ୍ୟାପୀ ମୋର ମନ ସେତେବେଳେ ନିଜକୁ ନିଜେ ସତର୍କ କରିଦିଏ । ନିଜକୁ ବଞ୍ଚାଇବାକୁ ହେଲେ ଅନ୍ୟ ସଭିଙ୍କୁ ମଧ୍ୟ ବଞ୍ଚିବାର ଜାଗା ଛାଡ଼ିଦେବାକୁ ହେବ । ଏହି ଅରଟ ପଛରେ ଆହୁରି ଗୋଟିଏ ଇଙ୍ଗିତ ମଧ୍ୟ ପ୍ରଚ୍ଛନ୍ନ ରହିଚି । ବିଶ୍ୱର ମୂଳଦୁଆ ମୋ'ରିଠାରୁ, ବିଶ୍ୱର ବିପ୍ଳବ ମୋ'ରି ଅନ୍ତର ଭିତରେ, ଭବିଷ୍ୟର ସ୍ୱପ୍ନସମ୍ଭବ ଆଜିଦିନର କର୍ମଚର୍ଯ୍ୟା ଭିତରେ, ସମୂହ ସମାଜର କଲ୍ୟାଣସାଧନ ପଡ଼ୋଶୀର ଦୁଃଖଦୁର୍ଦ୍ଦିନ, ସୁଖ ଓ ସୋହାଗରେ ସମଭାଗୀ ହେବାରେ । ପାରିସର ଆନ୍ତର୍ଜାତିକ ସଭାମଣ୍ଡପରେ ନୁହେଁ, ମୋ'ରି କ୍ଷୁଦ୍ରଜୀବନର ମାନବସମ୍ପର୍କ ଭିତରେ ମୋତେ ଆଗାମୀ ଅନୁଷ୍ଠାନର ନିଅଁ ପକାଇବାକୁ ପଡ଼ିବ । ସ୍ୱପ୍ନବାସୀ ମଣିଷର ସ୍ୱପ୍ନ ହୁଏତ କେବେଯାଇ ସଫଳ ହେବ, ସବୁ ମଣିଷ ହୁଏତ ଦିନେ ସରଳ ଓ ସହଜ ହୋଇଯିବେ, କିନ୍ତୁ ସଂସାରର ସେହି ଶୁଭ ମୁହୂର୍ତ୍ତ ଆସିବା ପର୍ଯ୍ୟନ୍ତ ମଣିଷ ଜଣ ଖାଲି ଆଦର୍ଶ ଘେନି ବସି ରହିଥିବ, ଖାଲି କବିର କବିତାରେ ସଫଳ ସ୍ୱପ୍ନର ସାନ୍ତ୍ୱନା ପାଉଥିବ ? ଏଇଠି ଚରଖା ମଣିଷକୁ ଏକ ମହାନ୍ ଶିକ୍ଷା ଦିଏ । ଯଦି ମୁଁ କୌଣସି ଏକ ଆଦର୍ଶରେ ବିଶ୍ୱାସ କରେ, ତେବେ ଆଜିଠାରୁ ହିଁ ମୁଁ ସେହି ଆଦର୍ଶକୁ ବଞ୍ଚିବାଲାଗି ଉଦ୍ୟମ କରିବି । ଅଳସ ସ୍ୱପ୍ନ ନ ଦେଖି ମୁଁ କାଲିଠାରୁ ନୂଆ ଜୀବନ ବଞ୍ଚିବି ।

ଆଜି ଖେଳୁ ଖେଳୁ ସୂର୍ଯ୍ୟାସ୍ତ ଦେଖିଲି । ନିଜକୁ ଏକ ରକ୍ତଗୋଲକରେ ସମାବିଷ୍ଟ କରି ଆଜିର ଦିନଟି ରାତ୍ରିକୋଳରେ ନିଜକୁ ଦେଇ ଦେଉଥିଲା କାଲିକାର ନବଜୀବନ ଲାଭ କରିବାପାଇଁ । ଆଖିଆଗରେ ବରଷାରଦୂର ଅସ୍ତାକାଶ ଭାସିଉଠିଲା । ହଠାତ୍ ଅକାଳରେ ଏହି ଅଭିନୟ କାହିଁକି ?

ଠିକ୍ ଏହିପରି ମୁଁ ଯେଉଁଦିନ ଆପଣାକୁ ଗୋଟିଏ ଦାନର ପ୍ରଣତିରେ ଉତ୍ସର୍ଗ କରିଦେଇପାରିବି, ସେଇଦିନ ଯାଇ ନୂତନ ଜାତକର ଆଶୀର୍ବାଦ ଲାଭ କରିବି । ମୋର ଆଉ କିଛି ଦରକାର ନାହିଁ । ଜଗତର ପର୍ବତସମ ମାଟି, ମାଂସ ଓ ମଇଳାର ଗର୍ଭରେ ନିଜର ସାର ମଣିର ମଞ୍ଜିଟିକୁ ମୁଁ ଏକାବେଳେକେ ପୋତି ପକାଇବି, ତେବେଯାଇ ସବୁରି ସାର ପାଇ ତାହା କାଲି ଗଛ ହୋଇ ଉଠିବ ନୂଆ ପତର ଓ ଫୁଲର ପ୍ରାଣସମ୍ଭାର ନେଇ । ଯେତିକି ଗଣ୍ଠି ପକାଇ ଆପଣା ଆୟତ୍ତର ମୁଠାରେ ମୁଁ ନିଜକୁ ବନ୍ଦ କରୁଥିବି, ଆପଣାକୁ ସେତିକି ହରାଇ ବସୁଥିବି । ଏହା ହେଉଚି ସଂସାରରେ ଜନ୍ମଶାସ୍ତ୍ରର ପ୍ରଥମ ନିୟମ ।

ଆଜିର ଏହି ଶୀତରାତିରେ ମଧ୍ୟ ଅନ୍ତର ଭିତରେ ତାହାରି ଆକାଙ୍କ୍ଷାର ତପ୍ତ-ବର୍ତ୍ତିକା ଜଳୁଚି । ଦୀପଟି ଡେଙ୍ଗିଦେବାକୁ ସେ ନିଜେ ଦୁଆର ପାଖରେ

ଜାଗିରହିଚି । ଉଠ ମୋ ଅନ୍ତରର ଆବାହକ, ମୋ' ଚିତ୍ତର ଅସଲ ଚିହ୍ନାଳି, ତାହାରି କରସ୍ପର୍ଶକୁ ବରଣ କରିଆଣ । ତେବେଯାଇ ତ ଶାଶ୍ୱତ ଦୀପର ଶୀତଳ ମହିମାରେ ଜଳି ଉଠିପାରିବୁ ।

୨୧ । ୧୧ । ୪୮

ଏଇମାସଠାରୁ ମୁଁ ସାଧାରଣ ଖାଦ୍ୟଭବନରେ ରାତିଖାଇବା ଓ ଦୁଇଓଳି ଜଳଖିଆ ଖାଇବା ଛାଡ଼ିଦେଇଚି । ନିଜର ଇଚ୍ଛାମତେ ବୋଲପୁରରୁ ସିଧାସିଧା ଖାଇବା ଜିନିଷ କିଣିଆଣୁଚି । ଏହି ନୂଆ ପରିବର୍ତ୍ତନଟି ବେଶ୍ ଲାଗୁଚି । ଖାଇବାଲାଗି ଟିକିଏ ପରିଶ୍ରମ କରିବାକୁ ପଡ଼ୁଚି ବୋଲି ଖାଇବାରେ ବେଶ୍ ଆନନ୍ଦ ମିଳୁଚି । ଅନେକେ ହୁଏତ କହିବେ ଯେ ଖାଦ୍ୟଭବନକୁ ଦିନରେ ଗ୍ଥରିଥର ବଦଳରେ ମାତ୍ର ଥରେ ଯିବାଦ୍ୱାରା ମୁଁ ଆଶ୍ରମର ଜୀବନରୁ ଦୂରଛଡ଼ା ହୋଇ-ଯାଉଚି । କିନ୍ତୁ ମୁଁ ଠିକ୍ ଓଲଟା ଭାବୁଚି । ଖାଦ୍ୟଭବନରେ ଗତ ତିନିବରଷ ହେଲା ଖାଇବାଦ୍ୱାରା ମୁଁ ଯେପରି ବିରାଟ ପୃଥିବୀର ସୁଖଦୁଃଖ, କ୍ଷୋଭ ଓ ଖଟଣିରୁ ଅତି ଦୂରଛଡ଼ା ହୋଇଯାଇଚି । ପ୍ଲେଟୋଙ୍କର କଳ୍ପିତ ବହୁଯତ୍ନପାଳିତ ସେହି ସୁନାମଣିଷ ପରି ନିଜକୁ ଅନେକଥର ମନେହୋଇଚି, ଆପଣାର ଏହି ଭଦ୍ର ନିର୍ବାସନକୁ ମୁଁ ଅନେକ ସମୟରେ ଧିକ୍‌କାର ଦେଇଚି । ବୋଲପୁର,—ଧୂଳି-ଧୂସର ରାସ୍ତାଉପରେ ଧୂସର ମଣିଷର କ୍ଷୁଦ୍ର ବିପଣିଟିଏ,—ସେଠିକି ପ୍ରତ୍ୟେକ ଦିନ ଯାଇ କେଉଁ ଧୂଳିଆ ଭଗବାନ ସହିତ ନିତି ଆତ୍ମାର ମିଳନ ହୋଇଯାଉଚି । ଦୁର୍ଗନ୍ଧ, ଦୁଶ୍ଚିନ୍ତା ଓ ଦୁଃସମୟପୂର୍ଣ୍ଣ ଜୀବନଯାତ୍ରାର ଅକ୍ଷୌହିଣୀ ପ୍ରଦର୍ଶନ ସେଠାରେ ନିତି ବସିଚି । ମୋତେ ମଣିଷପରି ସେହି ପ୍ରଦର୍ଶନୀର ସମ୍ମୁଖୀନ ହେବାକୁ ପଡ଼ିବ । କାରଣ ମୁଁ ହେଉଚି ସେଇ ଯୁଗର ମଣିଷ, ଯେଉଁ ଯୁଗରେ ଅଧିକସଂଖ୍ୟକ ମଣିଷ ଏହି ଦୁର୍ଗନ୍ଧର ତଥାକଥିତ ଜୀବନରେ ସଢ଼ିମରନ୍ତି ।

୨୨ । ୧୧ । ୪୮

ରହସ୍ୟମୟ କିଏ ଜଣେ ବେମାରିର ଧମକ ଦେଖାଇ ମୋତେ ପରୀକ୍ଷା କରିବାକୁ ଆସିଚି । ଗତ ଛୁଟୀ ସମୟରୁ ଆଖିତଳେ କଣଟାଏ ଉଠିଚି କେଜାଣି, ଲାଇଟହଟହ ବରକୋଳି ପରି ଟଳଟଳ ହେଉଚି, ଅଥଚ ଏତେ-ଟିକିଏ ପରାସ ନାହିଁ । ଏହି ଅପୂର୍ବ ବେମାରିରେ ହସ ଯେତିକି ଲାଗୁଚି, ତା'ଠୁଁ କଉତୁକ ବେଶୀ ଲାଗୁଚି । ସେଇଟାକୁ ମୁଁ ତା'ର ଆପଣା ଇଚ୍ଛାରେ ଛାଡ଼ି-ଦେଇଚି । ଦେଖାଯାଉ ଏଇଟା ଦ୍ୱାରା କାହାର କି ଇଚ୍ଛା ପୂରଣ ହେଉଚି । ଯେତେବେଳେ ଆତ୍ମା ଓ ମନ ଉଭୟେ ପ୍ରସ୍ତୁତ ହୋଇଗଲେଣି, ସେତେବେଳେ ଗୋଠଖଣ୍ଡିଆ ଶରୀରଟା ମୋର କ'ଣ କରିପାରିବ ? ବିରାଟ ଭୁବନର ଦୁଃଖ-ସୁଖ, ପ୍ରିୟଅପ୍ରିୟର ମହାନାଟକରେ ନିଜକୁ ଭରାଇଦେଇ ମୁଁ ଶରୀରକୁ ଜୟ କରିବି, ଶରୀରର ପ୍ରତି ଲୋମକୂପକୁ ସେହି ବିରାଟର ଲୋମକୂପ ପରି ପବିତ୍ର କରିବି । ମୋ'ଭିତରେ କେବଳ ତାହାରି ମନନଯଜ୍ଞ ଅନୁଷ୍ଠିତ ହେବ ।

ଦେଉଳ ଭିତରର ଦେବତା 'ମୁଁ'କୁ ଚିହ୍ନିନେଇ ସାରିଛିଣି, ବର୍ତ୍ତମାନ କେବଳ କବାଟ ଖୋଲିବାର ସଜ ତିଆରି କରୁଛି । ନିତିଦିନ ନାନା ରକମର ସାଧନା ଭିତରଦେଇ ମୁଁ କେବଳ ସେହି ମହାଉନ୍ମୋଚନର ଗୋଟିଏ ଗୋଟିଏ ପାଖୁଡ଼ା ଖୋଲିଦେଉଛି । ପ୍ରତ୍ୟେକ ଦିନର ସୂର୍ଯ୍ୟୋଦୟ ମୋତେ ଏହି ଇନ୍ଦ୍ର-ମୁହୂର୍ତ୍ତର ଭବିଷ୍ୟବାଣୀ ଶୁଣାଇଦେଇ ଯାଉଚି, ପ୍ରତ୍ୟେକ ସୂର୍ଯ୍ୟାସ୍ତ ପୂଜାର ନୂତନ ଶପଥ ଦେଇଯାଉଚି । ମୁଁ ବଢ଼ୁଚି, ନିତି ବଡ଼ ହେଉଚି; ଗନ୍ଧ, ଗାନ ଓ ଗୀତ-ଛନ୍ଦରେ ନିତି ଶକ୍ତିଶାଳ ହେଉଚି ।

ଆଗରେ ବିରାଟ ବାରିଧି, ମୁଁ ଏକୁଟିଆ ନାଉରୀ ବସିଚି ଡଙ୍ଗା ବାହିନେବି ବୋଲି । ଭୟ ନାହିଁ, ସେଇ ଢେଉ ହିଁ ମୋତେ ବାହି ନେଇଯିବ । ଆପଣାର ବକ୍ଷରେ ବସାଇ ମୋତେ ସେପାଖରେ ପରିଚୟ କରାଇଦେଇ ଆସିବ । ନ ହେଲେ ନିଜର ଜିହ୍ୱା ବିସ୍ତାର କରି ମୋତେ ତାହାରି ଗହ୍ୱରକୁ ଟାଣିନେବ ।

୨୩ । ୧୧ । ୪୮

ଆଜିର ସୂର୍ଯ୍ୟ ନବନାରୀ ବଧୂ ପରି ମୋ'ଆଗରେ ଧରାଦେଇଚି । କୁହେଳିର ଓଢ଼ଣା ସେପାଖରୁ ତାକୁ ଯିଏ ଚିହ୍ନିନେଇ ପାରିବ, ସେଇ ଶ୍ରଦ୍ଧା-ନିବେଦନର ଅଧିକାରୀ ହୋଇପାରିବ । ରକ୍ତିମ ନୃତ୍ୟଛଟାର ନନ୍ଦନଲୀଳା ଚମକାଇ କାଲି ଯିଏ ମୋତେ ପାଗଳ କରିଥିଲା, ଆଜି ସେଇ ମୋ' ଦୁଆରେ ଆସି ସନ୍ନ୍ୟାସିନୀ ଗମ୍ଭୀରା ଗଉରୀ ରୂପରେ ଦେଖାଦେଇଚି । ହେ ମୋର ଆଠପହରୀ ମନ, ଆପଣାର ଅନୁଭବପଟ ଉପରେ ସେହି ଏକ ସୁନାର ଗାର ପକାଇରଖ । ତେବେଯାଇ ପାଇବୁ, ତେବେଯାଇ ଚିହ୍ନିବୁ ।

ସେହି ନୀଳ ଅନିନ୍ଦ୍ୟ ବିସ୍ତୃତି ଆଜି ମୋତେ ମେଘପରସ୍ତର ସେପାଖରୁ ଡାକ ଦେଇଚି । ତେଣୁ ଆଜିର ଏହି କୁହୁଡ଼ି ଓ ମେଘଉପରେ ମଧ୍ୟ ମୁଁ କେବଳ ତାହାକୁ ହିଁ ଦେଖିବାକୁ ପାଉଚି ।

ନିତିଦିନର ଦୁଃଖଦହନ ଉପରେ ଅଶେଷ ଆକାଂକ୍ଷାର ନିଆଁ ହୁତୁହୁତୁ ହୋଇ ଜଳୁଚି ଏବଂ ସେହି ଅବାରିତ ଅଗ୍ନି ଭବିଷ୍ୟତକୁ ବାଟ ଦେଖାଇ ନେଇ ଯାଉଚି । ସଂସାରଟାକୁ ମୁଁ ଆଜି ଆପଣା ଭିତରକୁ ନେଇ ଆସିବାକୁ ଚାହେଁ, ଏହି ସଂସାରର ମର୍ମେମର୍ମେ ବିଛୁରିତ ହୋଇ ରହିବାକୁ ଚାହେଁ । ଏହି ଇଚ୍ଛା ପୂରଣର ଯାତ୍ରାପଥରେ ଯେଉଁଠି ଖଟକା ରହିଯାଉଚି, ପରିଚୟ ଓ ପ୍ରୀତି ଯେଉଁଠି ଅଧା ରହିଯାଉଚି, ସେଇଠାରେ ହିଁ ଦ୍ୱନ୍ଦ୍ୱ ଆସୁଚି, ସେଇଠି ଯେପରି ମୋ'ପାଇଁ ସାରା ପୃଥିବୀର ଗତି ନିମେଷକେ ଥମିଯାଉଚି । ଆପଣାର ଶ୍ରଦ୍ଧା ଦେଇ ଏହି ଦ୍ୱନ୍ଦ୍ୱର ଆଘାତକୁ ସହିବାକୁ ହେବ, ବନ୍ଧୁର ବାଟର ଖାଇଖମାକୁ

ଜାଗିରହିଚି । ଉଠ ମୋ ଅନ୍ତରର ଆବାହକ, ମୋ' ଚିତ୍ତର ଅସଲ ଚିହ୍ନାଳି, ତାହାରି କରସ୍ପର୍ଶକୁ ବରଣ କରିଆଣ । ତେବେଯାଇ ତ ଶାଶ୍ୱତ ଦୀପର ଶୀତଳ ମହିମାରେ ଜଳି ଉଠିପାରିବୁ ।

୨୧ । ୧୧ । ୪୮

ଏଇମାସଠାରୁ ମୁଁ ସାଧାରଣ ଖାଦ୍ୟଭବନରେ ରାତିଖାଇବା ଓ ଦୁଇଓଳି ଜଳଖିଆ ଖାଇବା ଛାଡ଼ିଦେଇଚି । ନିଜର ଇଚ୍ଛାମତେ ବୋଲପୁରରୁ ସିଧାସିଧା ଖାଇବା ଜିନିଷ କିଣିଆଣୁଚି । ଏହି ନୂଆ ପରିବର୍ତ୍ତନଟି ବେଶ୍ ଲାଗୁଚି । ଖାଇବାଲାଗି ଟିକିଏ ପରିଶ୍ରମ କରିବାକୁ ପଡ଼ୁଚି ବୋଲି ଖାଇବାରେ ବେଶ୍ ଆନନ୍ଦ ମିଳୁଚି । ଅନେକେ ହୁଏତ କହିବେ ଯେ ଖାଦ୍ୟଭବନକୁ ଦିନରେ ଚ୍ୱରିଥର ବଦଳରେ ମାତ୍ର ଥରେ ଯିବାଦ୍ୱାରା ମୁଁ ଆଶ୍ରମର ଜୀବନରୁ ଦୂରଛଡ଼ା ହୋଇ-ଯାଉଚି । କିନ୍ତୁ ମୁଁ ଠିକ୍ ଓଇଟା ଭାବୁଚି । ଖାଦ୍ୟଭବନରେ ଗତ ତିନିବରଷ ହେଲା ଖାଇବାଦ୍ୱାରା ମୁଁ ଯେପରି ବିରାଟ ପୃଥିବୀର ସୁଖଦୁଃଖ, କ୍ଷୋଭ ଓ ଖଟଣିରୁ ଅତି ଦୂରଛଡ଼ା ହୋଇଯାଇଚି । ପ୍ଲେଟୋଙ୍କର କଳ୍ପିତ ବହୁଯତ୍ନପାଳିତ ସେହି ସୁନାମଣିଷ ପରି ନିଜକୁ ଅନେକଥର ମନେହୋଇଚି, ଆପଣାର ଏହି ଭଦ୍ର ନିର୍ବାସନକୁ ମୁଁ ଅନେକ ସମୟରେ ଧିକ୍କାର ଦେଇଚି । ବୋଲପୁର,—ଧୂଳି-ଧୂସର ରାସ୍ତାଉପରେ ଧୂସର ମଣିଷର କ୍ଷୁଦ୍ର ବିପଣିଟିଏ,—ସେଠିକି ପ୍ରତ୍ୟେକ ଦିନ ଯାଇ କେଉଁ ଧୂଳିଆ ଭଗବାନ ସହିତ ନିତି ଆତ୍ମାର ମିଳନ ହୋଇଯାଉଚି । ଦୁର୍ଗନ୍ଧ, ଦୁଶ୍ଚିନ୍ତା ଓ ଦୁଃସମୟପୂର୍ଣ୍ଣ ଜୀବନଯାତ୍ରାର ଆକ୍ଷୌହିଣୀ ପ୍ରଦର୍ଶନ ସେଠାରେ ନିତି ବସିଚି । ମୋତେ ମଣିଷପରି ସେହି ପ୍ରଦର୍ଶନୀର ସମ୍ମୁଖୀନ ହେବାକୁ ପଡ଼ିବ । କାରଣ ମୁଁ ହେଉଚି ସେଇ ଯୁଗର ମଣିଷ, ଯେଉଁ ଯୁଗରେ ଅଧିକସଂଖ୍ୟକ ମଣିଷ ଏହି ଦୁର୍ଗନ୍ଧର ତଥାକଥିତ ଜୀବନରେ ସଢ଼ିମରନ୍ତି ।

୨୨ । ୧୧ । ୪୮

ରହସ୍ୟମୟ କିଏ ଜଣେ ବେମାରିର ଧମକ ଦେଖାଇ ମୋତେ ପରୀକ୍ଷା କରିବାକୁ ଆସିଚି । ଗତ ଛୁଟୀ ସମୟରୁ ଆଖିତଳେ କଣଟାଏ ଉଠିଚି କେଜାଣି, ଲାଇଟହଟହ ବରକୋଳି ପରି ଟଳଟଳ ହେଉଚି, ଅଥଚ ଏତେ-ଟିକିଏ ପରାସ ନାହିଁ । ଏହି ଅପୂର୍ବ ବେମାରିରେ ହସ ଯେତିକି ଲାଗୁଚି, ତା'ଠୁଁ କଉତୁକ ବେଶୀ ଲାଗୁଚି । ସେଇଟାକୁ ମୁଁ ତା'ର ଆପଣା ଇଚ୍ଛାରେ ଛାଡ଼ି-ଦେଇଚି । ଦେଖାଯାଉ ଏଇଟା ଦ୍ୱାରା କାହାର କି ଇଚ୍ଛା ପୂରଣ ହେଉଚି । ଯେତେବେଳେ ଆତ୍ମା ଓ ମନ ଉଭୟେ ପ୍ରସ୍ତୁତ ହୋଇଗଲେଣି, ସେତେବେଳେ ଗୋଠଖଣ୍ଡିଆ ଶରୀରଟା ମୋର କ'ଣ କରିପାରିବ ? ବିରାଟ ଭୁବନର ଦୁଃଖ-ସୁଖ, ପ୍ରିୟଅପ୍ରିୟର ମହାନାଟକରେ ନିଜକୁ ଭରାଇଦେଇ ମୁଁ ଶରୀରକୁ ଜୟ କରିବି, ଶରୀରର ପ୍ରତି ଲୋମକୂପକୁ ସେହି ବିରାଟର ଲୋମକୂପ ପରି ପବିତ୍ର କରିବି । ମୋ'ଭିତରେ କେବଳ ତାହାରି ମନନଯଜ୍ଞ ଅନୁଷ୍ଠିତ ହେବ ।

ଦେଉଳ ଭିତରର ଦେବତା 'ମୁଁ'କୁ ଚିହ୍ନିନେଇ ସାରିଲିଣି, ବର୍ତ୍ତମାନ କେବଳ କବାଟ ଖୋଲିବାର ସଜ ତିଆରି କରୁଛି । ନିତିଦିନ ନାନା ରକମର ସାଧନା ଭିତରଦେଇ ମୁଁ କେବଳ ସେହି ମହାଉନ୍ମୋଚନର ଗୋଟିଏ ଗୋଟିଏ ପାଖୁଡ଼ା ଖୋଲିଦେଉଛି । ପ୍ରତ୍ୟେକ ଦିନର ସୂର୍ଯ୍ୟୋଦୟ ମୋତେ ଏହି ଇନ୍ଦ୍ର-ମୁହୂର୍ତ୍ତର ଭବିଷ୍ୟବାଣୀ ଶୁଣାଇଦେଇ ଯାଉଚି, ପ୍ରତ୍ୟେକ ସୂର୍ଯ୍ୟାସ୍ତ ପୂଜାର ନୂତନ ଶପଥ ଦେଇଯାଉଚି । ମୁଁ ବଢ଼ୁଚି, ନିତି ବଡ଼ ହେଉଚି; ଗନ୍ଧ, ଗାନ ଓ ଗୀତ-ଛନ୍ଦରେ ନିତି ଶକ୍ତିଶାଳୀ ହେଉଚି ।

ଆଗରେ ବିରାଟ ବାରିଧି, ମୁଁ ଏକୁଟିଆ ନାଉରୀ ବସିଚି ଡଙ୍ଗା ବାହିନେବି ବୋଲି । ଭୟ ନାହିଁ, ସେଇ ଢେଉ ହିଁ ମୋତେ ବାହି ନେଇଯିବ । ଆପଣାର ବକ୍ଷରେ ବସାଇ ମୋତେ ସେପାଖରେ ପରିଚୟ କରାଇଦେଇ ଆସିବ । ନ ହେଲେ ନିଜର ଜିହ୍ୱା ବିସ୍ତାର କରି ମୋତେ ତାହାରି ଗହ୍ୱରକୁ ଟାଣିନେବ ।

୨୩ । ୧୧ । ୪୮

ଆଜିର ସୂର୍ଯ୍ୟ ନବନାରୀ ବଧୂ ପରି ମୋ'ଆଗରେ ଧରାଦେଇଚି । କୁହେଳିର ଓଢ଼ଣା ସେପାଖରୁ ତାକୁ ଯିଏ ଚିହ୍ନିନେଇ ପାରିବ, ସେଇ ଶ୍ରଦ୍ଧା-ନିବେଦନର ଅଧିକାରୀ ହୋଇପାରିବ । ରକ୍ତିମ ନୃତ୍ୟଛଟାର ନନ୍ଦନଲୀଳା ଚମକାଇ କାଲି ଯିଏ ମୋତେ ପାଗଳ କରିଥିଲା, ଆଜି ସେଇ ମୋ' ଦୁଆରେ ଆସି ସନ୍ୟାସିନୀ ଗମ୍ଭୀରା ଗଉରୀ ରୂପରେ ଦେଖାଦେଇଚି । ହେ ମୋର ଆଠପହରୀ ମନ, ଆପଣାର ଅନୁଭବପଟ ଉପରେ ସେହି ଏକ ସ୍ୱନାର ଗାର ପକାଇରଖ । ତେବେଯାଇ ପାଇବୁ, ତେବେଯାଇ ଚିହ୍ନିବୁ ।

ସେହି ନୀଳ ଅନିନ୍ଦ୍ୟ ବିସ୍ତୃତି ଆଜି ମୋତେ ମେଘପରସ୍ତର ସେପାଖରୁ ଡାକ ଦେଇଚି । ତେଣୁ ଆଜିର ଏହି କୁହୁଡ଼ି ଓ ମେଘଉପରେ ମଧ୍ୟ ମୁଁ କେବଳ ତାହାକୁ ହିଁ ଦେଖିବାକୁ ପାଉଚି ।

ନିତିଦିନର ଦୁଃଖଦହନ ଉପରେ ଅଶେଷ ଆକାଂକ୍ଷାର ନିଆଁ ହୁତୁହୁତୁ ହୋଇ ଜଳୁଚି ଏବଂ ସେହି ଅବାରିତ ଅଗ୍ନି ଭବିଷ୍ୟତକୁ ବାଟ ଦେଖାଇ ନେଇ ଯାଉଚି । ସଂସାରଟାକୁ ମୁଁ ଆଜି ଆପଣା ଭିତରକୁ ନେଇ ଆସିବାକୁ ଚାହେଁ, ଏହି ସଂସାରର ମର୍ମେମର୍ମେ ବିଛୁରିତ ହୋଇ ରହିବାକୁ ଚାହେଁ । ଏହି ଇଚ୍ଛା ପୂରଣର ଯାତ୍ରାପଥରେ ଯେଉଁଠି ଖଟକା ରହିଯାଉଚି, ପରିଚୟ ଓ ପ୍ରୀତି ଯେଉଁଠି ଅଧା ରହିଯାଉଚି, ସେଇଠାରେ ହିଁ ଦ୍ୱନ୍ଦ୍ୱ ଆସୁଚି, ସେଇଠି ଯେପରି ମୋ'ପାଇଁ ସାରା ପୃଥିବୀର ଗତି ନିମେଷକେ ଥମିଯାଉଚି । ଆପଣାର ଶ୍ରଦ୍ଧା ଦେଇ ଏହି ଦ୍ୱନ୍ଦ୍ୱର ଆଘାତକୁ ସହିବାକୁ ହେବ, ବନ୍ଧୁର ବାଟର ଖାଇଖମାକୁ

ଆପଣା ପ୍ରୀତିର ରସଦ ଦେଇ ସମତୁଲ କରିବାକୁ ହେବ । ତାହା ହିଁ କରିପାରିବା ଲାଗି ଜୀବନମିସ୍ତ୍ରୀ ରାତିଦିନ ସ୍ୱପ୍ନ ଦେଖୁଚି, ଭାବୁଛି ଓ ଯୋଜନା କରୁଚି ।

୨୬ । ୧୧ । ୪୮

ଆପଣା ଆନନ୍ଦରେ ନିମଗ୍ନ ରହି ମୁଁ ବେଳେ ବେଳେ ଏହି ପୃଷ୍ଠା ଉପରେ ମୋର ଦୈନନ୍ଦିନ କର୍ତ୍ତବ୍ୟ ସମାପନ କରିବାକୁ ଭୁଲିଯାଉଚି । ମନ, ବୁଦ୍ଧି ଓ ହୃଦୟରେ ସହସ୍ର ଗନ୍ଧର ପୂଜାରେ ମୁଁ ଯେ କେତେ କେତେ ଦିନରାତି କଟାଇ ଦେଉଚି, ସେସବୁକୁ ଗଣି ଭାଗ ଭାଗ କରି ରଖିବାକୁ ମନ ଯାଉ ନାହିଁ । ତାହାରି ଉଜ୍ଜ୍ୱଳ ତାରା ଯେତେବେଳେ ମନର ଶୀତଳ ଆକାଶରେ ଜଳୁଚି, ମୁଁ ସେତେବେଳେ କେବଳ ଉଜ୍ଜ୍ୱଳ ଦିନର ଦୀପ୍ତିଟିକୁ ହିଁ ଅନୁଭବ କରୁଚି । ଯେତେବେଳେ ଆଖି ବୁଡ଼ିଯାଉଚି, ନାନା ଭ୍ରାନ୍ତି ଓ ବିଚ୍ୟୁତିର କୁହୁଡ଼ି ତଳେ ଯେତେବେଳେ ଧ୍ରୁବପଦର ଅନ୍ତରଲିପି ଅନ୍ତରାଳ ହୋଇଯାଉଚି, ସେତେବେଳେ ହୃଦୟଗ୍ରାସୀ ତିମିର ସନ୍ଧ୍ୟା ଘନାଇଆସୁଚି, ସେତେବେଳେ ଅନ୍ଧକାରଟା ହିଁ ମୋତେ ବଡ଼ ସଚେତ ଭାବରେ ଗ୍ରାସିକରି ରହୁଚି । ମୋ'ର ଦିନରାତିର ପଞ୍ଜିକା କେତେଦିନ ହେଲା ଯେପରି ସେହି ଜ୍ୟୋତିଷର ଅଜବ ନିୟମରେ ଆତଯାତ ହେଉଚି ।

ଦିନ ବା ରାତ୍ରି ମୋର ନିରର୍ଥକ ଯାଇ ନାହିଁ । ହୃଦୟକୁ ବିନ୍ଦୁ ବିନ୍ଦୁରେ ବ୍ୟାପ୍ତ କରି ମୁଁ ଆହୁରି ଗଭୀରକୁ ଭେଦିଚି । ମୋର ଧୈର୍ଯ୍ୟଚ୍ୟୁତି ହୋଇ ନାହିଁ ।

ମେଘ ସେପାଖର ଅଦୃଶ୍ୟ ସାମ୍ରାଜ୍ୟରେ ମୋତେ ଆଜି ସକାଳର ସୂର୍ଯ୍ୟ ଦେଖା ଦେଇଚି । ସକାଳୁ କାହା ଅନ୍ତର ନିବେଦନ ଉଚ୍ଛ୍ୱସିତ ଧାରା ମେଘ ହୋଇ ଗଳିପଡ଼ୁଚି କେଜାଣି, ହଠାତ୍ ଅନ୍ତର ଭିତରର ସମସ୍ତ ସଞ୍ଚୟ ସଂସାର ଜୀବନର ଛନ୍ଦେ ଛନ୍ଦେ ସଂଯୁକ୍ତ ହେବାଲାଗି ଆକୁଳ ହୋଇ ଉଠୁଚି । ଏହି ବୃଷ୍ଟିର ସ୍ରୋତ ମୋତେ ଆଜି ସାଗର ସଂଗୀତ ଶୁଣାଇ ଯାଉଚି ।

୨୭ । ୧୧ । ୪୮

ଅଦିନ ମେଘର ଦିନ ବ୍ୟାପୀ ଅଳସତା ଭିତରେ ମୋର ମନ ଆକାଶରେ ସତେ ଯେପରି କେଉଁ ବିଫଳତାର ଅକାଳ ସନ୍ଧ୍ୟା ଘାରି କରି ରହିଚି । ସକାଳ ହେବାକୁ ଅନେକ ଡେରି ଅଛି । ପ୍ରାଣର ପକ୍ଷୀ ଦୀର୍ଘ ରାତ୍ରିର ସମୁଦ୍ର ପହଁରି ଯିବାକୁ ଯେପରି ଶଙ୍କିତ ହୋଇ ଉଠୁଚି ।

ଆଜି ସବୁ ଶୀତଳ, ଠିକ୍ ଆଜିର ଏହି ଶୀତଳ ପବନ ପରି । ମନର ଦେଉଳରେ ଯେପରି ସକାଳୁ ତାଲା ପକାଇ ଦେଇ ପୂଜାରୀ ଚୁପକରି ଶୋଇ ପଡ଼ିଚି । ଆଜିର ସୂର୍ଯ୍ୟୋଦୟ ସହିତ ତା'ର ନିଦ ଭାଙ୍ଗି ନାହିଁ ।

ଆଜିର ଦୁଆରଟି ଖୋଲିପାରି ନାହିଁ ବୋଲି ବ୍ୟାକୁଳ ଚିତ୍ତ ଗତ କାଲିର ନର୍ଦ୍ଦମା ଭିତରେ କାନ୍ଦି ମରୁଛି, ଆଜିର ପାଖୁଡ଼ାଟି ଫୁଟି ଉଠି ନାହିଁ ବୋଲି ମନର ମାଳୀ କାଲିର ମଉଳା ପଗ୍ମ ଫୁଲରୁ କୀଟ ଖୋଜି ବାହାର କରୁଛି । ନା–ନା,–ତଥାପି ଦୁଆର ଖୋଲିବାକୁ ହେବ, ତଥାପି ଫୁଲ ଫୁଟାଇବାକୁ ହେବ ।

ଜ୍ଞାନ ଓ କର୍ମ, ସଂସାର ଓ ଆଧ୍ୟାତ୍ମିକ ଜୀବନ, ସମସ୍ତେ ଏହାକୁ ପରସ୍ପରର ଓଲଟା କରି ଦେଖନ୍ତି କାହିଁକି ? ସମ୍ପୂର୍ଣ୍ଣ ଜୀବନର ନୈବେଦ୍ୟ ପଛରେ ଏହି ଦୁଇ ସାଧନାର ଯୁକ୍ତ ଅଞ୍ଜଳି ରହିଚି, ନ ହେଲେ ଜୀବନ କଦାପି ପରିପୂର୍ଣ୍ଣ ହୋଇପାରୁ ନ ଥାନ୍ତା । ଏହି ଦୁଇଟା ଭିତରେ ମୁଁ କୌଣସି ଦ୍ୱନ୍ଦ୍ୱ ଦେଖିପାରେ ନାହିଁ । ମୋର କର୍ମ ମୋତେ ଅନ୍ତରର ସିଂହାସନକୁ ନେଇଯାଏ, ମୋର ପୂଜା ଓ ମୋର ଦେଖା ମୋତେ ସହସ୍ର କର୍ମର ଧୂଳିଧରଣୀ ସହିତ ସମ୍ମିଳିତ କରିଦିଏ । ମୋର ସାଧନା ଦୁହିଁଙ୍କୁ ନେଇ । ମୋର ଜୀବନବାଟ କହିଲେ ଏହି ଦୁଇ ବାଟକୁ ବୁଝାଇଥାଏ ।

୨୮ । ୧୧ । ୪୮

ଆଜି ସମସ୍ତ ସମୟ ଅକାରଣରେ କଟିଲା । ସମସ୍ତ ଗଣ୍ଠି ଖୋଲି ଦେଇ ମୁଁ ଆଜି ଦିନସାରା କେତେ ଦୁଆରେ ବୁଲିଚି, କେତେଥର ହୃଦୟ ଖୋଲିଦେଇଚି, ପ୍ରାଣଭରି ହସିଚି, ନୟନ ଭରି ଦେଖିଚି ଓ ପାନ କରିଚି । ଜଗତର ଆନନ୍ଦବଜାରରେ ମନଟା ବେଳେବେଳେ ଏପରି ଏକାତ୍ମ ଆତ୍ମଭୋଳା ହୋଇ ମିଶିଯାଏ ଯେ ନିଜର ଲଗାମଗୁଡ଼ାକ କୁଆଡ଼େ ହାତଛଡ଼ା ହୋଇଯାଏ । ତଥାପି ମୋର ପରବାୟ ନାହିଁ,–ତାହାରି ସଂସାର ଭିତରେ ପଶି ଯଦି ମୁଁ କାହାକୁ ମୁହୂର୍ତ୍ତକର ଆନନ୍ଦ ଦେଇପାରିଲି, କାହାରି ଜିଜ୍ଞାସାର ଦ୍ୱାର ଫିଟାଇ ଯଦି ଆପଣା ପ୍ରାଣଗନ୍ଧର ଏତେଟିକିଏ ପରିଚୟ ବି ଦେଇପାରିଲି, ତେବେ ତାହାହିଁ ଯଥେଷ୍ଟ ।

ଅନ୍ଧକାରର ମଣିଷ ମୁଁ, ଅନ୍ଧକାର ଓ ଅଭିଶାପକୁ ଠୁଳ କରି ଆପଣାକୁ ଗଢ଼ିଛି, ମୁଁ ସେହି ଅନ୍ଧକାରକୁ ହିଁ ଫେରିଯିବି । ଜୀବନରେ ମୋର ଜରି ମୁକୁଟର ଦରକାର ନାହିଁ, ମୋର ପୁଣ୍ୟ ଜନ୍ମତୀର୍ଥ ସେଇ ଗୋଡ଼ିମାଟିକୁ ହିଁ ମୁଁ ଫେରିଯିବାକୁ ଚାହେ । ଉପରେ ଭାସିବାର ଓ ଆସନ ମାଡ଼ି ବସିବାର ମୋର ସକଳ ପ୍ରଲୋଭନ ତୁମେ ଦୂର କରିଦିଅ, ମୋତେ ତୁମର ମାଟିର ଅବତାରଗର୍ଭକୁ ଫେରାଇ ନିଅ । ମୋର ଅଳ୍ପବିଦ୍ୟା ଅଡ଼ମ୍ବରୀ ମନର ସମସ୍ତ ଘଣ୍ଟଗୁଡ଼ାକୁ ତୁମେ ବନ୍ଦ କରିଦିଅ । ଆପଣା ପ୍ରସ୍ତର-ଶରୀରର କୁଟିଳ ଗ୍ରନ୍ଥିଗୁଡ଼ାକୁ ମୁଁ ସେହି ଧୂଳି ଭିତରେ ଭାଙ୍ଗି ଚୂରି ଏକ କରିଦେବାକୁ

ଗୃହେ । ତୁମରି ଅଖଣ୍ଡ ଆହ୍ୱାନକୁ ବହନ କରି ମୋ'ଭିତରେ ଯେଉଁ ଆଲୁଅଟିକକ ଜଳୁଚି, ଅନ୍ଧକାର ଭିତରେ ହିଁ ତାହାର ଜ୍ୟୋତି ସାର୍ଥକ ହେଉ ।

ଶାନ୍ତିନିକେତନରେ ଆଜି କବିପୁତ୍ର ଶ୍ରୀ ରବୀନ୍ଦ୍ରଙ୍କର ୬୦ତମ ଜନ୍ମୋତ୍ସବ ମହାସମାରୋହରେ ପାଳିତ ହେଲା ।

୨୯ । ୧୧ । ୪୮

ଆଖି ଅଳସ ହୋଇପଡ଼େ, କାନ ଜାଣିଶୁଣି ବଧିର ହୁଏ, ହାତଗୋଡ ସମ୍ପୂର୍ଣ୍ଣ ବଳରହିତ ହୋଇ ସହଜ ସୁଖରେ ଅବସର ନିଏ; ଠିକ୍ ସେତିକିବେଳେ ମନ ଆପଣାର ଆଳାପ ଜମାଇବସେ । ମେଘୁଆ ସକାଳର ଅକର୍ମଠ ପହରପରେ ଯେତେବେଳେ ସୂର୍ଯ୍ୟର କିରଣପାତରେ ହଠାତ୍ ସବୁ ଝଲସି ଉଠିଲା, ସେତିକିବେଳେ ସମସ୍ତ ଅଙ୍ଗକୁ ନେଇ କିରଣସରିତରେ ଭସାଇ ଦେଇ ମୁଁ ମନର ଆଳାପ କରୁଥିଲି । ନାନା ଗୁଞ୍ଜନରେ ଅନ୍ତରତମର ତପୋଭଙ୍ଗ କରୁଥିଲି । ଘରିଆଡୁ କବାଟ ମୁଦିଦେଇ ଦେବାଳୟର ପୂଜାରୀ ଯେପରି କାହାପାଖରେ ଆପଣାର ବହୁଯୁଗର ପରିଚୟ ଦେବାକୁ ଯାଇଥିଲା ! ଜୀବନରେ ଏପରି ହାଲୁକା ମୁହୂର୍ତ୍ତମାନ ଖୁବ୍ କମ୍ ଆସେ, ଯେତେବେଳେ ନିଜର ସମସ୍ତ ସତ୍ତାକୁ ଅଶେଷ ଯାତ୍ରାର ସାଗର ବକ୍ଷରେ ଅକାରଣ ଓ ଅବାରିତ ଭସାଇ ଦେଲାପରି ଲାଗେ । ଆଜି ନିଜକୁ ଆଲୁଅରେ ଭସାଇଦେଇ ମୁଁ ସେମିତି ଆଲୁଅ ପାଲଟି ଯାଇଥିଲି ।

ମୋ'ରି ଭିତରୁ ହିଁ କେତେ କିଏ ପରକୀୟ ବାହାରି ଅସଲ 'ମୁଁ'ର ବିରୁଦ୍ଧରେ ବିଦ୍ରୋହ କରୁଚନ୍ତି । ତେଣେ ଅସଲ କଢ଼ଟି ଉଡୁଆଳରେ ରହି କେବଳ ପ୍ରାର୍ଥନା କରିବାରେ ହିଁ ଲାଗିଚି, ଆସନ୍ତା ସୂର୍ଯ୍ୟୋଦୟର ମହାନ୍ ଉତ୍ସବଲାଗି ସିଏ ଆପଣାକୁ ସମର୍ପଣ କରିଦେଇଚି । ଆଉ ସେ ପଙ୍କ ଭିତରକୁ ଫେରିବ ନାହିଁ, ମାତ୍ର ପଙ୍କ ଉପରେ ଫୁଟିଉଠି ସୂର୍ଯ୍ୟଦର୍ଶନ କରିବ । ତା'ର ଗଭୀରତମ ମର୍ମରେ ସୂର୍ଯ୍ୟର ଆହ୍ୱାନ ଗୁଞ୍ଜରି ଉଠିଲାଣି । ତାକୁ ଯିବାକୁ ହେବ, ଠେଲି ପେଲି ନିଜର ମସ୍ତକ ଉତ୍ତୋଳନ କରିବାକୁ ହେବ ।

୩୦ । ୧୧ । ୪୮

ଭୁବନଡ଼ଙ୍ଗା ଗାଆଁର ଗୋଟାଏ ମଡ଼ା ପୋଡ଼ିବାରେ ଆଜି ସମସ୍ତ ଉପରଓଳିଟା କଟିଲା । ମଣିଷ ପ୍ରାଣର ଉଚ୍ଛିଷ୍ଟଟାକୁ ଆକାଶରେ ମିଶାଇଦେବାକୁ ମୋଟେ ତିନିଟା ଘଣ୍ଟା ଲାଗିଲା ।

ସଂସାରର ହାଜିରାରୁ ଯାହାର ନାମ ଆଜି କଟିଗଲା, ତା'ର ନାଆଁ ସେଥିରେ କେବେ ଲେଖାହୋଇଥିଲା କି ନାହିଁ ସେଥିରେ ମୋର ସନ୍ଦେହ ରହିଚି । ଲୋକଟାର ପିଲାଦିନରୁ କୁଆଡ଼େ କ୍ଷୟରୋଗ ଥିଲା, ସିଏ ତିନିବର୍ଷ

ତଳେ ବାହା ହୋଇଥିଲା, ଶଶୁରଘର ପାଖରେ ଖଣ୍ଡେ ଘୁଳିକରି ରହୁଥିଲା । ଯେତେବେଳେ ସମସ୍ତେ ତା'ଠାରୁ ଆଶା ଛାଡ଼ିଲେ, ସେତେବେଳେ ତା'ର ସ୍ତ୍ରୀ ତାକୁ ଛାଡ଼ି ମାଉସୀଘର ପଳାଇଲା । ଆଉ କେତେଦିନ ଗଲେ ସେ ହୁଏତ ଆଉ ଗୋଟାକୁ ଦ୍ୱିତୀୟ ହୋଇ ପଡ଼ିବ । ଲୋକଟାକୁ ଆଣି ସମସ୍ତେ ଗୁହାଳ ଘରେ ପକାଇ ଦେଇଥିଲେ, ଆମେ କେତେଜଣ ପିଲା ତାକୁ ସେଇଠାରୁ ମଶାଣି ପର୍ଯ୍ୟନ୍ତ କାନ୍ଧେଇ ନେଲୁ ।

ଖାଲି କ୍ଷୟ ହେବାକୁ ଲୋକଟାର ଜନ୍ମ ହୋଇଥିଲା କି କଣ, କେବଳ କେତେଖଣ୍ଡ ହାଡ଼କୁ ଛାଡ଼ିଦେଲେ ତା'ଦେହରେ ଆଉ କିଛି ନଥିଲା । କିନ୍ତୁ ତାକୁ ଦେଖି ଯେତେଦୂର ଖରାପ ନ ଲାଗିଲା, ତା'ର ଲୁଗାପଟା ଆଉ ବିଛଣାପତ୍ର ଦେଖି ମୋର ମନ ବିଦ୍ରୋହ କରି ଉଠିଲା । ଖଣ୍ଡେ ଅଖା ଉପରେ ଛିଣ୍ଡାକନାର ଦରଭାଟିଏ ପରା ହୋଇଚି, ତା'ର ଦେହଉପରେ ଖଣ୍ଡିଏ ଛିଣ୍ଡା କନ୍ଥା ଢ଼ଙ୍କା ହୋଇ ରହିଚି । ମସିଆ ଦସିଫିଟା ଛିଣ୍ଡାଲୁଗା କେତେଖଣ୍ଡ ଭିତରେ ଯେପରି ମନୁଷ୍ୟଜନ୍ମର ଅପମାନ କରାଯାଉଥିଲା ! ମଣିଷ କାହିଁକି ଏତେ ଅପମାନ ସହିବ ? ରେଡ଼ିଓ ଆଉ ଉଡ଼ାଜାହାଜର ଯୁଗରେ ସିଏ କାହିଁକି ଏପରି ଅପମାନକର ଆବର୍ଜନା ଭିତରେ ମରିବ ! ହେ ଶକ୍ତିର ଭଗବାନ, ମଣିଷକୁ ତା'ର ଆତ୍ମସମ୍ମାନ ରଖି ଶିଖାଅ, ତା'ର ମସ୍ତକ ଉନ୍ନତ କର । ଯଦି ସେ ମଣିଷ ହୋଇ ଜନ୍ମ ହୋଇଚି, ତେବେ ସିଏ ସେହି ମଣିଷ ପରି ହିଁ ବଞ୍ଚି ରହୁ ।

କାଲି ସମସ୍ତ ରାତ୍ରି ସୁଖସ୍ୱପ୍ନରେ କଟିଯାଇଚି । ଅଧାଅଚେତ ଅବସ୍ଥାରେ ମୁଁ ଆଖିରେ କେତେ କ'ଣ ଦେଖୁଥିଲି, କାନରେ କେତେ କଣ ଶୁଣୁଥିଲି । ମୋର ସାହିତ୍ୟାନୁଶୀଳନ ବିଷୟରେ କେଉଁ କବିବନ୍ଧୁ ମୋତେ କେତେ କଣ କହିଯାଉଥିଲା; ଆଉ ମୋର ପିପାସୁ ହୃଦୟ ଏକେନ୍ଦ୍ରିୟ ହୋଇ କେବଳ ସବୁ ଗ୍ରହଣ କରିବାରେ ଲାଗିଥିଲା । ଚେତନ ଜୀବନର ବାରବାଉଳା କର୍ମ ଅକର୍ମ ଭିତରେ ଆଉ ସେସବୁ କିଛି ମନେନାହିଁ । କିନ୍ତୁ ସେଥିରେ ମୁଁ କୌଣସି ଦ୍ୱିଧା କାହିଁକି କରିବି ?

ମୁଁ ଠିକ୍ ଏହାହିଁ ଗ୍ରହେ । ମୋର ଅଜଣାରେ ଭଣ୍ଡାର ଭରି ସିଏ ତା'ର ସାମଗ୍ରୀ ସାଇତି ରଖିଯାଉ, ମୋର ପୂଜାଥାଳୀରେ ସିଏ ନିଜ ହାତରେ ଅର୍ଚ୍ଚନାଆରତି ଓ ପତ୍ରପୁଷ୍ପ ସଜାଇ ଦେଇଯାଉ । ତାହାରି ସଜା ଅଭିସଜାକୁ ତାହାରି ପାଖରେ ନିବେଦନ କରିପାରିଲେ ହିଁ ମନର ଆକୁଳତା ମେଣ୍ଟିବ । ହାତ ବଢ଼ାଇବାର ଶ୍ରମ ଓ ସାଧନାକୁ ସଫଳ କରି ସେତିକିବେଳେ ହିଁ ତା'ର ସୁନାର ପକ୍ୱଫଳ ଖସିବ ।

—୦—